# ସାର୍ ବାସୁଦେବ ସୁଢ଼ଳଦେବ

*ମୂଳ ବଙ୍ଗଳା*

ଚଣ୍ଡି ଚରଣ ବନ୍ଦୋପାଧ୍ୟାୟ

*ଅନୁବାଦ*

ପ୍ରଦୀପ କୁମାର ରାୟ

*ସଂପାଦନା :*

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ



କେ. କେ. ମିଶ୍ର ଏଣ୍ଡ୍ କୋ.
ବାଙ୍କାବଜାର, କଟକ - ୨

Digitized by srujanika@gmail.com

# ଉତ୍ସର୍ଗ

ଓଡ଼ିଶାର ଶୀର୍ଷ ସ୍ଥାନୀୟ ମହାତ୍ମାର
ଆଦର୍ଶ ଜୀବନର କାହାଣୀ
ଓଡ଼ିଶାର ଭବିଷ୍ୟତ ଜନମଣ୍ଡଳୀର ହସ୍ତରେ
ବାମଣ୍ଡାର ଶୋକକାତର ରାଜ ପରିବାର ହସ୍ତରେ
ଏବଂ
ଗଙ୍ଗାଜଳେ ଗଙ୍ଗାପୂଜା ନ୍ୟାୟରେ
ସ୍ୱର୍ଗୀୟ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର
ଜ୍ୟେଷ୍ଠପୁତ୍ର ସ୍ୱର୍ଗୀୟ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ
ସ୍ମୃତିକଳ୍ପେ ଏବଂ ତଦୀୟ
ଜ୍ୟେଷ୍ଠପୁତ୍ର ବର୍ତ୍ତମାନ ବାମଣ୍ଡା ରାଜା
ଶ୍ରୀଯୁକ୍ତ ଦିବ୍ୟଶଙ୍କର ସୁଢ଼ଳଦେବ ବାହାଦୁରଙ୍କ ହସ୍ତରେ
ଗ୍ରନ୍ଥାକାରର ଶ୍ରଦ୍ଧା, ଭକ୍ତି ଓ ପ୍ରୀତିର
ଚିହ୍ନ ସ୍ୱରୂପ ଏହି ଗ୍ରନ୍ଥ ଉତ୍ସର୍ଗୀକୃତ ।

ଗ୍ରନ୍ଥାକାର

Digitized by srujanika@gmail.com

ସାର୍ ବାସୁଦେବ ସୁଢ଼ଳଦେବ
(ସମକାଳ ସାମାଜିକ ଇତିହାସ)

*ସଂପାଦନା :*
ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

*ପ୍ରକାଶକ :*
କେ. କେ. ମିଶ୍ର ଏଣ୍ଡ୍ କୋ.
ବାଙ୍କାବଜାର, କଟକ – ୭୫୩୦୦୨

*ଡି.ଟି.ପି. :*
ବି.ପି.ଏସ୍. ଗ୍ରାଫିକ୍ସ,
ଆଲାମଚାନ୍ଦ ବଜାର, କଟକ

*ପ୍ରଥମ ପ୍ରକାଶନ : ୨୦୧୩*

*ପ୍ରଚ୍ଛଦ :*
ମାନସ ଜେନା

ମୂଲ୍ୟ : ଟ. ୧୭୫.୦୦
ବୋର୍ଡ୍ ବନ୍ଧାଇ – ଟ. ୧୯୦.୦୦

SIR BASUDEV SUDHALADEV

*Edited by :*
Dr. Fanindra Bhusan Nanda

*Published by :*
K. K. Mishra & Co.
Banka Bazar, Cuttack – 753002

*1st Published in :* 2013

*D.T.P. :*
B.P.S. Graphics,
Alamchand Bazar, Cuttack

*Price* : ₹ 175.00
*Board Binding* : ₹ 190.00

Digitized by srujanika@gmail.com



ରାଜା ସାର୍ ବାସୁଦେବ ସୁଢ଼ଳ ଦେବ, କେ.ସି.ଆଇ.ଇ.

Digitized by srujanika@gmail.com

# ॥ ସୂଚୀପତ୍ର ॥



Digitized by srujanika@gmail.com



Digitized by srujanika@gmail.com

# ମୁଖଶାଳା

ଜ୍ଞାନତପସ୍ୱୀ ସାର୍ ବାସୁଦେବ ସୁଢ଼ଳଦେବ ଊନବିଂଶ ଶତାବ୍ଦୀର ଓଡ଼ିଆ ଭାଷା ସାହିତ୍ୟର ପ୍ରାଣକେନ୍ଦ୍ର । ତାଙ୍କ ଜୀବନଚରିତ ସହିତ ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା, ଛତିଶଗଡ଼ ଓ ବଙ୍ଗଳାର ସାଂସ୍କୃତିକ ସମ୍ବନ୍ଧ ଘନିଷ୍ଠ ହୋଇଥିଲା । ଜଣେ କବି ଓ କର୍ମୀ ରୂପେ ଉତ୍କୃଷ୍ଟ କର୍ମକାଣ୍ଡର ଭିଆଣ ସହିତ ସେ ନିଜର ସୃଜନଶୀଳତାର ପରିଚୟ ଦେଇଥିଲେ । ତାଙ୍କ ଜୀବନର ସାରସ୍ୱତଚର୍ଯ୍ୟା ଓ ରାଜନୀତି ଥିଲା ପରସ୍ପରର ପରିପୂରକ । ସମାଜଜୀବନର ପ୍ରେକ୍ଷାପଟରେ ସାଂସ୍କୃତିକ ପୋଷକତା କରି ମଣିଷ ଜୀବନକୁ ପ୍ରାଣମୟ ଓ ଊର୍ଦ୍ଧ୍ୱମୁଖୀ କରିବାରେ ତାଙ୍କର ଧୀ ଓ ଧୀଷଣା ଉତ୍ସର୍ଗୀକୃତ । ଜଣେ ସତ୍‌କର୍ମୀ, ଆଦର୍ଶ ନରପତି, ସାହିତ୍ୟ ପ୍ରାଣ ସର୍ବୋପରି ପୁରୁଷୋତ୍ତମ ବାସୁଦେବ ସୁଢ଼ଳଦେବ ଥିଲେ ଓଡ଼ିଶାର ବିଦ୍ୟାସାଗର । ତେଣୁ ବଙ୍ଗଳାରେ ବିଦ୍ୟାସାଗରଙ୍କ ଜୀବନଚରିତ ଲେଖି ଚର୍ଚ୍ଚିତ ହୋଇଥିବା ଚଣ୍ଡୀଚରଣ ବନ୍ଦୋପାଧ୍ୟାୟ (୧୮୬୦-୧୯୧୭) ଓଡ଼ିଶାର ଏହି ମହନୀୟ ଯୁଗପୁରୁଷଙ୍କ ଜୀବନଚରିତ ରଚନା କରିବାକୁ ଆଗେଇ ଆସିଥିଲେ ।

ଓଡ଼ିଆ ସାହିତ୍ୟରେ ଜୀବନୀ ପୁସ୍ତକ ରଚନାର ପରମ୍ପରା ଖୁବ୍ ଅର୍ବାଚୀନ । ଏହି ପରମ୍ପରା ପ୍ରାୟତଃ ୧୯୦୫ରେ ଗଙ୍ଗାଧର ମେହେରଙ୍କ ରଚିତ 'ନୃପରାଜ ସିଂହ' ପୁସ୍ତକରୁ ସୃଷ୍ଟ । ଓଡ଼ିଆ ଜୀବନୀ ଲେଖା କେବଳ ପରିଚୟାତ୍ମକ ଏବଂ କ୍ଷୁଦ୍ର ଅବୟବ ବିଶିଷ୍ଟ ଥିଲା । ସେଗୁଡ଼ିକ ଗବେଷଣା ନିର୍ଭର ବା ତଥ୍ୟ ସମ୍ବଳିତ ନ ହୋଇ କେବଳ ଉଦ୍ଦିଷ୍ଟ ବ୍ୟକ୍ତିର ବ୍ୟକ୍ତିତ୍ୱକୁ ସଂକ୍ଷିପ୍ତ ଭାବରେ ପରିପ୍ରକାଶ କରୁଥିଲା । ଓଡ଼ିଆମାନଙ୍କ ଉପରେ ରଚିତ ଚରିତ ସାହିତ୍ୟ ବା ଜୀବନୀର ସଂଖ୍ୟା ଅତି ସ୍ୱଳ୍ପ । ରଚକଙ୍କ ଦ୍ୱାରା ବର୍ଣ୍ଣନୀୟ ବ୍ୟକ୍ତିଙ୍କ ଆଦର୍ଶ ବ୍ୟକ୍ତିତ୍ୱର ପ୍ରତିଫଳନ ଏବଂ ମାନବ ସମାଜର ପରିପୁଷ୍ଟିରେ ତାଙ୍କର ଅବଦାନ ହିଁ ଚରିତ ସାହିତ୍ୟର ମୁଖ୍ୟ ଆଭିମୁଖ୍ୟ । ଓଡ଼ିଆରେ ରଚିତ ଜୀବନୀ ସାହିତ୍ୟର ପ୍ରଥମ ଦୃଷ୍ଟାନ୍ତ ଗଙ୍ଗାଧରଙ୍କ ରଚିତ 'ଶ୍ରୀନୃପରାଜ ସିଂହ' (ଉତ୍କଳ ସାହିତ୍ୟ ପ୍ରେସ୍, କଟକ-୧୯୦୫) ଏହାର ବର୍ଷକ ପରେ ୧୯୦୬ରେ କଲିକତାର ବାପଟିଷ୍ଟ ମିଶନ୍‌ପ୍ରେସ୍‌ରୁ ପ୍ରକାଶପାଏ ଭୋଳାନାଥ ସାମନ୍ତରାୟଙ୍କ "ସ୍ୱର୍ଗୀୟ ମହାରାଜା ଧନୁର୍ଜ୍ଜୟ ନାରାୟଣ ଭଞ୍ଜ" । ଏହାପରେ ଲୋକଲୋଚନକୁ ଆସେ ନୀଳମଣି ବିଦ୍ୟାରତ୍ନଙ୍କ ରଚିତ 'ଶ୍ରୀକୃପାମୟ ଚରିତ' (ଗଜପତି ଭୀମଦେବ ପ୍ରେସ୍ - ୧୯୦୯), ମୃତ୍ୟୁଞ୍ଜୟ ରଥଙ୍କ ଶାରଳା ଚରିତ (୧୯୧୧)



Digitized by srujanika@gmail.com

ପ୍ରଭୃତି ପୁସ୍ତକ । ଏହି ସମସ୍ତ ପୁସ୍ତକରେ ବର୍ଣ୍ଣନୀୟ ବ୍ୟକ୍ତିଙ୍କ ସଂକ୍ଷିପ୍ତ ପରିଚୟ ମାତ୍ର ପ୍ରଦତ୍ତ ହୋଇଛି । ଅନ୍ୟପକ୍ଷରେ ଐତିହାସିକ ଦୃଷ୍ଟି, ଗବେଷଣା ଲବ୍ଧ ତଥ୍ୟ ପ୍ରଦାନରେ ଏଗୁଡ଼ିକ ସମୃଦ୍ଧ ନୁହେଁ । ତୁଳନାତ୍ମକ ଭାବେ ଦେଖିଲେ ସେହି ସମୟରେ ବଙ୍ଗଳା ସାହିତ୍ୟରେ ଜୀବନୀ ରଚନାର ପରମ୍ପରା ବେଶ୍ ସମୃଦ୍ଧ ଓ କଳାତ୍ମକ ସିଦ୍ଧି ହାସଲ କରିପାରିଥିଲା । ବଙ୍ଗଳା ସାହିତ୍ୟର ସେହି ବଳିଷ୍ଠ ପରମ୍ପରାର ଅନ୍ୟତମ ସ୍ମାରକୀ "ସାର୍ ବାସୁଦେବ ଜୀବନୀ" । ଯଦିଓ ଓଡ଼ିଆ ଜୀବନୀ ରଚନାର ପରମ୍ପରା ୧୯୦୫ରୁ ଦୃଷ୍ଟିଗୋଚର ହୁଏ ତା'ର ବହୁ ପୂର୍ବରୁ ବଙ୍ଗଳାରେ ବିଦ୍ୟାସାଗର ଜୀବନୀ (୧୮୯୫) ପ୍ରକାଶିତ । ଏହି ଜୀବନୀ ରଚନା କରି ଚଣ୍ଡିଚରଣ ବନ୍ଦୋପାଧ୍ୟାୟ ବେଶ୍ ଚର୍ଚ୍ଚିତ । ସମକାଳୀନ ଇତିହାସ, ପରମ୍ପରା ଓ ସ୍ଥାନୀୟ ଇତିହାସର ସମନ୍ୱୟରେ ପୂର୍ଣ୍ଣାଙ୍ଗ ଜୀବନୀର ପରିକଳ୍ପନା । ଏହି ପରିକଳ୍ପନାର ମୂର୍ତ୍ତରୂପ ସାର୍ ବାସୁଦେବ ଜୀବନୀ । ଏହି ଜୀବନୀ ଚଣ୍ଡିଚରଣଙ୍କ ଏକ ଅମଳିନ କୀର୍ତ୍ତି । ଚଣ୍ଡିଚରଣଙ୍କ ଜୀବନୀ ରଚନାର ସାମର୍ଥ୍ୟ ବିଦ୍ୟାସାଗର ଜୀବନୀ ରଚନାରେ ପରିଦୃଷ୍ଟ । ବାଂଲା ଚରିତ ସାହିତ୍ୟ ପୁସ୍ତକରେ ଦେବୀପଦ ଭଟ୍ଟାଚାର୍ଯ୍ୟ ଉଚ୍ଛ୍ୱସିତ ଭାବେ ସ୍ୱୀକାର କରନ୍ତି –

'ଚଣ୍ଡିଚରଣ ବନ୍ଦୋପାଧ୍ୟାୟେର 'ବିଦ୍ୟାସାଗର' ୧୮୯୫ ସାଲେର୍ ୧୩ ଇ ଜୁନ୍ ପ୍ରକାଶିତ ହୟ । ଶମ୍ଭୁଚନ୍ଦ୍ରେର ଗ୍ରନ୍ଥ ପ୍ରକାଶେର ପ୍ରାୟ ଚାର୍ ବଛର୍ ପର୍ । ଚଣ୍ଡିଚରଣ 'ପୂଜାର ଆୟୋଜନେ' (ହୀରୋ ୱରସିପ୍) ଏଇ 'ସୁପବିତ୍ର ଜୀବନ – କାହିନୀ' ବର୍ଣ୍ଣନାର ଅଭିପ୍ରାୟ କରେଛିଲେନ୍ । ବିଦ୍ୟାସାଗର ଚରିତ୍ର ତାଁର ମତେ 'ଏତଇ ଚିତ୍ତମୁଗ୍ଧକର ଓ ଏତଇ ଉପଦେଶପୂର୍ଣ୍ଣ' (ଏଣ୍ଟରଟେନିଂ ଆଣ୍ଡ୍ ୟୁଜ୍‌ଫୁଲ୍) ଯେ ତାର ଆଲୋଚନାୟ 'ଲୋକମଣ୍ଡଳୀର ବିଶେଷ କଲ୍ୟାଣ ସାଧିତ' ହବାର ସମ୍ଭାବନା ।'

*'ଚଣ୍ଡିଚରଣ ବିଦ୍ୟାସାଗର ମହାଶୟେର ଶେଷ ଜୀବନେ ଦୀର୍ଘକାଳ ତାଁରେ ସଙ୍ଗଲାଭ କରିଛିଲେନ୍ । ଶିକ୍ଷା ସଂସ୍କାରେ ସମର୍ଥନ ଜ୍ଞାପନ କରଲେଓ ତତ୍‌କାଳେ ସମାଜ- ସଂସ୍କାର ବ୍ୟାପାରେ ଅନେକେଇ ବିଦ୍ୟାସାଗରରେର ବିରୋଧୀ ହୟେଛିଲେନ୍ । ଚଣ୍ଡିଚରଣ ବ୍ରାହ୍ମସମାଜ ଭୁକ୍ତ ଛିଲେନ୍, ରକ୍ଷଣଶୀଳ ହିନ୍ଦୁ ସମାଜେର ଦୃଷ୍ଟିଭଙ୍ଗୀ ତାଁର ନୟ । x x x ଚଣ୍ଡିଚରଣେର୍ 'ବିଦ୍ୟାସାଗର' ଗ୍ରନ୍ଥ ବିଦ୍ୟାସାଗର ଜୀବନୀର ମଧ୍ୟେ ସର୍ବଶ୍ରେଷ୍ଠ ରଚନା ... ଚଣ୍ଡିଚରଣ ବ୍ରାହ୍ମ ସମାଜ ଭୁକ୍ତ ହଓୟାୟ ବିଦ୍ୟାସାଗରେର୍ ଜୀବନୀ ରଚନାୟ ଅପେକ୍ଷାକୃତ ପ୍ରଗତିଶୀଳ ।*

*ଅ୍ୟାସକୁଇଥ୍ ଜୀବନ ଚରିତ କାରେର୍ ମଧ୍ୟେ ଅନ୍ୟାନ୍ୟ ଗୁଣେର୍ ସଙ୍ଗେ 'ଲଭ୍ ଅଫ୍ ଡିଟେଲ୍' ଏବଂ 'ଏ ଟାସ୍ ଅଫ୍ ହିରୋ ୱରସିପ୍' ପ୍ରତ୍ୟାଶା କରେଛେନ୍ । ଚଣ୍ଡୀଚରଣେର୍ ମଧ୍ୟେ ଏଇ ଦୁଟି ଗୁଣ ଇ ବିଦ୍ୟମାନ । ବିଦ୍ୟାସାଗରେର୍ ଜୀବନରେ ସବଗୁଲି ଦିକେର୍ ଆଲୋଚନାୟ ତିନି ବସ୍‌ୱେଲ୍ ସୁଲଭ ତଥ୍ୟ ପ୍ରିୟତାର ପରିଚୟ ଦିୟେଛେନ୍ ।*



Digitized by srujanika@gmail.com

*ସାର୍ ସିଡ୍‌ନୀ ଲି ( ୧୮୫୯-୧୯୨୬) ଯିନି ଦୀର୍ଘକାଳ 'ଡିକ୍ସନାରୀ ଅଫ୍ ନ୍ୟାସନାଲ୍ ବାୟୋଗ୍ରାଫି' ସମ୍ପାଦନ କରେନ୍, ଜୀବନ ଚରିତ ରଚନାର ଉଦ୍ଦେଶ୍ୟ ସମ୍ପର୍କେ ଲିଖେଛିଲେନ୍ - 'to do honour to the memories of those who by character and exploites have distinguished themselves from the mass of their country men' ଉପକ୍ରମଣିକା ଅଂଶେ ଚଣ୍ଡିଚରଣ ଏଇ ଉକ୍ତିର ପ୍ରତିଧ୍ୱନି କରେଛେନ୍ । x x x ବିହାରୀଲାଲ୍, ରବୀନ୍ଦ୍ରନାଥ ସକଲେଇ ଚଣ୍ଡିଚରଣେର ବିଶ୍ଳେଷଣ ସ୍ୱୀକାର କରେଛେନ୍ ।*

*ସୁଲିଖିତ ଜୀବନ -ଚରିତେର ଏକଟି ବଡ଼ୋ ଲକ୍ଷଣ, ବର୍ଣ୍ଣିତ ବ୍ୟକ୍ତିକେ 'recall him to life' ଆନତେ ପାରା । ଚଣ୍ଡିଚରଣ ଏକ୍ଷେତ୍ରେ ବହୁଲ ପରିମାଣେ ସାର୍ଥକତା ଅର୍ଜନ କରେଛେନ୍ । ଚଣ୍ଡିଚରଣେର ଏଇ ସାର୍ଥକତା ଅର୍ଜନେର ଏକଟି ପ୍ରଧାନ ପନ୍ଥା ତାଁର ବର୍ଣ୍ଣନ - ଦକ୍ଷତା, ଉଚ୍ଚାଙ୍ଗେର ସାହିତ୍ୟେ ଯାର ଦୃଷ୍ଟାନ୍ତ ମେଲେ । ଚରିତ୍ର ସୃଷ୍ଟି ଓ ସାହିତ୍ୟ ସୃଷ୍ଟି ଉଭୟ କ୍ଷମତା ଚଣ୍ଡିଚରଣେର୍ ଛିଲୋ । ଏଇ କ୍ଷମତା ଶମ୍ଭୁଚନ୍ଦ୍ର ବା ବିହାରୀଲାଲେ ଦେଖା ଯାୟନି ।"*

ଚଣ୍ଡିଚରଣଙ୍କ କୃତିତ୍ୱକୁ ସମ୍ମାନ ଜଣାଇ ସଚ୍ଚିଦାନନ୍ଦ ଦେବ ନିଜ ପିତାଙ୍କ ଜୀବନୀ ରଚନା ପାଇଁ ତାଙ୍କୁ ଅନୁରୋଧ କରନ୍ତି । ଏହି ଅନୁରୋଧ ରକ୍ଷାକରି ଚଣ୍ଡିଚରଣ ବାସୁଦେବ ସୁଢ଼ଳଦେବଙ୍କ ଜୀବନୀ ବଙ୍ଗଳାରେ ରଚନା କରିଛନ୍ତି ।

ଏହି ଜୀବନୀ ଓଡ଼ିଆ ସାହିତ୍ୟ ଓ ବଙ୍ଗଳାସାହିତ୍ୟର ଏକ ସଂଯୋଗ ସେତୁ । ବଙ୍ଗଳାଲୋକେ ଓଡ଼ିଆ ଲୋକଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦାନର ଅବକାଶ ନ ଥିବା ସ୍ଥଳେ ଜଣେ ଓଡ଼ିଆ ସାରସ୍ୱତ ପୁରୁଷଙ୍କ ଜୀବନୀ ଅନ୍ୟ ଜଣେ ବିଶିଷ୍ଟ ବଙ୍ଗାଳୀ ସାହିତ୍ୟିକଙ୍କ ଦ୍ୱାରା ରଚିତ ହେବା ଏକ ଅଭୂତପୂର୍ବ ଘଟଣା । ଏହାଦ୍ୱାରା ଓଡ଼ିଶା ଓ ବଙ୍ଗଳାର ସାଂସ୍କୃତିକ ସମ୍ପର୍କ ସୁଦୃଢ଼ ହୋଇଥିଲା । ବାସୁଦେବଙ୍କ ଜୀବନୀ ବଙ୍ଗଳା ଭାଷାରେ ପ୍ରସାରିତ ହୋଇ ଓଡ଼ିଆ ସମ୍ପର୍କରେ ଏକ ଉଜ୍ଜ୍ୱଳଚିତ୍ର ବଙ୍ଗଳାରେ ସୃଷ୍ଟି କରିଥିଲା । ଯେଉଁ ବଙ୍ଗସୁଧିଜନେ ଓଡ଼ିଆଙ୍କୁ ହୀନ ଚକ୍ଷୁରେ ଦେଖୁଥିଲେ ତାଙ୍କ ଧାରଣାକୁ ବଦଳାଇବାରେ ଏହି ପୁସ୍ତକ ସହାୟକ ହୋଇଥିଲା ।

ଉନବିଂଶ ଶତାବ୍ଦୀରୁ ଆରମ୍ଭ କରି ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ବଙ୍ଗଳା ଓ ଓଡ଼ିଶାର ସାଂସ୍କୃତିକ ସମ୍ପର୍କ ମଧୁତିକ୍ତ ଥିଲା । ଏହା ଥିଲା କଭି ଖୁସି କଭି ଗମ୍ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏହି ସମ୍ପର୍କ ନିର୍ଦ୍ଦିଷ୍ଟ ଭାବରେ ସହୃଦୟସଂପନ୍ନ ହେବାରେ ଯେଉଁ କେତୋଟି ଘଟଣା ବିଶେଷତଃ ଦାୟୀ ସେଗୁଡ଼ିକ ହେଲା – (କ) ନଗେନ୍ଦ୍ରବାଳା ସରସ୍ୱତୀଙ୍କ ଦ୍ୱାରା ଓଡ଼ିଆ କବିତାରଚନା, ଓଡ଼ିଆ ସାହିତ୍ୟର ବିଶ୍ଳେଷଣ ଓ ଓଡ଼ିଆ କବିତାର ବଙ୍ଗଳା ଅନୁବାଦ (ଖ) ବିଜୟ କୁମାର ମଜୁମଦାରଙ୍କ ଦ୍ୱାରା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଗ୍ରନ୍ଥାବଳୀର ବଙ୍ଗଳା ଅନୁବାଦ ପ୍ରମୁଖ ଘଟଣାବଳୀ । ଏହି ଉଜ୍ଜ୍ୱଳ ପରମ୍ପରାର ସ୍ୱର୍ଣ୍ଣୀମ ପ୍ରତୀଭୂ ସାର୍ ବାସୁଦେବ ଜୀବନୀ ।



Digitized by srujanika@gmail.com

ଓଡ଼ିଶାର ସମାଜ ଜୀବନ, ପଶ୍ଚିମ ଓଡ଼ିଶାର ସାମଗ୍ରିକ ଚିତ୍ର, ଗଡ଼ଜାତର ଚଳଣୀ, ରାଜନୀତି, ଲୋକଙ୍କ ଅର୍ଥନୈତିକ ଅବସ୍ଥା ସର୍ବୋପରି ଓଡ଼ିଆ ଲୋକଙ୍କ ମାନସିକ ଓ ସାଂସ୍କୃତିକ ଜୀବନର ଅଭିନବ ଚିତ୍ର ଏହି ଜୀବନୀରେ ପ୍ରତିଫଳିତ । ଓଡ଼ିଶାର ସମକାଳୀନ ସମାଜର ଅଭିନବ ପଞ୍ଜିକା ରୂପେ ଏହି ପୁସ୍ତକକୁ ଗ୍ରହଣ କରାଯାଇପାରେ । ଏକ ଉତ୍ସ ପୁସ୍ତକ ରୂପେ ଏହାର ଭୂମିକା ସର୍ବବାଦୀ ସମ୍ମତ । ଏହି ଦୃଷ୍ଟିରୁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ । ବର୍ତ୍ତମାନ ଯୁଗରେ ଏହି ପୁସ୍ତକର ବଙ୍ଗଳାରେ ଯେତିକି ଉପଯୋଗିତା ରହିଛି ଓଡ଼ିଶାରେ ତତୋଽଧିକ । ଏହାର ଆବଶ୍ୟକତା ଓଡ଼ିଆ ପାଠକ ଓ ବୁଦ୍ଧିଜୀବୀଙ୍କ ପାଇଁ ରହିଛି । ବଙ୍ଗଳାରେ ବିଦ୍ୟାସାଗର ଚରିତ ବହୁ ମୁଦ୍ରିତ । କିନ୍ତୁ ବାସୁଦେବ ଜୀବନୀର ପୁନଃମୁଦ୍ରଣ ହେବାର ଅବକାଶ ନାହିଁ । ଏଣୁ ଏପରି ଏକ ମୂଲ୍ୟବାନ ତଥ୍ୟପୂର୍ଣ୍ଣ ପୁସ୍ତକକୁ ଓଡ଼ିଆ ପାଠକଙ୍କୁ ଭେଟି ଦେବାର ଆବଶ୍ୟକତା ଜନ୍ମିଲା । ଉନବିଂଶ ଓ ବିଂଶ ଶତାବ୍ଦୀର ଘଟଣାବହୁଳ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ପୃଷ୍ଠପଟରେ ସାର୍ ବାସୁଦେବଙ୍କୁ ସାମଗ୍ରିକ ଭାବେ ପୁଣିଥରେ ଲୋକଚକ୍ଷୁରେ ପ୍ରତିଷ୍ଠା କରିବାର ପ୍ରୟାସରୁ ଏହି ପୁସ୍ତକର ସୃଷ୍ଟି । ଯଦିଓ କିଛି ତଥ୍ୟଗତ ତ୍ରୁଟି ରହିଛି ତଥାପି ଓଡ଼ିଆ ସାହିତ୍ୟ ଚର୍ଚ୍ଚା କ୍ଷେତ୍ରରେ ଏହାର ସକାରାତ୍ମକ ଭୂମିକା ଅନସ୍ୱୀକାର୍ଯ୍ୟ ।

ଏମିତି ଏକ ଆବଶ୍ୟକତାକୁ ସମ୍ମାନ ଜଣାଇ ମୁଁ ବନ୍ଧୁ ପ୍ରଦୀପ କୁମାର ରାୟଙ୍କୁ ଏହି ବଙ୍ଗଳା ପୁସ୍ତକକୁ ଓଡ଼ିଆରେ ଅନୁବାଦ କରିବାକୁ ଅନୁରୋଧ କରିଥିଲି । ସେ ବେଶ୍ ବିଚକ୍ଷଣତା ସହକାରେ ତାଙ୍କ କାର୍ଯ୍ୟ ନିର୍ବାହ କରିଛନ୍ତି । ମୁଁ ତାଙ୍କୁ କହିଥିଲି ଚଣ୍ଡିଚରଣଙ୍କ ଦୃଷ୍ଟିଭଙ୍ଗୀ, ସାବଲୀଳ ଭାଷା ପ୍ରୟୋଗକୁ ଯଥାସମ୍ଭବ ଅକ୍ଷୁଣ୍ଣ ରଖିବାକୁ । ଯା' ଫଳରେ ବଙ୍ଗଳା - ଓଡ଼ିଆ ଭାବଗତ ସମ୍ପର୍କରେ ଅଧିଷ୍ଠିତ ଏହି ପୁସ୍ତକର ମୌଳିକତା କ୍ଷୁଣ୍ଣ ନ ହେବ । ବନ୍ଧୁ ପ୍ରଦୀପ ରାୟ ସେହି ନିୟମାନୁସାରେ ପୁସ୍ତକଟି ଅନୁବାଦ କରିଥିବାରୁ ମୁଁ ତାଙ୍କୁ ସାଧୁବାଦ ଜଣାଉଛି । ଅନୁବାଦ କର୍ମରେ ଯଥାସମ୍ଭବ ଚଣ୍ଡିଚରଣଙ୍କ ଶୈଳୀକୁ ଅକ୍ଷୁଣ୍ଣ ରଖିବାର ପ୍ରୟାସ କରାଯାଇଛି । ଯାଫଳରେ କେତେକ ସ୍ଥଳରେ ଓଡ଼ିଆ ପାଠକଙ୍କୁ ଭାଷା ଶୈଳୀ ସାବଲୀଳ ଲାଗି ନପାରେ । ଏଣୁ ଏହି ଅନିଚ୍ଛାକୃତ ତ୍ରୁଟି ପାଇଁ ଆମ୍ଭେ କ୍ଷମାପ୍ରାର୍ଥୀ । ଓଡ଼ିଆ ସାହିତ୍ୟକୁ ବଙ୍ଗଳା ପାଠକଙ୍କ ପାଖରେ ସମ୍ମାନୀୟ କରି ଗଢ଼ି ତୋଳିବାରେ ଚଣ୍ଡିଚରଣ ବନ୍ଦୋପାଧ୍ୟାୟ ଓ ବିଜୟ ଚନ୍ଦ୍ର ମଦୁମଦାରଙ୍କ ଉଦ୍ୟମ ପ୍ରଶଂସନୀୟ । ବାସୁଦେବ ଜୀବନୀ ରଚନା ଆଳରେ ଚଣ୍ଡିଚରଣ ବାରମ୍ବାର ବାମଣ୍ଡା ଆଗମନ କରନ୍ତି । ପ୍ରକାରାନ୍ତରେ ଓଡ଼ିଆ ଜନଜୀବନ, ଚଳଣୀ ଓ ଭାଷା ସାହିତ୍ୟର ଐତିହ୍ୟ ତାଙ୍କୁ ଆକୃଷ୍ଟ କରିଥିଲା । ସାର୍ ବାସୁଦେବ ଜୀବନୀ ପ୍ରକାଶ ପାଇବାର ଠିକ୍ ବର୍ଷକ ପରେ ଏହି କୃତବିଦ୍ୟ ସାଧକଙ୍କ ଦେହାନ୍ତ ହୁଏ । ତାଙ୍କର ତିରୋଧାନରେ ସମ୍ବଲପୁର ହିତୈଷିଣୀ ( ୨୮/୧୨ ) ୬।୧। ୧୯୧୭ ସଂଖ୍ୟାରେ 'ସାହିତ୍ୟିକଙ୍କ ଅପମୃତ୍ୟୁ'ଶୀର୍ଷକରେ ଶୋକ ପ୍ରକାଶ କରାଯାଇଛି ।



Digitized by srujanika@gmail.com

"ସୁବିଖ୍ୟାତ ବିଦ୍ୟାସାଗର - ଚରିତ ଓ ସାର ବାସୁଦେବ ସୁଢ଼ଳଦେବ ଜୀବନୀ ଲେଖକ ଚଣ୍ଡିଚରଣ ବନ୍ଦୋପାଧ୍ୟାୟ କଲିକତା ଭବାନୀପୁରକୁ ବିଚାରପତି ମାନନୀୟ ଶ୍ରୀଯୁକ୍ତ ଆଶୁତୋଷ ମୁଖୋପାଧ୍ୟାୟ ମହାଶୟଙ୍କ ସହିତ ଦେଖା କରିବା ନିମନ୍ତେ ଯାଇଥିଲେ । ଦେଖାକରି ଫେରିବା ସମୟେ ଜଜ୍‌ଙ୍କ ଗୃହ ସମ୍ମୁଖରେ ଟ୍ରାମ ଗାଡ଼ିରେ ଉଠିବା ସମୟରେ ପଡ଼ିଗଲେ, ତାଙ୍କ ଉପରେ ଟ୍ରାମଗାଡ଼ି ଚାଲିଗଲା । ତଦ୍ଦଣ୍ଡରେ ତାଙ୍କର ପ୍ରାଣବାୟୁ ଚାଲିଗଲା । ଆମ୍ଭେମାନେ ତାଙ୍କର ଏହି ଆକସ୍ମିକ ମୃତ୍ୟୁ ସମ୍ବାଦ ଶୁଣି ଅତ୍ୟନ୍ତ ଦୁଃଖିତ ଅଛୁ । ଚଣ୍ଡିବାବୁ ସାର ବାସୁଦେବ ଜୀବନୀ ଲେଖିବା ସମୟେ କେତେକ ଦ୍ରଷ୍ଟବ୍ୟ ଦୃଶ୍ୟ ଦେଖିବା ନିମନ୍ତେ ବାମଣ୍ଡାକୁ ଆସିଥିଲେ । ତାହାଙ୍କ ସହିତ ଆଳାପ କରିବାକୁ ଆମ୍ଭେମାନେ ସୁଯୋଗ ପାଇଥିଲୁ । ତାହାଙ୍କର ବୟସ ୫୬ ବର୍ଷ ହୋଇଥିଲା । ସେ ଯେପରି ବିଦ୍ୱାନ ସେପରି ଗୁଣଗ୍ରାହୀ ଥିଲେ ଏବଂ ଯୁବକ ପରି ଉତ୍ସାହୀ ଓ ପରିଶ୍ରମୀ ଥିଲେ । ଜଗଦୀଶ୍ୱର ତାଙ୍କର ଆତ୍ମାର ସଦ୍‌ଗତି ବିଧାନ କରନ୍ତୁ, ଆମ୍ଭେମାନେ ଏହି ପ୍ରାର୍ଥନା କରୁଅଛୁଁ ।"

ସାର୍ ବାସୁଦେବ ଜୀବନୀ ଓଡ଼ିଆ ସାହିତ୍ୟ ପାଇଁ ଏକ ଅମୂଲ୍ୟ ସମ୍ପଦ । ଏହି ପୁସ୍ତକ ପ୍ରକାଶ (୧୯୧୬) ପର୍ଯ୍ୟନ୍ତ ଓଡ଼ିଆରେ କୌଣସି ବୃହତ ଜୀବନୀ ପ୍ରକାଶ ପାଇ ନ ଥିଲା । ୧୯୪୧ରେ ପ୍ରକାଶିତ 'ରାଧାନାଥ ଜୀବନୀ' ଥିଲା କୌଣସି ଓଡ଼ିଆ ସାରସ୍ୱତ ପୁରୁଷଙ୍କ ଉପରେ ଏକ ବୃହତ ପରିପ୍ରକାଶ । କିନ୍ତୁ ଏହି ପୁସ୍ତକର ବିଭିନ୍ନ ଉଦ୍ଧୃତି, ସମୀକ୍ଷା, ପତ୍ର, ବିବରଣୀକୁ ବାଦ ଦେଲେ ଏହାର ଜୀବନୀ ଅଂଶ ପୁସ୍ତକର ଏକ ତୃତୀୟାଂଶରୁ କମ୍ । କିନ୍ତୁ ସାର ବାସୁଦେବ ଜୀବନୀ ସୁଲିଖିତ, ସୁବୃହତ ପ୍ରଥମ ତଥ୍ୟମୂଳକ ଜୀବନୀ- ଏଥିରେ ଚଣ୍ଡିଚରଣ ହସ୍ତଗତ ତଥ୍ୟର ସୁବିନିଯୋଗ କରି ନିଜର କୃତିତ୍ୱର ପରିଚୟ ଦେଇଛନ୍ତି । ଚଣ୍ଡିଚରଣ ବିଶେଷ ଭାବରେ ଓଡ଼ିଆ ଜାଣି ନ ଥିଲେ, ଅନେକ ମୌଳିକ ତଥ୍ୟ ହାତପାହାନ୍ତାରେ ନ ଥିଲା । ଏଣୁ ଏହି ଜୀବନୀ ସଂକଳନ ସମୟରେ କିଛି ଭ୍ରମ ପ୍ରମାଦ ରହିଯାଇଛି ଏବଂ କିଛି ତଥ୍ୟ ଆହୁରି ଗବେଷଣାର ପ୍ରତୀକ୍ଷା ରଖେ । ଉଦାହରଣ ସ୍ୱରୂପ ସମ୍ୱଲପୁର ହିତୈଷିଣୀ ପତ୍ରିକାର ପ୍ରକାଶକାଳ ୧୮୮୯ ସ୍ଥଳେ ୧୮୮୭ ଉଲ୍ଲେଖ ହୋଇଛି । 'ଅଳଙ୍କାର ଚନ୍ଦ୍ରିକା' ଯଦିଓ ଭୁବନେଶ୍ୱର ବଡ଼ପଣ୍ଡାଙ୍କ କୃତି ଓ ସୁଢ଼ଳଦେବଙ୍କ ପ୍ରୋତ୍ସାହନରେ ପ୍ରକାଶିତ କିନ୍ତୁ ଚଣ୍ଡିଚରଣ ତାହାକୁ ସୁଢ଼ଳଦେବଙ୍କ ପ୍ରଥମ କୃତିରୂପେ ବର୍ଣ୍ଣନା କରିଛନ୍ତି । ମୁଣ୍ଡକୋପନିଷଦ ସୁଢ଼ଳଦେବଙ୍କ ରଚନା ରୂପେ ଜୀବନୀରେ କୁହାଯାଇଛି । ଯଦିଓ ୧୮୮୩ ଖ୍ରୀଷ୍ଟାବ୍ଦରେ ମୁକ୍ତିକୋପନିଷଦକୁ ବାସୁଦେବ ଅନୁବାଦ କରିଥିଲେ । ଭକ୍ତକବି ମଧୁସୂଦନ ରାଓ ସୁଢ଼ଳଦେବଙ୍କ ସମୟରେ ବାମଣ୍ଡା ଆସିଥିବା ଜୀବନୀରେ ବର୍ଣ୍ଣନା ହୋଇଛି । ପ୍ରକୃତରେ ଭକ୍ତକବି ସୁଢ଼ଳଦେବଙ୍କ ମୃତ୍ୟୁପରେ ହିଁ ବାମଣ୍ଡାକୁ ଆସିଛନ୍ତି । ଏମିତି ଛୋଟମୋଟ କିଛି ତଥ୍ୟଗତ ତ୍ରୁଟିକୁ ବାଦ୍ ଦେଲେ ସାର୍ ବାସୁଦେବ ଜୀବନୀ ଏକ ତଥ୍ୟପୂର୍ଣ୍ଣ ବୃହତ୍ ସାରସ୍ୱତ କୃତି । ଉନବିଂଶ ଶତାବ୍ଦୀ ଓ



Digitized by srujanika@gmail.com

ବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧରେ ଓଡ଼ିଆ ସାରସ୍ୱତ ଜଗତର ଅନେକ ଅନାଲୋକିତ ଅଧ୍ୟାୟ ଏହି ପୁସ୍ତକରେ ଆଲୋଚିତ ଏବଂ ପ୍ରକାଶିତ ହୋଇଛି । ଏହି ପୁସ୍ତକ ମାଧ୍ୟମରେ ଓଡ଼ିଆ ପାଠକ ସମକାଳୀନ ଓଡ଼ିଆ ସମାଜ ଜୀବନ ଓ ସାରସ୍ୱତ ପ୍ରେକ୍ଷାପଟ୍ଟର ଅନେକ ସମ୍ବାଦ ସହିତ ପରିଚିତ ହେବେ । ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣୟନ କ୍ଷେତ୍ରରେ ଏହି ପୁସ୍ତକ ଆଶାନୁରୂପ ଭାବରେ ସହଯୋଗ କରିବ ।

ସାର୍ ବାସୁଦେବ ଜୀବନୀ ଅନୁବାଦ ଏକ ଜାତୀୟ କର୍ତ୍ତବ୍ୟ । ଓଡ଼ିଆ ଭାଷା ସାହିତ୍ୟର ଅନ୍ୟତମ ରକ୍ଷାକର୍ତ୍ତା ସାର୍ ବାସୁଦେବ ସୁଢ଼ଳଦେବଙ୍କ ବ୍ୟକ୍ତିତ୍ୱକୁ ଲୋକାଭିମୁଖୀ କରିବାରେ ଏହି ପୁସ୍ତକ ସାହାଯ୍ୟ କରିବ । "ସାର୍ ବାସୁଦେବ ଜୀବନୀ" ଶୀର୍ଷକରେ ଏହି ପୁସ୍ତକଟି ବଙ୍ଗଳାରେ ପ୍ରକାଶିତ । ଓଡ଼ିଆରେ ପ୍ରକାଶ କଲାବେଳେ ଏହାର ଶୀର୍ଷକକୁ ସୁସ୍ପଷ୍ଟ କରିବାପାଇଁ "ସାର୍ ବାସୁଦେବ ସୁଢ଼ଳଦେବ" ରଖାଯାଇଛି ।

ସାର୍ ବାସୁଦେବ ଜୀବନୀ ପ୍ରକାଶନ ସମୟରେ କୃତବିଦ୍ୟ ଗବେଷକ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ, ଡକ୍ଟର ଗୌରାଙ୍ଗ ଚରଣ ଦାଶ ଓ ମୋର ପୂଜ୍ୟ ଗୁରୁ ଦୁର୍ଗାପ୍ରସାଦ ଦ୍ୱିବେଦୀଙ୍କୁ ପ୍ରଣାମ କରୁଛି । ପୁସ୍ତକ ସମ୍ପାଦନାର ପ୍ରତି ଛତ୍ରେ ଛତ୍ରେ ମୋତେ ପ୍ରୋତ୍ସାହିତ କରିବା, ପୁସ୍ତକ ପ୍ରକାଶନର ଅଗ୍ରଗତିକୁ ତ୍ୱରାନ୍ୱିତ କରିବାରେ ବିଶିଷ୍ଟ କବି, ଗାଳ୍ପିକ ଓ ପ୍ରାବନ୍ଧିକ ନକୁଳ ଚନ୍ଦ୍ର ସାହୁଙ୍କ ସାହାଯ୍ୟ ଅବିସ୍ମରଣୀୟ । ସେହି ମହନୀୟ ସାରସ୍ୱତ ସ୍ରଷ୍ଟାଙ୍କୁ ଏହି ସୁଯୋଗରେ ସାଧୁବାଦ ଜଣାଉଛି । ଅକ୍ଷର ସଂଯୋଜନାରେ ସାହାଯ୍ୟ କରିଥିବାରୁ ଉଦୟ ନାରାୟଣ ଟଇନି ଓ ଆଶୁତୋଷ ଲେଙ୍କାଙ୍କୁ ଶୁଭେଚ୍ଛା ଜଣାଉଛି । ଏହି ପୁସ୍ତକ ସମ୍ପାଦନା ସମୟେ ଘରର ଯାବତୀୟ କାର୍ଯ୍ୟକୁ ମୁଣ୍ଡାଇ ମୋ ପାଇଁ ସୁଯୋଗ ସୃଷ୍ଟି କରିଥିବାରୁ ପ୍ରିୟତମା ପତ୍ନୀ ଶୈଳବାଳାଙ୍କୁ ଶୁଭେଚ୍ଛା ଜଣାଉଛି । ପୁସ୍ତକ ପ୍ରକାଶନକୁ ଉତ୍ସୁକତା ସହକାରେ ଅପେକ୍ଷା କରି ମୋର ତଥ୍ୟ ସଂଗ୍ରହରେ ସାହାଯ୍ୟ, ଅସଜଡ଼ା ପୁସ୍ତକ ଭିତରୁ ଉଦ୍ଦିଷ୍ଟ ତଥ୍ୟ ଉଦ୍ଧାର କରିବାରେ ସହାୟତା କରିଥିବାରୁ ପିଙ୍କି, ରିଙ୍କି, ବାଉଲ ଓ ସବ୍ୟସାଚୀଙ୍କୁ ଶୁଭାଶିଷ ଜଣାଉଛି ।

ଏହି ପୁସ୍ତକଟି ପ୍ରକାଶନ କ୍ଷେତ୍ରରେ ମୋର ଅନୁଜ ପ୍ରତିମ, ସ୍ମରଣ କୁମାର ନାୟକ ବିଶେଷ ଉତ୍ସାହିତ କରିଥିବାରୁ ତାଙ୍କୁ ମୋର ଧନ୍ୟବାଦ ଏବଂ ପୁସ୍ତକର ପ୍ରକାଶକ କେ.କେ. ମିଶ୍ର ଏଣ୍ଡ କୋ.ର ସତ୍ତ୍ୱାଧାରୀ ଶୁଭାନ୍ୱେଷ ମିଶ୍ରଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଅଛି ।

ଆସନ୍ତୁ ଓଡ଼ିଆ ଭାଷାସୁରକ୍ଷା, ସ୍ୱତନ୍ତ୍ର ପ୍ରଦେଶ ଗଠନ ଏବଂ ଯାବତୀୟ ଅନ୍ଧବିଶ୍ୱାସ ଓ କୁସଂସ୍କାର ଉତ୍ପାଟନ ଦିଗରେ କ୍ରାନ୍ତିକାରୀ ଭୂମିକା ସମ୍ପାଦନ କରିଥିବା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସାମଗ୍ରିକ କୃତିତ୍ୱକୁ ପୁଣିଥରେ ଆସ୍ୱାଦନ କରିବା ।

**ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ**

ଭୁବନେଶ୍ୱର

ତା ୧.୫.୨୦୧୩



Digitized by srujanika@gmail.com

# ଭୂମିକା

ଦୀର୍ଘ ପରିଶ୍ରମ ଫଳରେ ସାମନ୍ତରାଜ ବାମଣ୍ଡାଧିପତି ରାଜା ସାର୍ ବାସୁଦେବ ସୁଢ଼ଳଦେବ ମହୋଦୟଙ୍କର ଏହି ଜୀବନ ଚରିତଟି ପରିସମାପ୍ତ ହେଲା । ଏହାର ଆୟୋଜନ, ଗଠନ ଏବଂ ପରିସମାପ୍ତିରେ ମୋର କୌଣସି ପ୍ରଶଂସା ଥାଉ ବା ନଥାଉ, ପ୍ରଶଂସା ତାହାଙ୍କର ଯିଏ, ରାଜସଂସାରରେ ଜନ୍ମ ଗ୍ରହଣ କରି ବର୍ତ୍ତମାନ ଯୁଗରେ ଏପରି ଅମୂଲ୍ୟ ଓ ଅପୂର୍ବ ଜୀବନ ଯାପନ କରିଯାଇଅଛନ୍ତି । ଏହା ହିଁ ଆଶ୍ଚର୍ଯ୍ୟର ବିଷୟ- ଏହା ହିଁ ପ୍ରଶଂସାର ବିଷୟ ।

ଜୀବନ ଚରିତ ରଚନା ପାଇଁ ଏହିପରି ଉତ୍ତମ ଉପକରଣ ସର୍ବଦା ସମସ୍ତଙ୍କ ହସ୍ତଗତ ହୁଏ ନାହିଁ । ବିଧାତାଙ୍କ କୃପାରୁ ମୋ' ଜୀବନର ଶେଷ ଭାଗରେ ଦ୍ୱିତୀୟ ଥର ପାଇଁ ସେହି ସୁଯୋଗ ଘଟିଲା । ଏଥିପାଇଁ ମୁଁ ମୋର ଭାଗ୍ୟଦେବତା ଭଗବାନଙ୍କୁ ଭକ୍ତିଭରେ ସ୍ମରଣ ପୂର୍ବକ ପ୍ରଣାମ କରୁଅଛି । ତତ୍ପରେ ଯାହାଙ୍କ ଅନୁଗ୍ରହରେ ଏହି ଜୀବନୀ ବିଷୟକ ଉପକରଣ ଗୁଡ଼ିକ ମୋର ହସ୍ତଗତ ହୋଇଥିଲା, ବାମଣ୍ଡାଧିପତି ସାମନ୍ତରାଜ ସେହି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଆଜି ଏହି ସଂସାର ତ୍ୟାଗ କରି ଚାଲିଯାଇଅଛନ୍ତି । ମୋ' ହୃଦୟର ଗଭୀର ଶ୍ରଦ୍ଧାପୂର୍ଣ୍ଣ କୃତଜ୍ଞତା ଜଣାଇବାର ସର୍ବଶ୍ରେଷ୍ଠ ପାତ୍ର ଥିଲେ ସେ, ଶାସ୍ତ୍ରାନୁସାରେ ତାହାଙ୍କର ଅଭାବରେ, ମୁଁ ଆଜି ତଦୀୟ ସୌମ୍ୟମୂର୍ତ୍ତି, ଗୁଣବାନ ଓ ବିଦ୍ୟାନୁରାଗୀ ଜ୍ୟେଷ୍ଠପୁତ୍ର ବର୍ତ୍ତମାନର ସାମନ୍ତରାଜ ବାମଣ୍ଡାଧିପତି ଶ୍ରୀଯୁକ୍ତ ରାଜା ଦିବ୍ୟଶଙ୍କର ସୁଢ଼ଳଦେବ ବାହାଦୁରଙ୍କ ସମୀପରେ ମୋର ସେହି ଗଭୀର କୃତଜ୍ଞତା ନିବେଦନ କରୁଅଛି । ରାଜା ଦିବ୍ୟଶଙ୍କର ସୁଢ଼ଳଦେବ ବାହାଦୁର ତଦୀୟ ପିତୃକୀର୍ତ୍ତି ସ୍ମରଣ ପୂର୍ବକ ଗ୍ରନ୍ଥକାରର କୃତଜ୍ଞତା ଗ୍ରହଣ କଲେ କୃତାର୍ଥ ହେବି ।

ଏହି ଗ୍ରନ୍ଥ ରଚନାର ତତ୍‌ପରବର୍ତ୍ତୀ ସ୍ମରଣୀୟ ବ୍ୟକ୍ତି ବାମଣ୍ଡା ରାଜ୍ୟର ପ୍ରଧାନ କର୍ମଚାରୀ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦାଶ । ଏଭଳି ରାଜ ସେବକ ସଂସାରରେ ଆହୁରି ଅନେକ ଦେଖାଯାଇ ପାରନ୍ତି, କିନ୍ତୁ ଏଭଳି ପ୍ରଭୁ ପରାୟଣତାର ପରିଚୟ ଅଳ୍ପ ହିଁ ପାଇଅଛି । ଏହି ଗ୍ରନ୍ଥ ପ୍ରଣୟନ ପକ୍ଷରେ ତାଙ୍କର ଉଦ୍ୟୋଗ, ଆୟୋଜନ, ଉତ୍ସାହ, ଉଦ୍ୟମ, ଶ୍ରମ ସ୍ୱୀକାର ଓ ସହକାରିତା ଚିର ପ୍ରଶଂସନୀୟ । ତାଙ୍କ ପରେ ଆଉ ଏକ ବ୍ୟାପାର ଦେଖି ମୁଁ ଅଧିକତର ଆକୃଷ୍ଟ, ମୁଗ୍ଧ ଓ ଚମତ୍କୃତ ହୋଇଅଛି, ତାହା ଏହି ଯେ, ଆଜିକାଲିକା



Digitized by srujanika@gmail.com

ଦିନରେ, ପୁତ୍ର ପିତାଙ୍କ ପ୍ରତି, କନିଷ୍ଠ ଜ୍ୟେଷ୍ଠ ଭ୍ରାତାଙ୍କ ପ୍ରତି, ଯେଉଁ ଶ୍ରଦ୍ଧା ଭକ୍ତି ରକ୍ଷା କରି ଚଳି ପାରନ୍ତି ନାହିଁ । ସ୍ୱର୍ଗୀୟ ରାଜା ସାର ବାସୁଦେବ ସୁଢ଼ଳଦେବଙ୍କ ପ୍ରତି ଯୋଗେଶ ବାବୁଙ୍କର ସେହି ଦୀର୍ଘ ପୋଷିତ ପିତୃଭକ୍ତି ଏବଂ ତଦୀୟ ମହାମାନ୍ୟ ଜ୍ୟେଷ୍ଠ ପୁତ୍ର ଓ ପ୍ରତିନିଧି ସ୍ୱର୍ଗୀୟ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ପ୍ରତି ରାଜ ସମ୍ମାନ ଓ ପ୍ରଭୁ ଭୃତ୍ୟର ସମ୍ବନ୍ଧ ସହ ସୌମ୍ୟ ସୌଭାତ୍ର ଭାବ ସ୍ମରଣ ଓ ଉଲ୍ଲେଖଯୋଗ୍ୟ । ତେଣୁ ଗ୍ରନ୍ଥ ପ୍ରକାଶ କାଳରେ ତାଙ୍କର ଅସୀମ ଅନୁରାଗ ଓ ସହକାରିତା ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ।

ତାହାପରେ ସ୍ୱର୍ଗୀୟ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଦୂରଦର୍ଶନ ଫଳରେ, ତଦୀୟ ପିତୃଦେବଙ୍କର ଏହି ଜୀବନ ଚରିତଟି ବଙ୍ଗଳା ଭାଷାରେ ରଚିତ ଓ ପ୍ରକାଶିତ ହେବାର ବ୍ୟବସ୍ଥା ହୋଇଥିଲା । ଏହି ଘଟଣା ସ୍ୱର୍ଗୀୟ ମହାରାଜାଙ୍କର ବଙ୍ଗଳା ସାହିତ୍ୟ ପ୍ରତି ଅକୃତ୍ରିମ ଅନୁରାଗର ସାକ୍ଷ୍ୟଦାନ କଲେ ମଧ୍ୟ, ବଙ୍ଗଳା ସାହିତ୍ୟ ଯେ ବଙ୍ଗର ବ୍ୟବହାର ରାଜ ଦରବାରରେ ଆପଣାର ଦାବୀ ମଞ୍ଜୁର କରାଇବାର ଶକ୍ତି ଧାରଣ କରେ, ଏହା ବଙ୍ଗଳାଭାଷାର ଅଳ୍ପ ଗୌରବ କଥା ନୁହେଁ । କଟକ କଲେଜର ବିଜ୍ଞାନାଚାର୍ଯ୍ୟ ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ଏମ୍.ଏ. ବିଦ୍ୟାନିଧି ମହୋଦୟ, ବର୍ତ୍ତମାନ ଜୀବନୀ ରଚନାର ସମ୍ବାଦ ଅବଗତ ହୋଇ, ଗୌରବରେ କହିଥିଲେ- 'ସେହି ବିରାଟ ପୁରୁଷ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ଜୀବନ ଚରିତ ବଙ୍ଗଳା ଭାଷାରେ ରଚିତ ହେଉଅଛି ଏବଂ ସେହିଭାର ଆପଣଙ୍କ ହସ୍ତେ ନ୍ୟସ୍ତ ହୋଇଅଛି ଶୁଣି ଅଶେଷ ଆନନ୍ଦିତ ହେଲି-ଉତ୍ତମ ହୋଇଅଛି ।'

ପ୍ରସଙ୍ଗ କ୍ରମେ ଏହିଠାରେ ଉଲ୍ଲେଖ କରିବା ଆବଶ୍ୟକ ଯେ, କଟକ ନିବାସୀ ଅଧୁନା ଲୋକାନ୍ତରିତ ଡାକ୍ତର ରାମକୃଷ୍ଣ ସାହା ମହାଶୟ ବାମଣ୍ଡା ରାଜାଙ୍କର ଆଦେଶରେ ଓଡ଼ିଆ ଭାଷାରେ ଜୀବନୀ ରଚନା କରିବା ପାଇଁ ଉପକରଣ ସଂଗ୍ରହ କରିଥିଲେ ଏବଂ ବିକ୍ଷିପ୍ତ ଭାବରେ ଡାକ୍ତର ରାମକୃଷ୍ଣ ସାହା କିଛିଟା ଅଗ୍ରସର ହୋଇଥିଲେ । କିନ୍ତୁ ତାହା ସ୍ୱର୍ଗୀୟ ମହାରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ମନ ମୁତାବକ ହୋଇନାହିଁ । ରାମକୃଷ୍ଣଙ୍କର ଓଡ଼ିଆ ଭାଷାରେ ଅଧିକାର ନିତ୍ୟାନ୍ତ ଅଳ୍ପ ନ ଥିଲା ସୁତରାଂ ସେହି ସଂଗ୍ରହର ସ୍ଥାନେ ସ୍ଥାନେ ଓଡ଼ିଆ ଭାଷାର ମାଧୁର୍ଯ୍ୟ ସଂଭୋଗ ମଧ୍ୟ ମୋ ଭାଗ୍ୟରେ ଘଟିଥିଲା ।

ରାଜା ସାର୍ ବାସୁଦେବଙ୍କର ସ୍ୱର୍ଗାରୋହଣରେ ବିୟୋଗକାତର ରାୟ ରାଧାନାଥ ରାୟ ରାୟବାହାଦୁର ଯେଉଁ ମନ୍ତବ୍ୟ ଲିପିବଦ୍ଧ କରିଥିଲେ, ତାହାର ଅନେକ ଅଂଶ ଗ୍ରନ୍ଥର ନାନା ସ୍ଥାନରେ ସନ୍ନିବିଷ୍ଟ ହୋଇଅଛି । ତାଙ୍କର ଗୋଟିଏ ଉକ୍ତି ଭୂମିକା ପାଇଁ ସ୍ୱତନ୍ତ୍ର ଭାବରେ ଉଦ୍ଧୃତ ଥିଲା, ତାହା ହେଲା- 'ବାସୁଦେବଙ୍କ ଜୀବନ ଇଉରୋପୀୟ ଜୀବନ । ଏଭଳି ଶିକ୍ଷାପ୍ରଦ ଜୀବନ କେବଳ ଓଡ଼ିଶାରେ କାହିଁକି, ଭାରତବର୍ଷରେ ଦୁର୍ଲଭ । ଏଭଳି




Digitized by srujanika@gmail.com

ଜୀବନ ଯେଭଳି ସଂକଳିତ ହେବା ଉଚିତ୍, ଯଥା ସମୟରେ ତାହା ପୁସ୍ତକାକାରରେ ପ୍ରଚାରିତ ହେବାର ସଂପୂର୍ଣ୍ଣ ସଂଭାବନା ।' ରାୟ ରାଧାନାଥ ରାୟ ବାହାଦୁରଙ୍କ କଥିତ- 'ଏଭଳି ଜୀବନର ଯେଭଳି ଜୀବନୀ ସଂକଳିତ ହେବା ଉଚିତ', ତାହା ହେଲା କି ନାହିଁ, ତାହା ମୋର ପାଠକମାନେ ଓ ସମାଲୋଚକମାନେ ବିଚାର କରିବେ । ମୁଁ କେବଳ ସ୍ୱର୍ଗୀୟ ରାଧାନାଥ ବାବୁଙ୍କର ଏବଂ ସ୍ୱର୍ଗୀୟ ମଧୁସୂଦନ ରାଓ ମହୋଦୟଙ୍କ ଶେଷ ଅନୁରୋଧ ରକ୍ଷା ହେତୁ ଯଥାଜ୍ଞାନ ଶ୍ରମସ୍ୱୀକାର କଲି । ସୁବିଚାର ପରାୟଣ ସାଧୁ-ସାହିତ୍ୟିକଗଣ ଏହାର ଭଲ ମନ୍ଦ ବିଚାର କରିବେ ।

ବିଚାର କାଳରେ ଏକ ବିଷୟରେ ସେମାନଙ୍କର କୃପା ଦୃଷ୍ଟି ଥାଉ, ଏହା ମୋର କରଯୋଡ଼ରେ ପ୍ରାର୍ଥନା । ୧୯୧୫ ଖ୍ରୀଷ୍ଟାବ୍ଦର ଅପ୍ରେଲ ମାସରେ ସ୍ୱର୍ଗୀୟ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ବାହାଦୁର ଜୀବନ ଚରିତ ଲିଖନ କାର୍ଯ୍ୟ କେତେଦୂର ଅଗ୍ରସର ହୋଇଅଛି ଅବଗତ ହୋଇ, ମୋତେ ପୁସ୍ତକର ଅବଶିଷ୍ଟ ଅଂଶ ଲିଖନ ଓ ମୁଦ୍ରଣ କାର୍ଯ୍ୟ ଏକଯୋଗେ ସଂପନ୍ନ କରିବା ପାଇଁ ଅନୁରୋଧ କରନ୍ତି । ତଦନୁସାରେ ମୁଦ୍ରଣ କାର୍ଯ୍ୟ ମଧ୍ୟ ଲେଖା ସାଙ୍ଗେ ସାଙ୍ଗେ ଅଗ୍ରସର ହେବାରେ ଲାଗିଲା । ମାସାଧିକକାଳ ଏହି ଦ୍ୱିବିଧ କାର୍ଯ୍ୟ ଏକତ୍ର ଅଗ୍ରସର ନ ହେଉଣୁ ମୋର ପାରିବାରିକ ଜୀବନ ସୁଖ ସଂପଦ ମାନ ମର୍ଯ୍ୟାଦା ଓ ଭାବୀ ପ୍ରତିଷ୍ଠାର ଆଶାତରଣିରେ ବଜ୍ରପାତ ହୁଏ, ମୁଁ ସ୍ୱଜନବର୍ଗଙ୍କ ସହ ଶଯ୍ୟାଶାୟୀ ହୁଏ । ମୋ' ନିଜ ଜୀବନରେ ଓ ସଂଗେ ସଂଗେ ପାରିବାରିକ ଜୀବନରେ ସେହି ଯାତନାର ଚିତ୍ର ଅଙ୍କିତ କରିବା ଅପେକ୍ଷା ଅନୁଭବ କରିବାହିଁ ଶ୍ରେୟଃ । ମୁଁ ବିଗତ ତିରିଶ ବର୍ଷ କାଳବ୍ୟାପୀ ସାହିତ୍ୟ ସେବା କରିଅଛି ।

ମୋର ଜ୍ୟେଷ୍ଠ ପୁତ୍ର ଇନ୍ଦୁ ପ୍ରକାଶ ବନ୍ଦୋପାଧ୍ୟାୟ ରାଜସେବାରେ ବିପନ୍ନ ହୋଇ ଜୀବନ ବିସର୍ଜନ କରିଥିଲେ । ଏହି ବିୟୋଗକାତର ହୃଦୟର ଜ୍ୱାଳାର ସ୍ମୃତି ସାମାନ୍ୟତର ତୃପ୍ତି ମଧ୍ୟ ଉଦୟ କରିଥାନ୍ତା, ସନ୍ଦେହ ନାହିଁ । କିନ୍ତୁ ଗୁଣବାନ ଓ ସୁଶିକ୍ଷିତ ପୁତ୍ର ମାର୍କିନ ଦେଶେ ନିଜର ମର୍ଯ୍ୟାଦା ବୃଦ୍ଧି କରି, ସେହି ଦେଶରେ ଏବଂ ଇଂଲଣ୍ଡରେ ବହୁବନ୍ଧୁ ଲାଭକରି ସ୍ୱଦେଶ ଫେରୁଥିଲେ । ତାହାର ପିତା, ମାତା, ପତ୍ନୀ ଓ ଶିଶୁପୁତ୍ର କନ୍ୟାମାନେ ବ୍ୟାକୁଳ ନେତ୍ରରେ ତାହାର ଗୃହ ପ୍ରତ୍ୟାବର୍ତ୍ତନ ପ୍ରତ୍ୟାଶାରେ ପଥ ଚାହିଁ ଦିନ ଗଣନା କରୁଛନ୍ତି, ଠିକ୍ ସେହି ସମୟରେ ନିରପରାଧୀ ନରନାରୀ ଓ ବାଳକ ବାଳିକା ଏପରିକି ସ୍ତନ୍ୟପାୟୀ ଶିଶୁ ମଧ୍ୟ ଶୋଣିତ ଲିପ୍ସୁ ଜର୍ମାନୀର ବୁଡ଼ା ଜାହାଜର ଆଘାତରେ 'ଲୁସିଟାନିୟା' ଜାହାଜ ଆମ୍ଭର କ୍ଷୁଦ୍ର ପାରିବାରିକ ଜୀବନର ଆଶା ଭରସା ସହ ଆଟାଲାଣ୍ଟିକ୍ ମହାସାଗରର ଅତଳ ଜଳରେ ବୁଡ଼ିଗଲା । ବହୁଦିନ ଧରି ମୋର ରୁଗ୍ଣ ଶରୀର ଉପରେ ଏହି ନିଦାରୁଣ ପୁତ୍ରଶୋକ ନିୟତ ହୃଦୟ ଦଗ୍ଧ କରୁଅଛି । ଏହି ରୋଗ ଶୋକର ଆକ୍ରମଣରେ ଜର୍ଜର ଶରୀର ମନ ନେଇ



Digitized by srujanika@gmail.com

ବାମଣ୍ଡାର ସାମନ୍ତରାଜ ସାର୍ ବାସୁଦେବ ସୁଢ଼ଳଦେବ କେ.ସି.ଆଇ.ଇ ମହୋଦୟଙ୍କର ବିରାଟ ଜୀବନ ଆଲୋଚନା କଲି, ଏଭଳି ଅବସ୍ଥାରେ କୃତକାର୍ଯ୍ୟ ହେବାର ଆଶା ପୋଷଣ କରିବା ଅନ୍ୟାୟ । ମୋର ଏବଂ ଅନ୍ୟାନ୍ୟ ନାନା କାରଣରୁ ଗ୍ରନ୍ଥ ପ୍ରକାଶ କିଛି ବିଳମ୍ବ ହୋଇଥିଲେ ମଧ୍ୟ ମୋର ଏହି ଅବସ୍ଥା ହିଁ ବିଳମ୍ବର କାରଣ । ତେଣୁ ଅପରାଧ ସ୍ୱୀକାର କରୁଅଛି । ଏବଂ ସେଥିପାଇଁ ପ୍ରୁଫ୍ ଦେଖିବାରେ କିଛି ତ୍ରୁଟି ରହିଯାଇଅଛି । ସ୍ଥାନେ ସ୍ଥାନେ ମୁଦ୍ରାଙ୍କନରେ ଭ୍ରମପ୍ରମାଦ ଦୃଷ୍ଟ ହେବ, ଉଦ୍ଧୃତ ସଂସ୍କୃତ ବଚନ ଓ ଶ୍ଳୋକଗୁଡ଼ିକ ମଧ୍ୟରେ ସ୍ଥାନେ ସ୍ଥାନେ ବର୍ଣ୍ଣାଶୁଦ୍ଧି ଦୋଷ ପ୍ରବେଶ କରିଅଛି । ଗ୍ରନ୍ଥକାରର ପୂର୍ବକଥିତ ଅବସ୍ଥା ସ୍ମରଣ କରି ପାଠକ ଓ ସମାଲୋଚକ ମହୋଦୟଗଣ ଯେପରି ଗ୍ରନ୍ଥକାରକୁ କ୍ଷମା କରନ୍ତି । ଆହୁରି ଦୀର୍ଘଜୀବନ ଧାରଣ ସଂଭବ ହେଲେ ପରବର୍ତ୍ତୀ ସଂସ୍କରଣରେ ସେ ସବୁର ସଂଶୋଧନ ହେବ ।

ସାର୍ ବାସୁଦେବ ସୁଢ଼ଳଦେବଙ୍କ ମଧ୍ୟମ ପୁତ୍ର ବଡ଼କୁମାର ଶ୍ରୀଯୁକ୍ତ ବଳଭଦ୍ର ଦେବ ଏହି ଜୀବନୀ ସଂକଳନର ଶେଷ ଭାଗରେ ଗତ ଅପ୍ରେଲ ମାସରେ, ପିତୃଜୀବନୀ ସମ୍ବନ୍ଧରେ କେତେ ଗୁଡ଼ିଏ ଘଟଣା ସଂଗ୍ରହ କରି ପଠାନ୍ତି । ବହୁ ବିଳମ୍ବରେ ପ୍ରାପ୍ତି ହେତୁ ସେଗୁଡ଼ିକ ଗ୍ରନ୍ଥରେ ସନ୍ନିବିଷ୍ଟ କରିବାରେ ଅବସର ଘଟିଲା ନାହିଁ । ବଡ଼କୁମାରଙ୍କ ପ୍ରଦତ୍ତ ବିବରଣୀ ମଧ୍ୟରୁ କେତେକ ତାଙ୍କ ନିଜସ୍ୱ ସଂଗ୍ରହ ଏବଂ କେତେକ ସମ୍ବଲପୁର ହିତୈଷିଣୀର ଭୂତପୂର୍ବ ସଂପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସଂଗୃହୀତ । ଏହି ଉଭୟବିଧ ସଂଗ୍ରହ ପାଇଁ ବଡ଼କୁମାର ବାହାଦୁରଙ୍କ ନିକଟରେ କୃତଜ୍ଞତା ଜଣାଉଛି । ପରବର୍ତ୍ତୀ ସଂସ୍କରଣରେ ଏଗୁଡ଼ିକ ସମ୍ୟକ୍ ବ୍ୟବହୃତ କରାଯିବ ।

ଅବଶେଷରେ ମୋର ବକ୍ତବ୍ୟ ଏହି ଯେ, ସାର୍ ବାସୁଦେବ ସୁଢ଼ଳଦେବଙ୍କର ପ୍ରାୟ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ରାଷ୍ଟ୍ରୀୟ ଜୀବନ ଯାପନର ଏକ ସୁମହତ୍ ଆଦର୍ଶ ଥିଲା, ସେହି ଆଦର୍ଶ ବହୁଦିଗ ବ୍ୟାପୀ ଥିଲା । ତାଙ୍କ ଶକ୍ତିର ଅନୁରୂପ କ୍ଷେତ୍ର ଓ ହୃଦୟର ଅନୁରୂପ ଧନ ଲାଭ ଘଟିନାହିଁ । ଯଦି ତାହା ହୋଇଥାନ୍ତା, ତାହା ହେଲେ ଭାରତ ଗଭର୍ଣ୍ଣମେଣ୍ଟଙ୍କର ବିଶ୍ୱାସଭାଜନ ବହୁ ସାମନ୍ତ ରାଜଗଣଙ୍କର ନାମାବଳୀର ଶୀର୍ଷ ସ୍ଥାନରେ ଆଜି ସମସ୍ତେ ତାହାଙ୍କୁ ଦେଖି ପାରୁଥାନ୍ତେ । ମୋର ଏହି ଗ୍ରନ୍ଥରେ ଯଦି ପାଠକେ ତାହାଙ୍କର ସେହି ଅସୀମ ଶକ୍ତି ଓ ବିଶାଳ ହୃଦୟର ମର୍ମ୍ମସ୍ଥାନର ପରିଚୟ ପାଆନ୍ତି, ତାହା ହେଲେ ମୋର ସମଗ୍ର ଶ୍ରମ ସଫଳ ହେଲା ବୋଲି ମନେ କରିବି ।

*୪୧, ଶିବନାରାୟଣ ଦାସଲେନ୍* (ସ୍ୱା) ଶ୍ରୀ ଚଣ୍ଡିଚରଣ ବନ୍ଦୋପାଧ୍ୟାୟ

*ପ୍ରଥମ ଶ୍ରାବଣ, ସନ ୧୩୨୩ ସାଲ୍*



Digitized by srujanika@gmail.com



ରାଜା ଦିବ୍ୟଶଙ୍କର ସୁଢ଼ଳ ଦେବ



ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ



ଲାଲ ମୋହିନୀ ମୋହନ ଦେବ
ପରବର୍ତ୍ତୀ ସମୟରେ ରାମଚନ୍ଦ୍ରଦେବ ନାମରେ
ଦଳପତି ହୋଇଥିଲେ



ଲାଲ ଜୟନାରାୟଣ ଦେବ

Digitized by srujanika@gmail.com



ଲାଲ ଲଳିତମୋହନ ଦେବ



ବଡ଼କୁମାର ବଳଭଦ୍ର ଦେବ



ଲାଲ ଦୟାନିଧି ଦେବ



ପଟ୍ଟୟେତ ହୃଦୟନାଥ ଦେବ

*Digitized by srujanika@gmail.com*

## ପ୍ରଥମ ଅଧ୍ୟାୟ

# ଉପକ୍ରମଣିକା

ଜାତି, ବର୍ଣ୍ଣ ଓ ଧର୍ମ ନିର୍ବିଶେଷରେ,ରାଜା ପ୍ରଜା, ପଣ୍ଡିତ ମୂର୍ଖ, ସାନ ବଡ଼, ନର-ନାରୀ ନିର୍ବିଶେଷରେ, ଅପାମର ସାଧାରଣ ସମସ୍ତେ ରାମ ନାମର ମହିମା କୀର୍ତ୍ତନ କରିଥାନ୍ତି । ରାମଙ୍କର ସକଳ କଥା ସମସ୍ତେ ଜାଣନ୍ତୁ କିମ୍ବା ନଜାଣନ୍ତୁ ଗୋଟିଏ କଥା ସମସ୍ତେ ଜାଣନ୍ତି । ସେହି କଥାଟିର ନାମ 'ରାମ ରାଜତ୍ୱ' ।

ରାମାୟଣ ରୂପକ ରତ୍ନାକର ମନ୍ଥନରେ, ରତ୍ନାକର ମହର୍ଷି ବାଲ୍ମୀକି ରୂପରେ ଯେଉଁ ସମସ୍ତ ମହାମୂଲ୍ୟ ରତ୍ନ ଲାଭକରି ଭାରତୀୟ ନରନାରୀଙ୍କ ହାତରେ ଉପହାର ଦେଇ ଯାଇଛନ୍ତି, ସେହି ସମସ୍ତର ମଧ୍ୟମଣି- ରାମରାଜତ୍ୱ । ମର୍ତ୍ତ୍ୟ ସୃଷ୍ଟିର ପ୍ରାରମ୍ଭ କାଳ ଠାରୁ ଏ ପର୍ଯ୍ୟନ୍ତ କୌଣସି ଦେଶରେ କୌଣସି କାଳରେ ରାଜାଦର୍ଶରେ 'ରାମରାଜତ୍ୱ' କେହି ଅତିକ୍ରମ କରିଅଛନ୍ତି ବୋଲି ଶୁଣାଯାଏ ନାହିଁ ।

ମୋଗଲ ସମ୍ରାଟ ଆକବରଙ୍କ ନାମ ଭାରତର ହିନ୍ଦୁ ସାଧାରଣ ଯେଉଁ ଅପୂର୍ବ ବିଶେଷଣ ଯୋଗକରି ମୋଗଲ ସମ୍ରାଟଙ୍କ ମହିମା ବୃଦ୍ଧି କରିଅଛନ୍ତି, କାଳକ୍ଷୟ ସଂଗେ ସଂଗେ ସେହି ମହିମାର ସମାହାର ବର୍ଦ୍ଧିତ ହୋଇଛି ସତ୍ୟ, ଇଂରେଜ ଅଧିକୃତ ଭାରତରେ ରମଣୀକୁଳର ଚିରବରଣୀୟା ମହାମାନ୍ୟା ମହାରାଣୀ ଭାରତେଶ୍ୱରୀ ଭିକ୍ଟୋରିଆଙ୍କର ନାମରେ ଆଜି ଏବଂ ଚିରଦିନ, ଭାରତବାସୀ ପୁରୁଷ-ରମଣୀ ରାଜାପୂଜାର ଅର୍ଘ୍ୟ ଦାନ କରିବେ ସତ୍ୟ, ଚିରଦିନ ସେହି ନାରୀକୁଳ ଭୂଷଣ ଭିକ୍ଟୋରିଆଙ୍କର ଶତବିଧ ସଦ୍‌ନୁଷ୍ଠାନ କେବଳ ଯେ, ଇଂଲଣ୍ଡ ମୁକୁଟମଣି ହୋଇ ଇତିହାସର ଗୌରବ ବର୍ଦ୍ଧନ କରିବେ, ତାହା ନୁହେଁ, ସେହି ମହାମହିମାମୟୀ ସ୍ମୃତି ସମଗ୍ର ଭୂମଣ୍ଡଳରେ ବିଶେଷ ଭାବରେ ଭାରତର ପରମ ସମ୍ପଦରେ ପରିଣତ ହୋଇଅଛି । ସତ୍ୟ ଯେ ସେହି ବରଣୀୟା ଲଳନା ଇଂଲଣ୍ଡର ରାଜସିଂହାସନରେ ଏବଂ ଭାରତର ମହାନସିଂହାସନରେ ଆସନ ଗ୍ରହଣ କରି ଯେଉଁ ରାଜାଦର୍ଶ- ରାଜସିଂହାସନର ଯେଉଁ ଅସାମାନ୍ୟ ମର୍ଯ୍ୟାଦା ବର୍ଦ୍ଧିତ କରି ଯାଇଅଛନ୍ତି, ତାହା ମଧ୍ୟ କେହି କୌଣସି ଦିନ ଅତିକ୍ରମ କରି ପାରିବେ ବୋଲି ମନେ ହୁଏ ନାହିଁ ।



Digitized by srujanika@gmail.com

ବାଲ୍ୟକାଳରେ ଆମ୍ଭେମାନେ 'ମହାରାଣୀଙ୍କର ପ୍ରଜା' ବୋଲାଇବାରେ ଯେଉଁ ଗୌରବ ଅନୁଭବ କରିଅଛୁଁ ଓ ଅପର ଦଶଜଣଙ୍କୁ ଯେଉଁ ଗୌରବ ଅନୁଭବ କରିବା ଦେଖିଅଛୁଁ, ଭାରତରେ ମହାରାଣୀ ଭିକ୍ଟୋରିଆଙ୍କର ନାମ ହେତୁ କେବଳ ତାହା ସଂଭବ ହୋଇଅଛି । ଏହି ସୁଦୁର୍ଲ୍ଲଭ ସମ୍ମାନ, ସଂଭୋଗ, ଯେତେବେଳେ ସେତେବେଳେ, ଯାହା ତାହା ଭାଗ୍ୟରେ, ଘଟେ ନାହିଁ । ଏହା ସବୁ ସତ୍ୟ, ତଥାପି କହେ, ରାଜସିଂହାସନରେ ଉପବିଷ୍ଟ ରାମଚନ୍ଦ୍ରଙ୍କର ଚରିତ କାହାଣୀ ଭାରତୀୟ ଜନମଣ୍ଡଳୀର ପ୍ରାଣରେ କି ଏକ ଅପୂର୍ବ ମାଧୁରୀ ଲୀଳାର ସୃଷ୍ଟି କରେ, ତାହା ବୁଝାଇବାର ଶକ୍ତି କାହିଁ ?

ରାଜାଦର୍ଶେ ରାମ ବିରାଟ ପୁରୁଷ । ଭାରତର ପବିତ୍ର ଦୃଷ୍ଟିରେ ରାମ ସର୍ବତ୍ୟାଗୀ ସନ୍ନ୍ୟାସୀ ଓ ଲୋକରଂଜନ ପ୍ରିୟ ନାରାୟଣଙ୍କର ଅବତାର ବୋଲି, ରାଜସିଂହାସନରେ ରାମ ଭାରତର ଦେବତା-ଚିରପୂଜ୍ୟ- ଚିର ଆରାଧ୍ୟ । ସର୍ବ ଗୁଣାଧାର ରାମଚରିତ୍ରର ସର୍ବଶ୍ରେଷ୍ଠ କୀର୍ତ୍ତି ଲୋକରଂଜନ ଏବଂ ପ୍ରଜାପାଳନ । ପ୍ରଜାଙ୍କର ପ୍ରୀତି ବୃଦ୍ଧି ପାଇଁ କୋମଳ ହୃଦୟ ରାମ କୋମଳ ପ୍ରାଣା ଜାନକୀଙ୍କୁ ଚିରବିସର୍ଜ୍ଜନ ଦେବାପାଇଁ କୁଣ୍ଠାବୋଧ କରି ନାହାନ୍ତି । ଏକ ବିନ୍ଦୁ ଇତଃସ୍ତତଃ ହେଲେ ନାହିଁ । ଏଥିପାଇଁ 'ରାମରାଜତ୍ୱ' କଥାଟିର ଏତେ ଆଦର -ଏତେ ସମ୍ମାନ, ତେଣୁ ସେକାଳରେ ଓ ଏକାଳରେ ଭାରତବାସୀଙ୍କ ଦୃଷ୍ଟିରେ ରାମ ବିରାଟ ପୁରୁଷ, ତେଣୁ ରାମ ନାରାୟଣଙ୍କ ଅବତାର ।

ଏହି 'ରାମରାଜତ୍ୱର' ଆଦର୍ଶ ସମାଜ ସମକ୍ଷରେ ନିତ୍ୟ ବର୍ତ୍ତମାନ ଥାଇ ଭାରତର ରାଜା ପ୍ରଜା ଉଭୟ ସଂପ୍ରଦାୟର ସୁଶିକ୍ଷା ବିଧାନରେ ଚିରଦିନ ସହାୟତା ପ୍ରଦାନ କରି ଆସୁଅଛି । ତେଣୁ ଭାରତର ସର୍ବଶକ୍ତିମାନ ଇଂରେଜ ରାଜଶକ୍ତିର ଆଶ୍ରୟରେ, ପୃଷ୍ଠପୋଷକତାରେ ଓ ସହାୟତାରେ ଅସଂଖ୍ୟ କ୍ଷୁଦ୍ର ରାଜଶକ୍ତି ଆପଣା ଆପଣା ରାଜ୍ୟରେ ଯଥାଶକ୍ତି ରାଜଧର୍ମ ପାଳନ କରି, ସାଧାରଣଙ୍କର ବିବିଧ ସୁଖ ଓ ସୁବିଧା ସାଧନରେ ସହାୟତା କରୁଛନ୍ତି । ଇଂରେଜ ଶାସିତ ଭାରତ ସାମ୍ରାଜ୍ୟର ଚନ୍ଦ୍ରାତପତଳେ ଯେଉଁ ଅସଂଖ୍ୟ କ୍ଷୁଦ୍ର ବୃହତ୍ ସାମନ୍ତ ରାଜାଗଣ ଆଶ୍ରୟ ଲାଭକରି ସୁଖରେ ସ୍ୱଚ୍ଛନ୍ଦରେ ରାଜ୍ୟଶାସନ ଓ ପ୍ରଜାପାଳନ କାର୍ଯ୍ୟରେ, ନିଜ ନିଜ ଜୀବନର ସାର୍ଥକତା ସଂପାଦନରେ ନିଯୁକ୍ତ, ସେହି ସକଳ ରାଜକାହାଣୀ ସଂଗୃହୀତ ଓ ଲିପିବଦ୍ଧ ହେଲେ, ଦେଶର ଯେଉଁ ପ୍ରଭୂତ କଲ୍ୟାଣ ସାଧିତ ହୋଇପାରେ, ଏବେବି ସେହି ଦିଗରେ ଦୃଷ୍ଟିପାତ କରିବାର ଉପଯୁକ୍ତ ବ୍ୟକ୍ତି ବିରଳ ବୋଲି ମନେହୁଏ । ତାହା ନହେଲେ ଭାରତୀୟ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟସମୂହର ପ୍ରାତଃସ୍ମରଣୀୟ ନରପତିଗଣଙ୍କ ମଧ୍ୟରେ ଯେଉଁମାନଙ୍କର ନାମ କଣ୍ଠିତ୍ ସୁପରିଚିତ ଏବଂ ଯେଉଁମାନେ ଆଦର୍ଶ ନରପତି ବୋଲି କୀର୍ତ୍ତିତ, ସେମାନଙ୍କର କଥା କେହି ବିସ୍ତୃତ ଆକାରରେ ଆଲୋଚନା କରନ୍ତି ନାହିଁ କାହିଁକି ?



Digitized by srujanika@gmail.com

ଆମେ ଏତାଦୃଶ ଜଣେ ମହାନୁଭବ କ୍ଷୁଦ୍ର ସାମନ୍ତ ନରପତିଙ୍କର ବିବରଣୀ ଲିପିବଦ୍ଧ କରିବାପାଇଁ ଅଗ୍ରସର, ସେ ବର୍ତ୍ତମାନ ସାମନ୍ତରାଜା ବାମଣ୍ଡାଧିପତି ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନଦେବ ମହୋଦୟଙ୍କର ସ୍ୱର୍ଗୀୟ ପିତା ସାମନ୍ତରାଜା ସାର୍ ବାସୁଦେବ ସୁଢ଼ଳଦେବ କେ.ସି. ଆଇ.ଇ.(K.C.I.E), ଏହାଙ୍କର ଏବଂ ଏହାଙ୍କ ନ୍ୟାୟ ଅନେକ ରାଜ ସଂସାରରେ 'ରାମରାଜତ୍ୱ'ର ଆଦର୍ଶ ଯେ ସ୍ଫୂର୍ତ୍ତିଲାଭ କରି ନିର୍ଜ୍ଜନରେ ଲୁକ୍କାୟିତ, ସାର୍ ବାସୁଦେବଙ୍କର ରାଜଜୀବନର ବିବରଣୀମାଳା ତାହାର ସାକ୍ଷ୍ୟଦାନ କରିବ । ରାଜସଂସାରରେ କିପରି ବ୍ୟକ୍ତିଙ୍କର ଆବିର୍ଭାବ ହେଲେ, ବର୍ତ୍ତମାନ ମଧ୍ୟ ରାମରାଜ୍ୟର ଆଭାସ ପାଇଁ ପ୍ରଜାମଣ୍ଡଳୀ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠନ୍ତି ? ପ୍ରଜାଙ୍କ ସୁଖରେ ସନ୍ତୋଷ, ସେମାନଙ୍କ ଆନନ୍ଦରେ ଉଲ୍ଲାସ ପ୍ରକାଶ ରାଜଧର୍ମ ଦୁଃଖରେ ସହାନୁଭୂତି, ବିପଦରେ ସମବେଦନା, ଦୁର୍ଭିକ୍ଷରେ ଅନ୍ନବିତରଣ, ରାଜଧର୍ମ । ଏହି ଉଚ୍ଚ ରାଜଧର୍ମ ପାଳନରେ ସାର୍ ବାସୁଦେବ କିପରି ଭାବରେ ତାଙ୍କର ପ୍ରଜାସାଧାରଣଙ୍କର ଅକ୍ଷୁଣ୍ଣ ସମ୍ମାନ ଓ ଗଭୀର ଶ୍ରଦ୍ଧା ଅର୍ଜ୍ଜନ କରିଥିଲେ,-ବାମଣ୍ଡାର ପ୍ରଜାସାଧାରଣଙ୍କର ପ୍ରୀତିର ପ୍ରବାହ ପ୍ରବାହିତ ହୋଇ ସାର୍ ବାସୁଦେବଙ୍କର ହୃଦୟରେ ସର୍ବଦା ହିଁ ଯେ ଆନନ୍ଦର ମଳୟ ସ୍ନିଗ୍ଧ ସୁରଭି ବହନ କରୁଥିଲା, ତାହା ଜାଣିବାର ଏବଂ ଜାଣି ସେଥିରୁ ଶିକ୍ଷାଲାଭ କରିବାର ବସ୍ତୁ ଲାଭହେବ, ତେଣୁ ବାମଣ୍ଡାଧିପତି ସାର୍ ବାସୁଦେବ ସୁଢ଼ଳଦେବଙ୍କର ଯାପିତ ଜୀବନ-କାହାଣୀର ଆଲୋଚନାରେ ଆମ୍ଭେ ପ୍ରବୃତ୍ତ ହେଉଅଛୁଁ ।

ଓଡ଼ିଶାର ଅଠର ଗଡ଼ ଏବଂ ମଧ୍ୟପ୍ରଦେଶର ଉତ୍ତର-ପୂର୍ବାଞ୍ଚଳ ସ୍ଥିତ ଛତିଶଗଡ଼ର ଅଧିକାଂଶ ଭୂଭାଗ ଇଂରେଜ ରାଜାର ଆଶ୍ରିତ ସାମନ୍ତ ରାଜଗଣଙ୍କର ଅଧିକାରଭୁକ୍ତ । ଏହି ଶ୍ରେଣୀର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ସଂଖ୍ୟା ମଧ୍ୟ ନିତ୍ୟାନ୍ତ ଅଳ୍ପ ନୁହେଁ । ସେହି ସମସ୍ତ ରାଜ୍ୟର ଲୋକସଂଖ୍ୟା ମଧ୍ୟ ସେମାନଙ୍କର ଜୀବନଯାତ୍ରା ନିର୍ବାହର ବିବରଣୀ ଆମର ବର୍ତ୍ତମାନ ଭାରତବର୍ଷର ଏକ ବିଶିଷ୍ଟ ଅଂଶ, ଏମାନେ କିପରି ଅବସ୍ଥାରେ ସମାଜବଦ୍ଧ ହୋଇ, କିଭଳି ଶାସନ ଅଧୀନରେ ରହି କାଳଯାପନ କରନ୍ତି,ତାହା ବର୍ତ୍ତମାନ ସମୟରେ ଜାଣିବାର ବିଷୟ । ଜିଲ୍ଲା ସମ୍ବଲପୁରର ଅନ୍ତର୍ଗତ ବାମଣ୍ଡା ରାଜ୍ୟ କେତେକ ବର୍ଷ ପୂର୍ବ ପର୍ଯ୍ୟନ୍ତ ଭାରତର ମଧ୍ୟପ୍ରଦେଶର ଇଂରେଜଶାସନ କର୍ତ୍ତାଙ୍କର ଅଧୀନରେ ଥିଲା । ୧୯୦୫ ଖ୍ରୀଷ୍ଟାବ୍ଦରେ ବଙ୍ଗ ଶାସନକର୍ତ୍ତାଙ୍କ ଅଧୀନରେ ସ୍ଥାପିତ ହୁଏ । ବର୍ତ୍ତମାନ ବିହାର ଓ ଓଡ଼ିଶାର ଅନ୍ତର୍ଭୁକ୍ତ ।

ସାର୍ ଏଣ୍ଡ୍ରୁ୍ୟଫ୍ରେଜର୍ ପ୍ରଭୃତି ବହୁ ବହୁ ପ୍ରାଦେଶିକ ଶାସନକର୍ତ୍ତା ସେମାନଙ୍କର ଶାସନ ସମୟରେ, ସେମାନଙ୍କର ବାତ୍ସରିକ ଶାସନ ବିବରଣୀ ମଧ୍ୟରେ ସାମନ୍ତ ରାଜାମାନଙ୍କର ରାଜ୍ୟପାଳନ ଓ ସୁଶାସନର ଉଲ୍ଲେଖ ସ୍ଥଳେ ବାମଣ୍ଡାଧିପତି ସାର୍ ବାସୁଦେବ ସୁଢ଼ଳଦେବଙ୍କର ରାଜ୍ୟଶାସନ ପ୍ରଣାଳୀର ପ୍ରଚୁର ପ୍ରଶଂସା କରି କହିଅଛନ୍ତି- 'ସମଗ୍ର



Digitized by srujanika@gmail.com

ମଧ୍ୟପ୍ରଦେଶ ମଧ୍ୟରେ ବାମଣ୍ଡା ଆଦର୍ଶ ସାମନ୍ତ ରାଜ୍ୟ ।' ଦେଶର ଶାସନକର୍ତ୍ତାମାନଙ୍କର ଏହିରୂପ ଧାରଣା ହେବା ଯେଉଁ ସମସ୍ତ କାରଣ ବର୍ତ୍ତମାନ ଥିଲା, ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ ପାଠକେ ବୁଝି ପାରିବେ ଯେ, ବାମଣ୍ଡାର ଏତାଦୃଶ ପ୍ରତିଷ୍ଠା ଓ ପ୍ରତିପତ୍ତିର ବିଶେଷ କାରଣ ବର୍ତ୍ତମାନ ଅଛି । ଆମ୍ଭେ କ୍ରମେ କ୍ରମେ ସେହି ସମସ୍ତର ଆଲୋଚନାରେ ଅଗ୍ରସର ହେଉଅଛୁଁ ।

ଇଂରେଜ ଶାସନକର୍ତ୍ତାଙ୍କ ମୁହଁରେ ଏତାଦୃଶ ଉଚ୍ଚ ପ୍ରଶଂସା ବାକ୍ୟର ମୂଲ୍ୟ ଅନେକ । ଯେଉଁ ସକଳ କାରଣ ହେତୁ ବାମଣ୍ଡାରାଜ୍ୟ 'ଆଦର୍ଶ ସାମନ୍ତରାଜ୍ୟ' ବୋଲି ଅଭିହିତ ହେଉଅଛି, ସେହି ସକଳ ବିଷୟ ଆଲୋଚନା କରିବାକୁ ଗଲେ, ଓଡ଼ିଶାର ଗଡ଼ଜାତ ଓ ମଧ୍ୟପ୍ରଦେଶର ସାମନ୍ତ ରାଜ୍ୟଗୁଡ଼ିକର ଅନତିପୂର୍ବକାଳର ସାଧାରଣ ଅବସ୍ଥାର କିଞ୍ଚିତ୍ ଆଭାସ ଦେବାକୁ ହୁଏ । ଅତି ପ୍ରାଚୀନ କାହାଣୀର ଆଲୋଚନା ପରେ ହେବ । ଇଂରେଜଙ୍କର ଶାସନ ସୁପ୍ରତିଷ୍ଠିତ ହେବା ପରେ ମଧ୍ୟ, ଭାରତର ଏହି ଭୂଭାଗର ସାମାଜିକ ଅବସ୍ଥା ଅତୀବ ଶୋଚନୀୟ ଥିଲା । ଏବେ ମଧ୍ୟ ଅଛି । ଶାସ୍ତ୍ରଜ୍ଞାନ, ସୁଶିକ୍ଷା ଓ ସଦାଚାର ଏ ପ୍ରଦେଶରେ ପ୍ରାୟ ଅପରିଜ୍ଞାତ ଥିଲା । ସ୍ୱରାଜ୍ୟରେ ଶାନ୍ତି ଓ ପ୍ରତିବେଶୀ ରାଜ୍ୟଗୁଡ଼ିକରେ ମୈତ୍ରୀଭାବର ଏକାନ୍ତ ଅଭାବ ଥିଲା । ପ୍ରଜା ସାଧାରଣଙ୍କର ଧନ ସଂପଦ ଓ ପରଜନଙ୍କ ସହ ସୁଖରେ ସଂସାର ଯାତ୍ରା ନିର୍ବାହ ଏକ ପ୍ରକାର ଅସଂଭବ ବ୍ୟାପାର ବୋଲି ଲୋକଙ୍କର ଧାରଣା ଥିଲା । ଦ୍ୱେଷ, ହିଂସା ଓ ଆତ୍ମ କଳହରେ ଏହି ଭୂଭାଗର ସାମନ୍ତ ନୃପତିବୃନ୍ଦ ଓ ପ୍ରଧାନଗଣ ସର୍ବଦା ହିଁ ଲିପ୍ତ ରହୁଥିଲେ । ସୁଖ ଓ ଶାନ୍ତିରେ ବାସ କରିବା ଓ କରିବାକୁ ଦେବାର ମୂଲ୍ୟ ଓ ମର୍ଯ୍ୟାଦା ସେହି ସମୟର ପ୍ରଧାନଗଣଙ୍କର ଅପରିଜ୍ଞାତ ଥିଲା ।

ଏକପକ୍ଷରେ ଯେପରି ଲୋକମଣ୍ଡଳୀ ଅଜ୍ଞାନାନ୍ଧକାରରେ ଆଚ୍ଛନ୍ନ ଥିଲେ, ରାଜାମାନେ ମଧ୍ୟ ତଦ୍ରୂପ ବିଦ୍ୟା ଓ ଜ୍ଞାନାର୍ଜ୍ଜନବିମୁଖ, ବ୍ୟସନ ଓ ବିଳାସ ପରାୟଣ, ରାଜମର୍ଯ୍ୟାଦା ଓ ପ୍ରଜାଙ୍କର ଅଧିକାର ରାଜ୍ୟରେ ଉଦାସୀନ, ଏକପ୍ରକାର ଚାଲୁଥିବା ଜୀବନଯାପନ କରୁଥିଲେ । ଏହିପରି ଦୀର୍ଘ ଅବସାଦ ଓ ଅଶାନ୍ତି ଭାରରେ ଯେତେବେଳେ ବଙ୍ଗର ଏହି ଦକ୍ଷିଣ ପଶ୍ଚିମ ପ୍ରାନ୍ତ ସ୍ଥିତ ସୁବିସ୍ତୃତ ଅଂଚଳ ବିପନ୍ନ; ସେହି କୋଳାହଳମୟ ଅଶାନ୍ତି ଭିତରେ ଶାନ୍ତିର ସ୍ନିଗ୍ଧ ସୁରଭିଭାର ମସ୍ତକରେ ନେଇ, ସେହି ଅଜ୍ଞାତ, ବ୍ୟସନ ଓ ବିଳାସର ମଧ୍ୟସ୍ଥଳେ, ଜ୍ଞାନ ଓ ପୁଣ୍ୟର ପ୍ରଦୀପ ହସ୍ତେ ନେଇ, ସେହି ଦ୍ୱେଷ, ହିଂସା ଓ ଆତ୍ମ କଳହର ପ୍ରବାହମୁଖରେ ଭାସମାନ ଓ ସ୍ୱାର୍ଥ ସର୍ବସ୍ୱ ଜନଗଣଙ୍କର ମଧ୍ୟସ୍ଥଳେ, ସେବା ଓ ସଂସ୍କାରର ସୁସଂବାଦ ନେଇ ସାର୍ ବାସୁଦେବ ଆବିର୍ଭୂତ ହୋଇଥିଲେ ।



Digitized by srujanika@gmail.com

ବର୍ତ୍ତମାନ ଯୁଗରେ, ବିବିଧ ପରିବର୍ତ୍ତନ-ପୂର୍ଣ୍ଣ ନୂତନ ଉନ୍ନତିର ସାଧନା କ୍ଷେତ୍ରେ ବରୋଦାଧିପତି ମହାରାଜ ସାୟାଜୀ ରାଓଙ୍କ ନାମ, ମହୀଶୂରାଧିପତି ମହାରାଜ ଶ୍ରୀକୃଷ୍ଣରାଜ ଓୟାଦିୟା ବାହାଦୁରଙ୍କର ନାମ ଭାରତବ୍ୟାପୀ ସମ୍ମାନ ଅର୍ଜ୍ଜନ କରିଅଛି । ସତ୍ୟ, ସେମାନଙ୍କର ରାଜ୍ୟ ଶାସନ ଓ ପ୍ରଜାପାଳନ ପଦ୍ଧତିର ସମାଦରରେ ଦେଶ ପୂର୍ଣ୍ଣ ହୋଇଅଛି ଏବଂ ତାହା ହେବା ହିଁ ସଂଗତ ଓ ସ୍ୱାଭାବିକ, ସତ୍ୟ, କିନ୍ତୁ ଅର୍ଦ୍ଧଶତାବ୍ଦୀର ପୂର୍ବବର୍ତ୍ତୀ ଯୁଗେ, ଯେତେବେଳେ ଇଂରାଜୀ ଶିକ୍ଷା ସୂତ୍ରରେ ନୂତନ ରାଜନୀତିର ଅନୁସରଣରେ ଦେଶର ରାଜନ୍ୟବର୍ଗ ସଂପୂର୍ଣ୍ଣ ଅନଭିଜ୍ଞ ଓ ଅପାରଗ ଥିଲେ, ସେତେବେଳେ ମଧ୍ୟ ଦେଶ ଶାସନରେ ଇଂରେଜ ରାଜ୍ୟର ପ୍ରଚାରିତ ସାମ୍ୟ, ଦେଶୀୟ ସାମନ୍ତ ନରପତିଗଣଙ୍କର ଦୃଷ୍ଟି ଆକର୍ଷଣ କରି ନାହିଁ, ସେତେବେଳେ ମଧ୍ୟ ଇଂରେଜ ରାଜ୍ୟର ଆସମୁଦ୍ର ହିମାଳୟ ସମଗ୍ର ଭାରତରେ ଶାନ୍ତି ସ୍ଥାପନ ସଂକଳ୍ପ ଦେଶୀୟ ଭୂପତିବୃନ୍ଦଙ୍କର ହୃଦୟରେ ମୈତ୍ରୀଭାବର ବିଶାଳତାର ଭାବ ପରିସ୍ଫୁଟ କରି ନାହିଁ, ସେତେବେଳେ ମଧ୍ୟ ଇଂରେଜ ରାଜ୍ୟର ପ୍ରଚାରିତ ଓ ପ୍ରତିଷ୍ଠିତ ମାନବ ସ୍ୱାଧୀନତାର ତତ୍ତ୍ୱ ଦେଶୀୟ ନୃପତିବୃନ୍ଦଙ୍କର ସମଦର୍ଶିତାର ଭାବ ଜାଗ୍ରତ କରିପାରି ନାହିଁ; ସେହି ପୂର୍ବବର୍ତ୍ତୀ କାଳରେ, ଉନ୍ନତିର ସେହି ଅପେକ୍ଷାକୃତ ପ୍ରାଚୀନ ଯୁଗେ, ବହୁ ପୁଣ୍ୟ କାହାଣୀ ପରିଶୋଭିତ ପ୍ରଥିତନାମା ରାଜଗଣଙ୍କର ନାମାବଳୀ କୀର୍ତ୍ତିତ ଓ ପରିଶ୍ରୁତ ହେବାର ପୂର୍ବ ଯୁଗେ, ଯେତେବେଳେ ବର୍ତ୍ତମାନ ବରୋଦା ଓ ମହୀଶୂରର ଅଭ୍ୟୁଦୟ ହୋଇନାହିଁ, ସେହି ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧର ସୂଚନା କାଳରେ, କିପରି ସହଜ ଓ ସୁନ୍ଦର ଭାବରେ ପାଶ୍ଚାତ୍ୟ ରୀତିପଦ୍ଧତିଗୁଡ଼ିକ ଧୀରେ ଧୀରେ ବାମଣ୍ଡାଧିପତି ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ଆଶ୍ରୟ କରିଥିଲା ତାହା ଚିନ୍ତାକଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼ିଥାଏ । ବଙ୍ଗ ଦେଶର କଥାସଂପୂର୍ଣ୍ଣ ସ୍ୱତନ୍ତ୍ର । ଆମ୍ଭେ ଯେଉଁ ସମୟର କଥା କହୁଅଛୁଁ, ତାହାର ପଚାଶ ବର୍ଷପୂର୍ବ, ଅର୍ଥାତ୍ ବର୍ତ୍ତମାନ ଠାରୁ ଶତବର୍ଷ ପୂର୍ବେ ମଧ୍ୟ, ବଙ୍ଗରେ ନୂତନ ଶାସନ ପଦ୍ଧତି ସୂତ୍ରେ ଶିକ୍ଷା ଓ ସାମାଜିକ ରୀତିନୀତି ଏବଂ ଆଚାର ବ୍ୟବହାରରେ ପରିବର୍ତ୍ତନ ହୋଇଥିଲା ।

ଯେଉଁ ସମସ୍ତ କାରଣରୁ ଇଂରେଜ ରାଜତ୍ୱର ପ୍ରତିଷ୍ଠା ଦେଶରେ ଏକ ସୁମହାନ୍ ମଙ୍ଗଳଫଳ ପ୍ରସବ କରିଅଛି, ସେହି ସମସ୍ତ କାରଣ ସମ୍ଭୂତ ଉତ୍ତମ ଫଳରେ ସର୍ବପ୍ରଥମ ସୂତୀକାଗାର ବଙ୍ଗଦେଶ, ବଙ୍ଗରେ ହିଁ ଇଂରେଜ ରାଜ ସର୍ବପ୍ରଥମ ପ୍ରତିଷ୍ଠାଲାଭ କରି ଧୀରେ ଧୀରେ ଚାରିଆଡ଼େ ଆପଣା ଶକ୍ତି ବିସ୍ତାରରେ ସକ୍ଷମ ହୋଇଥିଲା । ସେହି ଶକ୍ତି ବିସ୍ତାରର ପ୍ରାରମ୍ଭ କାଳଠାରୁ ଆରମ୍ଭ କରି ଉନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ସେଗୁଡ଼ିକର ଆତ୍ମପ୍ରତିଷ୍ଠାରେ ଅଧିକତର ମନଯୋଗୀ ହୋଇଥିଲା । ତେଣୁ ବଙ୍ଗ ବାହାରେ ଭାରତବର୍ଷର ଅନ୍ୟ ସର୍ବତ୍ର ଶିକ୍ଷା ଓ ଉନ୍ନତିର ସୁପ୍ରଚାର ପାଇଁ ବହୁ ବିଳମ୍ବ ହୋଇଅଛି । ସେଥିପାଇଁ



Digitized by srujanika@gmail.com

ସମଗ୍ର ଦେଶରେ ବର୍ତ୍ତମାନ ମଧ୍ୟ ନାନାସ୍ଥାନେ ଜନ ମଣ୍ଡଳୀ କିଂଚିତ୍ ଅନୁନ୍ନତ ଅବସ୍ଥାରେ ଅବସ୍ଥାନ କରୁଅଛନ୍ତି । ସେହି ସ୍ଥାନଗୁଡ଼ିକ ପ୍ରକୃତରେ ବର୍ତ୍ତମାନ ସୁଦ୍ଧା ସୁଶିକ୍ଷାର ସୁବିମଳ ଜ୍ୟୋତିରୁ ବଂଚିତ ଏବଂ ସେଥିପାଇଁ ଅନୁନ୍ନତ ଜୀବନ ଯାପନ ବାଧ୍ୟ, ଓଡ଼ିଶା ଓ ଓଡ଼ିଶାର ପଶ୍ଚିମ ଦକ୍ଷିଣ ଦିଗର ସୁବିସ୍ତୃତ ଦେଶାଂଶ ଏତାଦୃଶ ହୀନଦଶାପନ୍ନ ହୋଇ ରହିଅଛି । ଏତଦ୍ ଅଞ୍ଚଳର ସାମାଜିକ ଅବସାଦ ଓ ଜଡ଼ତାର ଦୁର୍ଭେଦ୍ୟ ବ୍ୟୂହ ଭେଦ କରିବାପାଇଁ ଇଂରେଜ ଶକ୍ତିକୁ ମଧ୍ୟ ଅନେକ ସମୟରେ ବିବ୍ରତ ହେବାକୁ ଏବଂ ସମୟ ସମୟରେ କ୍ଳେଶ ଭୋଗିବାକୁ ପଡ଼ିଅଛି । ସେହି ବିବରଣୀ ମଧ୍ୟ ପରେ ଆଲୋଚନା କରାହେବ । ଏହିପରି ସାମାଜିକ ଜଡ଼ତା ଓ ଅବସାଦର ମଧ୍ୟସ୍ଥଳରେ, ବିବିଧ ବିଘ୍ନ ବିପତ୍ତିଜଡ଼ିତ ଆନ୍ଦୋଳନ-ପୂର୍ଣ୍ଣ ସମାଜ ବକ୍ଷରେ ସର୍ବବିଧ ସଂସ୍କାର କାର୍ଯ୍ୟରେ ଲିପ୍ତ ହେବାରେ ଏବଂ ତଦ୍ୱାରା ଅତ୍ୟୁତ୍ତମ ରାଜାଦର୍ଶ ପ୍ରତିଷ୍ଠାରେ ସଫଳ ମନୋରଥ ହେବାରେ ଯେ ଅସାମାନ୍ୟ ସାମର୍ଥ୍ୟର ପ୍ରୟୋଜନ, ସାର୍ ବାସୁଦେବ ସୁଢ଼ଳଦେବ, ବିଧାତାଙ୍କ କୃପାଫଳରେ ସେହି ପ୍ରତିଭା ନେଇ ଶକ୍ତିଧର ପୁରୁଷ ନ୍ୟାୟରେ ବାମଣ୍ଡାରେ ଆବିର୍ଭୂତ ହୋଇଥିଲେ ।

ସାର୍ ବାସୁଦେବଙ୍କର ବହୁ ବିସ୍ତୃତ ରାଜ୍ୟର ପଶ୍ଚିମ ସୀମାରେ ଇଂରେଜ ରାଜ୍ୟ । ଉତ୍ତର ଦକ୍ଷିଣ ଓ ପୂର୍ବ ଦିଗରେ ବାମଣ୍ଡା ପରି ଆହୁରି ଅନେକ କ୍ଷୁଦ୍ର କ୍ଷୁଦ୍ର ସାମନ୍ତ ରାଜ୍ୟ । ଏହି ସମସ୍ତ ରାଜ୍ୟର ରାଜା ପ୍ରଜା, ଉଭୟ ସଂପ୍ରଦାୟର ସାଧାରଣ ସାମାଜିକ ଅବସ୍ଥା ଏକ ପ୍ରକାରର । ଏହି ଏକଧରଣର ସମାଜ ଜୀବନର ମନ୍ଦିଭୂତ ସ୍ରୋତରେ ନବଶକ୍ତିସଂପନ୍ନ ପ୍ରବଳ ପ୍ରବାହ, ପ୍ରବାହିତ କରାଇବାର ଭାରପ୍ରାପ୍ତ ହୋଇ ସାର୍ ବାସୁଦେବ ସୁଢ଼ଳଦେବ ବାମଣ୍ଡାରେ ରାଜାସନ ଗ୍ରହଣ କରିଥିଲେ ।

କେବଳ ଦୈବ ନିର୍ଭର ହୋଇ କୌଣସି ଦିନ କୌଣସି ବ୍ୟକ୍ତି ରାମଚରିତ୍ରରେ, କୌଣସି ସମାଜ ବା କୌଣସି ରାଜ୍ୟ 'ରାମରାଜ୍ୟରେ' ପରିଣତ ହୋଇନାହିଁ । ଯଦି ତାହା ସଂଭବ ହୁଅନ୍ତା, ତାହାହେଲେ ପ୍ରାଚୀନ ଭାରତୀୟ ସମାଜର ବିଲୋପ, ଭାରତୀୟ ଆଦର୍ଶର ଅନ୍ତର୍ଦ୍ଧାନ ଘଟି ନଥାନ୍ତା । କେବଳ ପୁରୁଷକାରରେ ମଧ୍ୟ କେହି କୌଣସି ଦିନ ଜୀବନରେ ସାର୍ଥକତା ଲାଭ କରିନାହିଁ, ତାହାର ପ୍ରମାଣ ସମ୍ରାଟ-ଶକ୍ତିସଂପନ୍ନ ମହାରାଜ ଦୁର୍ଯ୍ୟୋଧନ ।

ସୁତରାଂ ଦୈବ ଓ ପୁରୁଷକାରର ମିଳନ ସାଧନ ଫଳରେ ହିଁ ଯେପରି ବ୍ୟକ୍ତିଗତ ଜୀବନରେ, ସେହିପରି ରାଷ୍ଟ୍ରୀୟ ଜୀବନରେ ସାଫଲ୍ୟ ଲାଭ ସମ୍ଭବପର ହୋଇଥାଏ । ଇଂରେଜ ରାଜ ତାହାର ଆଦର୍ଶ । ଏହି ଉଚ୍ଚ ରାଜାଦର୍ଶ ସମ୍ମୁଖରେ ବର୍ତ୍ତମାନ ଥିଲେ ମଧ୍ୟ, ଭାରତର ଶତ ଶତ ଆଶ୍ରିତ ସାମନ୍ତ ନରପତି, ଆହାର-ବିହାରରେ ଓ ଆମୋଦ-ପ୍ରମୋଦରେ, ମହାମୂଲ୍ୟ ଜୀବନକ୍ଷୟ କରୁଅଛନ୍ତି । ରାଜାସନର ମର୍ଯ୍ୟାଦା ରକ୍ଷା ସହିତ ପ୍ରଜାସାଧାରଣଙ୍କ



Digitized by srujanika@gmail.com

ସର୍ବାଙ୍ଗୀନ କଲ୍ୟାଣ ସାଧନ ଚେଷ୍ଟା ଯେ ରାଜଧର୍ମ, ରାମରାଜତ୍ୱର ଆଦର୍ଶ ଯେ କେବଳ ସେହିପରି ରାଜ୍ୟ ପାଳନ-ପଦ୍ଧତିର ଅବଲମ୍ବନ ଫଳରେ ହିଁ ପ୍ରକାଶ ପାଏ ଏବଂ ତାହିଁରେ ହି ଯେ ରାଜଧର୍ମର ଚରିତାର୍ଥତା ଏବଂ ସେହି ଅନୁଷ୍ଠାନରେ ହିଁ କେବଳ ଦୈବ ଓ ପୁରୁଷକାର ପରସ୍ପରର ବାହୁ ବେଷ୍ଟନରେ ଆବଦ୍ଧ ହୁଏ, ଆକ୍ଷେପର ବିଷୟ ଅଧୁନା ଆମ ଦେଶର କ୍ଷୁଦ୍ର ବୃହତ୍ ସାମନ୍ତ ରାଜବୁଦ୍ଧିରେ ଏହି ପରମତତ୍ତ୍ୱ ଏବେ ସୁଦ୍ଧା ପ୍ରକାଶ ପାଇନାହିଁ । ସାର୍ ବାସୁଦେବଙ୍କ ଜୀବନରେ ଏହି ମହାସତ୍ୟ ଜୀବନ୍ତ ଆକାର ଧାରଣକରି ବାମଣ୍ଡାର ପ୍ରଜାମଣ୍ଡଳୀର ସୁଖ-ସମୃଦ୍ଧି-ସାଧନ ଓ ପାର୍ଶ୍ୱବର୍ତ୍ତୀ ରାଜନ୍ୟବର୍ଗଙ୍କ ମଧ୍ୟରେ ଆଦର୍ଶ ସ୍ଥାପନ କରି ପର୍ଯ୍ୟବସିତ ହୋଇଅଛି । ଦେବକୃପା ଫଳରେ ଏବଂ ଆତ୍ମଚେଷ୍ଟା ହେତୁ କେତେଦୂର କୃତକାର୍ଯ୍ୟ ହେବା ସଂଭବ,ସେହି ଜୀବନରେ ତାହାର ଏକ ବିରାଟ ଆଦର୍ଶ ବର୍ତ୍ତମାନ । ଆମ୍ଭେ ତେଣୁ ସେହି ଅମୂଲ୍ୟ ଜୀବନକାହାଣୀର ଆଲୋଚନାରେ ଅଗ୍ରସର ହେଉଅଛୁ ।

ଯେଉଁମାନେ ସାର୍ ବାସୁଦେବ ସୁଢ଼ଳଦେବଙ୍କ ସଙ୍ଗେ ନାନାସୂତ୍ରେ ସୁପରିଚିତ ଥିଲେ, ଓଡ଼ିଶାର ଏତାଦୃଶ ବହୁ ସଂଭ୍ରାନ୍ତ ବ୍ୟକ୍ତିଙ୍କ ମଧ୍ୟରେ ଦୁଇଜଣ ମହାତ୍ମାଙ୍କର ସ୍ୱର୍ଗାରୋହଣ ଘଟିଅଛି । ଓଡ଼ିଶାର ଏବଂ ପରବର୍ତ୍ତୀ କାଳରେ ପଶ୍ଚିମ ବଙ୍ଗର ଶିକ୍ଷା ବିଭାଗର ଇନ୍ସପେକ୍ଟର ସ୍ୱର୍ଗୀୟ ରାୟ ରାଧାନାଥ ରାୟ ବାହାଦୁର ଏବଂ ଓଡ଼ିଶାର ଶିକ୍ଷାବିଭାଗରେ ଅନ୍ୟତମ ପ୍ରଧାନ ରାଜକର୍ମଚାରୀ ସ୍ୱର୍ଗୀୟ ରାୟ ମଧୁସୂଦନ ରାଓ ବାହାଦୁର । ଏହି ଦୁଇଜଣ ମହାତ୍ମାଙ୍କ ନିକଟରେ ସାର୍ ବାସୁଦେବଙ୍କ କୀର୍ତ୍ତିଗାଥା ପୁନଃପୁନଃ ଶ୍ରବଣ କରି ଏକ ସମୟରେ ମୋହିତ ହୋଇଥିଲି । ସେମାନେ ଶତମୁଖରେ ବାମଣ୍ଡାରାଜାଙ୍କର ବିବିଧଗୁଣର ଉଲ୍ଲେଖ କରି ସେହି ରାଜାଦର୍ଶର ମର୍ଯ୍ୟାଦା ବୃଦ୍ଧି କରି ଯାଇଅଛନ୍ତି ।

ବାମଣ୍ଡାଧିପତି ସାର୍ ବାସୁଦେବଙ୍କର ଲୋକାନ୍ତର ଗମନରେ ଯେ ସମଗ୍ର ଦେଶବ୍ୟାପୀ ଆର୍ତ୍ତନାଦ ଧ୍ୱନିତ ହୋଇଥିଲା, ରାଧାନାଥ ବାବୁ ସେହି ଶୋକୋଚ୍ଛ୍ୱାସେ ମଗ୍ନ ହୋଇ କାତର ହୃଦୟରେ କହିଥିଲେ- "ସେହି ସୁବ୍ରତ ମହାପୁରୁଷଙ୍କ ଯୋଗ୍ୟ ପୁରସ୍କାର ଆମ୍ଭମାନଙ୍କ ଦେଶରେ ସମ୍ଭବପର ନୁହେଁ । କୌଣସି ବିଦେଶୀୟ ରାଜସିଂହାସନ ଅଳଙ୍କୃତ କରିଥିଲେ, ଆଜି ପୃଥିବୀର ଲୋକେ ତାଙ୍କ ପାଇଁ ଶୋକାଶ୍ରୁ ବର୍ଷଣ କରିଥାନ୍ତେ ।"





Digitized by srujanika@gmail.com

## ଦ୍ୱିତୀୟ ଅଧ୍ୟାୟ

# ଗଡ଼ଜାତ

ବର୍ତ୍ତମାନ ଆଉ ସେହିଦିନ ନାହିଁ । ଏଭଳି ଏକଦିନ, ଏକ ସମୟ ଥିଲା, ଯେତେବେଳେ ଭାରତର ଭୁଜବଳରେ ହିଁ ଭାରତ ଶାସିତ ଓ ରକ୍ଷିତ ହେଉଥିଲା । ସେହିଦିନ, ବହୁ ଦିନ ହେଲାଣି ଚାଲି ଯାଇଛି । ୯୭୭ ଖ୍ରୀଷ୍ଟାବ୍ଦରେ ଯେତେବେଳେ ସବକ୍ତଗିନ୍ ଗଜନୀ ନଗରେ ଆତ୍ମପ୍ରତିଷ୍ଠା ଦ୍ୱାରା ପ୍ରବଳ ହୋଇ ଭାରତ ପଶ୍ଚିମୋତ୍ତର ସୀମାଅତିକ୍ରମ କରି ପଞ୍ଚନଦେ ପ୍ରବେଶଲାଭ ଓ ଦେଶ ଲୁଣ୍ଠନରେ ସକ୍ଷମ ହୋଇଥିଲେ, ସେହିଦିନୁ ଭାରତର ପରାଧୀନତାର ସୂତ୍ରପାତ ହୋଇଅଛି । ତାହା ଆଜି ସହସ୍ର ବର୍ଷ ହେବାକୁ ବସିଅଛି ।

ଆଜି ବିବିଧ ଗୁଣ ଗୌରବ ସଂପନ୍ନ ଇଂରେଜ ରାଜଶକ୍ତି ଚନ୍ଦ୍ରାତପତଳେ ସମଗ୍ର ଭାରତବ୍ୟାପୀ ଏକ ବିରାଟ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ, ଆସମୁଦ୍ର ହିମାଳୟ, ଆବ୍ରହ୍ମ ପଞ୍ଚନଦ ଏକ ବିଚିତ୍ର ଶକ୍ତିବଳରେ ମିଳିତ ହୋଇ ରାଷ୍ଟ୍ରୀୟ ସୁଖ ଓ ଶାନ୍ତି ସମ୍ଭୋଗ କରିଲେ ମଧ୍ୟ ସହସ୍ର ବର୍ଷ ପୂର୍ବେ ଭାରତବାସୀ ସ୍ୱପ୍ନରେ ସୁଦ୍ଧା ଏହାର ଛାୟାପାତ କଳ୍ପନା କରି ନଥିଲେ । ସେତେବେଳେ ଏବଂ ତତ୍‌ପୂର୍ବେ ଯାହାଥିଲା, ତାହା ସାମ୍ରାଜ୍ୟ ନୁହେଁ, ପୌରାଣିକ ଇତିହାସରେ କଥିତ ଅଛି ଯେ, ସୂର୍ଯ୍ୟବଂଶ ସମଗ୍ର ଭାରତବର୍ଷ ଉଜ୍ଜ୍ୱଳ କରିଥିଲା । ଅଯୋଧ୍ୟାର ସିଂହାସନ ଭାରତର ରାଜସିଂହାସନ ବୋଲି ବିଦିତ, ଚନ୍ଦ୍ର ବଂଶର ସ୍ନିଗ୍ଧ କିରଣମାଳା ଭାରତର ଅମାନିଶାର ଅନ୍ଧକାର ହରଣ କରିଥିଲା । ତ୍ରେତାର ଅଶ୍ୱମେଧ ଯଜ୍ଞ ଓ ଦ୍ୱାପରର ରାଜସୂୟ ଯଜ୍ଞରେ, କେବଳ ଭାରତର କାହିଁକି, ଭାରତ ବାହାରର ରାଜଶକ୍ତି ନିଚୟର ଏକତ୍ର ସମାବେଶ ସଂବାଦ ଲିପିବଦ୍ଧ ରହିଥିଲେ ମଧ୍ୟ, ଏହି ଉଭୟବିଧ ଅନୁଷ୍ଠାନ ସଂସୃଷ୍ଟ ସାମ୍ରାଜ୍ୟଜ୍ଞାନରେ ଓ ବର୍ତ୍ତମାନ ଇଂରେଜଶାସିତ ଭାରତ ସାମ୍ରାଜ୍ୟବକ୍ଷରେ ମହାରାଣୀ ଭିକ୍ଟୋରିଆଙ୍କର 'ଭାରତ ରାଜରାଜେଶ୍ୱରୀ' ଉପାଧି ଗ୍ରହଣ, ତତ୍ପରେ ସମ୍ରାଟ ସପ୍ତମ ଏଡ୍‌ୱାର୍ଡ଼ ଓ ସମ୍ରାଟ ପଞ୍ଚମ ଜର୍ଜଙ୍କର ସିଂହାସନାରୋହଣ ଉପଲକ୍ଷେ ଭାରତବକ୍ଷରେ ଯେଉଁ ରାଜସୂୟ ଯଜ୍ଞତ୍ରୟର ଅନୁଷ୍ଠାନ ହୋଇଅଛି, ଅଧୁନା ଭାରତର ରାଜଧାନୀ ଦିଲ୍ଲୀ ସେହି ଅସାମାନ୍ୟ ସ୍ମୃତିଗୌରବ ଧାରଣ କରି ସମଗ୍ର ପୃଥିବୀ ସମକ୍ଷରେ ସ୍ପର୍ଦ୍ଧା କରିପାରେ । ସେହି ମହାଯଜ୍ଞର ତୁଳନା, ଆଉ କୌଣସି ଠାରେ ମିଳେ କି ନା ସନ୍ଦେହ ଏବଂ ବର୍ତ୍ତମାନ ଏହି ଏକ ବିଧି



Digitized by srujanika@gmail.com

ବ୍ୟବସ୍ଥା ଦ୍ୱାରା ଶାସିତ ଭାରତ ସାମ୍ରାଜ୍ୟ ସଙ୍ଗେ ପୃଥିବୀର ପୂର୍ବତନ ବା ବର୍ତ୍ତମାନ କୌଣସି ସାମ୍ରାଜ୍ୟ ପ୍ରତିଷ୍ଠାର ତୁଳନା ହୁଏ ନାହିଁ । ଇଂରେଜର ବାହୁବଳ, ତତୋଽଧିକ ଇଂରେଜର ବୁଦ୍ଧି କୌଶଳ ଯେଉଁ ଯାଦୁବିଦ୍ୟା ବଳେ ସମଗ୍ର ଭାରତ ବ୍ୟାପୀ ଏକଛତ୍ର ରାଜତ୍ୱ ପ୍ରତିଷ୍ଠାରେ ସକ୍ଷମ, ମର୍ତ୍ତ୍ୟର ଇତିହାସରେ କୁତ୍ରାପି ତାହାର ତୁଳନା ମିଳେ ନାହିଁ ।

ତେଣୁ କହୁଅଛି, ସହସ୍ରବର୍ଷ ବ୍ୟାପୀ ପରାଧୀନତା ଫଳରେ ଭାରତର ମାନବଶକ୍ତି, ଭାରତର ନାରାୟଣୀ ଶକ୍ତି, ଭାରତର ବିରାଟ ପୁରୁଷ ଭାବ ମ୍ଳାନ ଓ ମନ୍ଦିଭୂତ ହୋଇ ପଡ଼ିଥିଲା । ଆଜି ପୁଣି ଇଂରେଜଙ୍କର ଉଚ୍ଚ ଉଦାର ବିଧିବ୍ୟବସ୍ଥା ଫଳରେ, ସମଗ୍ର ଦେଶରେ ସେହି ନାରାୟଣୀ ଶକ୍ତି ଧୀରେ ଧୀରେ ଜାଗି ଉଠିଅଛି । ତେଣୁ ଆଜି ଦେଶର କଥା, ଦେଶର ଜାତିଧର୍ମ ନିର୍ବିଶେଷରେ, କ୍ଷୁଦ୍ର-ବଡ଼,ରାଜା-ପ୍ରଜା ନିର୍ବିଶେଷରେ, ସମସ୍ତଙ୍କର ସଂବାଦ ଜାଣିବାପାଇଁ ଭାରତବାସୀଙ୍କ ହୃଦୟରେ ଏକ ଗଭୀର ଆକାଙ୍‌କ୍ଷାର ଜାଗରଣ ଅନୁଭୂତ ହେଉଅଛି ।

ଆଜି ସାହିତ୍ୟ ସମ୍ମିଳନ କ୍ଷେତ୍ରରେ ସମସ୍ତଙ୍କର ଐତିହାସିକ ମଜଲିସରେ, ସାମ୍ରାଜ୍ୟ ଜ୍ଞାନର ପ୍ରାଚୀନତମ ବ୍ୟାଖ୍ୟା ନେଇ ବାକ୍‌ବିତଣ୍ଡା ଚାଲିଅଛି । ତେଣୁ ଆମ୍ଭେମାନେ ଆଜି ରାମଙ୍କର 'ସସାଗରା ପୃଥିବୀ ବ୍ୟାପୀ' ସାମ୍ରାଜ୍ୟ ପ୍ରତିଷ୍ଠାରେ ଆତ୍ମହରା -ତେଣୁ ଆଜି ଆମ୍ଭେମାନେ ହସ୍ତୀନାପୁରର ସିଂହାସନ ସମ୍ମୁଖରେ ବିରାଟ ପୁରୁଷ ଶ୍ରୀକୃଷ୍ଣଙ୍କର ପାଞ୍ଚଜନ୍ୟ ଧ୍ୱନିର ପ୍ରତିଧ୍ୱନି ଶୁଣିବା ପାଇଁ କାନ ଡେରି ଅପେକ୍ଷା କରିଅଛୁ । ଆମ୍ଭେମାନେ ମଗଧ ସାମ୍ରାଜ୍ୟର ଅତୁଳନୀୟ ଐଶ୍ୱର୍ଯ୍ୟ ବିଭବ ଓ ନାଳନ୍ଦା ବିଶ୍ୱବିଦ୍ୟାଳୟର ବିବରଣ ମାଳାରେ ଆଜି ମତୁଆଲା ହୋଇପଡୁ । ତେଣୁ କହୁଅଛି, ଆଜି ଯେପରି ଏକ ଦିଗରେ ଇଂରେଜ ରାଜାଙ୍କର ପ୍ରଭାବରେ ସମଗ୍ର ଦେଶରେ ଏକହିଁ ସ୍ପନ୍ଦନ ଅନୁଭୂତ ହେଉଅଛି, ଠିକ୍ ତଦ୍ରୂପ ଆଜି ସେହି ମହାଶକ୍ତିର ସହାୟତାରେ ଦେଶର ପୂର୍ବ ଠାରୁ ପୂର୍ବତନ ସଂବାଦ ସବୁ ଅବଗତ ହୋଇ ଆମ୍ଭେ ଧନ୍ୟ ହେଉଅଛୁ । ଏହା ସମସ୍ତ ଇଂରେଜ ସ୍ପର୍ଶର ଫଳ, ସେହି ବିରାଟ ନାରାୟଣୀ ଶକ୍ତି ଇଂରେଜ ପ୍ରଭୁଶକ୍ତିର ମଧ୍ୟ ଦେଇ ଆଜି ଭାରତୀୟ ପ୍ରଜାମଣ୍ଡଳୀର ପ୍ରାଣସ୍ପର୍ଶ କରୁଅଛୁ । ଆଜି ଦେଶର ଅବସ୍ଥା ସମଗ୍ରଭାବେ ଜାଣିବା ପାଇଁ ଭାରତ ପ୍ରଜା ବ୍ୟାକୁଳ ହୋଇ ଉଠୁଛନ୍ତି । ସାମ୍ୟତନ୍ତ୍ର ପ୍ରଧାନ ଇଂରେଜ ରାଜଶକ୍ତିର ମନ୍ତ୍ରୌଷଧି ବଳେ ଭାରତ ଆଜି ଜାଗରିତ, ପ୍ରାଚୀନର ପରିଚୟ ଲାଭରେ ଦିନୁ ଦିନ ସବଳ ପ୍ରବଳ ହୋଇ ଉଠୁଛନ୍ତି । ଆଉ ଏହି ମହୋପକାର ସାଧନ ପାଇଁ ଇଂରେଜ ଭାରତବାସୀଙ୍କର ଚିର ପୂଜ୍ୟ ଓ ଚିର ବରଣୀୟ ହୋଇ ସୁପ୍ରତିଷ୍ଠିତ ରହିଥିବେ ।

ରାଷ୍ଟ୍ରୀୟ ଶକ୍ତିର ପ୍ରସାର କ୍ଷେତ୍ରରେ ଏକ ପରିମାଣକୁ ରାଜ୍ୟ ଓ ତଦତିରିକ୍ତ ବିସ୍ତୃତି ଲାଭରେ ସାମ୍ରାଜ୍ୟ ଆଖ୍ୟା ପ୍ରାପ୍ତି ସଂଭବ ଓ ସଂଗତ ହେଲେ, ସାନ ବଡ଼ ଅନେକ



Digitized by srujanika@gmail.com

ସାମ୍ରାଜ୍ୟ କଳ୍ପନା କରାଯାଇ ପାରେ । ସେହି ହିସାବରେ 'ରାମରାଜ୍ୟ' ବୃହତ୍ତର ସାମ୍ରାଜ୍ୟ, ସେହି ହିସାବରେ ମହାରାଜ ଯୁଧିଷ୍ଠିରଙ୍କ ଧର୍ମ ରାଜ୍ୟ ପ୍ରତିଷ୍ଠା ସାମ୍ରାଜ୍ୟର ପର୍ଯ୍ୟାୟଭୁକ୍ତ ହୋଇପାରେ, ସେହି ହିସାବରେ ଐତିହାସିକ ଯୁଗର ମଗଧ ଓ ବୃହତ୍ତର ସାମ୍ରାଜ୍ୟ ନାମରେ ଅବିହିତ ହେବ ସନ୍ଦେହ ନାହିଁ । କିନ୍ତୁ ଏହି ସମସ୍ତଙ୍କର ଆକାର ଓ ଆୟତନ ନେଇ ଟଣାଓଟରା କଲେ ହିଁ ବିପଦର ମାତ୍ରା ବୃଦ୍ଧି ପାଏ ।

ଦିଲ୍ଲୀଶ୍ୱର ବା ଜଗଦୀଶ୍ୱର ବା ଏହି ବିଶେଷଣରେ ବିଶେଷିତ ସମ୍ରାଟ ଆକବରଙ୍କ ଭାରତ ଶାସନ, ସାମ୍ରାଜ୍ୟ ନାମରେ ଅବିହିତ ହେଲେ ମଧ୍ୟ ତାହା ସମଗ୍ର ଭାରତବ୍ୟାପୀ ହୋଇନାହିଁ । ତାହାର ଏକ ଦିଗ ରକ୍ଷାକରୁ କରୁ, ଅନ୍ୟଦିଗ ହାତଛଡ଼ା ହୋଇଅଛି । ଗୋଟାଏ ଦିଗ ଗଢୁ ଗଢୁ ଅନ୍ୟ ଦିଗ ଭାଙ୍ଗିଅଛି-ମୋଗଲ ସାମ୍ରାଜ୍ୟର ଗଠନ ଓ ପରିଣତ ଅବସ୍ଥାରେ ଏହା ସବୁ ଦେଖିବାକୁ ମିଳିଥାଏ । ଭାଙ୍ଗେ ନା ଗଢ଼େ କମେ ନା ବଢ଼େ । ଏହା କେବଳ ଇଂରେଜ ପ୍ରତିଷ୍ଠିତ ବର୍ତ୍ତମାନ ଭାରତ ସାମ୍ରାଜ୍ୟ ଗଠନର ମୂଳ ମଂତ୍ରର ଅନ୍ତରାଳେ ଲୁକ୍କାୟିତ ହୋଇ ରହିଅଛି ।

ଏକଦା ସହସ୍ରବର୍ଷ ପୂର୍ବେ, ବହୁ ବିସ୍ତୃତ ଭାରତ କ୍ଷେତ୍ରରେ ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ନାନା ଅଞ୍ଚଳରେ, ଅସଂଖ୍ୟ ରାଜଶକ୍ତି ବର୍ତ୍ତମାନ ଥିଲେ ଏବଂ ସେହି ସମସ୍ତ ରାଜ୍ୟର ରାଜାଗଣ ଆପଣା ଆପଣା ଶକ୍ତି ବଳରେ ସ୍ୱରାଜ୍ୟର ସୀମାନିର୍ଦ୍ଦେଶ କରି, ସୁଖରେ ରାଜ୍ୟ ଶାସନ ଓ ପ୍ରଜାପାଳନ କରୁଥିଲେ । ଏହି ସମସ୍ତ ରାଜଶକ୍ତିର ଅବସନ୍ନ ଦଶାର ସୂତ୍ରପାତ କାଳରେ, ସେହି ମଧ୍ୟ ଯୁଗରେ, ଉତ୍କଳରେ କେଶରୀ ବଂଶର ଅବସନ୍ନ ଦଶାରେ, ଭାରତର ଦକ୍ଷିଣ ପଶ୍ଚିମାଞ୍ଚଳରେ ଏକ ଶକ୍ତି ପ୍ରବାହ ଭାରତର ପୂର୍ବୋତ୍ତର ଉପକୂଳରେ ଅଗ୍ରସର ହୁଏ । ପ୍ରଥମ ରାଜେନ୍ଦ୍ର ଚୋଳ ସ୍ୱରାଜ୍ୟ ତ୍ୟାଗ କରି ବେଙ୍ଗିରେ ଆସି ଏକ ବୃହତ୍ତର ରାଜ୍ୟ ପ୍ରତିଷ୍ଠାରେ ସକ୍ଷମ ହୋଇଥିଲେ । ଚାଲୁକ୍ୟବଂଶୀୟ ତାଙ୍କର ଜଣେ ଦୌହିତ୍ର ପରବର୍ତ୍ତୀ କାଳରେ ଦ୍ୱିତୀୟ ରାଜେନ୍ଦ୍ର ଚୋଳ ନାମ ଗ୍ରହଣ କରି ରାଜ ସିଂହାସନ ଅଧିକାର କରନ୍ତି । କୋଲ୍ଲାପୁର ଠାରୁ ସମାଗତ ଗଙ୍ଗବଂଶୀୟ କଳିଙ୍ଗରାଜ ରାଜ ରାଜେଶ୍ୱର ସହିତ ଦ୍ୱିତୀୟ ରାଜେନ୍ଦ୍ର ଚୋଳର ରାଜସୁନ୍ଦରୀ ନାମ୍ନୀ କନ୍ୟାଙ୍କର ବିବାହ ହୁଏ । ଏହି ବିବାହ ଫଳରେ ଚୋଳ ଓ ଗଙ୍ଗବଂଶର ମିଳନ ହୋଇଥିଲା । ଏହି ଶୋଣିତ ସମ୍ବନ୍ଧ ଜାତ ରାଜକୁମାର ଚୋଳ ଗଙ୍ଗଦେବ ନାମରେ ପରିଚିତ ହୋଇ ସମଗ୍ର ଓଡ଼ିଶାରେ ଏକାଧିପତ୍ୟ ସ୍ଥାପନରେ ସକ୍ଷମ ହୋଇଥିଲେ । ଦଶମ ଶତାବ୍ଦୀର ଶେଷାଂଶରୁ ଏକାଦଶ ଶତାବ୍ଦୀର ସମଗ୍ର ସମୟ ମଧ୍ୟେ ପ୍ରଥମ ଓ ଦ୍ୱିତୀୟ ରାଜେନ୍ଦ୍ର ଚୋଳଙ୍କର ଅଭ୍ୟୁଦୟ ଓ ରାଜ୍ୟ ପ୍ରତିଷ୍ଠା ଶେଷ ହେବା ପରେ, ଚୋଳ ଗଙ୍ଗଦେବ ଓଡ଼ିଶାରେ ପ୍ରାଧାନ୍ୟ ଲାଭ କରନ୍ତି । କ୍ରମେ ଉତ୍ତରରେ ଭାଗିରଥୀ, ଦକ୍ଷିଣରେ ଗୋଦାବରୀ, ପୂର୍ବଦିଗରେ ସମୁଦ୍ରତଟ ଠାରୁ ପଶ୍ଚିମରେ



Digitized by srujanika@gmail.com

ମଧ୍ୟପ୍ରଦେଶର କାଙ୍କେର ଓ ଆରାଣୀ ପର୍ଯ୍ୟନ୍ତ ଅଧିକାର କରି ଏକ ସୁବୃହତ୍ତ ରାଜ୍ୟ ଗଠନ କରିଥିଲେ । ନାନା ସମୟର ଶିଳାଲିପି, ତାମ୍ରଶାସନ ଓ ପଞ୍ଜିକାରୁ ସଂଗୃହୀତ ସଂବାଦର ସମନ୍ୱୟରେ ଏହା ନିଶ୍ଚିତ ଭାବରେ ଜଣାପଡ଼େ ଯେ, ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାର ଏହି ଚୋଳଗଙ୍ଗଦେବଙ୍କର ବିଶାଳ ରାଜ୍ୟ ସୁପ୍ରତିଷ୍ଠିତ ଥିଲା ।

ଇଂରେଜ ଶାସନରେ ଭାରତବର୍ଷ ଯେଭଳି ବହୁ ବିସ୍ତୃତ ସାମ୍ରାଜ୍ୟରେ ପରିଣତ ହୋଇଅଛି, ସେହି ବିଷୟରେ ପୂର୍ବେ କଥିତ ହୋଇଅଛି ଏବଂ ଏହାର ପୂର୍ବ କଥିତ ଅନ୍ୟାନ୍ୟ ସାମ୍ରାଜ୍ୟ ସହିତ ତୁଳନାରେ କ୍ଷୁଦ୍ର ହେଲେ ମଧ୍ୟ, ଓଡ଼ିଶାର ଗଙ୍ଗବଂଶୀୟ ରାଜ୍ୟ ଏଭଳି ବିସ୍ତୃତ ଆକାରରେ ଦୃଢ଼ ଭିତ୍ତି ଲାଭ କରିଥିଲା ଯେ, ଆଜି ପର୍ଯ୍ୟନ୍ତ ସେହି ରାଜଶକ୍ତିର ଶାଖା-ପ୍ରଶାଖା ସବୁ ମୂଳ ବୃକ୍ଷରୁ ବିଚ୍ଛିନ୍ନ ହୋଇ ମଧ୍ୟ ଜୀବିତ । ଚୋଳଗଙ୍ଗଦେବଙ୍କ ପ୍ରତିଷ୍ଠିତ ରାଜ୍ୟକୁ ସେହିକାଳ ଅନୁସାରେ କୌଣସିମତେ ଦୋଷଦୃଷ୍ଟ ହେବନାହିଁ, କାରଣ ଚୋଳଗଙ୍ଗଦେବଙ୍କ ରାଜ୍ୟ ପ୍ରତିଷ୍ଠା, ରାଜ୍ୟ ଶାସନ ଓ ପ୍ରଜାପାଳନର ରୀତି ପଦ୍ଧତିର ପୁଙ୍ଖାନୁପୁଙ୍ଖ ବିବରଣ ମାଳା ବର୍ତ୍ତମାନ ନ ଥିଲେ ମଧ୍ୟ, ଯାହା ରହିଅଛି, ସେଥିରୁ ବେଶ୍ ଜଣାପଡ଼େ ଯେ, ସାମ୍ରାଜ୍ୟ ଶକ୍ତି ସଂଚୟରେ ସକ୍ଷମ ନ ହେଲେ, ଚୋଳଗଙ୍ଗଦେବ ଓ ତଦୀୟ ବଂଶଧରଗଣ ଯେଉଁ ସମସ୍ତ ଅତୁଳ କୀର୍ତ୍ତି ଅନୁଷ୍ଠାନରେ ସକ୍ଷମ ହୋଇଥିଲେ, ତାହା ସଂଭବପର ହୁଅନ୍ତା ନାହିଁ । ମହାବିନାୟକ, ଯାଜପୁର, କୋଣାର୍କ, ଧଉଳି, ଖଣ୍ଡଗିରି, ଭୁବନେଶ୍ୱର ଏବଂ ପୁରୁଷୋତ୍ତମର ଅପୂର୍ବ କୀର୍ତ୍ତି କେତେକ କେଶରୀ ବଂଶର ଓ ଅବଶିଷ୍ଟ ସମସ୍ତ ହିଁ ଗଙ୍ଗବଂଶର ବିଶାଳ ସାମ୍ରାଜ୍ୟଶକ୍ତିର ସାକ୍ଷ୍ୟଦାନ କରିବାପାଇଁ ଅଦ୍ୟାପି ବର୍ତ୍ତମାନ । କ୍ଷୁଦ୍ର ରାଜ୍ୟର ରାଜଶକ୍ତି କେତେବେଳେ ଅଗଣିତ ଧନବ୍ୟୟରେ ଅନନ୍ତ ଭବିଷ୍ୟତରେ ପ୍ରତିଷ୍ଠାଲାଭ ଯୋଗ୍ୟ ସକଳ ଦେବମନ୍ଦିର, ରାଜପଥ ଓ ପୁଷ୍କରଣୀ, ପାନ୍ଥନିବାସ ଇତ୍ୟାଦିର ଅନୁଷ୍ଠାନରେ ସକ୍ଷମ ହୁଏ ନାହିଁ । ଚୋଳଗଙ୍ଗଦେବଙ୍କର ରାଜ୍ୟ ସାମ୍ରାଜ୍ୟ ଶକ୍ତିରେ ଫୁଟି ଉଠିଥିଲା । ଆଉ ସେହି ସାମ୍ରାଜ୍ୟ ସଂପଦପୁଷ୍ଟ ଚୋଳଗଙ୍ଗଦେବ ଯେ ସମସ୍ତ ଅକ୍ଷୟ କୀର୍ତ୍ତି ରଖି ଯାଇଛନ୍ତି, ସେହି ସବୁ ମଧ୍ୟରେ ସର୍ବଶ୍ରେଷ୍ଠ କୀର୍ତ୍ତି ସେକାଳର ରାଜଧାନୀ ପୁରୀ ନଗରୀର ଜଗନ୍ନାଥଦେବଙ୍କ ମନ୍ଦିର ।

ଏହି ମନ୍ଦିର ପ୍ରତିଷ୍ଠା ସଙ୍ଗେ ବହୁ ଲୋକଙ୍କର ନାମ, ନାନା ସମୟରେ ସଂପୃକ୍ତ ଥିଲେ ମଧ୍ୟ, ସେଗୁଡ଼ିକର ଅଧିକାଂଶ ହିଁ କଳ୍ପନା, ଆଉ ପରବର୍ତ୍ତୀ କାଳରେ ଗଙ୍ଗବଂଶୀୟ ରାଜାଙ୍କର କେହି କେହି ସଂସ୍କାରକ ମାତ୍ର; କିନ୍ତୁ ଏହି ମନ୍ଦିର ଓ ମନ୍ଦିରସ୍ଥ ଦେବମୂର୍ତ୍ତି ଚୋଳଗଙ୍ଗଦେବ କର୍ତ୍ତୃକ ପ୍ରତିଷ୍ଠିତ ହୋଇଥିଲା । ସୁପ୍ରମାଣିତ ସତ୍ୟ ଉପରେ ସେହି ତତ୍ତ୍ୱ ପ୍ରତିଷ୍ଠିତ ହୋଇଅଛି । ଓଡ଼ିଶାର ବହୁ ସ୍ଥାନରେ ଏବଂ ଗୋଦାବରୀ ତୀର ପର୍ଯ୍ୟନ୍ତ ସୁବିସ୍ତୃତ ଭୂଖଣ୍ଡର ନାନା ସ୍ଥାନେ, ଗାଙ୍ଗେୟ ରାଜଗଣଙ୍କର ବହୁ କୀର୍ତ୍ତି ଅଦ୍ୟାପି ବିଦ୍ୟମାନ ଥାଇ ସେମାନଙ୍କର ଅତୁଳ ପ୍ରତିଷ୍ଠାର ପରିଚୟ ପ୍ରଦାନ କରୁଅଛି ।



Digitized by srujanika@gmail.com

ଚୋଳଗଙ୍ଗଙ୍କ ପ୍ରତିଷ୍ଠିତ ରାଜସିଂହାସନରେ କ୍ରମେ ଆହୁରି ନଅ ଜଣ ନୃପତି ଅସାମାନ୍ୟ ଶକ୍ତିଧର ପୁରୁଷନ୍ୟାୟରେ ବିରାଜ କରିଥିଲେ । ସେମାନଙ୍କର ନାମ-ପ୍ରତିଷ୍ଠାତା ଚୋଳଗଙ୍ଗଦେବ, କମାର୍ଣ୍ଣବଦେବ, ରାଘବଦେବ, ଦ୍ୱିତୀୟ ରାଜରାଜ, ଅତ୍ରିୟଙ୍କ ଭୀମଦେବ, ତୃତୀୟ ରାଜ ରାଜଦେବ, ଅନଙ୍ଗ ଭୀମଦେବ, ନରସିଂହଦେବ, ଭାନୁଦେବ, ଦ୍ୱିତୀୟ ନରସିଂହଦେବ । ଗଙ୍ଗବଂଶୀୟ ଏହି ସମସ୍ତ ନରପତି, ଏକାଦଶ ଶତାବ୍ଦୀର ଶେଷ ଭାଗରେ ଅଥବା ଦ୍ୱାଦଶ ଶତାବ୍ଦୀର ସଂଚାର ହୋଇ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ସୁଦୀର୍ଘକାଳ ଅପ୍ରତିହତ ପ୍ରଭାବରେ ପ୍ରତିଷ୍ଠିତ ଥାଇ ସମ୍ରାଟ ଶକ୍ତି ପରିଚାଳନ କରିଥିଲେ । ଏହି ସସସ୍ତ ଗାଙ୍ଗେୟ ରାଜାଗଣ ଯେଉଁ ସମ୍ରାଟ ସମ୍ମାନ ସମ୍ଭୋଗ କରୁଥିଲେ, ତାହାର ପ୍ରମାଣ ସ୍ୱରୂପ ଉତ୍କଳ ଓ ଗଞ୍ଜାମର ଅସଂଖ୍ୟ ରାଜା 'ଖଟନି' (ଅନୁଗତ କରଦ ରାଜା) ରୂପେ ନିଯୁକ୍ତ ଥିଲେ ଓ ତତ୍କାଳରେ ଉତ୍କଳ ସମ୍ରାଟଙ୍କର ପ୍ରିୟଭାଜନ ହୋଇ ଉପାଧିଲାଭ କରିଥିଲେ । ସେହି ସେହି ଉପାଧି ସେମାନେ ଅଦ୍ୟପି ଗୌରବ ଭାବେ ଧାରଣ କରି ଆସୁଛନ୍ତି ।

ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ ବୀରାଧି ବୀରବର ଉପାଧିଧାରୀ ନରସିଂହ ଦେବଙ୍କ ଲୋକାନ୍ତର ଗମନରେ, ଗଙ୍ଗବଂଶୀୟ ରାଜଶକ୍ତି କ୍ରମେ ହୀନବଳ ହେବାରେ ଲାଗିଲା, ସଂଗେ ସଂଗେ ମୋଗଲ ସାମ୍ରାଜ୍ୟର ପତନପରି, ଉତ୍କଳ ଖଣ୍ଡ ଖଣ୍ଡ ହୋଇ ପଡ଼ିଲା । ଗଙ୍ଗବଂଶ ବହୁଶାଖାରେ ବିଭକ୍ତ ହୋଇ, ଓଡ଼ିଶାର ନାନା ସ୍ଥାନେ, ସ୍ୱତନ୍ତ୍ର ରାଜ୍ୟ ପ୍ରତିଷ୍ଠିତ କରି ଦୀର୍ଘକାଳ ଆତ୍ମକଳହରେ ପ୍ରବୃତ୍ତ ରହିଲେ । ଏହି ସମୟରେ ଉତ୍କଳରେ ଓ ତତ୍‌ସଂଲଗ୍ନ ବିସ୍ତୃତ ଭୂଭାଗରେ ଅଶାନ୍ତି ଓ ଅରାଜକତା ହିଁ ବିରାଜିତ ହୋଇଥିଲା ।

ଚୋଳଗଙ୍ଗଙ୍କ ସମୟରୁ ଶେଷ ନରପତି ନରସିଂହଦେବଙ୍କ ସମୟ ପର୍ଯ୍ୟନ୍ତ ଗଙ୍ଗବଂଶର ଯେଉଁ ସମସ୍ତ ଶାଖା ପ୍ରଶାଖା ବିଦ୍ୟମାନ ଥିଲା ଏବଂ ଯେଉଁମାନେ ଏହି ଦୀର୍ଘକାଳ ପୁରୀ ରାଜାଙ୍କର ପରିଚର୍ଯ୍ୟାରେ ନିଯୁକ୍ତ ରହି ତାହାଙ୍କର ଆଶ୍ରୟରେ ବାସ କରୁଥିଲେ, ସେହିମାନେ ଏହି ସମୟରେ ପୁରୀର ଅବସନ୍ନ ଦଶା ଦର୍ଶନର ସୁଯୋଗ ପାଇ, ଉତ୍କଳରେ ଏବଂ ମଧ୍ୟପ୍ରଦେଶର ପୂର୍ବୋତ୍ତର ଅଞ୍ଚଳରେ ସ୍ୱତନ୍ତ୍ର ରାଜ୍ୟ ପ୍ରତିଷ୍ଠାରେ ସକ୍ରିୟ ହେବାରେ ଲାଗିଲେ ।

ଭୌଗୋଳିକ ହିସାବରେ ଓଡ଼ିଶା ଓ ମଧ୍ୟପ୍ରଦେଶର ସମଗ୍ର ଭୂଭାଗ ଏକ ପ୍ରକାର ଉପାଦାନରେ ଗଠିତ । ଅରଣ୍ୟ ସଂପଦ, ବାଣିଜ୍ୟ ସଂଭାର ଓ କର୍ଷଣୋପଯୋଗୀ କ୍ଷେତ୍ରରେ ଉତ୍କର୍ଷତା ବିଷୟରେ ଉଭୟ ଦେଶର ଭୂମି ଏକ ଧର୍ମାକ୍ରାନ୍ତ । ଇଂରେଜ ରାଜତ୍ୱ ପ୍ରତିଷ୍ଠିତ ହେବା ସଂଗେ ସଂଗେ ଓଡ଼ିଶାର ସମଗ୍ର ଭୂଭାଗ ତିନି ଶ୍ରେଣୀରେ ବିଭକ୍ତ ହୋଇଅଛି । 'ମୋଗଲବନ୍ଦୀ, କୋଲ୍ଲାଜାତ ଓ ଗଡ଼ଜାତ । ସଂପୂର୍ଣ୍ଣରୂପେ ସାକ୍ଷାତ୍‌ଭାବେ ଇଂରେଜ ଶାସନର



Digitized by srujanika@gmail.com

ଅଧୀନ ହୋଇ, ଦଶଶାଳା ବନ୍ଦୋବସ୍ତର ନ୍ୟାୟ ବ୍ୟବସ୍ଥା ଉପରେ ପ୍ରତିଷ୍ଠିତ, ତାହାକୁ କୋଲ୍ଲାଜାତ କୁହାଯାଏ । ଆଉ ଅବଶିଷ୍ଟାଂଶ ଏବେ ମଧ୍ୟ କରଦରାଜ୍ୟ ରୂପେ ଦେଶୀୟ ନରପତିଗଣଙ୍କ ଦ୍ୱାରା ଶାସିତ । ଏହାକୁ ହିଁ ଗଡ଼ଜାତ କୁହାଯାଏ । ଓଡ଼ିଶାର ଗଡ଼ଜାତ ମଧ୍ୟପ୍ରଦେଶର ଉତ୍ତର ପୂର୍ବାଞ୍ଚଳ ପର୍ଯ୍ୟନ୍ତ ପ୍ରସାରିତ । ଓଡ଼ିଶାର 'ଗଡ଼' ପର୍ଯ୍ୟାୟଭୁକ୍ତ ଭୂଭାଗ ସାଧାରଣଙ୍କ ନିକଟରେ ଦୁଇଗୋଟି ନାମରେ ପରିଚିତ, ଓଡ଼ିଶା ଟ୍ରିବ୍ୟୁଟାରୀ ଓ ଛତିଶଗଡ଼ ଫ୍ୟୁଡ଼େଟାରୀ ରାଜ୍ୟ । ୧୯୦୫ ଖ୍ରୀଷ୍ଟାବ୍ଦର ବ୍ୟବସ୍ଥା ସତ୍ତ୍ୱେ ଉତ୍ତର ପ୍ରଦେଶର କରଦରାଜ୍ୟ ଗୁଡ଼ିକ ଏକ ପର୍ଯ୍ୟାୟଭୁକ୍ତ ହୋଇ ବର୍ତ୍ତମାନ ଫ୍ୟୁଡ଼େଟାରୀ ନାମରେ ଅଭିହିତ ।

ଗଙ୍ଗବଂଶୀୟ ରାଜାଗଣଙ୍କର ଶାଖା-ପ୍ରଶାଖା ଓଡ଼ିଶାର ଓ ମଧ୍ୟପ୍ରଦେଶର ପୂର୍ବୋତ୍ତର ଅଂଚଳର ଯେଉଁ ଭୂଭାଗ ଅଧିକାର କରି ସ୍ୱତନ୍ତ୍ର ରାଜ୍ୟ ପ୍ରତିଷ୍ଠା କରିଥିଲେ, ଭାରତର ଏହି ଭୂଭାଗରେ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନରାଜ୍ୟ ପ୍ରତିଷ୍ଠିତ ହେବାର ପ୍ରାକୃତିକ ସୁବିଧା ମଧ୍ୟ ଯଥେଷ୍ଟ ଥିଲା । ଆଉ ସେହିପରି ସୁବିଧାଥିଲା ବୋଲି ହିଁ, ଏକ ସମୟରେ, ଏତେଗୁଡ଼ିଏ ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠିତ ହେବା ସମ୍ଭବ ହୋଇଥିଲା । ଭୀଷଣକାୟ ପର୍ବତଶ୍ରେଣୀ ପରିବେଷ୍ଟିତ ବିଶାଳ ଅରଣ୍ୟାନୀ ମଧ୍ୟରେ ସ୍ଥାନେ ସ୍ଥାନେ ଉଚ୍ଚ ମାଳଭୂମି ଓ ଉର୍ବରା କ୍ଷେତ୍ରସବୁ ସ୍ୱଭାବ କର୍ତ୍ତୃକ ବ୍ୟବସ୍ଥାପିତ । ଯେପରି କେହି ଆସି ଅଧିକାର କରି ବସିବେ ବୋଲି, ବିଧାତା ସେହିପରି ଆୟୋଜନ କରି ରଖିଥିଲେ । ଏହି ସକଳ ସ୍ଥାନର ରମଣୀୟତା ଭାଷାରେ ବର୍ଣ୍ଣନା କରି ଶେଷ କରି ହୁଏ ନାହିଁ । ମହାନଦୀ, ବ୍ରାହ୍ମଣୀ, ବୈତରଣୀ ପ୍ରଭୃତି ଅସଂଖ୍ୟ ଖରସ୍ରୋତ ବିଶିଷ୍ଟ । ପାର୍ବତ୍ୟନଦୀ ସକଳ ପ୍ରବାହିତ ହୋଇ ସମଗ୍ର ଭୂଭାଗର ସମତଳ କ୍ଷେତ୍ରକୁ ଉର୍ବରା କରି ରଖିଛନ୍ତି । ଶତ ଶତ ଜଳପ୍ରପାତ, ନିର୍ଝର ଓ ଉତ୍ସ ସମଗ୍ର ଦେଶର ଉତ୍ତମ ପାନୀୟର ଅଭାବ ଦୂର କରି ସମଗ୍ର ଦେଶକୁ ସ୍ୱାସ୍ଥ୍ୟକର କରି ରଖିଅଛି । ପର୍ବତ ଗାତ୍ରରେ ଓ ନିବିଡ଼ ଅରଣ୍ୟ ମଧ୍ୟେ ଉତ୍ପନ୍ନ ବିବିଧ ଫଳ ଶସ୍ୟ, ସାଧାରଣ ଲୋକଙ୍କର କେତେ ଅଭାବ ପରିପୂରଣ କରିଥାଏ । ସର୍ବବିଧ ବଣ୍ୟଜନ୍ତୁ ପରିବୃତ୍ତ ଏହି ବିସ୍ତୀର୍ଣ୍ଣ ଭୂଭାଗ ମାନବ ଶକ୍ତିର ଉତ୍ତମ ପରିଚାଳନା ଅଭାବରେ, ଅପେକ୍ଷାକୃତ ହୀନବୃଦ୍ଧି ମାନବ ସନ୍ତାନର ବନବାସ ବ୍ୟବସ୍ଥାରେ ପରିଣତ ହୋଇ ଦୀର୍ଘ-ସୁଦୀର୍ଘକାଳ ଉପେକ୍ଷିତଭାବେ ପଡ଼ିଥିଲା । ଗଙ୍ଗବଂଶୀୟ ଶାଖା ପ୍ରଶାଖା ବିସ୍ତୃତ ହେବା ସଂଗେ ସଂଗେ, ଅନ୍ୟ କୌଣସି କୌଣସି ଶକ୍ତିଶାଳୀ ବ୍ୟକ୍ତି ସ୍ୱତଂତ୍ର ରାଜବଂଶ ପ୍ରତିଷ୍ଠାକରି କ୍ରମେ ସମଗ୍ର ଦେଶ ଅଧିକାର କରିବାରେ ଅନେକ ସମୟ ଲାଗିଥିଲା ।

ଏହି ରୂପେ ଓଡ଼ିଶାର ଗଡ଼ଜାତରେ ମୟୂରଭଂଜ, ତାଳଚେର, ଢେଙ୍କାନାଳ, ବୌଦ୍ଧ ପ୍ରଭୃତି ଅନେକଗୁଡ଼ିଏ ରାଜ୍ୟ ପ୍ରତିଷ୍ଠିତ ହୁଏ ଏବଂ ଛତିଶଗଡ଼ର ବହୁ ବିସ୍ତୃତ ଭୂଭାଗରେ



Digitized by srujanika@gmail.com

ଏହିପରି ଗଙ୍ଗବଂଶୀୟମାନେ କଳାହାଣ୍ଡି, ପାଟଣା, ସୋନପୁର, ରାୟଗଡ଼, ରାୟପୁର କାଙ୍କେର ପ୍ରଭୃତି ନାନା ସ୍ଥାନରେ ସ୍ୱାଧୀନଭାବରେ ରାଜତ୍ୱ କରିବା ଆରମ୍ଭ କରନ୍ତି ।

ଚୋଳଗଙ୍ଗଙ୍କ ସମୟଠାରୁ ଆରମ୍ଭ କରି, ଦୀର୍ଘକାଳ ଯେଉଁ ନୃପତି ଏକଯୋଗେ ପୁରୀର ପ୍ରାଧାନ୍ୟ ସ୍ୱୀକାର କରି ରାଜତ୍ୱ କରିଥିଲେ ଏବଂ ତତ୍‌ପରେ ସ୍ୱ ସ୍ୱ ପ୍ରାଧାନ୍ୟ ହୋଇ ସ୍ୱାଧୀନ ଭାବରେ ରାଜତ୍ୱ କରି ଆସୁଛନ୍ତି, ସେମାନଙ୍କର କାର୍ଯ୍ୟକଳାପପୂର୍ଣ୍ଣ ବହୁ ବିସ୍ତୃତ ବିବରଣୀ କେବଳ ଇତିହାସର ପର୍ଯ୍ୟାୟଭୁକ୍ତ, ତେଣୁ ସେହି ଆଲୋଚନା ଏଠାରେ ପରିତ୍ୟକ୍ତ ହେଲା ।

ଗଙ୍ଗବଂଶୀୟ ଶାଖା ବିଶେଷ ପାଟଣାରେ ସ୍ୱାଧୀନ ରାଜାଭାବରେ ପ୍ରତିଷ୍ଠିତ ହୁଅନ୍ତି । ପାଟଣାରେ ସ୍ୱାଧୀନ ରାଜସଂସାର ପ୍ରତିଷ୍ଠିତ ହେବାର ପାଞ୍ଚ ଛଅ ପୁରୁଷ ପରେ, ସେହି ସମୟରେ ହଟ୍ଟହମିର ଦେବ ପାଟଣା ସିଂହାସନରେ ପ୍ରତିଷ୍ଠିତ ହୋଇ ରାଜତ୍ୱ କରୁଥିଲେ । ସେହି ସମୟରେ ରମ୍ଭାଇ ଦେବ ନାମକ ଜଣେ ଚୌହାନବଂଶୀୟ ପ୍ରତିଭାଶାଳୀ ରାଜା ତାଙ୍କୁ ପରାସ୍ତ କରି ପାଟଣାର ସିଂହାସନ ଅଧିକାର କରନ୍ତି । ଉକ୍ତ ହଟ୍ଟହମିର ଦେବଙ୍କର ପରାଜୟ ଓ ନିଧନ ସାଧନରେ ପାଟଣାରେ ଗଙ୍ଗବଂଶ ଲୋପପାଏ । ହଟ୍ଟହମିରଙ୍କ ଏକମାତ୍ର ବାଳକ ପୁତ୍ର ସରଯୂଦେବ ଭିନ୍ନ ଆଉ କେହି ନ ଥିଲେ । ଏହି ଅସହାୟ ଗଙ୍ଗବଂଶୀୟ ରାଜକୁମାର ବାମଣ୍ଡା ରାଜ୍ୟର ସ୍ଥାପନକର୍ତ୍ତା । ପାଟଣାର ଗଙ୍ଗବଂଶୀୟ ରାଜା ହଟ୍ଟହମିରଙ୍କ ପୁତ୍ର କିଭଳି ଭାବରେ ବାମଣ୍ଡାର ପ୍ରତିଷ୍ଠାତା ହେଲେ, ବର୍ତ୍ତମାନ ତାହା ଲିପିବଦ୍ଧ କରୁଅଛି । ବାମଣ୍ଡାର କଟଙ୍ଗପାଣି ଗ୍ରାମର ସୁନା ନାମକ କନ୍ଧ ଓ କେଲିପଦର ଗ୍ରାମର କଣ୍ଡାରୁ ନାମକ ଭୂୟାଁ ପାଟଣାରୁ ଗଙ୍ଗବଂଶୀୟ ବାଳକ ରାଜା ସରଯୂଦେବଙ୍କୁ ବାମଣ୍ଡାକୁ ନେଇ ଆସନ୍ତି ଏବଂ ବାମଣ୍ଡା ଅନ୍ତର୍ଗତ ଟିକିଲି ପଡ଼ା ଗ୍ରାମରେ, ସରଗଛ ମୂଳରେ ବାଳକଙ୍କୁ 'ବାମଣ୍ଡାରାଜା' ଭାବରେ ଅଭିଷିକ୍ତ କରାଇଥିଲେ, ସରମୂଳେ ଅଭିଷିକ୍ତ ବାଳକ ରାଜାଙ୍କ ନାମ ହୋଇଥିଲା ସରଯୂଦେବ । ସେହି ଅଭିଷେକସ୍ଥଳୀରେ ଏଯାବତ୍ ଅଭିଷେକ ବେଦୀକାର ପୁରାତନ ଇଷ୍ଟକାଦି ଚିହ୍ନ ରହିଅଛି । ଅଭିଷେକ ପରେ ସରଯୂଦେବ ଯେଉଁ ସ୍ଥାନରେ ରାଜଧାନୀ ସ୍ଥାପନ କରିଥିଲେ, ସେହି ସ୍ଥାନର ନାମ 'ବାମଣ୍ଡା' ଗ୍ରାମ ଥିବା ହେତୁ ସରଯୂଦେବଙ୍କ ପ୍ରତିଷ୍ଠିତ ରାଜଧାନୀର ନାମ 'ବାମଣ୍ଡାଗଡ଼' ହୋଇଥିଲା ଏବଂ ଏହାର ଶାସିତ ଭୂଖଣ୍ଡ ବାମଣ୍ଡା ନାମରେ ଅଭିହିତ ହୋଇଅଛି ।

ରାଜା ସରଯୂଦେବ ଅନୁଗତ ଭୂୟାଁ ଓ କନ୍ଧମାନଙ୍କୁ ପାଟଣା ପଠାଇ ପୈତୃକ ପୁରୋହିତ ଦେବାନନ୍ଦ ମହାପାତ୍ରଙ୍କୁ ସ୍ୱରାଜ୍ୟକୁ ଅଣାଇଥିଲେ । ତାଙ୍କୁ ରାଜପୁରୋହିତ ଭାବରେ ନିଯୁକ୍ତ କରାଇ ବାସସ୍ଥାନ ରୂପେ 'କିରା' ନାମକ ଗ୍ରାମ ଦାନ କରିଥିଲେ । ବାମଣ୍ଡାରାଜା ସରଯୂଦେବଙ୍କ ପ୍ରଦତ୍ତ ଏହି କିରା ଗ୍ରାମ ଅଦ୍ୟପି ବାମଣ୍ଡା ରାଜାଙ୍କର ପୁରୋହିତ



Digitized by srujanika@gmail.com

ବଂଶ ଭୋଗ ଦଖଲ କରି ଆସୁଛନ୍ତି । ସେହି ପ୍ରାଚୀନ ବଂଶ ସମ୍ଭୂତ ପଣ୍ଡିତ ଶ୍ରୀଯୁକ୍ତ ଗୋବର୍ଦ୍ଧନ (ଶର୍ମା) ମହାପାତ୍ର ବାମଣ୍ଡା ରାଜବଂଶର ବର୍ତ୍ତମାନ ପୁରୋହିତ ଅଛନ୍ତି । ରାଜା ସରଯୂଦେବଙ୍କ ଠାରୁ ଗଣନା କରି ରାଜଶ୍ରୀସଂପନ୍ନ ଓ ଅତୁଳ କୀର୍ତ୍ତି ଶୋଭିତ ବର୍ତ୍ତମାନ ବାମଣ୍ଡାଧିପତି ଶ୍ରୀଯୁକ୍ତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବ ଅଷ୍ଟାଧିକବିଂଶ ପୁରୁଷ ।

ପ୍ରାୟ ପାଞ୍ଚଶହ ବର୍ଷ ଧରି ଯେଉଁ ରାଜାମାନେ ସରଯୂଦେବଙ୍କର ବଂଶଧାରା ରକ୍ଷାକରି ବାମଣ୍ଡାର ରାଜସିଂହାସନ ଅଳଙ୍କୃତ କରିଥିଲେ, ସେମାନଙ୍କର ନାମାବଳୀ ସହ ତଦୀୟ କୀର୍ତ୍ତିକଳାପର ଆଲୋଚନା କରାଯାଉଅଛି । ସରଯୂଦେବ ବଘେଲ୍ ବଂଶୀୟ ଏକ ରାଜକନ୍ୟାଙ୍କ ସହିତ ପରିଣୀତ ହୋଇଥିଲେ । ସରଯୂଦେବଙ୍କ ଲୋକାନ୍ତର ଗମନରେ ରାଜା ରାଜନାରାୟଣ ଦେବ, ରାଜା ଜଗନ୍ନାଥ ଦେବ ଏବଂ ରାଜା ଗଙ୍ଗାଧର ଦେବ କ୍ରମାନ୍ୱୟରେ ରାଜସିଂହାସନ ଆରୋହଣ କରନ୍ତି । ଏମାନଙ୍କ ସମୟରେ ବାମଣ୍ଡା ବା ତତ୍‌ପାର୍ଶ୍ୱବର୍ତ୍ତୀ ରାଜ୍ୟସମୂହ କୌଣସି ବିଶେଷ ଐତିହାସିକ ଘଟଣାର ଉଲ୍ଲେଖ ଦେଖିବାକୁ ମିଳେନାହିଁ । ତତ୍ପରେ ରାଜା ଜଗଜ୍ୟୋଷ୍ଟିଦେବ 'ତ୍ରିଭୁବନ ଦେବ' *(୧)* । ଏହି ସମ୍ମାନଜନକ ଉପାଧି ଗ୍ରହଣ ପୂର୍ବକ ରାଜସିଂହାସନ ଆରୋହଣ କରନ୍ତି । ଏହାଙ୍କ ପରେ ରୁଦ୍ରନାରାୟଣ ଦେବ ରାଜା ହୁଅନ୍ତି । ଏହି ରାଜା ସମ୍ବଲପୁର ଅନ୍ତର୍ଗତ ଜୟପୁରର ହୈହୟ ବଂଶୀୟ ରାଜା ବିଶ୍ୱନାଥ ଦେବଙ୍କୁ ଯୁଦ୍ଧରେ ପରାଜିତ କରି ତାଙ୍କ ଶାସିତ ସମଗ୍ର ଭୂଭାଗ ବାମଣ୍ଡା ରାଜ୍ୟଭୁକ୍ତ କରିଥିଲେ । ଏହି ଯୁଦ୍ଧର ସୂତ୍ରପାତରେ, ବାମଣ୍ଡାଧିପତି ରାଜା ରୁଦ୍ରନାରାୟଣ ଦେବ ଜୟପୁରର 'ଚେମଟା' ନାମକ ଜନୈକ ଶୂଦ୍ର ଜାତୀୟ ପ୍ରବଳ ବ୍ୟକ୍ତିଙ୍କର ସହାୟତା ଲାଭ କରିଥିଲେ ବୋଲି,ଏହି ବ୍ୟକ୍ତିଙ୍କୁ ଦେହୁରୀ ଉପାଧି ସହ ଜାଗିର୍ ଦାନ କରିଥିଲେ । ଅଦ୍ୟପି ଏହି ଜମିଦାର ବଂଶଧରଗଣ 'କତରକେଲ୍ଲା' ଜମିଦାର ଭାବରେ ପରିଚିତ ଏବଂ ସମ୍ମାନିତ । ପୂର୍ବେ ପ୍ରଦତ୍ତ ହୋଇଅଛି ଯେ, ଏହି ସମୟରେ ଏହି ପ୍ରଦେଶରେ ଶାସ୍ତ୍ରଜ୍ଞ ଓ ଧର୍ମାନୁଷ୍ଠାନ ନିରତ ବ୍ରାହ୍ମଣଙ୍କ ନିତ୍ୟାନ୍ତ ଅଭାବ ଥିଲା । ଉତ୍କଳୀୟ ବ୍ରାହ୍ମଣଗଣଙ୍କ ଏତାଦୃଶ ହୀନଦଶା ନିବନ୍ଧନ ରାଜା ରୁଦ୍ରନାରାୟଣ ପୁରୋହିତ ବଂଶର ଅନୁମତି ଲାଭକରି ତ୍ରିଲୋଚନ ଚୋବେ ନାମକ ଜଣେ କନୌଜ ବ୍ରାହ୍ମଣଙ୍କୁ ଅପରାଚାର୍ଯ୍ୟ ରୂପେ ଗ୍ରହଣ କରିଥିଲେ । ଏହାଙ୍କ ବଂଶଧରଗଣ ମଧ୍ୟ ଅଦ୍ୟପି ବାମଣ୍ଡାର ଉକ୍ତ ସମ୍ମାନିତ ପଦରେ ଅଧିଷ୍ଠିତ ରହିଛନ୍ତି । ରାଜା ରୁଦ୍ରନାରାୟଣ ଏହି ପୁରୋହିତ ଓ ଗୁରୁଙ୍କୁ ଯଥାକ୍ରମେ 'କେନ୍ଦୁବେରଣୀ' ଓ 'ଖଣ୍ଡିବନ୍ଧ' ଗ୍ରାମ ଦାନ କରିଥିଲେ ।

ଏହାଙ୍କ ପରେ କାନଫୋଡ଼ା ସୁଢ଼ଳଦେବ ରାଜା ହୁଅନ୍ତି । ଏହାଙ୍କ ସମୟରେ ମହାରାଷ୍ଟ୍ରାଧିପତି ଶିବାଜୀ ମହାରାଜାଙ୍କର ପ୍ରଭୁତ୍ୱ ବିସ୍ତାର ଫଳରେ ସମଗ୍ର ଦାକ୍ଷିଣାତ୍ୟ ମହାରାଷ୍ଟ୍ରୀୟ ପତାକା ତଳେ ମିଳିତ ହେବାପାଇଁ ବାଧ୍ୟ ହୁଅନ୍ତି । ସେହି ସମୟରେ ବର୍ଗୀଙ୍କ



Digitized by srujanika@gmail.com

ଅତ୍ୟାଚାରରେ ଉତ୍କଳ ଓ ବଙ୍ଗଦେଶ ଆକ୍ରାନ୍ତ ନ ହୋଇଥିଲେ ମଧ୍ୟ, ଏହାର ସୂତ୍ରପାତ ହେବା ଆରମ୍ଭ ହୁଏ । କାନଫୋଡ଼ା ସୁଢ଼ଳଦେବଙ୍କର ରାଜତ୍ୱର ଅବସାନ ଫଳରେ ରାଜା ରଘୁନାଥ ଦେବ ବାମଣ୍ଡାର ରାଜସିଂହାସନ ଆରୋହଣ କରନ୍ତି । ବାମଣ୍ଡାର ପାର୍ଶ୍ୱବର୍ତ୍ତୀ ସ୍ୱାଧୀନ ରାଜ୍ୟ ଗାଙ୍ଗପୁର ସହିତ ଯୁଦ୍ଧ ବିଗ୍ରହରେ ପ୍ରବୃତ୍ତ ହୋଇ, ରାଜା ରଘୁନାଥ ଦେବ ବାମଣ୍ଡାର ସୀମାନ୍ତସ୍ଥ ବନ୍ଧାବାର ପ୍ରଗଣା ନିଜରାଜ୍ୟଭୁକ୍ତ କରି ନେଇଥିଲେ, ରାଜା ରଘୁନାଥ ଦେବ ଯେଉଁ ସମୟରେ ବାମଣ୍ଡାର ରାଜସିଂହାସନରେ ଉପବିଷ୍ଟ, ସେହି ସମୟରେ ନାଗପୁରର ମହାରାଷ୍ଟ୍ର ବଂଶୀୟ ଭୋଁସଲା ରାଜ୍ୟର ପ୍ରବଳ ଅଭ୍ୟୁଦୟ ଏବଂ ଓଡ଼ିଶା ଓ ପଶ୍ଚିମବଙ୍ଗରେ ବର୍ଗୀ ଅତ୍ୟାଚାର ଆରମ୍ଭ ହୋଇ କ୍ରମେ ଭୀଷଣ ହୋଇଉଠେ । ଏହି ଉଭୟ ଦେଶରେ ମହାରାଷ୍ଟ୍ରୀୟ ଅତ୍ୟାଚାର ଫଳରେ ପ୍ରାୟ ପ୍ରତ୍ୟେକ ଗୃହସ୍ଥଙ୍କୁ ବିବ୍ରତ ହୋଇ ସର୍ବଦା ଶଂକିତ ଚିତ୍ତରେ କାଳ ହରଣ କରିବାକୁ ପଡ଼ିଥିଲା । ଏହି ସମୟରେ ଉତ୍କଳ ଓ ବଙ୍ଗର କୁଳାଙ୍ଗନାଗଣଙ୍କର ସ୍ୱର୍ଣ୍ଣାଳଂକାର ଧାରଣ ମଧ୍ୟ ଏକ ପ୍ରକାର ଅସମ୍ଭବ ହୋଇ ପଡ଼ିଥିଲା । ଏହି ସମୟରେ ମହାରାଷ୍ଟ୍ରୀୟ ଅତ୍ୟାଚାରରୁ ମୁକ୍ତ ରଖିବା ପାଇଁ ବଙ୍ଗ-ବିହାର-ଓଡ଼ିଶାର ତଦାନିନ୍ତନ ପ୍ରଖ୍ୟାତ ନବାବ ଆଲିବର୍ଦ୍ଦି ଖାଁ ବର୍ଗୀ-ବିତାଡ଼ନରେ ବଦ୍ଧପରିକର ହୋଇ ପୁନଃପୁନଃ ସସୈନ୍ୟ ଓଡ଼ିଶା ଯାତ୍ରା କରିବା ପାଇଁ ବାଧ ହୁଅନ୍ତି । ପୁଣି ଏହି ସମୟରେ କଲିକତାର ତିନି ପାର୍ଶ୍ୱରେ (ଉତ୍ତର- ପୂର୍ବ-ଦକ୍ଷିଣ) ସୀମାନିର୍ଦ୍ଦେଶକଖାଇ ପ୍ରସ୍ତୁତ ହୁଏ ଏବଂ ସନ୍ଧିସୂତ୍ରେ ସ୍ଥିରୀକୃତ ହୁଏ ଯେ, ବର୍ଗୀମାନେ ଏହା ପାରି ହୋଇ କଲିକତା ମଧ୍ୟକୁ ପ୍ରବେଶ କରିବେ ନାହିଁ । କଲିକତା ଏହିରୂପେ ନିରାପଦ ସ୍ଥାନ ହେବା ଫଳରେ ସେହି ସମୟରେ କଂପାନୀ ବାହାଦୂରଙ୍କ ଆଶ୍ରୟରେ ଶାନ୍ତିରେ ବାସ କରିବା ପାଇଁ କଲିକତା ବାହାରର ନାନା ସ୍ଥାନର ବହୁ ଲୋକ ପୁତ୍ର ପରିଜନ ନେଇ କଲିକତା ଆସି ବାସ କରିବାରେ ଲାଗିଲେ । ତେଣୁ କଲିକତାର ଜନସଂଖ୍ୟା ଅତ୍ୟଧିକ ବୃଦ୍ଧି ପ୍ରାପ୍ତ ହୁଏ । ଫଳରେ ଶାନ୍ତିପ୍ରିୟ ବଙ୍ଗାଳୀ ଗୃହସ୍ଥଗଣ ଇଷ୍ଟଇଣ୍ଡିଆ କଂପାନୀର କର୍ମଚାରୀମାନଙ୍କର ବ୍ୟବହାରରେ ବିଶ୍ୱାସ ସ୍ଥାପନ କରି ସୁଖ ଓ ଶାନ୍ତିରେ ବାସ କରିବାକୁ ଆରମ୍ଭ କରନ୍ତି । ସେହି ବିଶ୍ୱାସ ଓ ନିର୍ଭୟତାର ଭାବ ଆଜିସୁଦ୍ଧା ଅକ୍ଷୁଣ୍ଣ ଥାଇ ଇଂରେଜମାନଙ୍କ ପରିଚର୍ଯ୍ୟାରେ ସଦା ସନ୍ତୁଷ୍ଟ ହୋଇ ରହିଛନ୍ତି । ଏହା ଇଂରେଜ ଜାତିର ସଦ୍‌ଭାବର ସ୍ଥାୟୀ ଉତ୍ତମ ଫଳ ।

ଏହି ମହାରାଷ୍ଟ୍ରୀୟ ଅଭ୍ୟୁତ୍ଥାନ ଓ ସେଥିପାଇଁ ଓଡ଼ିଶା ଓ ବଙ୍ଗଦେଶ ଆକ୍ରମଣ ଓ ଲୁଣ୍ଠନ ସୂଚିତ ହେବାପୂର୍ବ ପର୍ଯ୍ୟନ୍ତ ପାଟଣା, ସୋନପୁର, ରେଢ଼ାଖୋଲ ଓ ବାମଣ୍ଡାର ରାଜାଗଣ ସଂପୂର୍ଣ୍ଣ ସ୍ୱାଧୀନ ଭାବରେ ପରସ୍ପର ସହିତ ମିଳିତ ହୋଇ ରାଜତ୍ୱ କରୁଥିଲେ । ପ୍ରୟୋଜନ ହେଲେ, ରାଜାମାନେ ପରସ୍ପର ସହିତ ଯୁଦ୍ଧ ବିଗ୍ରହରେ ମଧ୍ୟ ଲିପ୍ତ ହେଉଥିଲେ । ଏହିପରି ଭାବରେ ଦୀର୍ଘକାଳ ଚାଲୁ ଚାଲୁ, ଏକ ସମୟରେ ପାଟଣାର ମହାରାଜ ପ୍ରବଳ ହୋଇ



Digitized by srujanika@gmail.com

ଅପରମାନଙ୍କୁ ବଶ୍ୟତା ସ୍ୱୀକାର କରିବା ପାଇଁ ବାଧ୍ୟ କରିଥିଲେ । ଏହାର ଅବ୍ୟବହିତ ପରେ, କ୍ରମେ ସମ୍ବଲପୁରର ମହାରାଜ ନୂତନ ଶକ୍ତି ସଂଚୟ ଫଳରେ ସବଳ ହୋଇ ଏହି ସକଳ ରାଜ୍ୟକୁ ପରାଜିତ କରନ୍ତି । ସେହି ସମୟରେ ପାଟଣା ମହାରାଜ ମଧ୍ୟ ସମ୍ବଲପୁର ମହାରାଜାଙ୍କର ଅଧିନତା ସ୍ୱୀକାର କରିବାପାଇଁ ବାଧ୍ୟ ହୋଇଥିଲେ । ଏହି ସମସ୍ତ ଖଣ୍ଡରାଜ୍ୟ ଉପରେ ଯେତେବେଳେ ସମ୍ବଲପୁର ମହାରାଜାଙ୍କର ଏକଛତ୍ର ରାଜତ୍ୱ ପ୍ରତିଷ୍ଠିତ ଥିଲା, ସେହି ସମୟରେ ନବାବ ଆଲିବର୍ଦ୍ଦୀ ଖାଁ ମଧ୍ୟପ୍ରଦେଶର ପ୍ରଧାନ କେନ୍ଦ୍ର ନାଗପୁର ଅଧିପତି ମହାରାଷ୍ଟ୍ରୀୟ ବଂଶଜ ରଘୁଜୀ ଭୋଁସଲାଙ୍କର ପ୍ରବଳ ପରାକ୍ରମ ଦମନ କରିନପାରି ୧୭୫୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ପ୍ରଦେଶ ପରିତ୍ୟାଗ କରନ୍ତି ଏବଂ ବଙ୍ଗର ଚୌଥ ହିସାବରେ ବାର୍ଷିକ ବାରଲକ୍ଷ ଟଙ୍କା ଦାନ ଅଙ୍ଗୀକାର କରନ୍ତି । ଏହା ପରେ ୧୭୫୫ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରୀୟ ଆକ୍ରମଣ ଫଳରେ ସମଗ୍ର ଦେଶର ଶାସନ ଶୃଙ୍ଖଳା ବିଧ୍ୱସ୍ତ ହୁଏ । ଉତ୍କଳ ଓ ମଧ୍ୟପ୍ରଦେଶର କ୍ଷୁଦ୍ର ବୃହତ୍ ସମସ୍ତ କ୍ଷତ୍ରିୟ ରାଜାଗଣ ମହାରାଷ୍ଟ୍ରୀୟ ଅତ୍ୟାଚାରରେ ନିତ୍ୟାନ୍ତ ବିବ୍ରତ ଓ ବିପନ୍ନ ହୋଇ ପଡ଼ିଥିଲେ । ସମସ୍ତେ ଅଳ୍ପାଧିକ ମରହଟ୍ଟା ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟହୋଇ ଥିଲେ । ଅନ୍ୟାନ୍ୟ ରାଜ୍ୟ ଆକ୍ରମଣ ସଂଗେ ସଂଗେ ମରହଟ୍ଟାମାନେ ବାମଣ୍ଡା ରାଜ୍ୟ ମଧ୍ୟ ଆକ୍ରମଣ କରିଥିଲେ । ରାଜା ରଘୁନାଥ ଦେବ ଓ ତଦୀୟ ବଂଶଧରଗଣ ଏହିମାନଙ୍କ ହାତରୁ ନିସ୍ତାର ପାଇବା ପାଇଁ ବାର୍ଷିକ କର ଦେବାପାଇଁ ସମ୍ମତ ହୁଅନ୍ତି ଏବଂ ଯଥାରୀତି କିଛିକାଳ ମହାରାଷ୍ଟ୍ରୀୟ ପ୍ରାଧାନ୍ୟ ସ୍ୱୀକାର କରନ୍ତି ।

ମହାରାଷ୍ଟ୍ରୀୟ ପ୍ରାଧାନ୍ୟ ସ୍ୱୀକାର କଲେ ମଧ୍ୟ ଓଡ଼ିଶା ଓ ମଧ୍ୟ ପ୍ରଦେଶର ଗଡ଼ଜାତ ରାଜଗଣଙ୍କ ଆତ୍ମକଳହ ଓ ଅନ୍ତର୍ବିବାଦ ନିବୃତ୍ତି ଲାଭ କରିନଥିଲା । ମହାରାଷ୍ଟ୍ରୀୟ ରାଜଶକ୍ତି ସୁଦୂର ଓଡ଼ିଶାରେ ତାଦୃଶ ଦୃଢ଼ଭିତ୍ତି ସଂପନ୍ନ ରାଜ୍ୟ ପ୍ରତିଷ୍ଠାରେ ମଧ୍ୟ ବ୍ୟସ୍ତ ହୋଇନାହାନ୍ତି । ସେମାନେ ସେମାନଙ୍କର ପ୍ରାପ୍ୟ ପାଇ ସନ୍ତୁଷ୍ଟ ହେଉଥିଲେ । ଅଙ୍ଗୀକୃତ ଅର୍ଥ ପ୍ରାପ୍ତି ନ ହେଲେ, ଦେଶ ଲୁଣ୍ଠନ ଓ ଅତ୍ୟାଚାର ଆରମ୍ଭ ହେଉଥିଲା । ସେହି ଭୟହେତୁ ସର୍ବଦା ଲୋକେ ଶଙ୍କିତ ହୃଦୟରେ କାଳଯାପନ କରୁଥିଲେ, ରାଜାମାନେ ମଧ୍ୟ ସମୟ ମୁତାବକ ପ୍ରାପ୍ୟ ଅର୍ଥ ଦେଇ ମହାରାଷ୍ଟ୍ରୀୟ ଅତ୍ୟାଚାରରୁ ରାଜ୍ୟ ଓ ରାଜସଂସାର ରକ୍ଷା କରିବାପାଇଁ ପ୍ରାଣପଣେ ଯତ୍ନ କରୁଥିଲେ । ଏହି ଭାବରେ ଶାନ୍ତିରେ ଓ କଳହ ବିବାଦରେ ୧୮୦୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଅତିବାହିତ ହୋଇଅଛି । ୧୮୦୩ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରୀୟ ରାଜଶକ୍ତି ଇଂରେଜଙ୍କର ପ୍ରବଳ ଆକ୍ରମଣ ଫଳରେ ବିଧ୍ୱସ୍ତ ହେଲାପରେ, ଓଡ଼ିଶା ଇଂରେଜଙ୍କର ଅଧିକୃତ ରାଜ୍ୟରେ ପରିଣତ ହୁଏ ଇଂରେଜ ଅଧିକୃତ ରାଜ୍ୟରେ ପରିଣତ ହେବାର ଅର୍ଥ ଏହା ଯେ, ଓଡ଼ିଶାର ମୋଗଲବନ୍ଦୀ ଅଂଶମାତ୍ର । ଅର୍ଥାତ୍ ବାଲେଶ୍ୱର, କଟକ ଓ ପୁରୀ ଏହି ତିନି ଜିଲ୍ଲାର କେତେକ ଅଂଶ ମୋଗଲବନ୍ଦୀ ନାମରେ ଅଭିହିତ ହେଉଥିଲା ଏବେ ମଧ୍ୟ



Digitized by srujanika@gmail.com

ହୋଇଥାଏ । ଓଡ଼ିଶାର ଗଡ଼ଜାତ ଏବଂ ଛତିଶଗଡ଼ର ରାଜାମାନେ ସେତେବେଳେ ମଧ୍ୟ ସ୍ୱାଧୀନ ଭାବରେ ଅବସ୍ଥାନ କରୁଥିଲେ ସେହି ସମୟରେ ତଦାନୀନ୍ତନ ଗଭର୍ଣ୍ଣର ଜେନେରାଲ୍ ବାହାଦୁରଙ୍କ ଅଭିପ୍ରାୟ ଅନୁସାରେ କଥିତ ଅଞ୍ଚଳରେ ରାଜନ୍ୟବର୍ଗ ଆଶ୍ରୟ ପ୍ରାର୍ଥୀ ହେବାପରେ ଏହି ୧୮୦୩ ଖ୍ରୀଷ୍ଟାବ୍ଦରେ ସନନ୍ଦ ଦାନ ଦ୍ୱାରା ଛତିଶଗଡ଼ ଫ୍ୟୁଡ଼େଟେରୀ ଓ ଓଡ଼ିଶା ଟ୍ରିବ୍ୟୁଟାରୀ ରୂପେ ପରିଗୃହୀତ ହୁଏ ।

ରାଜା ରଘୁନାଥ ଦେବଙ୍କ ରାଜତ୍ୱ କାଳରେ ଘଟୁୟାଲ୍ ନାମଧେୟ ଜଣେ ବିଦ୍ରୋହୀ କନ୍ଧଦସ୍ୟୁ, ରାଜା ରାଜଦରବାରରେ ଉପବିଷ୍ଟ ଅଛନ୍ତି, ଠିକ୍ ଏହି ସମୟରେ, ଦୂରରୁ 'ଚିୟାଲ' ନାମକ ଶର ନିକ୍ଷେପ କରି ରାଜାଙ୍କର ପ୍ରାଣ ବିନାଶର ଚେଷ୍ଟା କରିଥିଲା । ଏହି ଶର ଦରବାର ଗୃହରେ ନିପତିତ ହେବା ଫଳରେ, ରାଜା ପୁରାତନ ବାମଣ୍ଡା ରାଜଧାନୀ ତ୍ୟାଗ କରି 'ସୁଗୁଡ଼ା' ନାମକ ଗ୍ରାମରେ ନୂତନ ରାଜଧାନୀ ନିର୍ମାଣ କରାଇ ସେଠାକୁ ସ୍ଥାନାନ୍ତରିତ ହୁଅନ୍ତି । ଏହାଙ୍କର ଲୋକାନ୍ତର ଗମନ ପରେ କସ୍ତୁରୀ ଦେବ ରାଜା ହୁଅନ୍ତି । ଏହାଙ୍କ ସମୟରେ ବିଶେଷ କୌଣସି ଉଲ୍ଲେଖଯୋଗ୍ୟ ଘଟଣା ଘଟିନାହିଁ । କସ୍ତୁରୀ ଦେବଙ୍କ ପରେ ରାଜା ରାମଚନ୍ଦ୍ର ଦେବ ସିଂହାସନ ଆରୋହଣ କରି 'ସୁଗୁଡ଼ା' ଠାରୁ ରାଜଧାନୀ ସ୍ଥାନାନ୍ତରିତ କରନ୍ତି । ତାଙ୍କର ନିର୍ବାଚିତ ସ୍ଥାନର ନାମ 'ଦେଗାଁ' ରାଜା ରାମଚନ୍ଦ୍ର 'ଦେଗାଁ'ରେ ରାଜଧାନୀ ସ୍ଥାପନ ପୂର୍ବକ ଏହାର ନାମ ଦିଅନ୍ତି 'ଦେବଗଡ଼' । ରାଜା ରାମଚନ୍ଦ୍ର ସରଯୂଦେବଙ୍କ ଠାରୁ ଦଶମ ପୁରୁଷ । ପରେ ପରେ ଆହୁରି ଦଶ ପୁରୁଷ ଏହି ଦେବଗଡ଼ରେ ଅବସ୍ଥାନ ପୂର୍ବକ ରାଜତ୍ୱ କରିବା ପରେ ଏକବିଂଶ ପୁରୁଷ ରାଜା ପ୍ରତାପରୁଦ୍ର ଦେବ ଦେବଗଡ଼ରେ ମନ୍ଦିର ନିର୍ମାଣ କରାଇ ଶ୍ରୀ ଶ୍ରୀ ଜଗନ୍ନାଥ ଠାକୁରଙ୍କ ମୂର୍ତ୍ତି ପ୍ରତିଷ୍ଠା କରାନ୍ତି । ଏହି ଦେବମନ୍ଦିର ଅଦ୍ୟପି ସୁପ୍ରତିଷ୍ଠିତ ଓ ସୁରକ୍ଷିତ ହୋଇ ବାମଣ୍ଡାର ପ୍ରାଚୀନ କୀର୍ତ୍ତି ଗୌରବ ଘୋଷଣା କରୁଅଛି । ଏହି ଦେବାଳୟର ନିକଟବର୍ତ୍ତୀ ପୁରାତନ ଦେବଗଡ଼ ଅଦ୍ୟପି ଭଗ୍ନ ଅବସ୍ଥାରେ ବିଦ୍ୟମାନ ଥାଇ ପ୍ରାଚୀନ କାହାଣୀର ସାକ୍ଷ୍ୟ ପ୍ରଦାନ କରୁଅଛି ।

ରାଜା ରାମଚନ୍ଦ୍ର ଦେବଙ୍କ ଲୋକାନ୍ତର ଗମନରେ ଦୁହ୍ଲ ଦେବ ରାଜସିଂହାସନ ଆରୋହଣ କରନ୍ତି । ଦୁହ୍ଲ ଦେବ ରାଜା ହୋଇ ପାର୍ଶ୍ୱବର୍ତ୍ତୀ ବଣାଇ ରାଜ୍ୟର ରାଜକୁମାରୀଙ୍କ ପାଣିଗ୍ରହଣେଚ୍ଛୁ ହୋଇ ବଣାଇ ଯାତ୍ରା କରନ୍ତି । ସେଠାରେ ବଣାଇ ରାଜା କର୍ତ୍ତୃକ ପ୍ରତ୍ୟାଖ୍ୟାତ ହୋଇ ବଣାଇ ରାଜାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି । ଯୁଦ୍ଧରେ ବଣାଇ ରାଜା ଜଗବନ୍ଧୁ ଦେବ ପରାଜିତ, ଧୃତ ଓ ବାମଣ୍ଡା ଆନୀତ ହୁଅନ୍ତି । ପରେ କନ୍ୟାଦାନ ପତ୍ରରେ ସ୍ୱାକ୍ଷର କରି ମୁକ୍ତିଲାଭ ଓ ସ୍ୱରାଜ୍ୟ ଗମନ କରନ୍ତି ଏବଂ ଯଥୋପଯୁକ୍ତ ଆୟୋଜନ ସହ ବଣାଇରାଜା ବାମଣ୍ଡା ଆଗମନ ପୂର୍ବକ ବାମଣ୍ଡାରାଜାଙ୍କୁ କନ୍ୟାଦାନ କରନ୍ତି । ଏହି ରାଜାଙ୍କର ଲୋକାନ୍ତର ଗମନରେ ମୁଖୀଦେବ ରାଜସିଂହାସନରେ ଅଭିଷିକ୍ତ ହୁଅନ୍ତି । ମୁଖୀଦେବ



Digitized by srujanika@gmail.com

ରାଜା ହୋଇ ପାର୍ଶ୍ୱବର୍ତ୍ତୀ ରେଢ଼ାଖୋଲର ରାଜା ଭଗବାନ ଜେନାମଣିଙ୍କ ସହିତ ଯୁଦ୍ଧରେ ଲିପ୍ତ ହୁଅନ୍ତି, ତାଙ୍କୁ ଯୁଦ୍ଧରେ ପରାସ୍ତ କରି ଆପଣା ସହିତ ସସମ୍ମାନେ ବାମଣ୍ଡା ଆଣିଥିଲେ । ତାଙ୍କ ପାଖରୁ କେତେକ ସର୍ତ୍ତ ଲେଖାଇ ଏବଂ ବାମଣ୍ଡାରାଜ୍ୟର ଅଧୀନ ରାଜା ଭାବରେ ବର୍ଷକୁ ଦୁଇଥର ବାମଣ୍ଡା ଆଗମନ ପୂର୍ବକ ରାଜାଙ୍କ ସହିତ ସାକ୍ଷାତ କରିବାର ଅଂଗୀକାରବଦ୍ଧ କରାଇ ତାଙ୍କୁ ପୁନର୍ବାର ସସମ୍ମାନରେ ତାଙ୍କ ରାଜ୍ୟକୁ ପ୍ରେରଣ କରନ୍ତି । ଏହାପରେ ବାମଣ୍ଡାରାଜା ପାଲ୍ଲହଡା ର ରାଜା ରଘୁନାଥ ପାଲଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି । ଏହି ଯୁଦ୍ଧରେ ବାମଣ୍ଡାଧିପତି ଜୟଲାଭ କରି ପାଲ୍ଲହଡ଼ାର ରାଜା ରଘୁନାଥଙ୍କୁ ବାମଣ୍ଡା ଅଣାଇ ଆବଦ୍ଧ କରିଥିଲେ । ପରିଶେଷରେ ପାଲ୍ଲହଡ଼ାର ରାଜା ରଘୁନାଥ ବାମଣ୍ଡା ରାଜାଙ୍କୁ କନ୍ୟାଦାନରେ ସମ୍ମତ ହୋଇ ଏବଂ ସଂପୂର୍ଣ୍ଣ ରୂପେ ମିତ୍ର ରାଜାର ବ୍ୟବହାର କରିବାରେ ଅଙ୍ଗୀକାରରେ ଆବଦ୍ଧ ହୋଇ ଅବ୍ୟାହତି ଲାଭ କରନ୍ତି । ସେହି ଆନୁଗତ୍ୟର ସମ୍ବନ୍ଧ ବାହୁକାଳ ସୁରକ୍ଷିତ ହୋଇଥିଲା । ମୁଖୀଦେବଙ୍କ ସ୍ୱର୍ଗାରୋହଣ ଫଳରେ ତଦୀୟ ପୁତ୍ର ବିଶ୍ୱନାଥ ଦେବ ବାମଣ୍ଡାର ସିଂହାସନ ଆରୋହଣ କରନ୍ତି । ତାଙ୍କ ପରେ ବାମଣ୍ଡାର ରାଜସିଂହାସନରେ ସଦାନନ୍ଦ ଦେବ ଅଭିଷିକ୍ତ ହୁଅନ୍ତି । ଏହାଙ୍କ ରାଜତ୍ୱକାଳରେ ହରିଶରଣ ଦ୍ୱିବେଦୀ ଓ ହରିହର ଦାଶ ନାମକ ଦୁଇଜଣ ବ୍ରାହ୍ମଣ 'ଜଡ଼ାଗୋଳା' ନାମକ ଗ୍ରାମର ଶାସନଭାର ପ୍ରାପ୍ତ ହୁଅନ୍ତି ଏବଂ ଉଭୟେ ମୋକଦ୍ଦମ ରୂପେ (ଅମାତ୍ୟରୂପେ) ରାଜାଙ୍କ କର୍ତ୍ତୃକ ପରିଗୃହୀତ ହୋଇଥିଲେ । ସଦାନନ୍ଦ ଦେବଙ୍କ ଅବର୍ତ୍ତମାନରେ ତଦୀୟ ଜ୍ୟେଷ୍ଠ ପୁତ୍ର ବିକ୍ରମ ଦେବ ଓ କନିଷ୍ଠ ପୁତ୍ର ପରେ ପରେ ରାଜା ହୋଇଥିଲେ । ତତ୍ପରେ ବିଭୂତିଦେବ ଓ ତଦୀୟ ପୁତ୍ର ହାଡୁଦେବ ରାଜା ହୁଅନ୍ତି । ତତ୍ପରେ ତାହାଙ୍କର କନିଷ୍ଠ ଭ୍ରାତା ବୀର ନାରାୟଣ ଦେବଙ୍କ ପୁତ୍ର ଚନ୍ଦ୍ରଶେଖର ଦେବ ଜ୍ୟେଷ୍ଠତାସୂତ୍ରରେ ସିଂହାସନ ଆରୋହଣ କରନ୍ତି । ରାଜା ହାଡୁଦେବ ବାମଣ୍ଡା ଭୂଭାଗର ଜମିଦାରଗଣଙ୍କ ଉପରେ ଅସଙ୍ଗତ ଅତ୍ୟାଚାର କରିବା ଫଳରେ ଲୁଠା ଠାକୁର ଓ ବରଜୁ ଦେହୁରୀ ବାମଣ୍ଡାର ଏହି ଉଭୟ ଜମିଦାର ମିଳିତ ହୋଇ ହାଡୁଦେବଙ୍କୁ ରାଜ୍ୟଚ୍ୟୁତ କରାଇ ତଦୀୟ ଭ୍ରାତୃପୁତ୍ର ଚନ୍ଦ୍ରଶେଖର ଦେବଙ୍କୁ ନେଇ ସ୍ୱତନ୍ତ୍ର ଭାବରେ କୁଲେଇଗଡ଼ରେ ରାଜ୍ୟାଭିଷିକ୍ତ କରାଇଥିଲେ । ନୂତନ ରାଜା ଚନ୍ଦ୍ରଶେଖର ଦେବ ସିଂହାସନ ଅଧିକାର କରି ଝଣ୍ଟୁ ମାଝୀ ନାମକ ଜଣେ ଗଣ୍ଡଙ୍କୁ ମହାପାତ୍ର ପଦ ପ୍ରଦାନ କରି ଜାଗିର ଦେଇଥିଲେ । ବର୍ତ୍ତମାନ ସଦା ମହାପାତ୍ର ପ୍ରଭୃତି ତାଙ୍କର ବଂଶଧରଗଣ ବାମଣ୍ଡାରେ ଜମିଦାରୀ ଭୋଗ କରୁଛନ୍ତି ।

ରାଜା ଚନ୍ଦ୍ରଶେଖରଙ୍କ ପୁତ୍ର ପ୍ରତାପରୁଦ୍ର ଦେବ ରାଜା ହୋଇଥିଲେ । ପ୍ରସଙ୍ଗକ୍ରମେ ପୂର୍ବେ କଥିତ ହୋଇଅଛି, ଏହି ରାଜା ପୁରାତନ ଦୁର୍ଗ ଦେବଗଡ଼ ପ୍ରାନ୍ତସ୍ଥ ଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ମନ୍ଦିର ନିର୍ମାଣ କରାଇ ମହାପ୍ରଭୁଙ୍କର ପ୍ରତିଷ୍ଠା କରାଇଥିଲେ । ବାମଣ୍ଡାର


Digitized by srujanika@gmail.com

ରାଜା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱକାଳରେ ୧୮୦୨ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରୀୟ ରାଜଶକ୍ତିର ଖର୍ବତା ସାଧିତ ହୁଏ । ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଓ ମଧ୍ୟପ୍ରଦେଶର ଅନେକାଂଶ ମରହଟ୍ଟା ଅତ୍ୟାଚାର ଓ ଆକ୍ରମଣ ଠାରୁ ମୁକ୍ତିଲାଭ କରନ୍ତି ଏବଂ ବାମଣ୍ଡାର ରାଜା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ଇଷ୍ଟ ଇଣ୍ଡିଆ କମ୍ପାନୀର ଗଭର୍ଣ୍ଣର ଜେନେରାଲ ମାର୍‌କୁଇସ୍ ଅଫ୍ ଓୟେସ୍‌ଲି ମହୋଦୟଙ୍କ ଆଦେଶରେ ଓଡ଼ିଶା ଓ ଛତିଶଗଡ଼ର ସ୍ୱାଧୀନ ରାଜାମାନଙ୍କୁ ସନ୍ଧିସୂତ୍ରରେ ଆଶ୍ରିତ ସାମନ୍ତରାଜା ଭାବରେ ସ୍ୱୀକାର ଓ ତଦନୁରୂପ ସମ୍ବନ୍ଧ ନୀତି ରକ୍ଷାର ଉପଯୋଗୀ ସନନ୍ଦ ଦାନ କାର୍ଯ୍ୟ ସଂପନ୍ନ ହୁଏ । ଇଂରେଜ ରାଜଶକ୍ତିର ଆଶ୍ରୟରେ ନିରାପଦରେ ବାସ, ରାଜ୍ୟଶାସନ ଓ ପ୍ରଜାପାଳନ ବିଷୟରେ ସଂପୂର୍ଣ୍ଣ ସ୍ୱାଧୀନତା ସଂଭୋଗ ପାଇଁ ରାଜା ପ୍ରତାପରୁଦ୍ର ଦେବ ବାର୍ଷିକ ପନ୍ଦର ଶତ ଟଙ୍କା କର (Tribute) ଦେବାପାଇଁ ସମ୍ମତ ହୁଅନ୍ତି । ସେହି ବ୍ୟବସ୍ଥା ଅଦ୍ୟପି ଚଳି ଆସୁଅଛି ।

ପ୍ରତାପରୁଦ୍ରଦେବ ଯେଉଁ ସମୟରେ ବାମଣ୍ଡାର ସିଂହାସନାରୂଢ଼ ଥାଇ ରାଜ୍ୟ ପାଳନ କରୁଥିଲେ, ସେହି ସମୟ ପୂର୍ବରୁ ଭାରତର ଉତ୍ତର ପଶ୍ଚିମ ପ୍ରଦେଶସ୍ଥ ସତୀଦାହ ପ୍ରଥା ଆର୍ଯ୍ୟାବର୍ତ୍ତ ଅତିକ୍ରମ କରି ଦାକ୍ଷିଣାତ୍ୟରେ ପ୍ରବେଶଲାଭ କରିଅଛି ଏବଂ କ୍ରମଶଃ ବଙ୍ଗରେ ଓ ଉତ୍କଳରେ ସତୀଦାହର ପ୍ରବଳ ପ୍ରଭାବ ପ୍ରସାରିତ ହୋଇଅଛି । ରାଜା ପ୍ରତାପରୁଦ୍ରଦେବ ଯେତେବେଳେ ବାମଣ୍ଡାର ରାଜସିଂହାସନରେ ଉପବିଷ୍ଟ ଥାଇ ଲୋକପାଳନ ଓ ଧର୍ମାନୁଷ୍ଠାନରେ ନିଯୁକ୍ତ, ସେହି ସମୟରେ ଓଡ଼ିଶାର ଓ ମଧ୍ୟପ୍ରଦେଶର ନାନାସ୍ଥାନେ, ଏକ ଏକ କରି ବହୁ ସତୀଙ୍କର ସହମରଣ ଅନୁଷ୍ଠାନ ସଂପନ୍ନ ହେଉଥିଲା । ରାଜଧାନୀର ଅନତିଦୂରରେ ପ୍ରତିଷ୍ଠିତ ପ୍ରଭୁ ଜଗନ୍ନାଥଙ୍କ ସେବାକଳ୍ପେ ସମର୍ପିତଚିତ୍ତ ରାଜା ପ୍ରତାପରୁଦ୍ରଦେବଙ୍କ ଲୋକାନ୍ତର ଗମନ ଫଳରେ, ତଦୀୟ ପତ୍ନୀ ରାଣୀ ଚନ୍ଦ୍ରକୁମାରୀ ଦେବୀ ରାଜାଙ୍କର ଅନୁଗମନ କରନ୍ତି । ବାମଣ୍ଡାର ପ୍ରଜାସାଧାରଣ ସମକ୍ଷରେ ରାଣୀ ଚନ୍ଦ୍ରକୁମାରୀଙ୍କର ସତୀକୀର୍ତ୍ତି ପୁଣ୍ୟଶ୍ଳୋକରେ ପରିଣତ ହୋଇଅଛି । ପୁରାତନ ଦେବଗଡ଼ (ପୁରୁଣାଗଡ଼)ର ଅନତି ଦୂରରେ ପ୍ରବାହିତ ସ୍ରୋତସ୍ୱିନୀତୀରେ ଯେଉଁ ସ୍ଥାନରେ ଏହି ସତୀଦାହ ଅନୁଷ୍ଠାନ ସଂପନ୍ନ ହୋଇଥିଲା । ସେହି ଦଂପତ୍ତି-ଶ୍ମଶାନରେ ସତୀଙ୍କର ସ୍ମୃତିରକ୍ଷା କଳ୍ପେ ଯେଉଁ ସମାଧି ମନ୍ଦିର ନିର୍ମିତ ହୋଇଥିଲା, ଆଜିସୁଦ୍ଧା ସେହି ସମାଧି ଛିଡ଼ାହୋଇ ରାଣୀ ଚନ୍ଦ୍ରକୁମାରୀ ଦେବୀଙ୍କର ପତିଭକ୍ତିର ଅସାମାନ୍ୟ ନିଦର୍ଶନର ପ୍ରମାଣ ପ୍ରଦାନ କରୁଅଛି । ସେହି ସ୍ଥାନର ନଦୀତଟରେ ଯେଉଁ ଘାଟ ରହିଛି, ତାହା 'ସତୀଘାଟ' ନାମରେ ଅଭିହିତ ହୋଇ ରାଣୀଙ୍କର ସ୍ମୃତି ଜାଗ୍ରତ ରଖିଅଛି ।

ପୂର୍ବ ଶତ୍ରୁତା ନିବନ୍ଧନ ରେଢ଼ାଖୋଲର ଜଣେ ଗୁପ୍ତରେ ଗୋପନରେ ବାମଣ୍ଡା ଆସି ଏହି ଧାର୍ମିକ ଦମ୍ପତ୍ତିଙ୍କ ପୁତ୍ର ରାଜା ସର୍ବେଶ୍ୱର ଦେବଙ୍କୁ ନିହତ କରିଥିଲା । ଯେଉଁଠାରେ



Digitized by srujanika@gmail.com

ତାଙ୍କୁ ହତ୍ୟା କରାଯାଇଥିଲା, ସେହି ସ୍ଥାନ ଚିହ୍ନିତ ହୋଇ ଅଦ୍ୟାପି ରହିଅଛି । ଏହାଙ୍କ ପତ୍ନୀ ମଧ୍ୟ ଦୁର୍ଗର ଅନତିଦୂରସ୍ଥ 'କୋରାଡ଼କୋଟ' ନାମକ ସ୍ଥାନରେ ଜ୍ୱଳନ୍ତ ଚିତାରୋହଣ କରିଥିଲେ । ଏହି ସ୍ଥାନ ମଧ୍ୟ 'ସତୀକୁଣ୍ଡ' ନାମରେ ଚିହ୍ନିତ ହୋଇ ରହିଅଛି ।

ରାଜା ସର୍ବେଶ୍ୱରଙ୍କ ଅକାଳ ମୃତ୍ୟୁ ଫଳରେ ତଦୀୟ ପୁତ୍ର ରାଜା ଅର୍ଜୁନ ଦେବ ଏବଂ ତାହାଙ୍କ ପରେ ତାଙ୍କର ପୁତ୍ର ବାଲୁଙ୍କା ବୃଷଭ ଦେବ କ୍ରମାନ୍ୱୟରେ ରାଜସିଂହାସନ ଅଧିରୋହଣ କରନ୍ତି । ଏହି ରାଜାଙ୍କର ଛଅ ପୁତ୍ର ଥିଲେ । ଖଗେଶ୍ୱର, ବ୍ରଜସୁନ୍ଦର, ହରିହର, ଦେବ ଦୁର୍ଲ୍ଲଭ, ନନ୍ଦକିଶୋର ଏବଂ ଗୋବିନ୍ଦରାୟ । ଏମାନଙ୍କ ମଧ୍ୟରୁ ଜ୍ୟେଷ୍ଠପୁତ୍ର ଖଗେଶ୍ୱର ରାଜା ହୋଇ ମାତ୍ର ୧୮ ଦିନ ରାଜତ୍ୱ କରି ସମ୍ବଲପୁରଠାରେ ଲୋକଲୀଳା ସମ୍ବରଣ କରନ୍ତି । ତାହାଙ୍କର ଅପୁତ୍ରିକ ଅବସ୍ଥାରେ ଅକାଳ ମୃତ୍ୟୁଫଳରେ ତଦୀୟ ମଧ୍ୟମ ଭ୍ରାତା ବ୍ରଜସୁନ୍ଦର ଦେବ ରାଜସିଂହାସନ ଅଧିକାର ଓ ଅଧିରୋହଣ କରନ୍ତି । କୁମାର ବ୍ରଜସୁନ୍ଦର ରାଜସିଂହାସନ ଆରୋହଣ କରିବା ଫଳରେ ତୃତୀୟ କୁମାର ହରିହର ଦେବ ବଡ଼ କୁମାର ଆଖ୍ୟା ପ୍ରାପ୍ତ ହୁଅନ୍ତି । *(୨)*

ରାଜା ବ୍ରଜସୁନ୍ଦର ଦେବଙ୍କର ରାଜତ୍ୱକାଳ ସର୍ବଦା ନିର୍ବିଘ୍ନରେ ଅତିବାହିତ ହୋଇନାହିଁ । ରାଜା ବ୍ରଜସୁନ୍ଦର ଊନବିଂଶ ଶତାବ୍ଦୀର ମଧ୍ୟ ଯୁଗରେ ବାମଣ୍ଡା ସିଂହାସନରେ ଉପବିଷ୍ଟ ଥାଇ ରାଜକାର୍ଯ୍ୟ ପରିଚାଳନା କରିଥିଲେ, ସୁତରାଂ ତାଙ୍କ ସମୟରେ ବଙ୍ଗ-ବିହାର ଓ ଓଡ଼ିଶା ସମ୍ୟକ୍‌ରୂପେ ସୁଶାସନର ଅଧୀନ ହୋଇଥିଲେ ମଧ୍ୟ ଦକ୍ଷିଣ-ପଶ୍ଚିମାଞ୍ଚଳରେ ହୋଇନାହିଁ । ଏହି ଅଞ୍ଚଳରେ ସର୍ବଦା ବିଦ୍ରୋହର ବହ୍ନି ଜଳି ଉଠୁଥିଲା ଏବଂ ତାହା ନିର୍ବାପନ କରିବା ପାଇଁ ଇଷ୍ଟ ଇଣ୍ଡିଆ କଂପାନୀର ତଦାନୀନ୍ତନ କର୍ମଚାରୀଗଣଙ୍କୁ ଅତ୍ୟଧିକ କ୍ଳେଶ ଭୋଗ ।

ରାଜା ବ୍ରଜସୁନ୍ଦର ତ୍ରିଭୁବନଙ୍କ ରାଜତ୍ୱ କାଳରେ ଓଡ଼ିଶା ଅନ୍ତର୍ଗତ 'ଅନୁଗୁଳ'ରେ ବିପ୍ଳବର ବହ୍ନି ଜଳି ଉଠିଥିଲା, ସେହି ବିଦ୍ରୋହ ଦମନରେ ରାଜା ବ୍ରଜସୁନ୍ଦର ଅଗ୍ରସର ହୋଇ ସରକାର ପକ୍ଷରେ ବିଶେଷ ସାହାଯ୍ୟ କରିଥିଲେ । ସେହି ଯୁଦ୍ଧଜୟରେ ସରକାର ପକ୍ଷ ବାମଣ୍ଡାର ରାଜ ସାହଚର୍ଯ୍ୟ ଲାଭ ଫଳରେ କୃତଜ୍ଞତାର ନିଦର୍ଶନ ରୂପେ ବାମଣ୍ଡାର ରାଜାଙ୍କୁ ଏକ ପିତଳର କମାଣ ଏବଂ ଏକ ହସ୍ତୀ ଉପଢ଼ୌକନ ସହ 'ରାଜା ବାହାଦୁର' ଉପାଧି ଦାନ କରିଥିଲେ । ସେହି ସୁବୃହତ୍ ତୋପ ବର୍ତ୍ତମାନ ସୁଦ୍ଧା ବାମଣ୍ଡାର ସେହି ଗୌରବ ସ୍ମୃତି ବକ୍ଷରେ ଧାରଣ କରି ରାଜଧାନୀରେ ବିରାଜ କରିଅଛି ।

ଏହାପରେ ପୁଣିଥରେ ସମ୍ବଲପୁର ରାଜଗାଦି ବଳପୂର୍ବକ ଅଧିକାର କରିବାର ମାନସରେ ସୁନ୍ଦର ସାଏ (ସୁରେନ୍ଦ୍ର ସାଏ) ଯୁଦ୍ଧ ଘୋଷଣା କରି ସମ୍ବଲପୁର ଆକ୍ରମଣ କରନ୍ତି । ରାଜା ବାହାଦୁର ବ୍ରଜସୁନ୍ଦର ତ୍ରିଭୂବନ ଦେବ ସମ୍ବଲପୁରର ରାଜସମ୍ମାନ ରକ୍ଷା



Digitized by srujanika@gmail.com

ହେତୁ ଅଗ୍ରସର ହୁଅନ୍ତି । ସୁନ୍ଦର ସାଏଂ, ବ୍ରଜସୁନ୍ଦରଙ୍କୁ ସ୍ୱଶିବିରକୁ ଅଣାଇ ଅଟକ ରଖିଥିଲେ । କମ୍ପାନୀ ବାହାଦୁର ଏହି ସଂବାଦ ଅବଗତ ହୋଇ ସୁନ୍ଦର ସାଏଙ୍କ ବିରୁଦ୍ଧରେ ସୈନ୍ୟ ପ୍ରେରଣ କରନ୍ତି । ସୈନ୍ୟପ୍ରେରଣ ସଂବାଦ ପାଇ ସୁନ୍ଦର ସାଏ ଆତ୍ମଗୋପନ କରିବା ଫଳରେ ତ୍ରିଭୁବନ ଦେବ ନିଜ ଶିବିରକୁ ପ୍ରତ୍ୟାବର୍ତ୍ତନ କରନ୍ତି ।

ରାଜା ବ୍ରଜସୁନ୍ଦର ତ୍ରିଭୁବନ୍ ଦେବଙ୍କ ଶାସନ କାଳରେ କେତେଜଣ ଦୃଷ୍ଟଲୋକ ମିଳିତ ହୋଇ ରାଜାଙ୍କ ବିରୁଦ୍ଧରେ ଚକ୍ରାନ୍ତ ଓ ବିଦ୍ରୋହ ରଚନା କରିଥିଲେ, କିନ୍ତୁ ରାଜା ନିଜ ଭୁଜବଳେ ଓ ବୁଦ୍ଧି କୌଶଳରେ ସେହି ଚକ୍ରାନ୍ତ ବ୍ୟୂହ ଭେଦ କରି ସେହି ସମସ୍ତ ଦସ୍ୟୁଙ୍କୁ ଶାସନରେ ସକ୍ଷମ ହୋଇଥିଲେ ।

ରାଜା ବ୍ରଜସୁନ୍ଦର ତ୍ରିଭୁବନ ଦେବ, ରାଜା ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଜଗନ୍ନାଥ ମନ୍ଦିର ଓ ମହାପ୍ରଭୁଙ୍କ ଦେବମୂର୍ତ୍ତିର ସଂସ୍କାର ଓ ଉନ୍ନତି ସାଧନ କରାନ୍ତି । ଏହାଙ୍କ ସମୟରେ ନାନା ସ୍ଥାନରେ ଅନେକ ଦେବା-ଦେବୀ ମନ୍ଦିର ପ୍ରତିଷ୍ଠା କରାଯାଏ । ଏହି ରାଜା ଗଙ୍ଗବଂଶର ପୂର୍ବ-ସ୍ମୃତି-ଜଡ଼ିତ ସହାଦ୍ରି ଶିଖରରେ 'ଗୋକର୍ଣ୍ଣେଶ୍ୱର' ମନ୍ଦିର ନିର୍ମାଣ ଏବଂ ତହିଁରେ ଗୋକର୍ଣ୍ଣେଶ୍ୱରଙ୍କ ଦେବମୂର୍ତ୍ତି ପ୍ରତିଷ୍ଠା କରାଇ ପୂର୍ବସ୍ମୃତିର ଗୌରବବୃଦ୍ଧି କରାଇଛନ୍ତି । ଏହି ଦେବାଳୟର ପ୍ରତିଷ୍ଠାସ୍ଥାନ ଦେବଗଡ଼ର ପ୍ରାନ୍ତ ପ୍ରଦେଶରେ 'ବ୍ରଜବିହାରୀପୁର' ନାମରେ ବିଦିତ । ପୁରାତନ ଗଡ଼ର 'ପାପହରଣ' ନାମକ କୁଣ୍ଡ ଓ 'ପ୍ରଧାନପାଟ' ର ଗିରି ଗୋବର୍ଦ୍ଧନଙ୍କ ମନ୍ଦିର ମଧ୍ୟ ରାଜା ତ୍ରିଭୁବନଦେବଙ୍କ ଦେବଭକ୍ତି ଓ ଧର୍ମରେ ଗଭୀର ନିଷ୍ଠାର ସାକ୍ଷ୍ୟଦାନ କରୁଅଛି ।

ରାଜା ବ୍ରଜସୁନ୍ଦର ତ୍ରିଭୁବନଦେବଙ୍କ ରାଜତ୍ୱକାଳରେ ବାମଣ୍ଡାର ବିବିଧ ଉନ୍ନତିର ସୂତ୍ରପାତ ହେବା ଆରମ୍ଭ ହୁଏ । ରାଜା ବ୍ରଜସୁନ୍ଦର ନୂତନ ପଦ୍ଧତି ଅନୁସାରେ ଶତବିଧ ସତ୍‌ଅନୁଷ୍ଠାନ ସଂପାଦନର ସୁଯୋଗ ପାଇ ନାହାନ୍ତି, ତାହାଙ୍କ ସମୟରେ ଯାହା ସମ୍ଭବ ଥିଲା, ସେହିପରି ଅନୁଷ୍ଠାନରେ ପ୍ରାଣପାତ କରି ନିଯୁକ୍ତ ଥିଲେ । ସେ ବାମଣ୍ଡାର ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠା କରି ଯାଇଛନ୍ତି । ଏହିପରି ଭାବରେ ରାଜା ବ୍ରଜସୁନ୍ଦର ତ୍ରିଭୁବନଦେବ ୧୮୬୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସୁଖ ଓ ସ୍ୱାଚ୍ଛନ୍ଦ୍ୟରେ ରାଜତ୍ୱ କରି ସ୍ୱର୍ଗାରୋହଣ କରିଅଛନ୍ତି ।

ରାଜା ବାହାଦୁର ବ୍ରଜସୁନ୍ଦର ତ୍ରିଭୁବନଦେବଙ୍କ ରାଜକାର୍ଯ୍ୟ ପରିଚାଳନାରେ ଏବଂ ନାନା ଘଟଣାରେ ଇଂରେଜ ସରକାର ତାଙ୍କର ସହାୟତା ଲାଭ କରି ୧୮୬୭ ଖ୍ରୀଷ୍ଟାବ୍ଦର ପ୍ରଦତ୍ତ ନୂତନ ସନନ୍ଦରେ ରାଜାଙ୍କୁ ଏବଂ ତାଙ୍କର ଉତ୍ତରାଧିକାରୀ ଗଣଙ୍କୁ କିଛି କିଛି ନୂତନ ଅଧିକାର ପ୍ରଦାନ ପୂର୍ବକ ପୂର୍ବ-ସମ୍ବନ୍ଧ ଦୃଢ଼ତର କରି ଫ୍ୟୁଡ଼େଟରୀ ରାଜା ବୋଲି ସ୍ୱୀକାର କରିଅଛନ୍ତି ।



Digitized by srujanika@gmail.com

ରାଜା ବାହାଦୁରଙ୍କର ଲୋକାନ୍ତର ଗମନର ପୂର୍ବେ ତାଙ୍କର ନିର୍ବାଚିତ ଉତ୍ତରାଧିକାରୀଙ୍କୁ ଯେପରି ନିଷ୍ଠା ସହକାରେ ସୁଶିକ୍ଷାଦାନ କରିଥିଲେ, ସେହି ବିବରଣୀ ଏବଂ ତାଙ୍କର ଅପଘାତ ଓ ଅକାଳ ମୃତ୍ୟୁ ପରବର୍ତ୍ତୀ ଅଧ୍ୟାୟରେ ବିବୃତ କରାଯାଉଅଛି । ସେ ଯେତେବେଳେ ଲୋକାନ୍ତର ଗମନ କରନ୍ତି, ସେହି ସମୟରେ ବାମଣ୍ଡା ପ୍ରତିଷ୍ଠାର ପଥରେ ବିଶେଷ ଅଗ୍ରସର ହୋଇନାହିଁ । ସେ କେବଳ କୌଣସି କୌଣସି ବିଷୟରେ ପ୍ରତିଷ୍ଠାର ସୂତ୍ରପାତ କରାଇଥିଲେ ଏବଂ ସେହିସବୁ ଆୟୋଜନରେ ପ୍ରତିଷ୍ଠାଲାଭ ସହଜଲାଭ ହେବ । ସେ ତାହାର ଦୃଢ଼ ଭିତ୍ତି ସ୍ଥାପନ କରି ଯାଇଥିଲେ । ତାହାଙ୍କ ନିର୍ବାଚିତ କୁମାର ବାସୁଦେବଙ୍କ ସର୍ବାଙ୍ଗୀନ ଉନ୍ନତି ସାଧନ ବିଷୟରେ ଏକାନ୍ତ ଯତ୍ନ ହିଁ ସେହି ଦୃଢ଼ ଭିତ୍ତିର ଉପାଦାନ ରୂପେ ପରିଗୃହୀତ । ଅସଂଖ୍ୟ ପର୍ବତ ଓ ଅରଣ୍ୟାନି ପରିବେଷ୍ଟିତ ବାମଣ୍ଡାର ପ୍ରଜାସାଧାରଣଙ୍କ ବିଭିନ୍ନ ଉନ୍ନତି ସାଧନରେ ସମସ୍ତ ସଦୁପାୟ ସେ ପର୍ଯ୍ୟନ୍ତ ତଥାପି ଉଦ୍‌ଭାବିତ ଓ ଅବଲମ୍ବିତ ହୋଇନାହିଁ । ପ୍ରଜା ସାଧାରଣଙ୍କ ମଧ୍ୟରେ ଶିକ୍ଷାର ସୁପ୍ରଚାର ସାଧନ ଅବଶ୍ୟ କର୍ତ୍ତବ୍ୟ ବୋଲି ତଥାପି ରାଜବୁଦ୍ଧିରେ ସ୍ଥାନ ଲାଭ କରିନାହିଁ । ଲେଖିତ ଓ କଥିତ ଭାଷାର ଉନ୍ନତି ସାଧନ ନିମନ୍ତେ କୌଣସିପ୍ରକାର ଉପାୟ ଅବଲମ୍ବନର ପ୍ରୟୋଜନ ବୋଧ ହୋଇନାହିଁ । ବାମଣ୍ଡାର ସମତଳ ଭୂଭାଗର ସମଗ୍ରଭାଗ ଶସ୍ୟକ୍ଷେତ୍ରରେ ପରିଣତ କରାଇବା ଓ ତଦ୍ଦ୍ୱାରା ରାଜ୍ୟର ଆର୍ଥିକ ଉନ୍ନତି ଓ ଲୋକ-ସାଧାରଣଙ୍କ ଅଭାବ ଦୂରୀକରଣର ଉପାୟମାନ ଉଦ୍‌ଭାବିତ ହୋଇନାହିଁ । ପ୍ରଜାଙ୍କ ସ୍ୱାସ୍ଥ୍ୟ ରକ୍ଷାପାଇଁ ଅସଂଖ୍ୟ ଜଳାଶୟ, ଗମନ ଓ ଯାତାୟତର ସୁବିଧା ପାଇଁ ରାଜପଥ ନିର୍ମାଣର ପ୍ରୟୋଜନ ଜ୍ଞାନର ଉଦୟ ହୋଇନାହିଁ । କାରାବଦ୍ଧ ବନ୍ଦୀମାନଙ୍କର ସ୍ୱାସ୍ଥ୍ୟ ରକ୍ଷାର ବ୍ୟବସ୍ଥା ଓ ଅର୍ଥକାରୀ ବିବିଧ ଶିଳ୍ପଶିକ୍ଷାର ସୂଚନା ମଧ୍ୟ ହୋଇନାହିଁ ।

ଏହି ସମସ୍ତ ସଦନୁଷ୍ଠାନର ସୂତ୍ରପାତ ହେତୁ ତଦୀୟ ନିର୍ବାଚିତ କୁମାରଦେବଙ୍କୁ ସତେଯେପରି ବାମଣ୍ଡା ଅପେକ୍ଷା କରି ରହିଥିଲା । ତେଣୁ କହିବାକୁ ବାଧ୍ୟ ହେଉଅଛି ବାସୁଦେବଙ୍କ ଶତବିଧ ସତ୍ ଅନୁଷ୍ଠାନ ଦ୍ୱାରା ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ ତାଙ୍କର ରାଜପରିବାରରେ ଜନ୍ମ ଗ୍ରହଣର ଫଳ ବାମଣ୍ଡାର ପାର୍ଶ୍ୱବର୍ତ୍ତୀ ରାଜାମାନେ ଧନସମ୍ପଦରେ ତାଙ୍କ ଅପେକ୍ଷା ପୁଷ୍ଟ ହୋଇମଧ୍ୟ ସ୍ୱ ସ୍ୱ ରାଜ୍ୟରେ ପ୍ରୟୋଜନୋପଯୋଗୀ ବିବିଧ ଉନ୍ନତି ସାଧନରେ ସକ୍ଷମ ହୋଇପାରିଥାନ୍ତି, କିନ୍ତୁ ସେହିପରି ହୋଇନାହାନ୍ତି । ରାଜପରିବାରରେ ଜନ୍ମ ଗ୍ରହଣ କରି ରାଜସିଂହାସନରେ ଉପବେଶନ ପାଇଁ ରାଜ୍ୟର ବିବିଧ ଉନ୍ନତି ସାଧନ ସଂଭବପର ହେଲେ, ବର୍ଷ ପରେ ବର୍ଷ ମଧ୍ୟପ୍ରଦେଶର ଛତିଶଗଡ଼ ରାଜ୍ୟର ପଲିଟିକାଲ୍ ଏଜେଣ୍ଟ ବାହାଦୁରଙ୍କ ଶାସନ ବିବରଣୀ ବିଶେଷ ଭାବରେ ବାମଣ୍ଡାର ଶ୍ରୀବୃଦ୍ଧି ସାଧନ



Digitized by srujanika@gmail.com

ସଂବାଦରେ ପୂର୍ଣ୍ଣ ହୋଇନଥାନ୍ତା । ତେଣୁ କହୁଅଛି, ରାଜା ସାର୍ ବାସୁଦେବ ସୁଢ଼ଳଦେବ, ଅର୍ଜିତ ଜ୍ଞାନବଳେ ଓ ବୁଦ୍ଧିକୌଶଳରେ ପ୍ରାପ୍ତ ସିଂହାସନର ମର୍ଯ୍ୟାଦା ସହସ୍ର ଗୁଣରେ ବର୍ଦ୍ଧିତ କରାଇ ରାଜଶକ୍ତି ସଂପନ୍ନ ଉଚ୍ଚ ଓ ଉଦାର ମାନବ ସନ୍ତାନର ଜୀବନାଦର୍ଶ ରଖି ଯାଇଛନ୍ତି । ସେହି ଆଦର୍ଶ ଆମ୍ଭ ଦେଶରେ କାହିଁକି, ସମଗ୍ର ମାନବ ସଂସାରରେ ସର୍ବତ୍ର ହିଁ ବିରଳ ବୋଲି ମନେହୁଏ । ରାଜା ବ୍ରଜସୁନ୍ଦର ବାହାଦୁରଙ୍କର ଉତ୍ତରାଧିକାରୀ ନିର୍ବାଚନର ଅନ୍ତରାଳରେ, ସେହି ରାଜକୁମାରଙ୍କୁ ନିଜର ଅଭିପ୍ରାୟ ମୁତାବକ ସୁଶିକ୍ଷା ଦାନର ପଶ୍ଚାତରେ ରାଜା ବ୍ରଜସୁନ୍ଦର ଦେବଙ୍କର ଅସାମାନ୍ୟ କୃତିତ୍ୱର ପରିଚୟ ପ୍ରଦାନ କରିଥାଏ ।

ଓଡ଼ିଶା ଏବଂ ଛତିଶଗଡ଼ର ସଂକ୍ଷିପ୍ତ ବିବରଣୀ ସହ ବାମଣ୍ଡା ରାଜ୍ୟର ଅପେକ୍ଷାକୃତ ବିସ୍ତୃତ ଇତିହାସ ପ୍ରଦତ୍ତ ହେଲା । ଇତିହାସ ହିସାବରେ ଏହା ଯଥେଷ୍ଟ ନ ହେଲେ ମଧ୍ୟ, ଯେଉଁ ମହାତ୍ମାଙ୍କର ଜୀବନୀ ଲିପିବଦ୍ଧ ହେଉଅଛି, ତାହାଙ୍କର ଅସାମାନ୍ୟ ବଂଶ ମର୍ଯ୍ୟାଦା ଓ ବିଶାଳ କର୍ମ କ୍ଷେତ୍ରର ରାଷ୍ଟ୍ରୀୟ ଓ ସାମାଜିକ ଅବସ୍ଥାର ଆଭାସ ଦେବା ପାଇଁ-ତାହାଙ୍କ ଜୀବନ ନାଟ୍ୟର ରଙ୍ଗଭୂମିର ପ୍ରକୃତ ଅବସ୍ଥା ପ୍ରଦର୍ଶନ ହେତୁ ଏହି ସଂକ୍ଷିପ୍ତ ଐତିହାସିକ ବିବରଣୀ ପ୍ରଦାନର ପ୍ରୟୋଜନ ।

ଓଡ଼ିଶା ଓ ମଧ୍ୟପ୍ରଦେଶର ନାନାସ୍ଥଳେ, ବାମଣ୍ଡାକୁ 'ଅଖୋଜ ବାମଣ୍ଡା' ବୋଲି ପ୍ରବାଦ ପ୍ରଚଳିତ ରହିଛି । ଅର୍ଥାତ୍ ଯେଉଁ ଦିଗରୁ ଯାଅ ନା କାହିଁକି, ସହଜରେ ବାମଣ୍ଡାର ସଂଧାନ ପାଇବ ନାହିଁ । ସେହିକଥା ସତ୍ୟ ବୋଲି ମନେହୁଏ । ବିନ୍ଧ୍ୟାଞ୍ଚଳ ପର୍ବତମାଳାର ଯେଉଁ ଅଂଶ ପୂର୍ବଦିଗରେ ପ୍ରସାରିତ ହେଉ ହେଉ, ଓଡ଼ିଶାର ମଧ୍ୟଦେଇ ସାଗରତୀରେ ଓ ସମୁଦ୍ରଗର୍ଭରେ ସ୍ଥାନଲାଭ କରିଅଛି, ସେହି ଅବିଚ୍ଛିନ୍ନ ପର୍ବତଶ୍ରେଣୀ ମଧ୍ୟରେ ଚାରିଦିଗରେ କରଦରାଜ୍ୟ ପରିବେଷ୍ଟିତ ହୋଇ ବାମଣ୍ଡା ରାଜ୍ୟ ଲୁକ୍କାୟିତ । ଏହାର ଉତ୍ତରରେ ବଣାଇଁ ଓ ଗାଙ୍ଗପୁର ରାଜ୍ୟ, ଦକ୍ଷିଣରେ ରେଢ଼ାଖୋଲ, ପୂର୍ବଦିଗରେ ତାଳଚେର ଓ ପାଲ୍ଲହଡ଼ା ରାଜ୍ୟ ଏବଂ ପଶ୍ଚିମ ଦିଗରେ ବ୍ରିଟିଶ ଶାସିତ ସମ୍ବଲପୁର । ଏହି ସମ୍ବଲପୁର ମଧ୍ୟ ପୂର୍ବେ କରଦରାଜ୍ୟ ଥିଲା । ସେଠାରେ ଇଂରେଜ ରାଜ୍ୟ ପ୍ରତିଷ୍ଠିତ ହେବା ପୂର୍ବେ ଓ ପରେ, ସ୍ଥଳପଥରେ ବାମଣ୍ଡାକୁ ଯାତାୟତ ପାଇଁ ସମ୍ବଲପୁର ପଥ ହିଁ ଏକମାତ୍ର ପଥ ଥିଲା । ବର୍ତ୍ତମାନ ମଧ୍ୟ ସେହିପଥ ରହିଥିଲେ ମଧ୍ୟ, ନୂତନ ରେଳପଥ ବାମଣ୍ଡାରାଜ୍ୟର ପଶ୍ଚିମୋତ୍ତର ପ୍ରାନ୍ତ ଭାଗ ସ୍ପର୍ଶ କରି ଯିବା ଫଳରେ ନାନା ସ୍ଥାନରେ ଯାତାୟତ ପାଇଁ ଦେବଗଡ଼ (ବାମଣ୍ଡାର ରାଜଧାନୀ)ଠାରୁ ବାମଣ୍ଡା ରେଳୱେ ଷ୍ଟେସନକୁ ଯାତାୟତ ପାଇଁ ପ୍ରାୟ ୬୦ମାଇଲ୍ ନୂତନ ରାଜପଥ ପ୍ରସ୍ତୁତ ହୋଇଅଛି ।



Digitized by srujanika@gmail.com

ସଂବାଦରେ ପୂର୍ଣ୍ଣ ହୋଇନଥାନ୍ତା । ତେଣୁ କହୁଅଛି, ରାଜା ସାର୍ ବାସୁଦେବ ସୁଢ଼ଳଦେବ, ଅର୍ଜ୍ଜିତ ଜ୍ଞାନବଳେ ଓ ବୁଦ୍ଧିକୌଶଳରେ ପ୍ରାପ୍ତ ସିଂହାସନର ମର୍ଯ୍ୟାଦା ସହସ୍ର ଗୁଣରେ ବର୍ଦ୍ଧିତ କରାଇ ରାଜଶକ୍ତି ସଂପନ୍ନ ଉଚ୍ଚ ଓ ଉଦାର ମାନବ ସନ୍ତାନର ଜୀବନାଦର୍ଶ ରଖି ଯାଇଛନ୍ତି । ସେହି ଆଦର୍ଶ ଆମ୍ଭ ଦେଶରେ କାହିଁକି, ସମଗ୍ର ମାନବ ସଂସାରରେ ସର୍ବତ୍ର ହିଁ ବିରଳ ବୋଲି ମନେହୁଏ । ରାଜା ବ୍ରଜସୁନ୍ଦର ବାହାଦୁରଙ୍କର ଉତ୍ତରାଧିକାରୀ ନିର୍ବାଚନର ଅନ୍ତରାଳରେ, ସେହି ରାଜକୁମାରଙ୍କୁ ନିଜର ଅଭିପ୍ରାୟ ମୁତାବକ ସୁଶିକ୍ଷା ଦାନର ପଶ୍ଚାତରେ ରାଜା ବ୍ରଜସୁନ୍ଦର ଦେବଙ୍କର ଅସାମାନ୍ୟ କୃତିତ୍ୱର ପରିଚୟ ପ୍ରଦାନ କରିଥାଏ ।

ଓଡ଼ିଶା ଏବଂ ଛତିଶଗଡ଼ର ସଂକ୍ଷିପ୍ତ ବିବରଣୀ ସହ ବାମଣ୍ଡା ରାଜ୍ୟର ଅପେକ୍ଷାକୃତ ବିସ୍ତୃତ ଇତିହାସ ପ୍ରଦତ୍ତ ହେଲା । ଇତିହାସ ହିସାବରେ ଏହା ଯଥେଷ୍ଟ ନ ହେଲେ ମଧ୍ୟ, ଯେଉଁ ମହାତ୍ମାଙ୍କର ଜୀବନୀ ଲିପିବଦ୍ଧ ହେଉଅଛି, ତାହାଙ୍କର ଅସାମାନ୍ୟ ବଂଶ ମର୍ଯ୍ୟାଦା ଓ ବିଶାଳ କର୍ମ କ୍ଷେତ୍ରର ରାଷ୍ଟ୍ରୀୟ ଓ ସାମାଜିକ ଅବସ୍ଥାର ଆଭାସ ଦେବା ପାଇଁ-ତାହାଙ୍କ ଜୀବନ ନାଟ୍ୟର ରଙ୍ଗଭୂମିର ପ୍ରକୃତ ଅବସ୍ଥା ପ୍ରଦର୍ଶନ ହେତୁ ଏହି ସଂକ୍ଷିପ୍ତ ଐତିହାସିକ ବିବରଣୀ ପ୍ରଦାନର ପ୍ରୟୋଜନ ।

ଓଡ଼ିଶା ଓ ମଧ୍ୟପ୍ରଦେଶର ନାନାସ୍ଥଳେ, ବାମଣ୍ଡାକୁ 'ଅଖୋଜ ବାମଣ୍ଡା' ବୋଲି ପ୍ରବାଦ ପ୍ରଚଳିତ ରହିଛି । ଅର୍ଥାତ୍ ଯେଉଁ ଦିଗରୁ ଯାଅ ନା କାହିଁକି, ସହଜରେ ବାମଣ୍ଡାର ସଂଧାନ ପାଇବ ନାହିଁ । ସେହିକଥା ସତ୍ୟ ବୋଲି ମନେହୁଏ । ବିନ୍ଧ୍ୟାଞ୍ଚଳ ପର୍ବତମାଳାର ଯେଉଁ ଅଂଶ ପୂର୍ବଦିଗରେ ପ୍ରସାରିତ ହେଉ ହେଉ, ଓଡ଼ିଶାର ମଧ୍ୟଦେଇ ସାଗରତୀରେ ଓ ସମୁଦ୍ରଗର୍ଭରେ ସ୍ଥାନଲାଭ କରିଅଛି, ସେହି ଅବିଚ୍ଛିନ୍ନ ପର୍ବତଶ୍ରେଣୀ ମଧ୍ୟରେ ଚାରିଦିଗରେ କରଦରାଜ୍ୟ ପରିବେଷ୍ଟିତ ହୋଇ ବାମଣ୍ଡା ରାଜ୍ୟ ଲୁକ୍କାୟିତ । ଏହାର ଉତ୍ତରରେ ବଣାଇଁ ଓ ଗାଙ୍ଗପୁର ରାଜ୍ୟ, ଦକ୍ଷିଣରେ ରେଢ଼ାଖୋଲ, ପୂର୍ବଦିଗରେ ତାଳଚେର ଓ ପାଲ୍ଲହଡ଼ା ରାଜ୍ୟ ଏବଂ ପଶ୍ଚିମ ଦିଗରେ ବ୍ରିଟିଶ ଶାସିତ ସମ୍ବଲପୁର । ଏହି ସମ୍ବଲପୁର ମଧ୍ୟ ପୂର୍ବେ କରଦରାଜ୍ୟ ଥିଲା । ସେଠାରେ ଇଂରେଜ ରାଜ୍ୟ ପ୍ରତିଷ୍ଠିତ ହେବା ପୂର୍ବେ ଓ ପରେ, ସ୍ଥଳପଥରେ ବାମଣ୍ଡାକୁ ଯାତାୟତ ପାଇଁ ସମ୍ବଲପୁର ପଥ ହିଁ ଏକମାତ୍ର ପଥ ଥିଲା । ବର୍ତ୍ତମାନ ମଧ୍ୟ ସେହିପଥ ରହିଥିଲେ ମଧ୍ୟ, ନୂତନ ରେଳପଥ ବାମଣ୍ଡାରାଜ୍ୟର ପଶ୍ଚିମୋତ୍ତର ପ୍ରାନ୍ତ ଭାଗ ସ୍ପର୍ଶ କରି ଯିବା ଫଳରେ ନାନା ସ୍ଥାନରେ ଯାତାୟତ ପାଇଁ ଦେବଗଡ଼ (ବାମଣ୍ଡାର ରାଜଧାନୀ)ଠାରୁ ବାମଣ୍ଡା ରେଳୱେ ଷ୍ଟେସନକୁ ଯାତାୟତ ପାଇଁ ପ୍ରାୟ ୬୦ମାଇଲ୍ ନୂତନ ରାଜପଥ ପ୍ରସ୍ତୁତ ହୋଇଅଛି ।



Digitized by srujanika@gmail.com

ବାମଣ୍ଡାର ପ୍ରାକୃତିକ ଶୋଭା ବିଚିତ୍ର ଓ ସେହି ବିଚିତ୍ରତା ବର୍ଣ୍ଣନାତୀତ । ଆକାଶସ୍ପର୍ଶୀ ପର୍ବତମାଳା ପ୍ରାଚୀର ପରେ ପ୍ରାଚୀର ହୋଇ, ବାମଣ୍ଡାକୁ ଯେପରି ଅଜେୟ ଦୁର୍ଗରେ ପରିଣତ କରି ରଖିଅଛି । ଅଯତ୍ନ ସଂଭୂତ ବିଶାଳ ବନାନୀ ବକ୍ଷରେ ଷଡ଼ବିଧ ବିକଶିତ ପୁଷ୍ପର ଶୋଭା ଓ ସୌରଭରେ ନିତ୍ୟ ନିୟତି ଅଧିଷ୍ଠାତ୍ରୀ ବନଦେବୀଙ୍କର ଅର୍ଚ୍ଚନା କରୁଅଛି । ସେହି ଶୋଭା ଓ ସୌନ୍ଦର୍ଯ୍ୟ ଦର୍ଶନରେ ହୃଦୟ ମନ ଏପରି ଶାନ୍ତି ରସରେ ମଗ୍ନହୁଏ ଯେ, ମନୁଷ୍ୟ ଏହି ମରଣଶୀଳ ସଂସାରର ସକଳ ଶୋକ ଓ ତାପ, ସକଳ ଭାବନା ଚିନ୍ତାର ଆକ୍ରମଣ ଠାରୁ ଅବ୍ୟାହତି ଲାଭ କରେ । ସେହି ବିମଳାନନ୍ଦର ଭୋଗର ଯୋଗ୍ୟ; କିନ୍ତୁ ବର୍ଣ୍ଣନାରେ ତାହାର ରସାସ୍ୱାଦନ ସଂଭବପର ନୁହେଁ । ଲେଖନୀ ଦ୍ୱାରା ଯାହା ବର୍ଣ୍ଣିତ ହୋଇପାରେ, ତାହା ବିବୃତ ହେଉଅଛି ।



---

ପାଦଟୀକା

(୧) ଏହି ସ୍ୱତନ୍ତ୍ର ସମ୍ମାନଜନକ ଉପାଧି ଗ୍ରହଣ ସହିତ ଆଉ ଏକ ଉପାଧି ମଧ୍ୟ ଜଡ଼ିତ ହୋଇଅଛି । ବାମଣ୍ଡାର ରାଜନାମାବଳୀ ମଧ୍ୟରେ ଦେଖାଯାଏ 'ତ୍ରିଭୁବନଦେବ' ଓ 'ସୁଢ଼ଳଦେବ' ଏହି ଉପାଧିଦ୍ୱୟ କ୍ରମାନ୍ୱୟରେ ପରେ ପରେ ବ୍ୟବହୃତ ହୋଇଆସିଅଛି ।

(୨) ପୂର୍ବକାଳରୁ ଏବଂ ବର୍ତ୍ତମାନ ମଧ୍ୟ ରାଜାଙ୍କର ପରବର୍ତ୍ତୀ କନିଷ୍ଠ ସହୋଦର 'ବଡ଼କୁମାର' ଏହି ସମ୍ମାନଜନକ ଉପାଧିରେ ପରିଚିତ ହୋଇ ଆସୁଛନ୍ତି । ଏହା ହିଁ ଏତଦାଞ୍ଚଳର ରାଜସଂସାରମାନଙ୍କର ରୀତି ।



Digitized by srujanika@gmail.com

## ତୃତୀୟ ଅଧ୍ୟାୟ

# ଜନ୍ମ, ବାଲ୍ୟ ଓ ଯୌବନ, ବିଦ୍ୟାଶିକ୍ଷା, ରାଜପଦରେ ଅଭିଷେକ, ପରିଣୟ, ପତ୍ନୀବିୟୋଗ ଓ ବୈରାଗ୍ୟ

ସନ୍ ୧୨୫୮ ସାଲ୍ ବୈଶାଖ ୨୮ ତାରିଖରେ ବାମଣ୍ଡାର ରାଜ ସଂସାରରେ ଏକ ରାଜକୁମାରଙ୍କ ଜନ୍ମ ସଂଘଟନ ହୁଏ । ପୁତ୍ର ସନ୍ତାନ ଲାଭ ହେତୁ, ମାନବ ସଂସାରରେ ସ୍ୱତଃ ଏକ ଆନନ୍ଦର ପ୍ରବାହ ପ୍ରବାହିତ ହୋଇଥାଏ । ରାଜପ୍ରାସାଦଠାରୁ ପର୍ଣ୍ଣକୁଟୀର ପର୍ଯ୍ୟନ୍ତ, ଧନୀକଙ୍କର ହର୍ମ୍ୟପ୍ରାନ୍ତ ଠାରୁ ଦୀନହୀନର ପ୍ରାନ୍ତରବାସ ପର୍ଯ୍ୟନ୍ତ, ସର୍ବତ୍ର ହିଁ ପୁତ୍ରଲାଭରେ ଆନନ୍ଦର ତୀବ୍ର ବିଦ୍ୟୁତ୍ ପ୍ରବାହ ବିଚ୍ଛୁରିତ ହୋଇଥାଏ । ଏହାର ପୁରୁଷାନୁକ୍ରମିକ ସଂସ୍କାରଗତ ଧାରଣା ଏହି ଯେ, ପୁତ୍ ନାମକ ନର୍କରୁ ପୁତ୍ର ହିଁ ଉଦ୍ଧାର କରିଥାଏ ।

ପୁରୁଷପ୍ରଧାନ ମାନବ ସମାଜରେ ପୁରୁଷର ପ୍ରାଧାନ୍ୟ ଚିରଦିନ ସର୍ବତ୍ର ସମଭାବରେ ସ୍ୱୀକୃତ ଓ ଆଦୃତ ହୋଇ ଆସୁଅଛି । କିନ୍ତୁ ଉପରେ ଉକ୍ତ ତାରିଖରେ ବାମଣ୍ଡାର ରାଜଗୃହରେ କୁମାର ବାସୁଦେବଙ୍କର ଜନ୍ମଗ୍ରହଣ ଏକ ସାଧାରଣ ଘଟଣାରୁ ଅଧିକ କିଛି ବୋଲି, ସେହି ସମୟରେ କେହି ମନେ କରିବାର ଅବକାଶ ପାଇ ନାହାଁନ୍ତି । ବାସୁଦେବଙ୍କର ଜନ୍ମକ୍ଷଣ ଲୋକଦୃଷ୍ଟିର ଅନ୍ତରାଳରେ ଥାଇ ତାହାଙ୍କର ଭାବୀ ଜୀବନାଭିନୟର ନାଟ୍ୟଶାଳା ପ୍ରସ୍ତୁତ କରିବାରେ ଲାଗିଲା ।

କୁମାର ବାସୁଦେବଙ୍କ ଜନକ, ବାମଣ୍ଡାରାଜା ବ୍ରଜସୁନ୍ଦର ଦେବଙ୍କ ତୃତୀୟ ଭ୍ରାତା ହରିହର ଦେବ, ବ୍ରଜ ସୁନ୍ଦର ଦେବଙ୍କ ଆହୁରି ତିନିଜଣ ଭ୍ରାତାଥିଲେ । ରାଜା ବ୍ରଜସୁନ୍ଦର ଦେବଙ୍କ ରାଜପଦ ଅଳଙ୍କୃତ କରିବା ପାଇଁ ଉପଯୋଗୀ ପୁତ୍ର ସନ୍ତାନ ନଥିବାରୁ, ତୃତୀୟ ଭ୍ରାତାଙ୍କର ପୁତ୍ର ଏବଂ ରାଜପରିବାରର ଜ୍ୟେଷ୍ଠ କୁମାର ବାସୁଦେବଙ୍କୁ ଭାବୀ ଉତ୍ତରାଧିକାରୀ ବୋଲି ଗ୍ରହଣ କରନ୍ତି । ବାମଣ୍ଡାର ଭାବୀ ପ୍ରତିନିଧି ନିର୍ବାଚନ କାର୍ଯ୍ୟ ସ୍ଥିରୀକୃତ ହେବାପରେ ସେହି ସଂବାଦ ଓ ତତ୍‌ସଂସୃଷ୍ଟ କାଗଜ ପତ୍ର ସମ୍ବଲପୁରସ୍ଥ ପୋଲିଟିକାଲ ଏଜେଣ୍ଟଙ୍କ ନିକଟକୁ ପ୍ରେରିତ ହୁଏ । ସେତେବେଳେ କୁମାର ବାହାଦୁରଙ୍କ (ଟିକାୟତଙ୍କର) *(୧)* ବୟସ ପାଞ୍ଚବର୍ଷ



Digitized by srujanika@gmail.com

ହେବ । ଏହି ସମୟରେ କୁମାରଙ୍କ ହାତରେ ଖଡ଼ି ଛୁଆଁ ହୋଇ ପାଠଶାଳାରେ ଶିକ୍ଷା ଆରମ୍ଭ ହୋଇଥିଲା । ଓଡ଼ିଆ ଭାଷାରେ ଗ୍ରାମ୍ୟ ଶିକ୍ଷା ଯେତେଦୂର ସଂଭବ ତାହା ହେଲା । ପାଠଶାଳାରେ ଅଧ୍ୟୟନ କାଳରେ ଓ ତତ୍ପରେ ମଧ୍ୟ ଅନେକ ସମୟରେ, କୁମାର ବାସୁଦେବ ପିତାଙ୍କ ସହିତ 'ସୁନାମୁଣ୍ଡା' ନାମକ ଉର୍ବରା କ୍ଷେତ୍ରର ଖମାର ଭ୍ରମଣ କରୁଥିଲେ । ଏହି ସମୟରେ ଧାଁ ଦଉଡ଼, ଖେଳାଖେଳି ସନ୍ତରଣ ରାଜ୍ୟର ନାନା ସ୍ଥାନ ଭ୍ରମଣ ଏବଂ ସମୟ ସମୟରେ ସଦଳବଳେ 'ବଣଭୋଜନ' ଇତ୍ୟାଦି ବ୍ୟାପାରରେ ସର୍ବଦା ବ୍ୟସ୍ତ ଓ ବିବ୍ରତ ରହୁଥିଲେ । ମୁହୂର୍ତ୍ତକ ପାଇଁ ଶାନ୍ତ ଭାବରେ ବସିବାର ଅବସର ହେଉ ନଥିଲା ।

କୁମାର ବାସୁଦେବ ସୁସ୍ଥ ଓ ସବଳ, ସ୍ଫୂର୍ତ୍ତି ସଂପନ୍ନ ପ୍ରଫୁଲ୍ଲ ମନ ଓ ଚଞ୍ଚଳ ପ୍ରକୃତିର ବାଳକ ଥିଲେ । ସର୍ବଦା ହିଁ ଅନ୍ୟାନ୍ୟ କୁମାରଗଣ ଏବଂ ସହଚରବୃନ୍ଦଙ୍କ ଦ୍ୱାରା ପରିବେଷ୍ଟିତ ହୋଇ କ୍ରୀଡ଼ାକୌତୁକ ଓ ଆମୋଦ ପ୍ରମୋଦରେ ବାଲ୍ୟ ଜୀବନ ଯାପନ କରନ୍ତି । ଆଠବର୍ଷ ଅତୀତ ହେବାପରେ, ନବମ ବର୍ଷ ବୟସରେ କୁମାରଙ୍କର ଉପନୟନ ସଂସ୍କାର ସଂପନ୍ନ ହୁଏ ।

କୁମାର ବାସୁଦେବଙ୍କର ଉତ୍ତର କାଳରେ ଅସାମାନ୍ୟ ପ୍ରତିଭାର ପରିଚୟ ଦେବେ, ତାହାର ଇଙ୍ଗିତ ତାହାଙ୍କର ବାଲ୍ୟଜୀବନରେ ହିଁ ପରିଲକ୍ଷିତ ହୋଇଥିଲା । କୁମାର ବାସୁଦେବଙ୍କ ପ୍ରତିଭା କେବଳ ଭାରତୀୟ ଅରଣ୍ୟାନୀ ପରିବେଷ୍ଟିତ ପାର୍ବତ୍ୟ ପ୍ରଦେଶର ରାଜପ୍ରତିଭାର ପରିଚୟରେ ପର୍ଯ୍ୟବସିତ ହୋଇନାହିଁ, ସେହି କ୍ଷଣଜନ୍ମା ମହାଶକ୍ତିଶାଳୀ ରାଜପୁରୁଷଙ୍କର ଉତ୍ତର କାଳରେ ଅଭିନୟାବଳୀ ନାନାବିଧ ବୃଦ୍ଧି, କୌଶଳ ପୂର୍ଣ୍ଣ ରାଜନୀତିର ଉଚ୍ଚ ଆଦର୍ଶ ପ୍ରକାଶ କରେ । ଏହି ବାଳକଙ୍କର ରାଜ୍ୟଭାର ଗ୍ରହଣ ସଂଗେ ସଂଗେ ଓଡ଼ିଶା ଓ ମଧ୍ୟପ୍ରଦେଶ ଗଡ଼ଜାତ ମହଲର ରାଜନ୍ୟବର୍ଗଙ୍କ ସମକ୍ଷରେ ରାଜ୍ୟପାଳନର ଯେଉଁ ଅପୂର୍ବ ଦୃଷ୍ଟାନ୍ତ ପ୍ରତିଷ୍ଠିତ ହୋଇଅଛି, ତାହା ଭାରତୀୟ ନୃପତିବୃନ୍ଦଙ୍କର ଅନୁକରଣଯୋଗ୍ୟ ବୋଲି କହିଲେ, ବୋଧହୁଏ ଅତିବାଦ ଦୋଷରେ ଦୃଷ୍ଟହେବାକୁ ପଡ଼ିବ ନାହିଁ । ଏହି ବିବରଣୀମାଳାର ପୂର୍ବ ପରିସ୍ଫୁଟନ ହିଁ ତାହା ଆପେ ଆପେ ପ୍ରମାଣିକୃତ ପରି ପରିଣତ ହେବ ।

ଉପନୟନ ସଂସ୍କାର ସଂଗେ ସଂଗେ କୁମାର ବାସୁଦେବଙ୍କର ସଂସ୍କୃତ ଶିକ୍ଷାର ସୂତ୍ରପାତ ହେଲା । ପଣ୍ଡିତ ଆନନ୍ଦ ବ୍ରହ୍ମା ସର୍ବାଗ୍ରେ ବ୍ୟାକରଣ ଶିକ୍ଷାର ଭାରପ୍ରାପ୍ତ ହୁଅନ୍ତି । ତତ୍ପରେ କ୍ରମେ କ୍ରମେ ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର ଓ ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା କାବ୍ୟ, ନାଟକ, ଅଳଙ୍କାର, ନ୍ୟାୟ, ବେଦ, ବେଦାନ୍ତ ଏବଂ ଭାଗବତ ପ୍ରଭୃତି ପୁରାଣ ଶିକ୍ଷା ଦେବାର ଭାର ଗ୍ରହଣ କରନ୍ତି । ଏମାନଙ୍କର ତତ୍ତ୍ୱାବଧାନରେ କୁମାର ବାସୁଦେବ ଉତ୍ତମରୂପେ ଶିକ୍ଷାଲାଭ କଲେ । ଏହି ଶିକ୍ଷା ଫଳରେ, ପରେ ନିଜର ଯତ୍ନ, ଚେଷ୍ଟା ଫଳରେ ଏବଂ ଗୁରୁମାନଙ୍କର ସାହାଯ୍ୟରେ ମନୁ, ପରାଶର, ଦାୟଭାଗ, ମିତାକ୍ଷରା ଓ



Digitized by srujanika@gmail.com

ଶୁକ୍ରନୀତି ଇତ୍ୟାଦି ଧର୍ମଶାସ୍ତ୍ର, ସମାଜ ନୀତି, ରାଜନୀତି ଓ ରାଜ୍ୟପାଳନ ପଦ୍ଧତି ବିଷୟକ ସକଳ ଗ୍ରନ୍ଥ ପ୍ରବେଶାଧିକାର ଲାଭ କଲେ । ସଂଗେ ସଂଗେ ଅବସର ସମୟରେ ରାଜା ବ୍ରଜସୁନ୍ଦରଙ୍କ ସହିତ ଏକଲୟରେ ରାଜକାର୍ଯ୍ୟ ପରିଚାଳନା ବିଷୟରେ ମଧ୍ୟ ମନଯୋଗ ଦେବା ଆରମ୍ଭ କଲେ । ବାଲ୍ୟକାଳ ଠାରୁ ଆରମ୍ଭ କରି ଜୀବନର ଶେଷ ସମୟ ପର୍ଯ୍ୟନ୍ତ ଏହି ମହାତ୍ମାଙ୍କର ଜୀବନର ଏକ ପ୍ରଧାନ ଗୁଣର ପରିଚୟ ପାଇ ସର୍ବଦା ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲେ । ସେହି ଗୁଣ ତାଙ୍କର ଶିଷ୍ୟ ପ୍ରକୃତିର ନିତ୍ୟ ବର୍ତ୍ତମାନତା । ଉତ୍ତର କାଳରେ ରାଜନୀତି, ଓ ରାଜକାର୍ଯ୍ୟପରି ଚାଳନା କ୍ଷେତ୍ରରେ ଅସାଧାରଣ ବିଦ୍ୟା, ବୁଦ୍ଧି, କର୍ମପଟୁତା, ଭୂୟୋଦର୍ଶନ ଏବଂ ସାଧାରଣ ଜ୍ଞାନର ଭୁରି ଭୁରି ପରିଚୟ ପ୍ରଦାନ କଲେ ମଧ୍ୟ ସକଳ ବ୍ୟବହାରର ଅନ୍ତରାଳେ, ବାଳ ସୁଲଭ ଶିକ୍ଷାଲୋଲୁପତାର ପରିଚୟ ମିଳୁଥିଲା । ଶିକ୍ଷ୍ୟୋପଯୋଗୀ ବିନୟ ସୌଜନ୍ୟରେ ତାହାଙ୍କର ସ୍ୱଭାବ ଓ ଆଚାର ଆଚରଣ ଅଲଂକୃତ ବୋଲି ସର୍ବଦା ଅନୁଭୂତ ହେଉଥିଲା । ଜାଣିବା ଓ ଶିକ୍ଷାଲାଭ କରିବା ଉପଯୋଗୀ ବୁଦ୍ଧିବୃତ୍ତି ଚିରଦିନ ଅକ୍ଷୁଣ୍ଣ ଭାବେ ବର୍ତ୍ତମାନ ଥିଲା । କେବେହେଲେ ମ୍ଳାନ ହୋଇନାହିଁ ।

ବାମଣ୍ଡା ରାଜ୍ୟର ବିବିଧ ପ୍ରାକୃତିକ ଦୃଶ୍ୟର ଶୋଭା ଓ ସୌନ୍ଦର୍ଯ୍ୟ ଅତିଶୟ ଚିତ୍ତହର । ଏହିପରି ବିବିଧ ସ୍ୱଭାବ ସୌନ୍ଦର୍ଯ୍ୟ ମଧ୍ୟରେ ପ୍ରଧାନପାଟର ପ୍ରପାତ ଅନ୍ୟତମ । ଏହାର ଶୋଭା ସୌନ୍ଦର୍ଯ୍ୟର ତୁଳନା ହୁଏନାହିଁ । ରେଲୱେ ସାହାଯ୍ୟରେ ଯାତାୟତର ସୁବିଧା ହେବା ଫଳରେ, ବିଦେଶୀ ଅଭ୍ୟାଗତଗଣ ବହୁ କ୍ଳେଶ ସ୍ୱୀକାର କରି ବାମଣ୍ଡା ଆସୁଥିଲେ । ସେହି କ୍ଳେଶର ସୀମା ନଥିଲା, କିନ୍ତୁ ବାମଣ୍ଡାର ପ୍ରଧାନପାଟର ପ୍ରପାତ ସନ୍ଦର୍ଶନ ଜନିତ ଆନନ୍ଦ ସ୍ରୋତରେ ପର୍ଯ୍ୟଟନ ଜାତ ବିବିଧ କ୍ଳେଶ ଧୌତ ହୋଇ ଅପରିସୀମ ତୃପ୍ତିର ସଂଚାର କରୁଥିଲା ଓ ବର୍ତ୍ତମାନ ମଧ୍ୟ କରିଥାଏ ।(୨) ଏହି ପ୍ରପାତର ସ୍ୱଭାବ ସୌନ୍ଦର୍ଯ୍ୟରେ ନିତ୍ୟ ମୁଗ୍ଧମନ ରାଜା ବ୍ରଜସୁନ୍ଦର ଦେବ ସର୍ବଦା ସେହି ସ୍ଥାନକୁ ଭ୍ରମଣରେ ଯାଉଥିଲେ । ଏକଦା ୧୮୬୯ ଖ୍ରୀଷ୍ଟାବ୍ଦରେ ଗ୍ରୀଷ୍ମ କାଳରେ ରାଜାବାହାଦୁର ବ୍ରଜସୁନ୍ଦର ଦେବ ପ୍ରପାତ ସାନ୍ନିଧ୍ୟ-ସଂଭୋଗରେ ଦେହ ମନର ଶାନ୍ତି ବିଧାନ ପାଇଁ ଯାଇଥିଲେ । ପ୍ରଜାମାନଙ୍କ ମଧ୍ୟରୁ କେହି କେହି ଆସି ଅଭିବାଦନାନ୍ତର ମହାରାଜାଙ୍କୁ ସମ୍ବାଦ ଦେଲେ ଯେ, ଅତି ନିକଟରେ ଏକ ବୃକ୍ଷରେ ଏକ ବିଷଧର ସର୍ପ (ଗୋଖର)ରହିଅଛି । ଏହି ସମ୍ବାଦ ପାଇ ରାଜା ବ୍ରଜସୁନ୍ଦର ତତ୍‌କ୍ଷଣାତ୍ ସେହି ସ୍ଥାନରେ ଉପସ୍ଥିତ ହେଲେ, ଏବଂ କୌଶଳ ପୂର୍ବକ ସର୍ପଟିକୁ ଧରିଲେ । ସମସ୍ତେ ତାହା ଦେଖି ଅବାକ୍ ହୋଇଗଲେ । ରାଜା ତ୍ୱରିତ ଏକ ହାଣ୍ଡି ଆଣିବା ପାଇଁ ଆଦେଶ ଦେଲେ । ରାଜାଦେଶ ପାଳିତ ହେବା ମାତ୍ରେ ସେହି ସର୍ପଟିକୁ ସେ ହାଣ୍ଡି ଭିତରେ ପ୍ରବିଷ୍ଟ କରାଇବାରେ ଲାଗିଲେ । ସର୍ପଟି ହାଣ୍ଡି ମଧ୍ୟରେ ସୁବିଧାମୁତାବକ ସ୍ଥାନ ଗ୍ରହଣ କରିବା ସଂଗେ ସଂଗେ ରାଜା ବ୍ରଜସୁନ୍ଦରଙ୍କ ହାତ ଉପରେ ଦଂଶନ କଲା । ଏହି ଆକସ୍ମିକ ବିପଦରୁ ଉଦ୍ଧାର ଲାଭପାଇଁ, ସମସ୍ତ ଗ୍ରାମ୍ୟ ଉପାୟ ଅବଲମ୍ବନ ହେଲେ



Digitized by srujanika@gmail.com

ମଧ୍ୟ, ତାହା ମଧ୍ୟରୁ କୌଣସି ଉପାୟ କାର୍ଯ୍ୟକାରୀ ହେଲାନାହିଁ । ସର୍ପ ଦଂଶନ ତାଙ୍କର ଅନ୍ତିମ ଦଶା ଆନୟନ କଲା । ସର୍ପ ଦଂଶନ ସମ୍ବାଦ ରାଜଭବନକୁ ପ୍ରେରିତ ହେବା ସଂଗେ ସଂଗେ, ସମ୍ବାଦ ପାଇ କୁମାର ବାସୁଦେବ ତତ୍‌କ୍ଷଣାତ୍ ପିତୃସଦନରେ ଉପସ୍ଥିତ ହେଲେ ଏବଂ କାଳ ବିଳମ୍ବ ନକରି ପିତାଙ୍କୁ ରାଜଭବନକୁ ଆନୟନ କଲେ । ରାଜା ବ୍ରଜସୁନ୍ଦର ତ୍ରିଭୁବନ ଦେବ ମୃତ୍ୟୁକାଳରେ ପୁନରାୟ ସର୍ବ ସମକ୍ଷରେ ବାସୁଦେବଙ୍କୁ ଉତ୍ତରାଧିକାରୀ ବୋଲି ଘୋଷଣା କରି ଲୋକାନ୍ତର ଗମନ କଲେ । ତାଙ୍କର ଏହି ଆକସ୍ମିକ ଅପଘାତ ମୃତ୍ୟୁରେ ରାଜପରିବାରର ସମସ୍ତେ ଏବଂ ପ୍ରଜାସାଧାରଣ ଯତ୍‌ପରୋନାସ୍ତି ସନ୍ତାପିତ ଚିତ୍ତରେ କାଳଯାପନ କରିବାରେ ଲାଗିଲେ । ଯଥାବିଧି, ଯଥାଶାସ୍ତ୍ର ଏବଂ ମହାସମାରୋହରେ ରାଜାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଓ ଶ୍ରାଦ୍ଧ ସଂପନ୍ନ ହେଲା ।

ରାଜକୁମାର ବାସୁଦେବ 'ରାଜା ବାସୁଦେବ ସୁଢ଼ଳଦେବ' ନାମରେ ଅଭିହିତ ହୋଇ ବାମଣ୍ଡାର ସିଂହାସନାରୋହଣ ଓ ରାଜ୍ୟଭାର ଗ୍ରହଣ କଲେ; କିନ୍ତୁ ସବୁ ସମୟରେ ସମସ୍ତ କାର୍ଯ୍ୟ ନିର୍ବିଘ୍ନରେ ସଂପନ୍ନ ହୁଏ ନାହିଁ । ପୂର୍ବରୁ କଥିତ ହୋଇଅଛି, ରାଜା ବ୍ରଜସୁନ୍ଦରଙ୍କ ଛଅ ସହୋଦର ଥିଲେ । ଜ୍ୟେଷ୍ଠ ଖଗେଶ୍ୱରଙ୍କର ଅବର୍ତ୍ତମାନରେ ବ୍ରଜସୁନ୍ଦର ରାଜା ହୋଇଥିଲେ । ରାଜପଦରେ ବରଣ ଯୋଗ୍ୟ ଔରସ ପୁତ୍ର ନଥିବା ହେତୁ ତୃତୀୟ ସହୋଦର ବଡ଼କୁମାର ହରିହର ଦେବଙ୍କ ପୁତ୍ର ବାସୁଦେବଙ୍କୁ ଉତ୍ତରାଧିକାରୀ ଭାବରେ ଗ୍ରହଣ କରିଥିଲେ । ରାଜା ବ୍ରଜସୁନ୍ଦର ଦେବଙ୍କ ଚତୁର୍ଥ ଭ୍ରାତା କୁମାର ଦେବଦୁର୍ଲଭ, ତୃତୀୟ ଭ୍ରାତା ବଡ଼ କୁମାର ହରିହର ଦେବଙ୍କ ପୁତ୍ରଙ୍କୁ ରାଜପଦ ପ୍ରାପ୍ତିରେ ବାଧା ଦେବାପାଇଁ ବଦ୍ଧପରିକର ହେଲେ; କିନ୍ତୁ ରାଜ ପରିବାରର ଏବଂ ବାମଣ୍ଡାର ସୌଭାଗ୍ୟ ବଳରେ ଚତୁର୍ଥ କୁମାରଙ୍କ ଉଦ୍ୟମ ଓ ଆଗ୍ରହ ବ୍ୟର୍ଥ ହୋଇଥିଲା । କାରଣ ଦେବଦୁର୍ଲ୍ଲଭଙ୍କ ଆୟୋଜନ ଫଳପ୍ରସୂ ହୋଇଥିଲେ ଉତ୍ତରକାଳରେ ଆମ୍ଭେ ସାର୍ ବାସୁଦେବ ସୁଢ଼ଳଦେବଙ୍କର ଅପୂର୍ବ ଚରିତ୍ର ଓ ଶୋଭାପୂର୍ଣ୍ଣ ଜୀବନ କାହାଣୀର ରସାସ୍ୱାଦନରୁ ବଂଚିତ ରହିଥାନ୍ତୁ ।

ରାଜା ବ୍ରଜସୁନ୍ଦଙ୍କର ବୃନ୍ଦାବନଚନ୍ଦ୍ର ଦେବ ନାମକ ଏକ ଔରସପୁତ୍ର ଥିଲେ ଏବଂ ସେ ସର୍ବ ଜ୍ୟେଷ୍ଠ । ଏଣୁ ପ୍ରଶ୍ନ ହୋଇପାରେ, ଏଭଳି ଅବସ୍ଥାରେ ବୃନ୍ଦାବନ ଚନ୍ଦ୍ରଙ୍କୁ ବଂଚିତ କରି ସହୋଦର ତନୟଙ୍କୁ ରାଜପଦରେ ଅଭିଷିକ୍ତ କରାଇବା କ'ଣ ନ୍ୟାୟ ଏବଂ ବିଧିସଂଗତ ହେଲା କି ? କୁମାର ବୃନ୍ଦାବନଚନ୍ଦ୍ର ରାଜା ଧୃତରାଷ୍ଟ୍ରଙ୍କ ପରି ବିକଳାଙ୍ଗ ନଥିଲେ ସତ୍ୟ; କିନ୍ତୁ ବାମଣ୍ଡାର ରାଜ ସଂସାରରେ, ବୃନ୍ଦାବନଚନ୍ଦ୍ର, ମହାଭାରତ ବର୍ଣ୍ଣିତ ବିବରଣମାଳା ମଧ୍ୟରେ ମହାଭାଗ ମହାତ୍ମା ବିଦୁରଙ୍କ ସ୍ଥାନ ଅଧିକାର କରନ୍ତି । ସୁତରାଂ ଭାରତୀୟ ଶାସ୍ତ୍ରାନୁସାରେ ତାହାଙ୍କର ରାଜପଦ ପ୍ରାପ୍ତିର ସଂଭାବନା ନଥିଲା । ତେଣୁ ରାଜବାହାଦୁର ବ୍ରଜସୁନ୍ଦର ଦେବ, ସହୋଦରଙ୍କ କୁମାରଙ୍କୁ ଦତ୍ତକ ରୂପେ (ପୋଷ୍ୟ) ଗ୍ରହଣ କରିଥିଲେ ଏବଂ ସେଥିପାଇଁ ତାହା ଏହି ଦେଶୀୟ ଧର୍ମ ଓ ସମାଜ ସଂଗତ ବୋଲି ପରିଗୃହୀତ ହୋଇଥିଲା ।



Digitized by srujanika@gmail.com

ଚତୁର୍ଥ କୁମାର ଦେବଦୁର୍ଲ୍ଲଭ, ରାଜା ବ୍ରଜସୁନ୍ଦର ଦେବଙ୍କର ଔରସପୁତ୍ର ବୃନ୍ଦାବନଚନ୍ଦ୍ରଙ୍କୁ ନେଇ ସମ୍ବଲପୁରରେ ତଦାନୀନ୍ତନ ପୋଲିଟିକାଲ୍ ଏଜେଣ୍ଟ କର୍ଣ୍ଣେଲ ବୁଇ ସାହେବ ବାହାଦୁରଙ୍କ ସହିତ ସାକ୍ଷାତ କରିବା ପାଇଁ ଏବଂ ବୃନ୍ଦାବନଚନ୍ଦ୍ରଙ୍କର ସ୍ୱାର୍ଥ ସାଧନ ଓ ରାଜପଦ ପ୍ରାପ୍ତି ପାଇଁ ପ୍ରାଣପଣେ ଚେଷ୍ଟା କରିବାପାଇଁ ଯାଇଥିଲେ ।

ରାଜା ବାହାଦୁର ବ୍ରଜସୁନ୍ଦରଙ୍କ ଜୀବଦ୍ଦଶାରେ କର୍ଣ୍ଣେଲ୍ ବୁଇ ଗଡ଼ଜାତ ପରିଦର୍ଶନ କାଳରେ ଏକଦା ବାମଣ୍ଡାରେ ଉପସ୍ଥିତ ହୋଇଥିଲେ । ରାଜ୍ୟର ଅବସ୍ଥା ବିଷୟରେ ନାନା କଥାବାର୍ତ୍ତା ମଧ୍ୟରେ ପ୍ରସଂଗକ୍ରମେ ପୋଲଟିକାଲ୍ ଏଜେଣ୍ଟ ବାହାଦୁର ରାଜା ବ୍ରଜସୁନ୍ଦର ଦେବଙ୍କୁ 'ତାହାଙ୍କର ଅପୁତ୍ରିକ ଅବସ୍ଥାରେ ଲୋକାନ୍ତର ଘଟିଲେ, କିଏ ଉତ୍ତରାଧିକାରୀ ହେବେ ?' ଜିଜ୍ଞାସା କରିବା ଫଳରେ, ରାଜା ବ୍ରଜସୁନ୍ଦର ଦେବ, ସମ୍ମୁଖରେ ଦଣ୍ଡାୟମାନ ଟିକାୟେତ୍ ବାସୁଦେବଙ୍କୁ ଦେଖାଇ କହିଥିଲେ 'ଇଏ ହିଁ ମୋର ଭାବୀ ଉତ୍ତରାଧିକାରୀ' । ସୁତରାଂ ବୁଇ ସାହେବ ବାସୁଦେବଙ୍କ ନ୍ୟାର୍ଯ୍ୟ ଅଧିକାର ସଂବଧରେ ସ୍ୱୟଂ ସାକ୍ଷୀ ରୂପେ ରହିଥିଲେ । କୁମାର ଦେବଦୁର୍ଲ୍ଲଭଙ୍କ ଆବେଦନର ବିଚାର କାଳରେ ଏଜେଣ୍ଟ ସାହେବ ପୂର୍ବ ପ୍ରେରିତ କାଗଜପତ୍ର ଏବଂ ନିଜ ଅଭିଜ୍ଞତା ନିବନ୍ଧନ ବାସୁଦେବଙ୍କର ରାଜପଦ ପ୍ରାପ୍ତିକୁ ହିଁ ସ୍ୱୀକାର କରି ନେଇଥିଲେ । ସୁତରାଂ ବୃନ୍ଦାବନଚନ୍ଦ୍ରଙ୍କୁ ନେଇ ଦେବଦୁର୍ଲ୍ଲଭ ବ୍ୟର୍ଥଚେଷ୍ଟା ଓ ଭଗ୍ନମନୋରଥ ହୋଇ ବାମଣ୍ଡା ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼ିଥିଲା । ଭାତୃପୁତ୍ରସହ ପିତୃବ୍ୟ ଦେବଦୁର୍ଲ୍ଲଭ ଲଜ୍ଜା ଓ ମନର କ୍ଳେଶରେ କାଳଯାପନ କଲେ ମଧ୍ୟ, ବାସୁଦେବ ସୁଢ଼ଳଦେବ ସ୍ୱଭାବଗୁଣେ ଏମାନଙ୍କୁ ସର୍ବଦା ସଦୟ ବ୍ୟବହାରରେ ସନ୍ତୁଷ୍ଟ କରିବା ପାଇଁ ଯତ୍ନବାନ ଥିଲେ । କୌଣସି ଦିନ କୌଣସି କାରଣରେ ଏମାନଙ୍କ ପ୍ରତି ରାଜପରିବାର ଆତ୍ମୀୟତା ଅଧିକାରରୁ ବଞ୍ଚିତ କରି ନାହାନ୍ତି । 'ବିରୁଦ୍ଧ ପକ୍ଷ' ମନେକରି କେବେହେଲେ ସଦୟ ବ୍ୟବହାର ବା ଆତ୍ମୀୟତା ପ୍ରଦର୍ଶନରେ ବିରତ ହୋଇ ନାହାନ୍ତି । ଏହାମଧ୍ୟ ତାହାଙ୍କର ସ୍ୱଭାବସିଦ୍ଧ ଗୁଣ ବୋଲି ଜନସାଧାରଣରେ ବିଦିତ ଥିଲା ।

ରାଜା ବ୍ରଜସୁନ୍ଦରଙ୍କର ଲୋକାନ୍ତର ଗମନ କାଳରେ, କୁମାର ବାସୁଦେବଙ୍କ ବୟଃକ୍ରମ ଅଷ୍ଟାଦଶ ବର୍ଷ ମାତ୍ର ଥିଲା । ବୟଃପ୍ରାପ୍ତ ନ ହେବା ପର୍ଯ୍ୟନ୍ତ ପିତା ବଡ଼ କୁମାର ହରିହର ଦେବଙ୍କ ତତ୍ତ୍ୱାବଧାନରେ ରହିବାର ଏବଂ ତାଙ୍କ ପରାମର୍ଶ ଅନୁସାରେ ରାଜକାର୍ଯ୍ୟ ପରିଚାଳନା ଆଦେଶ ପ୍ରଦତ୍ତ ହୁଏ । କର୍ଣ୍ଣେଲ୍ ବୁଇ ଏହି ବିଷୟରେ ମଧ୍ୟ ସୁବିବେଚନାର ପରିଚୟ ଦେଲେ ମଧ୍ୟ, କାର୍ଯ୍ୟକାଳରେ ପଦେ ପଦେ ପିତା ପୁତ୍ରଙ୍କ ମଧ୍ୟରେ ମତଭେଦ ହେବାରେ ଲାଗିଲା । ରାଜା ବାସୁଦେବ ରାଜକାର୍ଯ୍ୟ ପରିଚାଳନା ଦ୍ୱାରା ପ୍ରଜାମଣ୍ଡଳୀର ପ୍ରୀତିଭାଜନ ହେବା ପାଇଁ ବ୍ୟସ୍ତ, ବଡ଼କୁମାର ଅଭିଭାବକ ରୂପେ ଠିକ୍ ତଦ୍‌ବିପରୀତାଚରଣର କାର୍ଯ୍ୟର ସର୍ବଦା ବ୍ୟବସ୍ଥା କରନ୍ତି । ଶେଷରେ ଏକଦା ଜଣେ ପ୍ରଜାର ଘରଦ୍ୱାର ଲୁଣ୍ଠନ କରିବାର ଆଦେଶ ଦେଇ ହରିହର ଦେବ ବିପଦ ଘଟାଇଲେ । ପ୍ରଜା, ରାଜା ବାସୁଦେବଙ୍କ ନିକଟରେ ଆଶ୍ରୟ ଗ୍ରହଣ କଲାପରେ, ବାସୁଦେବ ଆଦେଶ ଦେଲେ, ଘରଦ୍ୱାର ଲୁଣ୍ଠିତ



Digitized by srujanika@gmail.com

ହେବାକୁ ଦିଅ, ତା'ପରେ କ୍ଷତିପୂରଣ ପାଇଁ ମୋ' ପାଖରେ ଆବେଦନ କରିବ, ମୁଁ ଚାରିଗୁଣ କ୍ଷତି ପୂରଣର ଆଦେଶ ଦେଇ, ତୁମର ସଂପତ୍ତି ରକ୍ଷା କରିବି । ଏହି ସମ୍ବାଦ ଅବଗତ ହୋଇ, ବଡ଼ କୁମାର ଅଭିମାନ ଭରେ, ନିରୁଦ୍ଦେଶ ହୋଇ ସ୍ଥାନାନ୍ତର ଗମନ କଲେ ।

ରାଜା ବାସୁଦେବ ସୁଢ଼ଳଦେବଙ୍କ ରାଜ୍ୟଭାର ଗ୍ରହଣ ପୂର୍ବେ ବାମଣ୍ଡା ରାଜ୍ୟର ବାର୍ଷିକ ଆୟ ଅତି ଅଳ୍ପ ଥିଲା । ପାଠକେ ଶୁଣିଲେ ହୁଏତ ମନେ କରିବେ, ବଙ୍ଗଦେଶର ଜଣେ ସାମାନ୍ୟ ଜମିଦାରଙ୍କ ମଧ୍ୟ ତାହା ଅପେକ୍ଷା ଅନେକ ଅଧିକ ଆୟ । ପ୍ରକୃତକଥା ଏହା, ଗଡ଼ଜାତର ଅନେକ ରାଜ୍ୟର ଅବସ୍ଥା ଏହିପରି ଥିଲା । ଦୁଇହଜାର ବର୍ଗ ମାଇଲ୍ ଭୂଖଣ୍ଡ ଏବଂ ୮୧, ୨୮୬ ଲୋକସଂଖ୍ୟା ବାମଣ୍ଡାର ପ୍ରାଚୀନ ହୀନବସ୍ଥାର ସାକ୍ଷ୍ୟଦାନ କଲେ ମଧ୍ୟ, ବଙ୍ଗଦେଶରେ ସମ ପରିମାଣ ଭୂଖଣ୍ଡ ଏବଂ ସମ ପରିମାଣ ଲୋକସଂଖ୍ୟାରେ ପ୍ରଚୁର ଅର୍ଥାଗମନର ଉପାୟ ଅବଲମ୍ବିତ ହୋଇଥାଏ । ପୂର୍ବେ କଥିତ ହୋଇଅଛି, ୧୮୦୩ ଖ୍ରୀଷ୍ଟାବ୍ଦରେ ବାମଣ୍ଡା ରାଜ୍ୟର ତଦାନୀନ୍ତନ ରାଜା, ଇଂରେଜ ପ୍ରାଧାନ୍ୟ ସ୍ୱୀକାର କରି କମ୍ପାନୀ ବାହାଦୁରଙ୍କ ସହିତ ଏକ ସନ୍ଧିପତ୍ରରେ ଆବଦ୍ଧ ହୁଅନ୍ତି । ସଂଗେ ସଂଗେ ପାର୍ଶ୍ୱବର୍ତ୍ତୀ ରାଜାମାନେ ମଧ୍ୟ ଇଂରେଜ ଆଶ୍ରୟ ଗ୍ରହଣ କରନ୍ତି; କିନ୍ତୁ ଏହିପରି ରାଷ୍ଟ୍ରୀୟ ପରିବର୍ତ୍ତନ ସତ୍ତ୍ୱେ ମଧ୍ୟ, ଆଭ୍ୟନ୍ତରୀଣ କୌଣସି ବିଶେଷ କଲ୍ୟାଣ ସାଧିତ ହୋଇନାହିଁ । ରାଜାମାନେ ନିଜ ନିଜ ରାଜ୍ୟରେ ସ୍ୱଳ୍ପ ଆୟ ଓ ସ୍ୱଳ୍ପ ବ୍ୟୟରେ କ୍ଷତ୍ରିୟୋଚିତ ସାମାନ୍ୟ ଶକ୍ତିର ପରିଚାଳନାରେ ସନ୍ତୁଷ୍ଟ ହୋଇ ଜୀବନ ଯାତ୍ରା ନିର୍ବାହ କରୁଥିଲେ । ସୁତରାଂ ବାମଣ୍ଡାର ଛଅ ହଜାରର ଟଙ୍କା ବାର୍ଷିକ ଆୟ ବିଶେଷ ଆଶ୍ଚର୍ଯ୍ୟର ବ୍ୟାପାର ବୋଲି କେହି ମନେ କରୁନଥିଲେ । ପ୍ରଜାସାଧାରଣଙ୍କର ଅବସ୍ଥା ନିତ୍ୟାନ୍ତ ହୀନ ଥିଲା । ରାଜସଂସାରର ସମସ୍ତ କାର୍ଯ୍ୟ ହିଁ ପ୍ରଜାଗଣଙ୍କ ଦ୍ୱାରା ସଂପନ୍ନ ହେଉଥିଲା । ଫଳତଃ ରାଜାଙ୍କର ଅର୍ଥାଭାବ ହେଉ ନଥିଲା । ରାଜସଂସାରରେ ଧନରତ୍ନ ଓ ସ୍ୱର୍ଣ୍ଣ ରୌପ୍ୟର ନିତ୍ୟ ଅଭାବ ଅନୁଭବ ନହେଲେ ମଧ୍ୟ ସେ ସବୁର ଏକାନ୍ତ ପ୍ରାଚୁର୍ଯ୍ୟ ବା ଏକାନ୍ତ ଅଭାବ ନଥିଲା । ନିର୍ଜ୍ଜନ ପାର୍ବତ୍ୟ ପ୍ରଦେଶର କ୍ଷୁଦ୍ର ରାଜସଂସାରର ପ୍ରୟୋଜନ ସାଧନୋପଯୋଗୀ ଅର୍ଥ ସର୍ବଦା ହିଁ ସୁଲଭ ଥିଲା; କିନ୍ତୁ ପ୍ରଚୁର ଉପାର୍ଜ୍ଜନ ଓ ବିବିଧ ଉନ୍ନତି ପାଇଁ, ପ୍ରଚୁର ବ୍ୟୟ, ସଂଗେ ସଂଗେ ସଂଚୟ ପ୍ରତି ଆଦୌ ଦୃଷ୍ଟି ନଥିଲା ।

ଏହାର ପ୍ରଧାନ କାରଣ ଏହି ଯେ, ଏହି ପ୍ରଦେଶର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟର ରାଜାମାନେ ସମସ୍ତେ ହିଁ କ୍ଷତ୍ରିୟ ବଂଶୋଦ୍ଭବ ହେଲେ ମଧ୍ୟ, ବିଦ୍ୟାଚର୍ଚ୍ଚା ଓ ଜ୍ଞାନାର୍ଜ୍ଜନ ବିଷୟରେ ଅତ୍ୟନ୍ତ ଉଦାସୀନ ଥିଲେ, ଏବଂ ପୃଥିବୀର ନାନାଦେଶରେ, ବିଶେଷ ଭାବରେ ଭାରତର ନାନା ସ୍ଥାନରେ ସୁଚିନ୍ତା ଓ ଜ୍ଞାନର ଉନ୍ମେଷ ନିବନ୍ଧନ, ବିଦ୍ୟାବେଳେ ଯେ ବିଚିତ୍ର ଉନ୍ନତି ସାଧିତ ହେଉଥିଲା, ସେହି ବିଷୟରେ କୌଣସି ସମ୍ବାଦ ରଖୁନଥିଲେ । ବହୁ ଭାର୍ଯ୍ୟା



Digitized by srujanika@gmail.com

ପରିବେଷ୍ଟିତ ହୋଇ ଆହାର ବିହାରେ ଦୀର୍ଘ ଜୀବନ ଯାପନ କରି କାଳର ଆଶ୍ରୟ ଗ୍ରହଣ କରୁଥିଲେ, ତେଣୁ କି ରାଜା କି ପ୍ରଜା, ଉଭୟ ସଂପ୍ରଦାୟର ଦୀନତା କୌଣସି ଦିନ ଦୂରୀଭୂତ ହେଉନଥିଲା । ରାଜା ବ୍ରଜସୁନ୍ଦର ଦେବଙ୍କ ସମୟ ପର୍ଯ୍ୟନ୍ତ ବାମଣ୍ଡା ଓ ତନ୍ନିକଟବର୍ତ୍ତୀ ସକଳ ରାଜ୍ୟର ଅବସ୍ଥା ଏକପ୍ରକାର ସମାନଭାବେ ପରିବର୍ତ୍ତନ ଓ ଉନ୍ନତିର ପ୍ରବାହହୀନ ବଦ୍ଧଜଳରେ ପରିଣତ ହୋଇ ଅବସ୍ଥାନ କରୁଥିଲେ । ସେହି ବଦ୍ଧଜଳର ବିଷମୟବାଷ୍ପ ଗଡ଼ଜାତର ସମଗ୍ର ସମାଜ ଜୀବନର ଶକ୍ତି ସାମର୍ଥ୍ୟ ଆଚ୍ଛନ୍ନ କରି ରଖିଥିଲା, ବର୍ତ୍ତମାନ ସୁଦ୍ଧା ତାହା ସଂପୂର୍ଣ୍ଣ ନିବାରିତ ହୋଇନାହିଁ ।

ରାଜା ବାସୁଦେବ ସୁଢ଼ଳଦେବଙ୍କ ରାଜ୍ୟଭାର ଗ୍ରହଣର ସଂଗେ ସଂଗେ, ଯେଉଁ ଅପୂର୍ବ ପରିବର୍ତ୍ତନର ଖରସ୍ରୋତ ପ୍ରବାହିତ ହୋଇ ଗଡ଼ଜାତ ଓ ସମଗ୍ର ଓଡ଼ିଶାର ଲୋକବୁଦ୍ଧି ଓ ଲୋକଶକ୍ତିକୁ ଜାଗ୍ରତ କରାଇଛି, ତାହାର ପୁଙ୍ଖାନୁପୁଙ୍ଖ ଆଲୋଚନା ଆବଶ୍ୟକ ମନେହୁଏ । ରାଜା ବାସୁଦେବ ସମଗ୍ର ଓଡ଼ିଶାର କଲ୍ୟାଣ ସାଧନର ବୀଜମଂତ୍ର ବକ୍ଷରେ ଧାରଣ କରି ବାମଣ୍ଡାର ରାଜସିଂହାସନରେ ଆସନ ଗ୍ରହଣ କରିଥିଲେ । ସୁତରାଂ ତାହାଙ୍କର ଆବିର୍ଭାବ ଯେ ଓଡ଼ିଶାର ଦୀର୍ଘ ଅବସାଦ ଜାତ ମନସ୍ତାପ ଓ ତଜ୍ଜାତ ତପସ୍ୟାର ଫଳ, ସେହି ବିଷୟରେ ସନ୍ଦେହ ନାହିଁ ।

ଗଭୀର ଦୁଃଖର ବିଷୟ ରାଜା ବାସୁଦେବ ଇଂରାଜୀ ଶିକ୍ଷାର ସୁଯୋଗ ପ୍ରାପ୍ତ ହୋଇ ନଥିଲେ । ରାଜା ବ୍ରଜସୁନ୍ଦର ଦେବ ଯେଉଁ ସମୟରେ କୁମାର ବାସୁଦେବଙ୍କ ସୁଶିକ୍ଷା ଦାନର ବ୍ୟବସ୍ଥା କରନ୍ତି, ସେତେବେଳେ ମଧ୍ୟ ଏହି ପ୍ରଦେଶରେ କୁତ୍ରାପି ଇଂରାଜୀ ଶିକ୍ଷାର ପ୍ରୟୋଜନୀୟତା ଆଦୌ ଅନୁଭୂତ ହୋଇନାହିଁ । ସୁତରାଂ ରାଜା ବ୍ରଜସୁନ୍ଦର ଦେବ ଯୁବରାଜଙ୍କ ଶିକ୍ଷାଦାନ କାଳରେ ଇଂରାଜୀ ଶିକ୍ଷାଦାନର ଆବଶ୍ୟକତା ବୁଝିବା ସମୟ ଉପସ୍ଥିତ ହୋଇନାହିଁ; କିନ୍ତୁ ସେହି ସମୟରେ ସଂସ୍କୃତ ଶିକ୍ଷା ଦାନର ଯେତେଦୂର ସୁଯୋଗ ଥିଲା, ତାହାର ବ୍ୟବସ୍ଥା କରିବାରେ ବିନ୍ଦୁମାତ୍ର ତ୍ରୁଟି କରିନାହାନ୍ତି । ତେଣୁ ରାଜା ବାସୁଦେବ ସୁଢ଼ଳଦେବ ତାଙ୍କ ସମୟରେ ଜଣେ ଅସାଧାରଣ ସଂସ୍କୃତଜ୍ଞ ପଣ୍ଡିତ ଓ କବି ଭାବରେ ସମଗ୍ର ଓଡ଼ିଶାରେ ଏବଂ ଭାରତର ଅନ୍ୟାନ୍ୟ ଦେଶୀୟ ପଣ୍ଡିତ ସମାଜରେ ଅସାଧାରଣ ପ୍ରତିଷ୍ଠା ଲାଭ କରିଥିଲେ; କିନ୍ତୁ ସମୟସ୍ରୋତ, ଆପଣାଛାଏଁ ସଙ୍ଗସୂତ୍ରେ ରାଜା ବାସୁଦେବଙ୍କ ଧର୍ମବୁଦ୍ଧି, ସାମାଜିକ ଜ୍ଞାନ ଓ ସାଧାରଣ ରୀତି ନୀତିର ପ୍ରାଚୀନ ଗଣ୍ଡି ଅଳ୍ପେ ଅଳ୍ପେ ପ୍ରସାରିତ କରାଇ ଦେଉଥିଲା, ଏବଂ ସେ ବହୁ ବହୁ କୃତବିଦ୍ୟ ବ୍ୟକ୍ତିଙ୍କର ସଂଗସୂତ୍ରେ, ଅତି ସହଜରେ ସମାଜ ଜୀବନରେ ଶୃଙ୍ଖଳା ରକ୍ଷାକରି, ଧୀର ପାଦ ବୀକ୍ଷଣେ ନାନାବିଧ ଉନ୍ନତିମୂଳକ ଓ ସଂସ୍କାର ପଥରେ ଅଗ୍ରସର ହେବାରେ ଲାଗିଲେ ।

ରାଜ୍ୟଭାର ଗ୍ରହଣ କରିବା ସଂଗେ ସଂଗେ ରାଜା ବାସୁଦେବ ସୁଢ଼ଳଦେବ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନରେ ମନୋନିବେଶ କରିଲେ । ସେହି କାଳରେ ରାଜସଂସାରର



Digitized by srujanika@gmail.com

ଆୟବ୍ୟୟର କୌଣସି ହିସାବ ରହୁନଥିଲା । ଯାହାକିଛି ଥିଲା, ପୋଥି ପଞ୍ଜିକା ନ୍ୟାୟ, ସେହି ସବୁ ଖାତା ପତ୍ର ମଧ୍ୟ, ତାଳପତ୍ରରେ ଲିଖିତ ହୋଇ ରହୁଥିଲା । ନୂତନ ରାଜା ସେସବୁକୁ ବାତିଲ୍ କରିଦେଇ, ନୂତନ ପଦ୍ଧତି ଅନୁସାରେ ହିସାବପତ୍ର ରଖିବାର ବ୍ୟବସ୍ଥା ପାଇଁ ଆଦେଶ ଦିଅନ୍ତି ଏବଂ କିପରି ଭାବରେ ସେହି ସମସ୍ତ କାର୍ଯ୍ୟ କରିବାକୁ ହେବ, କର୍ମଚାରୀମାନଙ୍କୁ ସେହିସବୁ ଶିକ୍ଷା ଦେଇଥିଲେ । ରାଜ ସରକାରଙ୍କର କର୍ମଚାରୀମାନଙ୍କର ବେତନ ମାସିକ ୧୮ ଟଙ୍କାରୁ ଅଧିକ ନଥିଲା । କାର୍ଯ୍ୟର ଗୁରୁତ୍ୱ ଓ ପଦବୀର ମର୍ଯ୍ୟାଦା ହିସାବରେ ବେତନର ଉଚ୍ଚନୀଚ ହାର ନିର୍ଦ୍ଦେଶ ଦେଇଥିଲେ । କର୍ମ କାର୍ଯ୍ୟର ଶୃଙ୍ଖଳା, ବିଧି ବ୍ୟବସ୍ଥା ଓ ନାନା ବିଷୟକ କର୍ତ୍ତବ୍ୟଗୁଡ଼ିକ ଅସଂଗତ ପରିଶ୍ରମ ସହକାରେ ନିଜେ ନିତ୍ୟ ପରିଚାଳନ ଓ ପରିଦର୍ଶନ କରିବାରେ ଲାଗିଲେ । ଏହି ପ୍ରକାର ରାଜ କାର୍ଯ୍ୟର ନୂତନ ଗଠନ ସଂଦର୍ଶନରେ କର୍ମଚାରୀ ଓ ସାଧାରଣ ପ୍ରଜାମଣ୍ଡଳୀଙ୍କ ମଧ୍ୟରେ ନୂତନ ଜୀବନର ଲକ୍ଷଣ ଦେଖିବାକୁ ମିଳିଲା । ସଙ୍ଗେ ସଙ୍ଗେ ଲୋକ ଚକ୍ଷୁରେ ରାଜାଙ୍କ ପଦମର୍ଯ୍ୟାଦା ଓ ତଜ୍ଜାତ ଏକ ସଂଭ୍ରମର ସୁବତାସ ଚାରିଆଡ଼େ ପ୍ରବାହିତ ହେଲା । ପ୍ରଜା ସାଧାରଣ ତ୍ୱରିତ ଅନୁଭବ କରିବାକୁ  ଲାଗିଲେ ଯେ ରାଜା ହେବାକୁ ହେଲେ ଏହିପରି ହେବା ଉଚିତ । ତ୍ୱରିତ ପ୍ରାଚୀନ ପଦ୍ଧତି ବଦ୍ଧ ରାଜ ଜୀବନରେ ଓ ନୂତନ ରାଜାଙ୍କ ଅଭ୍ୟୁଦୟ ହେତୁ ସୁଖ ସମୃଦ୍ଧିର ସୁତୀବ୍ର ପ୍ରଭେଦ ଜ୍ଞାନ ଚତୁର୍ଦ୍ଦିଗରେ ଲୋକଙ୍କର ଚକ୍ଷୁ ଉନ୍ମିଳିତ ହୋଇଉଠିଲା ।

ରାଜ୍ୟ ମଧ୍ୟରେ ଅବଲମ୍ବିତ ନୂତନ ପଦ୍ଧତି ଅନୁଯାୟୀ କାର୍ଯ୍ୟ ପରିଚାଳନା ହେତୁ କ୍ରମେ କ୍ରମେ ସ୍ୱତଂତ୍ର ସ୍ୱତଂତ୍ର  ବିଭାଗ ପ୍ରତିଷ୍ଠିତ ହେଲା । କୃଷିକାର୍ଯ୍ୟର ଉପଯୋଗୀ ସମଗ୍ର ଜମି ପ୍ରଧାନ ତିନି ଭାଗରେ ବିଭକ୍ତ କଲେ । ପ୍ରଥମ ଅୟମ୍ ବା ଔଲ, ଦ୍ୱିତୀୟ ଦୟମ୍ ଏବଂ ତୃତୀୟ ସୟମ୍ । ଏହି ତିନି ଶ୍ରେଣୀର ଜମିର ବିଭାଗାନୁଯାୟୀ ରାଜକର ମଧ୍ୟ ତିନି ପ୍ରକାର ନିର୍ଦ୍ଧାରିତ ହେଲା । ସ୍ଥାୟୀ ଅସ୍ଥାୟୀ ହିସାବରେ ମଧ୍ୟ ପ୍ରଜାଗଣଙ୍କ ସହିତ ଯଥାକ୍ରମେ ଭୌରିୟା, ଓୟାରିଜା, ଏକ ପଦିଆ, ରକ୍‌ବା ଓ ତିୟାତା ଏହି ପାଞ୍ଚ ପ୍ରକାର ସ୍ୱତ୍ୱର ବ୍ୟବସ୍ଥା କରାହେଲା । ଏହି ପ୍ରକାରେ ଆବାଦୀ ଜମି ସବୁର ନୂତନ ବନ୍ଦୋବସ୍ତ କରି ସର୍ବାଗ୍ରେ ଜମା ଜରିପ୍ ଓ ରାଜସ୍ୱ ବିଭାଗ (Land settlement and Revenue Department) ସୃଷ୍ଟି କଲେ । ତତ୍ପରେ କ୍ରମେ କ୍ରମେ ପୋଲିସ ଏବଂ ଶାସନ ଓ ବିଚାର ବିଭାଗ ଗଠନ କଲେ । ଅନ୍ୟାନ୍ୟ ବିଭାଗ ଆହୁରି ପରେ ଧୀରେଧୀରେ ସୂଚୀତ ଓ ଗଠିତ ହୋଇଥିଲା । ରାଜା ବାସୁଦେବ ନବୀନ ରାଜାରୂପେ କେବଳ ଏ ସବୁର ରଚନାକରି ସର୍ବାଗ୍ରେ ଜମିର ଉତ୍କର୍ଷ ଓ ପ୍ରଜାଙ୍କର ଶ୍ରୀବୃଦ୍ଧି ସାଧନରେ ହିଁ ମନୋନିବେଶ କରିଥିଲେ । ଶାନ୍ତ ଓ ସ୍ଥିର ବୁଦ୍ଧି ରାଜା ବାସୁଦେବ ଭାବୀ ଆଦର୍ଶ ସମ୍ମୁଖରେ ରଖି ରାଜ୍ୟର ସ୍ଥାୟୀ ପ୍ରତିଷ୍ଠାନ ସବୁ ଏକ ଏକ କରି ଧରି  ଗଢ଼ି ତୋଳିବାରେ ଲାଗିଲେ ।



Digitized by srujanika@gmail.com

ରାଜା ବାସୁଦେବ ୧୮୬୯ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରୁ ୧୮୭୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନାମକୁ ମାତ୍ର ପିତୃପରିଚାଳନାରେ ରାଜକାର୍ଯ୍ୟ କରିବା ପରେ ୧୮୭୪ ଖ୍ରୀଷ୍ଟାବ୍ଦରେ ସ୍ୱୟଂ ସମଗ୍ର କାର୍ଯ୍ୟ ଏକାକୀ ପରିଚାଳନା ଓ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । ତାଙ୍କର ପ୍ରାଥମିକ କର୍ମପଟୁତା ବିଷୟରେ ଅଧିକ କଥା ନକହି, କେବଳ ଗୋଟିଏ ମାତ୍ର ଘଟଣାର ଉଲ୍ଲେଖ କଲେ ଯଥେଷ୍ଟ ହେବ । ୧୮୭୪/୭୫ ସାଲ୍‌ର ଶାସନ ପଦ୍ଧତି ଫଳରେ ରାଜକୋଷରେ ଛଅ ହଜାର ଟଙ୍କା ପରିବର୍ତ୍ତେ ତିନିଗୁଣ ଆୟବୃଦ୍ଧି ହୋଇଥିଲା । ବର୍ଷ ଶେଷରେ, ଆୟ ବ୍ୟୟର ହିସାବ ନିକାଶ ବେଳେ ଦେଖାଗଲା, ସେହିବର୍ଷ ଅଠର ହଜାର ଟଙ୍କା ଆୟ ହୋଇଅଛି । ଦ୍ୱାବିଂଶତି ବର୍ଷୀୟ ଯୁବକ ରାଜା ବାସୁଦେବ ସ୍ୱୟଂ ଏକବର୍ଷର ରାଜକାର୍ଯ୍ୟ ପରିଚାଳନା ଦ୍ୱାରା ଛଅ ହଜାର ଟଙ୍କା ସ୍ଥଳରେ ଅଠର ହଜାର ଟଙ୍କା ଆୟ ଦେଖାଇଛନ୍ତି, ଏଥିରୁ ରାଜ୍ୟର ଉନ୍ନତିକାମୀ ବ୍ୟକ୍ତିମାତ୍ରେ ହିଁ ଆନନ୍ଦ ପ୍ରକାଶ କଲେ । କାଳେ ରାଜା ବାସୁଦେବ ସୁଢ଼ଳଦେବ ଯେ ଏକ ଅସାଧାରଣ କର୍ମବୀର ରୂପେ ପରିଣତ ହେବେ, ସେହି ସମୟରେ ରାଜ୍ୟର ପ୍ରଧାନଗଣଙ୍କ ମଧ୍ୟରୁ ଅନେକେ ତାହାର ଲକ୍ଷଣ ଦେଖି ସେହିପରି ଅଭିପ୍ରାୟ ମଧ୍ୟ ପ୍ରକାଶ କରିଥିଲେ ।

ରାଜା ବାହାଦୁର ବ୍ରଜସୁନ୍ଦର ଦେବଙ୍କ ଲୋକାନ୍ତର ଗମନ ପୂର୍ବେ ହିଁ ଟିକାୟେତ ବାସୁଦେବଙ୍କ ପରିଣୟ ପ୍ରସ୍ତାବ ସ୍ଥିରୀକୃତ ହୁଏ । କୁମାର ବାସୁଦେବଙ୍କ ଜନକ ବଡ଼କୁମାର ହରିହର ଦେବ ଏହି ବିବାହରେ ଆପତ୍ତି କରିଥିଲେ ।*(୩)* ବ୍ରଜସୁନ୍ଦରଙ୍କ ମୃତ୍ୟୁ ପରେ ତାହାଙ୍କ ନିର୍ବାଚିତ ପାତ୍ରୀଙ୍କ ସହିତ ବିବାହ ପରିବର୍ତ୍ତେ ବଡ଼କୁମାର ହରିହର ଦେବ ଅନ୍ୟତ୍ର ବିବାହର ବ୍ୟବସ୍ଥା ପ୍ରସ୍ତାବ ମଧ୍ୟ କରିଥିଲେ, କିନ୍ତୁ ବାସୁଦେବ ଜନକଙ୍କ ଆଦେଶ ପାଳନ କରିପାରନ୍ତି ନାହିଁ । ସେ କହିଥିଲେ; 'ମୃତ ମହାରାଜ ରାଜସଂସାରର ଇଷ୍ଟନିଷ୍ଟରେ ଦୃଷ୍ଟି ରଖି ବିବାହ ପ୍ରସ୍ତାବ ସ୍ଥିର କରି ରଖିଯାଇ ଅଛନ୍ତି । ତାହାଙ୍କ ବ୍ୟବସ୍ଥା ମୋ' ପକ୍ଷରେ ରାଜାଦେଶ, ସୁତରାଂ ଅବଶ୍ୟହିଁ ତାହା ପାଳନ କରିବାକୁ ହେବ । ସେଥିପାଇଁ ପୂର୍ବ ନିର୍ଦ୍ଦେଶାନୁଯାୟୀ ୧୮୭୧ ଖ୍ରୀଷ୍ଟାବ୍ଦରେ ରାଜା ବାସୁଦେବ ସୁଢ଼ଳଦେବଙ୍କର ପରିଣୟାନୁଷ୍ଠାନ ରାଜୋଚିତ ସମାରୋହେ ସଂପନ୍ନ ହୁଏ ।

କଳାହାଣ୍ଡିର ରାଜବଂଶ ଗଡ଼ଜାତର ଅନ୍ୟତମ ପ୍ରାଚୀନ ଓ ସଂଭ୍ରାନ୍ତ ରାଜ ପରିବାର । କଳାହାଣ୍ଡିର ରାଜା ଉଦିତ ପ୍ରତାପ ଦେବଙ୍କ ମଧ୍ୟମା କନ୍ୟା ରୂପେ ଲକ୍ଷ୍ମୀ ଓ ଗୁଣେ ସରସ୍ୱତୀ ସଦୃଶୀ ଗିରିରାଜକୁମାରୀଙ୍କର ପାଣିଗ୍ରହଣ କରି ରାଜା ବାସୁଦେବ ସୁଢ଼ଳଦେବ ନିଜକୁ ଭାଗ୍ୟବାନ ବୋଲି ମନେ କରିଥିଲେ । ଏହି ରାଜକୁମାରୀ ବିଦ୍ୟାବତୀ ଓ ଗୁଣବତୀ ଥିଲେ । ଓଡ଼ିଶାର କ୍ଷତ୍ରିୟ ରାଜବଂଶରେ ବାଲ୍ୟ ବିବାହ ସ୍ଥାନ ପାଇନାହିଁ । କନ୍ୟାଗଣଙ୍କୁ ଯଥାସମ୍ଭବ ରାଜପରିବାରର ବଧୂ ହେବାର ଉପଯୋଗୀ ଶିକ୍ଷାଦାନର ବ୍ୟବସ୍ଥା ମଧ ରହିଅଛି ।



Digitized by srujanika@gmail.com

ତେଣୁ ରାଣୀ ଗିରିରାଜ କୁମାରୀ ବିବାହ ପୂର୍ବେ, ପିତୃଭବନରେ ଅବସ୍ଥାନ କାଳରେ, ସଂସ୍କୃତ ଓ ଓଡ଼ିଆ ଭାଷାରେ ଶିକ୍ଷାପ୍ରାପ୍ତ ହୋଇଥିଲେ ଏବଂ ଶିକ୍ଷାଗୁଣେ ତାହାଙ୍କ ସୁକଣ୍ଠରେ ସଂଗୀତର ଅମୃତଧାରା ପ୍ରବାହିତ ହେଉଥିଲା । ସେହି ତାନ ଲୟ ସଂଗୀତ ଗୀତ ଲହରୀ ରାଜା ବାସୁଦେବ ଦୀର୍ଘ ଜୀବନ ଭୋଗ କରି ପାରିନଥିଲେ ମଧ୍ୟ, ସେହି ସ୍ମୃତି, ରାଜା ବାସୁଦେବଙ୍କୁ ଚିର ଜୀବନ ପାଗଳକରି ରଖିଥିଲା । ରାଜା ବାସୁଦେବଙ୍କ ଉତ୍ତର କାଳରେ ବିବିଧ ଉନ୍ନତି ବିଷୟରେ ଯେପରି ଅସାଧାରଣ ଗୁଣର ପରିଚୟ ଦେଇ ଯାଇଛନ୍ତି, ସେଥିରେ ତାଙ୍କ ସମୟରେ ଗ୍ରାମଫୋନ୍ ରେକର୍ଡ଼ର ସୃଷ୍ଟି ହୋଇଥିଲେ ହୁଏତ, ତାହାଙ୍କର ପ୍ରିୟତମା ରାଣୀଙ୍କର ସେହି ମଧୁର ବାଣୀ-ସେହି ସଂଗୀତ ସୁଧା-ସେହି ଅମୃତ ହିଲ୍ଲୋଳ କଳାହାଣ୍ଡି ଓ ବାମଣ୍ଡାର ଅରଣ୍ୟ ବେଷ୍ଟିତ ରାଜପରିବାରର ସାମୟିକ ପ୍ରୀତି ବର୍ଦ୍ଧନରେ ଯଥେଷ୍ଟ ହେଉନ ଥାନ୍ତା । ରାଜା ବାସୁଦେବ ସେହି ମଧୁର ସ୍ୱରସୁଧା ଧରି ରଖିବାର ସୁଯୋଗ ଆଦୌ ତ୍ୟାଗ କରିନଥାନ୍ତେ । ରାଣୀ ଗିରିରାଜକୁମାରୀଙ୍କର ସଂସ୍କୃତ ସାହିତ୍ୟରେ ଏତେ ଗଭୀର ପ୍ରବେଶ ଘଟିଥିଲା ଯେ, ସେ ସଂସ୍କୃତ ଶ୍ଳୋକ ରଚନା କରି ସଂସ୍କୃତାନୁରାଗୀ ମହାରାଜଙ୍କର ଚିତ୍ତ ବିନୋଦନ କରୁଥିଲେ । ସେହି ଶ୍ଳୋକସବୁ ସଂପୂର୍ଣ୍ଣରୂପେ ନିର୍ଦ୍ଦୋଷ ଓ ସୁନ୍ଦର ହେଉଥିଲା । ଅନେକ ଅନୁସଂଧାନ ପରେ ସୁଦ୍ଧା ତାହା ଆଜି ଦୁଷ୍ପ୍ରାପ୍ୟ ।

ରାଜା ବାସୁଦେବ ଏହି ବିବାହ ଫଳରେ ରାଜା ଉଦିତ ପ୍ରତାପ ଦେବଙ୍କ ପରି ଜଣେ ଉତ୍ତମ ଅଭିଭାବକ ଓ ପରାମର୍ଶଦାତା ପାଇ କୃତାର୍ଥ ହୋଇଥିଲେ । ବର୍ଷାଧିକକାଳ ପରେ ୧୮୭୨ ଖ୍ରୀଷ୍ଟାବ୍ଦ ମେ' ମାସ ତିନି ତାରିଖରେ ବାମଣ୍ଡା ରାଜ ସଂସାରରେ ଏକ ନବକୁମାର ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କର ନାମ ହୋଇଥିଲା ଟିକାୟେତ ସଚ୍ଚିଦାନନ୍ଦ । ଏହି ଶିଶୁ କୁମାରଙ୍କ ଜନ୍ମ ଗ୍ରହଣରେ ବାମଣ୍ଡା ରାଜ ସଂସାରରେ ଆନନ୍ଦ ସ୍ରୋତ ପ୍ରବାହିତ ହେଲା । ବ୍ରଜସୁନ୍ଦରଙ୍କ ଅମଳରୁ ଏହି ରାଜ ପରିବାରରେ ଏହିପରି ଆନନ୍ଦକର ଘଟଣା ଘଟିନାହିଁ । ପର୍ଣ୍ଣକୁଟୀରରେ ହିଁ ମନୁଷ୍ୟ ସନ୍ତାନ ଭାବେ ବିଶେଷତଃ ପୁତ୍ରଭାବେ ହାହାକାର କରେ ଓ ଆହାରେ, ବିହାରେ ଶୟନେ ସ୍ୱପନେ କାତର ବ୍ୟଞ୍ଜକ ଦୀର୍ଘ ନିଃଶ୍ୱାସ ତ୍ୟାଗକରେ, ରାଜ ଭବନ ରାଜକୁମାରରେ ଅଳଂକୃତ ନହେଲେ ସୁଖର ସଂସାରରେ ପୌରଜନବର୍ଗଙ୍କୁ ଯେଉଁ ଦାରୁଣ ଦାବାନଳ ନିୟତ ଦଗ୍ଧ କରେ, ରାମାୟଣରେ ତାହାର ମର୍ମାନ୍ତିକ ମର୍ମବେଦନାର ଚିତ୍ର ଅଙ୍କିତ ହୋଇଅଛି । ପୁତ୍ରଶୋକରେ ମୃତ୍ୟୁରୂପ ଅଭିସଂପାତ ଗ୍ରସ୍ତ ହୋଇ ରାଜା ଦଶରଥଙ୍କର ଓ ତଦୀୟ ରାଜପରିବାରର ଆନନ୍ଦ ରହେ ନାହିଁ । ଅପୁତ୍ରିକର ପୁତ୍ରଶୋକ । କି ସୌଭାଗ୍ୟ । ତେଣୁ କହୁଅଛି, ବାମଣ୍ଡାର ରାଜପରିବାରରେ ହୁଳହୁଳି ଧ୍ୱନି ଓ ଶଙ୍ଖଧ୍ୱନି ହରିଦ୍ରା ବିତରଣ ଓ ଆନନ୍ଦ କୋଳାହଳ ହେବାରେ ଲାଗିଲା । ଦୀନ ଦୁଃଖୀ ଜନଙ୍କୁ ନାନା ଉପହାରରେ ଆପ୍ୟାୟିତ କରାହେଲା । ନବକୁମାରଙ୍କ ଜନ୍ମଗ୍ରହଣ ନିବନ୍ଧନ ପ୍ରଜାମଣ୍ଡଳୀ ନାନାବିଧ ଉତ୍ସବାନୁଷ୍ଠାନେ



Digitized by srujanika@gmail.com

ମାତି ଉଠିଲେ । ରାଜା ବାସୁଦେବ ସୁଢ଼ଳଦେବ ସକଳ ଶ୍ରେଣୀର ଲୋକ ମଣ୍ଡଳୀଙ୍କର ପ୍ରୀତି ବିଧାନରେ ପ୍ରାଣପଣେ ଚେଷ୍ଟା କରିବାରେ ଲାଗିଲେ ।

କିନ୍ତୁ ଏହି ଆନନ୍ଦ ଦୀର୍ଘସ୍ଥାୟୀ ନ ହେଉଣୁ ସହସା ଗଭୀର ବିଷାଦର ଅଗ୍ନିକୁଣ୍ଡରେ ପରିଣତ ହେଲା । କୁମାର ସଚ୍ଚିଦାନନ୍ଦ ଦୁଇବର୍ଷବ୍ୟାପୀ ଜୀବନଯାପନ ନକରୁଣୁ ମାତୃହୀନ ହୋଇଗଲେ । ବସନ୍ତାନୀଳ ସଦୃଶ ମଧୁର ଆନନ୍ଦ ପ୍ରବାହ ଅଳ୍ପ କେତେଦିନ ପୂର୍ବେ ରାଜଭବନକୁ ଯେପରି ପୁଲକିତ କରାଇଥିଲା, ହସର ହିଲ୍ଲୋଳରେ ନିୟତ ଯେପରି ଚାରିଦିଗ ମୁଖରିତ ହେଉଥିଲା । ସହସା କନ୍‌କନିଆ ଶୀତର ବିଶୁଦ୍ଧ ଭାବ ଆସି ରାଜ୍ୟ ଓ ରାଜ ପରିବାରକୁ, ପ୍ରଜାମଣ୍ଡଳୀ ଓ ଅନ୍ୟ ଜନମଣ୍ଡଳୀକୁ ଆକ୍ରମଣ କଲା । ଚାରିଦିଗରେ ହାହାକାର ଓ ଅଶ୍ରୁଜଳ । ବିଶେଷତଃ ବସ୍ତୁ ଓ ବ୍ୟକ୍ତି ବିଶେଷର ଗୁଣବତ୍ତା ହିସାବରେ ଯାତନାର ପରିମାଣ ମଧ୍ୟ ଅଧିକ, ଅତ୍ୟନ୍ତ ଗାଢ଼ ଓ ଦୀର୍ଘସ୍ଥାୟୀ ହୁଏ । ଆଜି ଏହି ନବୀନା ରାଣୀ ଗିରିରାଜକୁମାରୀଙ୍କ ବିୟୋଗ ବେଦନା ସେହିପରି ଦାରୁଣ ବଜ୍ରାଘାତ ପରି ପୌରଜନ ଓ ଜନପଦ ବର୍ଗଙ୍କ ହୃଦୟ ବିଦୀର୍ଣ୍ଣ କଲା । ରାଜମାତା, ଆତ୍ମୀୟ, ବନ୍ଧୁ ବେଷ୍ଟିତ ରାଜା ବାସୁଦେବ ସୁଢ଼ଳଦେବ ନବୀନ ଜୀବନେ ଛିନ୍ନମୂଳ ତରୁ ପରି ଭୂତଳଶାୟୀ ହେଲେ । ରାଣୀ ଗିରିରାଜ କୁମାରୀ ଅତ୍ୟଳ୍ପକାଳ ସ୍ଥାୟୀ ଜୀବନଯାପନରେ ମଧ୍ୟ ବାମଣ୍ଡାର ରାଜ ସଂସାର ଦୁଇଟି ଉତ୍ତମ ସ୍ମରଣ ଚିହ୍ନ ରଖିଦେଇ ଯାଇଛନ୍ତି ।

ରାଜକୁମାର ସଚ୍ଚିଦାନନ୍ଦ (ବର୍ତ୍ତମାନ ରାଜା) ଜନ୍ମଗ୍ରହଣରେ ଯେତେବେଳେ ସମଗ୍ର ରାଜ୍ୟ ଆନନ୍ଦରେ ଉତ୍‌ଫୁଲ୍ଲ, ରାଣୀ ସୂତୀକାଗାରରେ ଅବସ୍ଥିତି କାଳେ ଜାଣି ପାରିଲେ ଯେ, ରାଜ ସଂସାରରେ ଭାବୀ ଉତ୍ତରାଧିକାରୀ ଶୁଭଗମନ ଉପଲକ୍ଷେ, ଆନନ୍ଦ-ଉତ୍ସବର ବ୍ୟୟ ନିର୍ବାହ ପାଇଁ ରାଜକର୍ମଚାରୀ ଓ ସମଗ୍ର ପ୍ରଜାମଣ୍ଡଳୀଙ୍କର ରାଜାଙ୍କୁ ପ୍ରଚୁର ଅର୍ଥ ଭେଟି (ନଜର) ଦେବାକୁ ହୁଏ । ନବୀନା ରାଣୀ ଏହି ସଂବାଦ ଅବଗତ ହୋଇ ରାଜା ବାସୁଦେବ ସୁଢ଼ଳଦେବଙ୍କୁ ଅନ୍ତଃପୁରକୁ ଡକାଇ କହିଲେ- "ଏହି ଆନନ୍ଦୋତ୍ସବ ସମୟରେ ମହାରାଜାଙ୍କୁ ମୋର ଗୋଟିଏ ମିନତି ରଖିବାକୁ ହେବ ।" ରାଜା ବାସୁଦେବ ହୃଷ୍ଟଚିତ୍ତରେ ଅନୁରୋଧ ରକ୍ଷା କରିବା ପାଇଁ ସମ୍ମତି ଜ୍ଞାପନ କରିବା ମାତ୍ରେ, ରାଣୀ ଗିରିରାଜ କୁମାରୀ କହିଥିଲେ, 'ରାଜ ସଂସାରରେ ନବକୁମାରଙ୍କର ଜନ୍ମଗ୍ରହଣ, ରାଜ୍ୟର ଅପାମର ସାଧାରଣ ଜନମଣ୍ଡଳୀଙ୍କ ପକ୍ଷରେ ନିରବଚ୍ଛିନ୍ନ ଆନନ୍ଦର କାରଣ ହେଉ । ଏହା ହିଁ ମୋର ପ୍ରାର୍ଥନା । ରାଜକର୍ମଚାରୀ ଓ ପ୍ରଜା ସାଧାରଣଙ୍କୁ ଯଦି ଏହି ସମୟରେ ରାଜସମ୍ମାନ ରକ୍ଷାପାଇଁ, ରାଜସଂସାରକୁ ଅର୍ଥଦାନ କରିବାକୁ ହୁଏ, ତାହା ହେଲେ, ତାହାଙ୍କର ଆନନ୍ଦ କର୍ମ ଭୋଗରେ ପରିଣତ ହେଲା, ଏହି ଅର୍ଥ ଗ୍ରହଣ ଓ ଦଣ୍ଡ ଦାନ ସମାନ କଥା । ମୋର ଏହି କୁମାରଙ୍କ କଲ୍ୟାଣ ପାଇଁ ଆଜିଠାରୁ ଏହି ପ୍ରଥା ରହିତ କଲେ ହିଁ ମୁଁ ବାମଣ୍ଡାର ପ୍ରଜାଗଣଙ୍କର ଆନନ୍ଦୋତ୍ସବରେ ଯୋଗ ଦେଇପାରିବି । ଆଉ ଏହି କୁପ୍ରଥା ରହିତ କରିବାରେ ଯଦି



Digitized by srujanika@gmail.com

ବିଶେଷ କ୍ଷତିଗ୍ରସ୍ତ ହେବାକୁ ହୁଏ, ତାହାହେଲେ ମୋତେ ଦୁଇମାସ ସମୟଦେଲେ ମୁଁ ସେହି କ୍ଷତି ପୂରଣର ଭାର ବହନ କରିବାପାଇଁ ପ୍ରସ୍ତୁତ । ମୋର ପୁତ୍ର ଲାଭ ହେତୁ ମୋର ପିତା ମାତା ମଧ୍ୟ ଅସୀମ ଆନନ୍ଦିତ । ମୁଁ ମୋର ପିତୃଗୃହରୁ ଯୌତୁକରୂପେ ସେହି ପରିମାଣ ଅର୍ଥ ଅଣାଇ ଦେବି ।'

ରାଣୀ ଗିରିଜା-କୁମାରୀଙ୍କ ଏହି ପ୍ରସ୍ତାବରେ ପରିତୁଷ୍ଟ ହୋଇ, ରାଜା ବାସୁଦେବ ବାମଣ୍ଡାର ରାଜ ପରିବାରର ଏହି ଦୀର୍ଘ ପ୍ରଚଳିତ କୁପ୍ରଥା ରହିତ କରାଇ, ପ୍ରଜାସାଧାରଣଙ୍କୁ ବିମଳ ଆନନ୍ଦ ସଂଭୋଗର ସୁଯୋଗ ଦେଇ, ରାଣୀଙ୍କୁ କହିଥିଲେ- "ତୁମ୍ଭର ଏହି ସୁସଙ୍ଗତ ପ୍ରସ୍ତାବ କାର୍ଯ୍ୟରେ ପରିଣତ କରିବା ପାଇଁ ଯାଇ, ତୁମକୁ ବା ତୁମର ପିତାମାତାଙ୍କୁ ଏହି ପରିମାଣ ଅର୍ଥ ପାଇଁ ବିବ୍ରତ କରିବା କ'ଣ ଆଉ ଏକ କୁପ୍ରଥାର ପ୍ରବର୍ତ୍ତନ ନୁହେଁ ? ଏଥିପାଇଁ ଆଉ କାହାରିକି ବିବ୍ରତ ହେବାକୁ ପଡ଼ିବ ନାହିଁ ଯଦି ତାହାହେଲେ ମୁଁ ଅପରିସୀମ ଆନନ୍ଦ ଲାଭ କରିବି । ତୁମର ତୃପ୍ତି ବିଧାନ ପାଇଁ, ତୁମର ଅଭିପ୍ରାୟ ମତେ, ଆଜିଠାରୁ ଏହି ପ୍ରଥା ରହିତ କରାଗଲା ।"

ରାଣୀ ଗିରିରାଜ କୁମାରୀଙ୍କର ଚିହ୍ନଦ୍ୱୟର ଅପରଟି ଟିକାୟେତ ସଚ୍ଚିଦାନନ୍ଦ । ଏକ ବର୍ଷ କେତେକ ମାସର ଶିଶୁରଖି ରାଣୀ ଲୋକାନ୍ତରିତ ହୁଅନ୍ତି । ସେହି ସମୟରେ କେହି ହେଲେ ଆଶା କରିନାହାନ୍ତି ଯେ, ମାତୃସ୍ତନ୍ୟରୁ ସଙ୍ଗେ ସଙ୍ଗେ ମାତୃସ୍ନେହରୁ ବଂଚିତ ଶିଶୁ ସଚ୍ଚିଦାନନ୍ଦ ଦୀର୍ଘଜୀବୀ ହେବେ । ରାଜା ବାସୁଦେବ ଏବଂ ତଦୀୟ ଅପର ପରିଜନବର୍ଗ କୁମାରଙ୍କର ମାତୃବିୟୋଗରେ ବିଧ୍ୱସ୍ତ ହୋଇ ମଧ୍ୟ କୁମାରଙ୍କ ଜୀବନ ରକ୍ଷା ହେତୁ ବ୍ୟାକୁଳ ହୋଇ ପଡ଼ିଲେ । ରାଜମାତା (ରାଜା ବ୍ରଜାସୁନ୍ଦରଙ୍କ ମହିଷୀ)ଶିଶୁଙ୍କର ଲାଳନପାଳନଭାର ଗ୍ରହଣ କଲେ । ତାହାଙ୍କର ଐକାନ୍ତିକ ସ୍ନେହ ଆଶ୍ରୟରେ କୁମାରଙ୍କର ଶୈଶବ ଜୀବନ ଧୀରେ ଧୀରେ ଅତିବାହିତ ହେବାରେ ଲାଗିଲା ।

ଏହି ଶିଶୁ ରକ୍ଷାପାଇଁ ବୟୋବୃଦ୍ଧି ସଂଗେ ସଂଗେ ନାନା ସୁଶିକ୍ଷା ଫଳରେ, ରାଜୋଚିତ ବିବିଧ ଗୁଣରେ ଅଳଂକୃତ ହୋଇ ଆଜି ବାମଣ୍ଡାର ପ୍ରଜାସାଧାରଣଙ୍କ ଓ ସମଗ୍ର ଓଡ଼ିଶାର ରାଜନ୍ୟବର୍ଗ ସମକ୍ଷରେ ରାଜଜୀବନର ଅତ୍ୟୁତ୍ତମ ଆଦର୍ଶ ପ୍ରତିଷ୍ଠା ଦ୍ୱାରା ସମଗ୍ର ପ୍ରଦେଶର ମୁଖୋଜ୍ଜ୍ୱଳ କରୁଛନ୍ତି । ରାଣୀ ଗିରିରାଜ କୁମାରୀ ନିଜ ଜୀବନର ଯେଉଁ ଦୁଇଗୋଟି ଚିହ୍ନ ରଖି ଯାଇଛନ୍ତି, ତାହା ଦୀର୍ଘସ୍ଥାୟୀ ହୋଇ ବାମଣ୍ଡାର ରାଜ ସଂସାରର ଗୌରବ ଅକ୍ଷୁଣ୍ଣ ରଖିଅଛି । ଏହା ହିଁ ସେହି ଗରିୟସୀ ନବୀନା ରାଜବଧୂଙ୍କର ସର୍ବୋତ୍କୃଷ୍ଟ ସ୍ମୃତି ଚିହ୍ନ ରୂପେ ଥାଇ ପ୍ରଜା ସାଧାରଣ ଓ ରାଜକର୍ମଚାରୀବୃନ୍ଦଙ୍କର ଅପରିମେୟ ଆନନ୍ଦ ବିଧାନ କରୁଅଛି ।

ରାଜମାତାଙ୍କର ସ୍ନେହ ପ୍ରାବଲ୍ୟରେ, ଟିକାୟେତ ସଚ୍ଚିଦାନନ୍ଦ ଏତେ ଅଳ୍ପ ବୟସରେ, ମାତୃସ୍ନେହର ଅଭାବ ଅନୁଭବ କରି ପାରି ନଥିଲେ । ରାଜା ବାସୁଦେବ ସୁଢ଼ଳଦେବ



Digitized by srujanika@gmail.com

କୁମାରଙ୍କ ପ୍ରାଣରକ୍ଷା ସଂଗେ ସଂଗେ ତାହାଙ୍କର ସ୍ୱାସ୍ଥ୍ୟରକ୍ଷା ଓ ବଳବିଧାନ ପାଇଁ ବ୍ୟସ୍ତ ହୋଇ ପଡ଼ିଲେ । ବିବିଧ ଉପାୟ ଅବଲମ୍ବନ ପୂର୍ବକ କୁମାରଙ୍କ ଶାରୀରିକ ଉନ୍ନତିର ବ୍ୟବସ୍ଥା କରି ବସିଲେ । ଶେଷରେ ଯେତେବେଳେ ବୁଝିଲେ ଶିଶୁଙ୍କର ମାତୃବିୟୋଗ ନିବନ୍ଧନ ଜୀବନରେ ଆଉ କୌଣସି ଆଶଙ୍କା ନାହିଁ, ସେତେବେଳେ ରାଜା ବାସୁଦେବଙ୍କ ପତ୍ନୀ ବିୟୋଗ ଶୋକ ନବୀଭୂତ ହୋଇ, ତଦୀୟ ଜୀବନଯାତ୍ରା ନିର୍ବାହ ଓ ରାଜକାର୍ଯ୍ୟ ପରିଚାଳନା ଏକାବେଳକେ ଅସଂଭବ କରି ତୋଳିଲା । କ୍ରମଶଃ କାର୍ଯ୍ୟରେ ଅନାସ୍ଥା ଓ ବୈରାଗ୍ୟମାର୍ଗ ଅବଲମ୍ବନ ସ୍ପୃହା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା । ଏହି ଅବସ୍ଥାରେ ପୁଣି ବଡ଼ କୁମାର ହରିହର ଦେବଙ୍କ ଦୀର୍ଘ ନିରୁଦ୍ଦେଶ ଚିନ୍ତା ହୃଦୟର ରୁଦ୍ଧ ଶୋକାବେଗେ ଇନ୍ଧନ ଯୋଗାଇବାରେ ଲାଗିଲା । ରାଜା ବାସୁଦେବ ଏହିରୂପେ ନାନା ଦିଗରୁ ଆକ୍ରାନ୍ତ ହୋଇ ରାଜାଦର୍ଶ ପ୍ରତିଷ୍ଠାର ସଂକଳ୍ପ ଭବିଷ୍ୟତ ପାଇଁ ତୋଳି ରଖି, ଭଗ୍ନ ହୃଦୟ ଓ ଭଗ୍ନ ସ୍ୱାସ୍ଥ୍ୟ ନେଇ ତୀର୍ଥ ପର୍ଯ୍ୟଟନ ଓ ଦେଶ ଭ୍ରମଣ ପାଇଁ ଯାତ୍ରା କଲେ ।

ରାଜମାତା ପ୍ରବୀଣା ରାଣୀଙ୍କର ରକ୍ଷଣାବେକ୍ଷଣରେ ଟିକାୟତ ସଚ୍ଚିଦାନନ୍ଦ ନିରାପଦରେ କାଳଯାପନ କରି ପାରିବେ, ଏହିପରି ପ୍ରତ୍ୟୟ ଜନ୍ମିବା ପରେ, ରାଜା ବାସୁଦେବ ସୁଢ଼ଳଦେବ ପ୍ରଧାନ କର୍ମଚାରୀଙ୍କ ଉପରେ ରାଜକାର୍ଯ୍ୟ ପରିଚାଳନାର ଭାର ସମର୍ପି ସମ୍ବଲପୁର ପଥ ଦେଇ ତୀର୍ଥ ଯାତ୍ରା ଓ ଦେଶ ଭ୍ରମଣରେ ବହିର୍ଗତ ହେଲେ । ସେହି ସମୟରେ ମଧ୍ୟପ୍ରଦେଶର ଛତିଶଗଡ଼ର ରାଜାମାନଙ୍କ ଉପରେ ଦୃଷ୍ଟି ରଖିବାର ଭାର ପ୍ରାପ୍ତ ପୋଲିଟିକାଲ ଏଜେଣ୍ଟ କର୍ଣ୍ଣେଲ୍ ବୁଇ ସାହେବ ବାହାଦୁର ସମ୍ବଲପୁରରେ ଅବସ୍ଥାନ କରୁଥିଲେ । ରାଜା ସର୍ବାଗ୍ରେ ତାଙ୍କ ସହିତ ସାକ୍ଷାତ କଲେ । ତାଙ୍କୁ ସକଳ କଥା କହି ଓ ରାଜ୍ୟର ତଦାନୀନ୍ତନ ବ୍ୟବସ୍ଥା ବିଷୟରେ ତାଙ୍କର ଅନୁକୂଳ ପରାମର୍ଶ କରି କଟକ ଯାତ୍ରା କଲେ ।



**ପାଦଟୀକା**

(୧) ଗଡ଼ଜାତରେ ରାଜାଙ୍କର ଜ୍ୟେଷ୍ଠପୁତ୍ରଙ୍କୁ ଭାବୀରାଜା ସମ୍ମାନରେ ସମ୍ମାନିତ କରିବା ପାଇଁ 'ଟିକାୟତ' ଏହି ଆଖ୍ୟା ପ୍ରଦତ୍ତ ହୋଇଥାଏ ।

(୨) ଉତ୍କଳ ସାହିତ୍ୟର ସଂପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କରଙ୍କ ବର୍ଣ୍ଣିତ ବିବରଣୀରୁ ଗୃହୀତ ।

(୩) ବାମଣ୍ଡାର ବର୍ତ୍ତମାନ ରାଜ ପୁରୋହିତ ଗୋବର୍ଦ୍ଧନ ମହାପାତ୍ର ମହାଶୟଙ୍କ ନିକଟରୁ ଏହି ଘଟଣା ଗୃହୀତ ।



Digitized by srujanika@gmail.com

## ଚତୁର୍ଥ ଅଧ୍ୟାୟ

# ତୀର୍ଥ ଦର୍ଶନ ଓ ଦେଶ ଭ୍ରମଣ

ମଧ୍ୟପ୍ରଦେଶ ଛତିଶଗଡ଼ର ପୂର୍ବୋତ୍ତର ଅଂଶ ଓ ଓଡ଼ିଶା ଗଡ଼ଜାତ ମାହାଲ ରାଜାମାନଙ୍କର ମାତୃଭାଷା ଏକ । ଓଡ଼ିଆ ଭାଷା ସର୍ବତ୍ର ହିଁ ଲିଖିତ ଓ କଥିତ ଭାଷା । ରାଜାମାନେ ସମସ୍ତେ କ୍ଷତ୍ରିୟ ବଂଶର ବିଭିନ୍ନ ଶାଖାରୁ ଉଦ୍‌ଭୁତ । ସୁତରାଂ ସାମାଜିକ କ୍ରିୟାକଳାପ, ଧର୍ମାନୁଷ୍ଠାନ, ସାମାଜିକ ରୀତି ନୀତି ବିଷୟରେ ସମସ୍ତେ ଏକ ପ୍ରକାର ନିୟମ ପଦ୍ଧତିର ଅଧୀନ ହୋଇ ଚଳି ଆସୁଅଛନ୍ତି । ଏମାନଙ୍କର ପରସ୍ପରର ମଧ୍ୟରେ ବୈବାହିକ ସମ୍ବନ୍ଧ ମଧ୍ୟ ବହୁକାଳ ଧରି ଚଳି ଆସୁଅଛି । ବଙ୍ଗଦେଶରେ ସଂପୂର୍ଣ୍ଣ ଅପରିଜ୍ଞାତ କେତେଗୁଡ଼ିଏ ସାମାଜିକ ରୀତି ନୀତି ଏମାନଙ୍କ ମଧ୍ୟରେ ପ୍ରଚଳିତ ଅଛି, ପ୍ରସଂଗକ୍ରମେ ଯଥାସ୍ଥାନେ ସେ ସବୁର ଆଲୋଚନା ହେବ । ଏକ୍ଷଣେ ରାଜା ବାସୁଦେବ ସମ୍ବଲପୁର ଠାରୁ ମହାନଦୀ ପଥରେ କଟକ ଯାତ୍ରା କଲେ । ସାଙ୍ଗରେ ପାଚକ ଓ ଭୃତ୍ୟବର୍ଗ ଭିନ୍ନ ସଂଗୀ ରୂପେ ପଣ୍ଡିତ ବଳରାମ ବିଦ୍ୟାରତ୍ନ, ପୂର୍ଣ୍ଣାନନ୍ଦ ମହାନ୍ତି, ଚକ୍ରଧର ଦାଶ, ସମ୍ଭୁପତି ଇତ୍ୟାଦି ବହୁ ଲୋକ ସହଯାତ୍ରୀ ଥିଲେ ।

ଅରଣ୍ୟାନୀ ପରିବେଷ୍ଟିତ ପର୍ବତମାଳା ମଧ୍ୟେ ସ୍ଥାନେ ସ୍ଥାନେ ସମତଳ ଉର୍ବରା କ୍ଷେତ୍ର ଓ ସୁନ୍ଦର ପଲ୍ଲୀ ସମୂହ ପ୍ରତିଷ୍ଠିତ । ବହୁ ସଂଖ୍ୟକ ରାଜାଙ୍କ କ୍ଷୁଦ୍ର ବୃହତ୍ ରାଜବାଟୀ ଗୁଡ଼ିକରେ, ରାଜାମାନେ ନିରାପଦରେ ଓ ନିରୁପଦ୍ରବରେ ଦୀର୍ଘକାଳ ଧରି ଏହି ସମସ୍ତ ପାର୍ବତ୍ୟ ପ୍ରଦେଶର ଅଭ୍ୟନ୍ତରେ ସ୍ୱ ପ୍ରତିଷ୍ଠିତ ଥାଇ ରାଜ୍ୟ ପାଳନ କରି ଆସୁଅଛନ୍ତି । ଏକ ରାଜ୍ୟ ସହିତ ଭିନ୍ନ ରାଜ୍ୟର ବୈବାହିକ ସମ୍ବନ୍ଧ ଥିଲେ ମଧ୍ୟ ଏହି ଅଞ୍ଚଳର ଏକ ସ୍ଥାନରୁ ସ୍ଥାନାନ୍ତରେ, ଏକ ରାଜ୍ୟଠାରୁ ଅନ୍ୟ ରାଜ୍ୟକୁ ଗମନାଗମନର ସୁଗମ ପଥ ଆଦୌ ନଥିଲା, ବର୍ତ୍ତମାନ ମଧ୍ୟ ବିରଳତା ହୁଏ । ହସ୍ତୀପୃଷ୍ଠେ ବନଭୂମି ଅତିକ୍ରମ କରିବାକୁ ହୁଏ ନତୁବା ସମ୍ଭବହେଲେ, ନଦୀ ପଥରେ ଯାତାୟତ ଚଳି ଆସୁଅଛି । ରାଜା ବାସୁଦେବ ତେଣୁ ମହାନଦୀ ପଥରେ କଟକ ଯାତ୍ରା କରିଥିଲେ ।



Digitized by srujanika@gmail.com

ଗଭୀର ଓ ଅନନ୍ତ ପାରାବାର ସଦୃଶ ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ବିଷୟରେ ଅସାଧାରଣ ପାଣ୍ଡିତ୍ୟ ଅର୍ଜନ ଦ୍ୱାରା ରାଜା ବାସୁଦେବ ସୁଢ଼ଳ ଦେବ ଅସୀମ ବିଦ୍ୟାବତ୍ତାରେ ସୁପ୍ରତିଷ୍ଠିତ ହେଲେ ମଧ୍ୟ, ତାହାଙ୍କ ହୃଦୟ କେବଳ ଶାସ୍ତ୍ର ଚର୍ଚ୍ଚାରେ ଆନନ୍ଦ ଲାଭ କରୁନଥିଲା । ତାହାଙ୍କ ହୃଦୟ ଥିଲା କବି ହୃଦୟ । ସେହି ହୃଦୟରେ ପ୍ରାକୃତିକ ଶୋଭା ସୌନ୍ଦର୍ଯ୍ୟର ଅତ୍ୟୁତ୍ତମ ଛାୟାପାତ ହେଉଥିଲା । ସେହି ସୌନ୍ଦର୍ଯ୍ୟ ସମ୍ଭୋଗତୃଷ୍ଣା, ମହାନଦୀ ପଥରେ, ମହାନଦୀର ପ୍ରବଳ ସ୍ରୋତ ପରି ବଳବତୀ ହୋଇ ଉଠିଲା । ମହାନଦୀର ଅନ୍ୟନାମ ଚିତ୍ରୋତ୍ପଳା । ଏହି ଚିତ୍ରୋତ୍ପଳାର ଉଭୟତୀର ଅନନୁଭୂତପୂର୍ବ ଶୋଭା ବିସ୍ତାର କରି ରାଜାଙ୍କ କବି ହୃଦୟରେ ସୁଧା ସେଚନ କରିବାରେ ଲାଗିଲା । ଏହି ଜଳଯାତ୍ରା ପଥରେ, ତାହାଙ୍କ ହୃଦୟରେ ବିଧାତାଙ୍କର ବିଚିତ୍ର ଲୀଳାର ଭାବ ପ୍ରକଟିତ ହୋଇଥିଲା, ସେହିଭାବ ଚିରଦିନ ତାହାଙ୍କର ସଙ୍ଗୀ ହୋଇଥିଲା, କୌଣସିକାଳେ ତାଙ୍କୁ ତ୍ୟାଗ କରି ନାହିଁ ।

ସୋନପୁର ମହାନଦୀ ଉପରେ ଅବସ୍ଥିତ । ଏହା ମଧ୍ୟ ଏକ ସାମନ୍ତ ରାଜ୍ୟ, ଏହି ସୋନପୁରର ରାଜା ନୀଳାଦ୍ରି ଦେବ ବାମଣ୍ଡାର ରାଜ ଜାମାତା । ଏହି ରାଜା ଅତି ସୌଖିନ ରାଜା ଥିଲେ । ବ୍ୟବହାରୋପଯୋଗୀ ପୁଷ୍ପ ସଂଗ୍ରହରେ ପ୍ରତିଦିନ ପ୍ରାୟ ପଚାଶ ଟଙ୍କା ବ୍ୟୟ ହେଉଥିଲା, ଅତର ଗୋଲାପ ପ୍ରଭୃତି ଗନ୍ଧ ଦ୍ରବ୍ୟରେ ମଧ୍ୟ ପ୍ରାୟ ଏହି ପରିଣାମ ବ୍ୟୟ ହେଉଥିଲା । ରାଜା ସଦାଶୟ ଓ ଲୋକବତ୍ସଳ ଥିଲେ । ଏହି ରାଜା ତାଙ୍କ ମହିଷୀଙ୍କୁ ଏପରି ସମ୍ମାନ କରୁଥିଲେ ଯେ, ଏହି ମହିଷୀଙ୍କର ଲୋକାନ୍ତର ଗମନରେ ମସ୍ତକରେ ପଗଡ଼ି ବ୍ୟବହାର ରହିତ କରିଥିଲେ । ଏହାର କାରଣ ଏହି ଯେ, ବେଶଭୂଷା ସମୟରେ ରାଣୀ ରାଜାଙ୍କର ଅତ୍ୟୁତ୍ତମ ପଗଡ଼ି ରଚନା କରି ଦେଉଥିଲେ । ସେହିପରି ସୁନ୍ଦର ପଗଡ଼ି ରଚନା ଅନ୍ୟ କାହାରି ଦ୍ୱାରା ହେଉନଥିଲା । ତେଣୁ ତାଙ୍କର ନିତ୍ୟ ସ୍ମରଣ ହେତୁ ପଗଡ଼ି ବ୍ୟବହାର ଏକାବେଳକେ ପରିତ୍ୟାଗ କରିଥିଲେ । ରାଜା ବାସୁଦେବ ସୋନପୁର ଆସି ପହଞ୍ଚିବା ମାତ୍ରେ ରାଜା ନୀଳାଦ୍ରି ଦେବ କର୍ତ୍ତୃକ ରାଜ ସମ୍ମାନରେ ଓ ବହୁ ସମାଦରେ ପରିଗୃହୀତ ହୋଇଥିଲେ । ସେହି ସ୍ଥାନର ଆଦର ଆପ୍ୟାୟନ ଓ ପରିଚର୍ଯ୍ୟାରେ ପରିତୁଷ୍ଟ ହୋଇ ପ୍ରାୟ ଏକ ସପ୍ତାହ କାଳ ରାଜା, ରାଜ ଆତିଥ୍ୟରେ ଯାପନ କରି, ପୁନର୍ବାର ଜଳଯାତ୍ରା କଲେ । ପଥରେ ମହାନଦୀ କ୍ରମଶଃ ଭୀଷଣରୁ ଭୀଷଣତର ଗାମ୍ଭୀର୍ଯ୍ୟର ପରିଚୟ ଦେଇ ରାଜା ବାସୁଦେବଙ୍କର ହୃଦୟ ଅଭିଭୂତ ଓ ମୋହିତ କଲା । ତାହାଙ୍କର ଶୋକ ତାପଦଗ୍ଧ ହୃଦୟ କ୍ରମଶଃ ଆର୍ଦ୍ର ହୋଇ ଉଠିଲା । ମହାନଦୀର ଉଭୟତୀରସ୍ଥ ପାର୍ବତ୍ୟ ବନଭୂମିର ବିଚିତ୍ର ସୌନ୍ଦର୍ଯ୍ୟ ତାହାଙ୍କ ନୟନ ମନର ପ୍ରୀତିବୃଦ୍ଧି କରୁ କରୁ ତାହାଙ୍କ ଅନ୍ତରରେ ରସର ସଂଚାର କଲା । ନଦୀ ପଥରେ କଟକ ପହଞ୍ଚିବା ପୂର୍ବେ ହିଁ, ପ୍ରକୃତିର ସେହି ରମଣୀୟ ସଂଭୋଗ



Digitized by srujanika@gmail.com

କରୁ କରୁ ରାଜ ହୃଦୟରେ ଓଡ଼ିଶାର ସାହିତ୍ୟ ଭଣ୍ଡାରର ନାତିଦୀର୍ଘ କଳେବର କାବ୍ୟଗ୍ରନ୍ଥ 'ଚିତ୍ରୋତ୍ପଳା'ର ଭ୍ରୂଣ ସଂଚାର ହୋଇଥିଲା । ମହାନଦୀର ଅଶେଷବିଧ ସୌନ୍ଦର୍ଯ୍ୟରେ ବିମୁଗ୍ଧଚିତ୍ତ ରାଜା ବାସୁଦେବଙ୍କ କାବ୍ୟଗ୍ରନ୍ଥ ଏହି ନଦୀ ନାମରେ ସାହିତ୍ୟ ସଂସାରରେ ପରିଚୟ ଲାଭ କରିଅଛି । ରାଜା ଅଳଂକାର ଶାସ୍ତ୍ରରେ ସୁପଣ୍ଡିତ ଥିଲେ । ତେଣୁ ମହାନଦୀର ମହାମୂଲ୍ୟ ଅଳଂକାର ଗୁଡ଼ିକୁ ସଯତ୍ନରେ ଚୟନ କରି ଅପୂର୍ବ ସୁନ୍ଦରମାଳା ରଚନା କରି ମାତୃଭାଷାର ଅଳଂକାର ସଂପଦ ବୃଦ୍ଧି କରି ଯାଇଛନ୍ତି । ଗ୍ରନ୍ଥଟିରେ ଭାବସଂପଦ ଯେପରି ପ୍ରଚୁର, ଛନ୍ଦର ବହୁଳତା ଓ ବିଚିତ୍ରତା ଏବଂ ଅଳଂକାରର ମଧୁର ନିକ୍ୱଣ ମଧ୍ୟ ସେହିପରି ଅତୀବ ମନୋହର । ପ୍ରକୃତିର ଶୋଭା ବର୍ଣ୍ଣନାରେ, ଏତାଦୃଶ ନିପୁଣତା ସହକାରେ ସର୍ବବିଧ ଅଳଂକାରର ପ୍ରୟୋଗ ସାଧାରଣ ଶକ୍ତିର କାର୍ଯ୍ୟ ନୁହେଁ । ଏହି କ୍ଷୁଦ୍ରକାୟା ତଟିନୀ ସଦୃଶା 'ଚିତ୍ରୋତ୍ପଳା'ର ରଚନା ମାଧୁର୍ଯ୍ୟରେ ଓଡ଼ିଆ ଭାଷା ଅଳଂକୃତ ହୋଇଅଛି । ଓଡ଼ିଶାର ଅନ୍ୟତମ ପଣ୍ଡିତ ଓ କବି ରାୟ ରାଧାନାଥ ରାୟ ବାହାଦୁର, ଏହି ଗ୍ରନ୍ଥଟିକୁ ଓଡ଼ିଆ ସାହିତ୍ୟ ସଂସାରର ଅମୂଲ୍ୟ ସଂପଦ ବୋଲି ଅଭିମତ ବ୍ୟକ୍ତ କରି ଯାଇଛନ୍ତି । ପ୍ରକୃତରେ ଏହା ଏକ ମୂଲ୍ୟବାନ କାବ୍ୟଗ୍ରନ୍ଥ । ରାଜାଙ୍କର ସାହିତ୍ୟ ସେବାର ଆଲୋଚନା କାଳରେ 'ଚିତ୍ରୋତ୍ପଳା' କାବ୍ୟର ବିଶଦ୍ ଆଲୋଚନା କରାଯିବ ।

ନଦୀ ପଥରେ ରାଜା ବାସୁଦେବ ଯେତେବେଳେ ବୌଦ ଆସି ଉପସ୍ଥିତ ହୁଅନ୍ତି, ସେତେବେଳେ ରାତ୍ରିକାଳ ଏବଂ ବାରିପାତ ହେଉଥିଲା । ବୌଦ ମଧ୍ୟ ଅନ୍ୟତମ ସାମନ୍ତରାଜାଙ୍କର ରାଜଧାନୀ । ଏଠାରେ ରାଜା ବାସୁଦେବ ନିଜର ଆଗମନ ବାର୍ତ୍ତା ପ୍ରଚାରକରି ନାହାନ୍ତି । ରାତିରେ ଆହାରାଦି କିଂଚିତ୍ ଅସୁବିଧା ହୋଇଥିଲା । ପରଦିନ ପ୍ରାତଃକାଳରେ ରାଜା ବାସୁଦେବ ନୌକାମେଲି କଟକାଭିମୁଖରେ ଅଗ୍ରସର ହେଲେ । ପଥରେ ବୌଦ ଓ ଦଶପଲ୍ଲା, ଏହି ଉଭୟ ସାମନ୍ତରାଜ୍ୟର ସୀମା ନିର୍ଦ୍ଦେଶ ସ୍ଥଳେ ଡେମୁରିଆ ନାମକ ସଂକୀର୍ଣ୍ଣ ଗିରିପଥ । ଏହି ପଥ ଏଠାରେ ମହାନଦୀର କ୍ରୋଡ଼ ଆଶ୍ରୟ କରିଅଛି । ପରେ ପରପାରିରେ ପୁଣି ପର୍ବତମାଳା ଅତିକ୍ରମ କରି ଦକ୍ଷିଣ ପଶ୍ଚିମାଭିମୁଖେ ଚାଲିଅଛି । ଏହି ପଥ ପ୍ରାଚୀନ ଐତିହାସିକ ପଥ । ଏହି ପଥ ଦେଇ ମରହଟ୍ଟାମାନେ ଓଡ଼ିଶାରେ ପ୍ରବେଶ କରିଥିଲେ । ପଥ ଅତି ଦୁର୍ଗମ ଏବଂ ଭୟଙ୍କର । ହସ୍ତୀ, ବ୍ୟାଘ୍ର, ଭଲ୍ଲୁକ ପ୍ରଭୃତି ହିଂସ୍ର ଜନ୍ତୁଙ୍କର ନିୟତ ବିଚରଣରେ ସ୍ଥାନଟି ଦିନରେ ମଧ୍ୟ ରାତ୍ରି ପରି ବିପଦ ସଂକୁଳ ବୋଲି, ସର୍ବଦା ଲୋକଙ୍କ ମନରେ ଭୟ ସଂଚାର କରେ । କିନ୍ତୁ ଜଠରାନଳ, ଅନ୍ନଚିନ୍ତା, ଅନ୍ନ ସଂସ୍ଥାନ, ଐଶ୍ୱର୍ଯ୍ୟ ସଂପଦ ଅର୍ଜ୍ଜନ ଓ ପ୍ରତିଷ୍ଠା ଲାଭ ମାନବ ସମାଜର ଭୀଷଣ ବ୍ୟାଧିରେ ପରିଣତ ହୋଇଅଛି ବୋଲି, ଏହି ଦୁର୍ଗମ ଗିରିପଥରେ



Digitized by srujanika@gmail.com

ମଧ୍ୟ ମହାରାଷ୍ଟ୍ରୀୟ ସୈନ୍ୟମାନେ ନିର୍ଭୟରେ ଯାତାୟତ କରୁଥିଲେ । ସେମାନଙ୍କ ଅଗ୍ରଗମନରେ ବାଧା ଦେବା ପାଇଁ ଏହି ସ୍ଥାନରେ ମହାନଦୀର ପୂର୍ବ ପାରିରେ ଚାରିଗୋଟି ବିଶାଳକାୟ କମାଣ ବସାଯାଇଥିଲା । ଅଦ୍ୟପି ସେଗୁଡ଼ିକ ସେହି ସ୍ଥାନରେ ଥାଇ ଓଡ଼ିଶାର ପୂର୍ବ ଗୌରବ ଓ ଶତ୍ରୁ ଦମନ ବ୍ୟବସ୍ଥାର ସାକ୍ଷ୍ୟ ଦାନ କରୁଅଛି । ବଡ଼ମ୍ବା ରାଜାଙ୍କ ଉପରେ ଏହି ଗିରିପଥ ରକ୍ଷଣାବେକ୍ଷଣର ଭାର ଅର୍ପିତ ହୋଇଥିଲା ।

ଏଠାରେ ଅପେକ୍ଷାକୃତ ସ୍ୱଳ୍ପାୟତନା ମହାନଦୀର ଗଭୀର ଜଳସ୍ରୋତ ପ୍ରବଳ ବେଗ ଧାରଣକରି ନୃତ୍ୟକରି ଧାଉଁଅଛି । ଦେଖିବା ମାତ୍ରେ ହିଁ ସହଜରେ ଲୋକଙ୍କ ମନରେ ତ୍ରାସର ସଂଚାର ହୁଏ । ଭୟରେ ଅଭିଭୂତ ପାରିଷଦ ଓ ଅନୁଚରବର୍ଗ ପରିବେଷ୍ଟିତ ରାଜା ବାସୁଦେବ, ଉଭୟ ତୀରସ୍ଥ ସେହି ଗଗନସ୍ପର୍ଶୀ ପର୍ବତମାଳାର ରମଣୀୟତା ଦର୍ଶନ ଓ ଉପଭୋଗ କରି କରି ସ୍ତମ୍ଭିତ ହୃଦୟରେ ସେହି ଦିବାନ୍ଧକାରରେ ଆଛନ୍ନ ନଦୀ ପଥରେ ଅଗ୍ରସର ହେବାରେ ଲାଗିଲେ । ପ୍ରକୃତିର ଜୀବନ୍ତ ମାନଚିତ୍ର, ସମସ୍ତଙ୍କ ହୃଦୟରେ, ସମାନ ଭାବର ସଂଚାର କରେ ନାହିଁ । ଏକ ପ୍ରକାର ଗାମ୍ଭୀର୍ଯ୍ୟପୂର୍ଣ୍ଣ ପ୍ରାକୃତିକ ଶୋଭାର ବିଚିତ୍ରତା ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ହୃଦୟରେ ଶିକ୍ଷା ଓ ରୁଚି ପ୍ରବୃତ୍ତିର ଅନୁରୂପ ବିଭିନ୍ନ ଭାବର ସୃଷ୍ଟି କରିଥାଏ । ପାର୍ଶ୍ୱଚରଗଣଙ୍କ ହୃଦୟରେ ଅସଙ୍ଗତ ଭୟର ସଂଚାର କଲେ ମଧ୍ୟ ରାଜା ବାସୁଦେବଙ୍କ କବି-ହୃଦୟରେ, ଏହି ଘନ ନିବିଡ଼ ପାଦପଶ୍ରେଣୀ ପରିଶୋଭିତ ଅତ୍ୟୁନ୍ନତ ପର୍ବତ ମାଳାର କୁକ୍ଷିଗତା ମହାନଦୀର ଅଳ୍ପ ପରିସର ନିବନ୍ଧନ ପ୍ରବଳତର ସ୍ରୋତ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଆନନ୍ଦ ଓ ସୁରସ ସଂଚାର କରିଥିଲା । ତେଣୁ ସେ ଏହି ସୌନ୍ଦର୍ଯ୍ୟର ଗଭୀର ଭାବ ସଂଭୋଗ ପାଇଁ ଡେମ୍ବୁରିଆ ଘାଟର ଅନତିଦୂରରେ ଦଶପଲ୍ଲା ରାଜ୍ୟ ଅନ୍ତର୍ଗତ ସାତକୋଶୀଆ ଘାଟରେ ଦିନଟିଏ ଅତିବାହିତ କରିଥିଲେ ।

ଆହୁରି ଦୁଇତିନି ଦିନ ନଦୀ ବକ୍ଷରେ ଅତିବାହିତ କରି 'ଚିତ୍ରୋତ୍ପଳା' କାବ୍ୟ ଗ୍ରନ୍ଥର କଳେବର ଦାନର ସୂତ୍ରପାତ କରି କ୍ରମେ ରାଜା ବାସୁଦେବ କଟକରେ ଆସି ପହଞ୍ଚିଲେ । ସେଠାରେ ସହରର ଯୋବ୍ରା ନାମକ ସ୍ଥାନରେ ପୂର୍ବ ନିର୍ଦ୍ଦିଷ୍ଟ ବାସଭବନରେ ବାସ କରିବାରେ ଲାଗିଲେ । 'ଉତ୍କଳ ଦୀପିକା'ର ସଂପାଦକ ଗୌରୀ ଶଙ୍କର ରାୟଙ୍କ ସାହାଯ୍ୟରେ କଟକର ନାନାସ୍ଥାନ ପରିଦର୍ଶନ କରିବା ଆରମ୍ଭ କଲେ । 'କଟକ ପ୍ରିଣ୍ଟିଂ' ନାମକ ଓଡ଼ିଶାର ସେହି ସମୟର ଅନ୍ୟତମ ମୁଦ୍ରାଯନ୍ତ୍ର ଓ ତାହାର କାର୍ଯ୍ୟକଳାପ ଦର୍ଶନ କରନ୍ତି, ତତ୍ପରେ ଓଡ଼ିଶାର ସେହି ସମୟର ଅନ୍ୟତମ ମୁଦ୍ରାଯନ୍ତ୍ର 'ମିଶନ ପ୍ରେସ' ଓ ତାହାର କାର୍ଯ୍ୟ ପଦ୍ଧତି ପରିଦର୍ଶନ କରନ୍ତି । ଏହି ଦୁଇ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ଏବଂ ସେଗୁଡ଼ିକର ଉପକାରିତା ହୃଦୟଙ୍ଗମ କରି ରାଜା ବାହାଦୁର ନିଜ ରାଜ୍ୟର ରାଜଧାନୀ ଦେବଗଡ଼ରେ


Digitized by srujanika@gmail.com

ଏହିପରି ମୁଦ୍ରାଯନ୍ତ୍ର ପ୍ରତିଷ୍ଠାର ସଂକଳ୍ପ ମନେ ମନେ ପୋଷଣ କରିବାରେ ଲାଗିଲେ । ଏହା ପରେ ରାଜା ବାହାଦୁର କଟକସ୍ଥ ଖ୍ରୀଷ୍ଟୀୟ ସଂପ୍ରଦାୟର ଭିନ୍ନ ଭିନ୍ନ ଭଜନାଳୟ ଏବଂ ସେହି ସ୍ଥାନରେ ଉପାସନା ପଦ୍ଧତିର ପରିଚୟ ଲାଭ କଲେ । କଟକର କମିଶନର ସାହେବଙ୍କ ଅଦାଲତ ଓ ଅଫିସ୍ ଗୃହ, ଜଜ୍, ମାଜିଷ୍ଟ୍ରେଟ୍ ପ୍ରଭୃତିଙ୍କର ଅଦାଲତ ଗୃହ ପରିଦର୍ଶନ କରନ୍ତି ।

ଗଙ୍ଗବଂଶୀୟ ରାଜାଗଣଙ୍କର ରାଷ୍ଟ୍ରୀୟ ଶକ୍ତିର ବିଲୋପ ସାଧନ ପରେ, ବଙ୍ଗ-ବିହାର ଓ ଓଡ଼ିଶାର ପ୍ରଜାମଣ୍ଡଳୀଙ୍କର ମିଳିତ ଓ କେନ୍ଦ୍ରୀଭୂତ ସ୍ୱାର୍ଥ ଓ ସୁଖସାଧନ ଭାର ବଙ୍ଗର ନବାବ ନାଜିମ୍‌ଙ୍କ ଉପରେ ନ୍ୟସ୍ତରହିଥିଲା; କିନ୍ତୁ ସେହି ବହୁ ବିସ୍ତୃତ ରାଜ୍ୟ ଉପରେ ନବାବଙ୍କର ସମ୍ୟକ୍ ଶାସନ କେବେହେଲେ ପ୍ରତିଷ୍ଠା ଲାଭ କରିନାହିଁ । ଏଥିପାଇଁ ସର୍ବଦା ଯୁଦ୍ଧ ବିଗ୍ରହ ଓ ତାହା ଫଳରେ ଅତ୍ୟାଚାର ଓ ଅଶାନ୍ତି ରାଜ୍ୟ ମଧ୍ୟରେ ଏକ ସ୍ଥାନରେ ଓ ଅନ୍ୟତ୍ର ନିତ୍ୟ ସଂଘଟିତ ହେଉଥିଲା । ଏହିପରି ଶିଥିଳ ଶାସନ ନିବନ୍ଧନ ଅରାଜକତାର କ୍ଷେତ୍ରେ, ମହାରାଷ୍ଟ୍ରୀୟ ଶକ୍ତି ବିସ୍ତାର ଓ ଦେଶ ଲୁଣ୍ଠନ ଦୀର୍ଘକାଳ ଧରି ଅବାଧରେ ଚାଲିଥିଲା । ମଧ୍ୟ ପ୍ରଦେଶର ଛତିଶଗଡ଼ ଓ ଓଡ଼ିଶାର କରଦ ରାଜ୍ୟ ସମୂହର ରାଜନ୍ୟବର୍ଗ ମହାରାଷ୍ଟ୍ରୀୟ ଅତ୍ୟାଚାରରେ ଯେଉଁ ସମୟରେ ସର୍ବଦା ବିବ୍ରତ ଓ ବିପନ୍ନ ହୋଇ କାଳ ଯାପନ କରିଅଛନ୍ତି, ସେହି ସମୟରେ ଓଡ଼ିଶାର ବର୍ତ୍ତମାନ ରାଜଧାନୀ କଟକ ନଗରରେ ମହାରାଷ୍ଟ୍ରୀୟ ରାଜଶକ୍ତି କିଛିକାଳ ପ୍ରତିଷ୍ଠାଲାଭ କରିଥିଲେ । ସେହି ସମୟରେ ଓଡ଼ିଶାର ସାଧାରଣ ଅବସ୍ଥା ଅତୀବ ଶୋଚନୀୟ ଥିଲା ।

କଟକ ନଗର ମହାନଦୀ ଓ କାଠଯୋଡ଼ି ଏହି ଉଭୟ ନଦୀର ସଂଗମ ସ୍ଥାନରେ ଅବସ୍ଥିତ । କଟକ ସହରର ଏକ ଦିଗର ସମ୍ମୁଖବର୍ତ୍ତୀ ମହାନଦୀର ସୁବିସ୍ତୃତ ପ୍ରସାର, ପର ପାରିରେ ବହୁ ବିସ୍ତୃତ ପ୍ରାନ୍ତର ମଧ୍ୟେ ମଧ୍ୟେ କ୍ଷୁଦ୍ର ପଲ୍ଲୀ ପ୍ରତିଷ୍ଠିତ । ଅପର ଦିଗରେ କାଠଯୋଡ଼ିର ଅପର ପାରିରେ ଅତ୍ୟୁନ୍ନତ ପର୍ବତଶ୍ରେଣୀ ଗଗନ ସ୍ପର୍ଶ କରି ଦଣ୍ଡାୟମାନ । ଦୂରେ-ଅତିଦୂରେ କପିଳାସ ପର୍ବତ ଆକଶପଥେ ଅଗ୍ରସର ହୋଇ ସ୍ୱର୍ଗ-ମର୍ତ୍ତ୍ୟର ମିଳନ ସାଧନ କରୁଅଛି । ସେହି ପର୍ବତ ଶିଖର ଏତେ ଉଚ୍ଚ ଯେ ବୈଶାଖ ଜ୍ୟେଷ୍ଠ ମାସର ପ୍ରଖର ଉତ୍ତାପରେ ମଧ୍ୟ ସେହି ସ୍ଥାନର ଶୀତଳତା ନାଶ କରିପାରେ ନାହିଁ । କଟକର କାଠଯୋଡ଼ି ନଦୀ ତୀରେ ଛିଡ଼ାହୋଇ ପର୍ବତ ଶ୍ରେଣୀର ଶୋଭା ଖୁବ୍ ମନୋହର ମନେହୁଏ; କିନ୍ତୁ ବର୍ଷାର ବାରିପ୍ରବାହରେ କାଠଯୋଡ଼ି ପୂର୍ଣ୍ଣ କଳେବରା ହେଲେ, ପର ପାରିର ପର୍ବତମାଳା ନିବନ୍ଧନ ବନ୍ୟା ଜଳରେ କଟକ ନଗର ପ୍ଲାବିତ ହୋଇଯାଉଥିଲା । ସେହି ଜଳ ପ୍ରବାହର ଗତିରୋଧ କରିବା ପାଇଁ କୌଣସି ସହଜ ଉପାୟ ନଥିଲା । ମହାରାଷ୍ଟ୍ରୀୟ ଉଦ୍ୟମ ଓ ଆୟୋଜନ ଫଳରେ କାଠଯୋଡ଼ି ତୀରରେ ଯେଉଁ ଦୀର୍ଘସ୍ଥାୟୀ ଅତ୍ୟୁଚ୍ଚ ଅକ୍ଷୟ ବନ୍ଧ ପ୍ରସ୍ତୁତ



Digitized by srujanika@gmail.com

ହୋଇଥିଲା, ତାହା ପ୍ରତ୍ୟେକ କଟକ ଯାତ୍ରୀର ଦେଖିବାର ବସ୍ତୁ । ରାଜା ବାସୁଦେବ ମହାରାଷ୍ଟ୍ରୀୟ ଅଧ୍ୟବସାୟର ସ୍ଥାୟୀ ଫଳ କଟକର ବନ୍ଧ ପରିଦର୍ଶନ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ଆଜି ମହାରାଷ୍ଟ୍ରୀୟ ଅତ୍ୟାଚାର ମନୁଷ୍ୟ ଭୁଲିଯାଇଛି, ସେମାନଙ୍କର ସ୍ଥାୟୀ କୀର୍ତ୍ତି ସେହି ସ୍ଥପତି ବିଦ୍ୟାର ନିଦର୍ଶନ ସଂଦର୍ଶନ କରି ଲୋକେ ଚମତ୍କୃତ ହୋଇଥାନ୍ତି । ରାଜା ବାସୁଦେବ କଟକର ଏହି ସକଳ ପର୍ଯ୍ୟବେକ୍ଷଣ ଦ୍ୱାରା ନିଜ ରାଜ୍ୟର ବିଭିନ୍ନ ଉନ୍ନତିର ଉପାୟ ଉଦ୍‌ଭାବନରେ ସକ୍ଷମ ହୋଇଥିଲେ । ପରବର୍ତ୍ତୀ ନାନାବିଧ ବିବରଣୀ ସେହି ସବୁର ପରିଚୟ ପ୍ରଦାନ କରିବେ ।

ରାଜା ବାସୁଦେବ କଟକ ପରିଦର୍ଶନାନ୍ତର କେନାଲ୍ ପଥରେ ନୌକା ଯୋଗେ ଚାନ୍ଦବାଲି ଯାତ୍ରା କଲେ । ଏଠାର ଅଲ୍ଲୀବଜାର ରାଜବାଟୀ ଓ ଦରବାର ଦେଖି ବୈତରଣୀ ତୀରରେ ଚାନ୍ଦବାଲି ଠାରେ ଉପସ୍ଥିତ ହୁଅନ୍ତି । ଚାନ୍ଦବାଲି ଓଡ଼ିଶାର ଏକ ପ୍ରଧାନ ବନ୍ଦର । ସେହି କାଳରେ କଲିକତା ଠାରୁ ସମୁଦ୍ର ପଥରେ ଚାନ୍ଦବାଲି ଓଡ଼ିଶାର ଦ୍ୱାର ସ୍ୱରୂପ ଥିଲା । ଏହି ବନ୍ଦର ବାଲେଶ୍ୱର ଜିଲ୍ଲାର ବୈତରଣୀ ପୂର୍ବ ତୀରରେ ଅବସ୍ଥିତ । ବାଲେଶ୍ୱରର ସେହି ସମୟର ମାଜିଷ୍ଟ୍ରେଟ ଜନ୍ ବୀମ୍‌ସ ସାହେବ କର୍ତ୍ତୃକ ଏହି ବନ୍ଦର ପ୍ରତିଷ୍ଠିତ ହୁଏ । ଏହି ସ୍ଥାନରୁ କଲିକତା ଏବଂ କଲିକତାରୁ ଚାନ୍ଦବାଲିକୁ ସପ୍ତାହରେ ଦୁଇଦିନ ଜାହାଜ ଯିବା ଆସିବା କରୁଥିଲା । ସେହି ସମୟରେ ରାଜଧାନୀର ଶିକ୍ଷା ଓ ସଭ୍ୟତାଜାତ ସର୍ବବିଧ ସୁଖ ଓ ସଂଭୋଗର ଉପକରଣଗୁଡ଼ିକ ଚାନ୍ଦବାଲି ପଥଦେଇ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଅଣାଯାଉଥିଲା । ରାଜା ବାସୁଦେବ ଚାନ୍ଦବାଲିରେ ପହଞ୍ଚି କଲିକତାର ତଦାନିନ୍ତନ କ୍ୟାନିଂ ଲାଇବ୍ରେରୀର ଅଧ୍ୟକ୍ଷ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ବନ୍ଦୋପଧ୍ୟାୟ ମହାଶୟଙ୍କୁ ତାରଯୋଗେ କଲିକତା ଯାତ୍ରାର ସଂବାଦ ଜ୍ଞାପନ କରାଇ, ତାହାଙ୍କର ବାସୋପଯୋଗୀ ସ୍ଥାନ ନିର୍ଦ୍ଦେଶ କରିବା ପାଇଁ ଅନୁରୋଧ କରନ୍ତି । ତଦନୁସାରେ ଯୋଗେଶବାବୁ 'ଜୋଡ଼ାସାଁକୋ'ର ସ୍ୱର୍ଗତ କାଳିପ୍ରସନ୍ନ ସିଂହ ମହାଶୟଙ୍କ କୋଠାରେ ସ୍ଥିତ ସଂସ୍କୃତ ପ୍ରେସ୍ ଡିପୋଜିଟାରିର ଏକାଂଶରେ ସୁବିସ୍ତୃତ କକ୍ଷରେ ତାହାଙ୍କର କଲିକତା ପ୍ରବାସକାଳ ଯାପନର ବ୍ୟବସ୍ଥା କରନ୍ତି ।

ରାଜା ବାସୁଦେବ ସମୁଦ୍ରପଥେ କଲିକତା ଯାତ୍ରା କରନ୍ତି । ବଙ୍ଗୋପସାଗରରେ ଜାହାଜର ଯାତ୍ରୀମାନଙ୍କୁ ବହୁତ କ୍ଳେଶ ଭୋଗ କରିବାକୁ ହୁଏ । ଶାରୀରିକ ବିକାର ନିବନ୍ଧନ ଯାତ୍ରୀମାନେ ସମୁଦ୍ର ଶୋଭା ଦର୍ଶନରେ ମଧ୍ୟ ଅପଟୁ ହୋଇ ଶାୟିତ ରହନ୍ତି ଏବଂ ବାନ୍ତି କରି କରି ସେମାନଙ୍କର ପ୍ରାଣ ଓଷ୍ଠଗତ ହୁଏ । ରାଜା ବାସୁଦେବ ସଂପୂର୍ଣ୍ଣ ରୂପେ ପ୍ରକୃତିସ୍ଥ ରହି ସାଗର ସୌନ୍ଦର୍ଯ୍ୟ ଦର୍ଶନ ଓ ଉପଭୋଗ କରିବାପାଇଁ ନିରାପଦରେ ଗଙ୍ଗାସାଗରରେ ଉପସ୍ଥିତ ହୁଅନ୍ତି । ନଦୀମୁଖରେ ପ୍ରବେଶ କରି ଅଗ୍ରସର ହେଉ ହେଉ କଲିକତା ପ୍ରବେଶ



Digitized by srujanika@gmail.com

କରିବା ପୂର୍ବେ ହିଁ ଗଙ୍ଗାର ଉଭୟ ତୀରସ୍ଥ ଐଶ୍ୱର୍ଯ୍ୟ, ସଂପଦ ଓ ବାଣିଜ୍ୟର ବିଚିତ୍ର ଉନ୍ନତିର ଲକ୍ଷଣ ସବୁ ସନ୍ଦର୍ଶନ କରି ସେ ଆନନ୍ଦ ଉପଭୋଗ କରିଥିଲେ ।

ରାଜା ବାସୁଦେବ କଲିକତା ଆଗମନ ପୂର୍ବକ ଯେଉଁ ସମସ୍ତ ମହାନୁଭବ ବ୍ୟକ୍ତିଙ୍କ ସହିତ ପରିଚିତ ହୋଇଥିଲେ, ସେମାନଙ୍କ ମଧ୍ୟରେ ସର୍ବାଗ୍ରଗଣ୍ୟ ଓ ସର୍ବପ୍ରଧାନ ବ୍ୟକ୍ତି ପଣ୍ଡିତ ପ୍ରବର ସ୍ୱର୍ଗୀୟ ବିଦ୍ୟାସାଗର ମହାଶୟ । ରାଜା ବାସୁଦେବ ସୁଢ଼ଳଦେବ ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ବିଶେଷ ଭାବରେ ବ୍ୟୁତ୍ପନ୍ନ ବୋଲି ସାଗର-ସଦନରେ ବିଶେଷ ପ୍ରତିପତ୍ତିଭାଜନ ଓ ସମ୍ମାନିତ ହୋଇଥିଲେ । ପରିଚୟ ହେବା ସଂଗେ ସଂଗେ ତ୍ୱରିତ ଉଭୟଙ୍କ ମଧ୍ୟରେ ଆତ୍ମୀୟତାର ସୂତ୍ରପାତ ହୁଏ  ଏବଂ ପରେ ତାହା ଗାଢ଼ତା ଲାଭ କରି ଦୀର୍ଘସ୍ଥାୟୀ ହୋଇଥିଲା । ପ୍ରସଂଗକ୍ରମେ ପରେ ସେହି ସବୁ ବିଷୟରେ ଆଲୋଚନା କରାହେବ । ରାଜା ବାହାଦୁର ଏକମାସକାଳ କଲିକତାରେ ଅବସ୍ଥାନ କରିଥିଲେ । କିପରି ସ୍ୱଭାବ, ଏହି ଏକମାସର ଦିନଟିଏ ମଧ୍ୟ ରାଜଯୋଗ୍ୟ ବିଶ୍ରାମରେ ଯାପନ କରି ନାହାନ୍ତି । ନିୟତ ନାନା ସ୍ଥାନ ପରିଦର୍ଶନରେ ନିଯୁକ୍ତ ଥାଇ ବିବିଧ ଜ୍ଞାନୋପାର୍ଜ୍ଜନରେ ରତ ଥିଲେ ।

ରାଜା ବାସୁଦେବ କଲିକତାରେ ପହଞ୍ଚି ସର୍ବାଗ୍ରେ କାଳୀଘାଟରେ ଦେବତା ଦର୍ଶନ ଓ ପୂଜାପାଇଁ ଗମନ କରନ୍ତି । ପରେ ରାଜା ବାହାଦୁର ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ଚର୍ଚ୍ଚାର ପ୍ରଧାନ କେନ୍ଦ୍ର ସଂସ୍କୃତ କଲେଜ ପରିଦର୍ଶନ କରିବାକୁ ଯାଆନ୍ତି । ସେଠାରେ ଅଧ୍ୟକ୍ଷ ସ୍ୱର୍ଗୀୟ ନ୍ୟାୟରତ୍ନ ଓ ସ୍ୱର୍ଗତ ମଧୁସୂଦନ ସ୍ମୃତିରତ୍ନ  ମହାଶୟଦ୍ୱୟଙ୍କ ସହିତ ପରିଚିତ ଓ ସେମାନଙ୍କ କର୍ତ୍ତୃକ ସମାଜରେ ପରିଗୃହୀତ ହୁଅନ୍ତି । ବିଦ୍ୟାଳୟର ଶିକ୍ଷାଦାନ ପଦ୍ଧତି ଏବଂ ପ୍ରଚୁର ସଂସ୍କୃତ ପୋଥିର ସମାବେଶ ସଂଦର୍ଶନରେ ସେ ଆନନ୍ଦ ଲାଭ କରିଥିଲେ । ତତ୍ପରେ ହିନ୍ଦୁ ଓ ହାୟାର ସ୍କୁଲ୍ ଓ ପ୍ରେସିଡେନ୍ସି କଲେଜ ଦେଖିବାକୁ ଯାଆନ୍ତି । ଏହି ସମସ୍ତ ଶିକ୍ଷାନୁଷ୍ଠାନ ପରିଦର୍ଶନ ଫଳରେ, ବାମଣ୍ଡାରେ  ଆଧୁନିକ ବ୍ୟବସ୍ଥାନୁଯାୟୀ ସୁଶିକ୍ଷା ଦାନର ସୁବ୍ୟବସ୍ଥା କରିବାର ଅକାଂକ୍ଷା ତାଙ୍କ ହୃଦୟରେ ପ୍ରବଳ ହୋଇଉଠେ । ତତ୍ପରେ ଏସିଆଟିକ୍ ସୋସାଇଟିର ସଭାଗୃହ ଦେଖିବାକୁ ଯାଆନ୍ତି ଓ ଯାଦୁଘର ମଧ୍ୟ ଦେଖନ୍ତି । ଏସିଆ ଭୂଖଣ୍ଡର ବିବିଧ ତତ୍ତ୍ୱର ଆଲୋଚନା ପାଇଁ ୧୭୭୫ ଖ୍ରୀଷ୍ଟାବ୍ଦରେ ସାର୍ ଉଇଲିୟମ୍ ଜୋନ୍ସ କର୍ତ୍ତୃକ ଏହି ଏସିଆଟିକ୍ ସୋସାଇଟି ପ୍ରତିଷ୍ଠିତ ହୁଏ । ରାଜା ବାସୁଦେବ ପୂର୍ବବର୍ତ୍ତୀ ଶତବର୍ଷରେ ସଂଗୃହୀତ ବିବିଧ ତତ୍ତ୍ୱର ସମ୍ବାଦ ପରିଜ୍ଞାତ ହୋଇ ଓ ଯାଦୁଘରରେ ଭୂତତ୍ତ୍ୱ, ପ୍ରାଣୀତତ୍ତ୍ୱ ଓ ଅନ୍ୟ ବବିଧ ତତ୍ତ୍ୱ ବିଷୟକ ଜ୍ଞାନ ଲାଭର ପ୍ରଚୁର ଆୟୋଜନ ଦେଖି ଆଷ୍ଚର୍ଯ୍ୟାନ୍ୱିତ ହୋଇ ଥିଲେ । ସେ ତାହାଙ୍କର ଶିକ୍ଷା ଲୋଲୁପ ହୃଦୟ ମନନେଇ, ଜ୍ଞାନ ଲାଭର ଏହିପରି ବିବିଧ ସରଂଜାମର ଏକତ୍ର ସମାବେଶ ସନ୍ଦର୍ଶନରେ, ମୁଗ୍ଧ ମନେ ପୁନଃ ପୁନଃ ସେହି ସମସ୍ତ



Digitized by srujanika@gmail.com

ସ୍ଥାନକୁ ଗମନ କରିଛନ୍ତି । ସେ ଏକ ସ୍ଥାନର ଏକ ବିଷୟ, ଥରେ ଦେଖି ସନ୍ତୁଷ୍ଟ ହୋଇ ନାହାନ୍ତି । ବାରମ୍ବାର ଦେଖି ଓ ସେହି ବିଷୟର ପୁଙ୍ଖାନୁପୁଙ୍ଖ ଅନୁସଂଧାନ କରି ସନ୍ତୁଷ୍ଟ ହୋଇଛନ୍ତି । ଏହା ତାହାଙ୍କର ସ୍ୱାଭାବିକ ଗୁଣ ଥିଲା । ସେ ଅରଣ୍ୟପରିବେଷ୍ଟିତ ପାର୍ବତ୍ୟ ପ୍ରଦେଶର ରାଜା ହେଲେ ମଧ୍ୟ, କଲିକତା ପ୍ରବାସକାଳ ପୂର୍ବେ, ସ୍ୱହସ୍ତରେ ବ୍ୟାଘ୍ର, ଭଲ୍ଲୁକାଦି ଶିକାର କରିଥିଲେ ମଧ୍ୟ, ଆଲିପୁରର ପଶୁଶାଳା ଦର୍ଶନ କରିବାପାଇଁ ଯାଇଥିଲେ । ସେହି ଉଦ୍ୟାନର ଜୀବଗଣ, ସେମାନଙ୍କର ପ୍ରତିପାଳନ ବ୍ୟବସ୍ଥାର ପରିପାଟି, ବ୍ୟାଘ୍ର ଓ ଭଲ୍ଲୁକ ଠାରୁ ଆରମ୍ଭ କରି ବଣମଣିଷ ଓ ନାନା ଶ୍ରେଣୀର ଜୀବଠାରୁ ଆରମ୍ଭ କରି ଚକୋର ଚକୋରୀ ପର୍ଯ୍ୟନ୍ତ, କ୍ଷୁଦ୍ର ବୃହତ୍ ଦ୍ୱିପଦ ଓ ଚତୁଷ୍ପଦ ଚତୁର୍ହସ୍ତ ଓ ହସ୍ତପଦହୀନ, ଖେଚର, ଭୂଚର, ଜଳଚର, ଉଭୟଚର ସର୍ବବିଧ ଜୀବଙ୍କର ଏହି ବିଚିତ୍ର ନିବାସ ଦର୍ଶନ ଓ ସେମାନଙ୍କର ରକ୍ଷଣାବେକ୍ଷଣ ଓ ପରିଚର୍ଯ୍ୟାର ସୁବ୍ୟବସ୍ଥା ପର୍ଯ୍ୟବେକ୍ଷଣ କରି ଗଭୀର ଆନନ୍ଦ ଅନୁଭବ କରିଥିଲେ । ସଂଗେ ସଂଗେ ଏହି ସକଳ ବିବିଧ ଶିକ୍ଷାକେନ୍ଦ୍ରର ପ୍ରତିଷ୍ଠା ପାଇଁ ଇଂରେଜ ରାଜ ଶକ୍ତିର ପ୍ରଚୁର ପ୍ରଶଂସା କରିଥିଲେ । ଏହାପରେ କଲିକତାର ଇଡେନ୍ ଉଦ୍ୟାନର ରମଣୀୟତା ଓ ଶିବପୁରର ସୁବିସ୍ତୃତ ବୃକ୍ଷବାଟିକା ପରିଶୋଭିତ ଉଦ୍ୟାନର (Botanical Garden) ଶାନ୍ତ କାନ୍ତି ଦର୍ଶନ ଓ ସଂଭୋଗ କରିବା ପାଇଁ ଯାଇଥିଲେ । ଏହି ସମସ୍ତ ଉଦ୍ୟାନ ସନ୍ଦର୍ଶନ ଫଳରେ ତାଙ୍କର ମନରେ ଯେଉଁ ସ୍ଥାୟୀ ଭାବ ସ୍ଥାନ ପାଇଥିଲା ଏବଂ ସେହି ଭାବ ପରବର୍ତ୍ତୀ କାଳରେ କିଭଳି ଆକାର ପ୍ରାପ୍ତ ହୋଇଥିଲା, ସେହିସବୁର ବିବରଣୀ ବାମଣ୍ଡା ରାଜ୍ୟର ରାଜଧାନୀ ଦେବଗଡ଼ର ସୌଷ୍ଠବ ଓ ଶ୍ରୀବୃଦ୍ଧି ସଂପାଦନ କ୍ଷେତ୍ରରେ ଆପଣାଛାଏଁ ପ୍ରକାଶ ପାଇବ ।

ରାଜା ବାସୁଦେବ ସୁଢ଼ଳଦେବ କେବଳ ବ୍ୟକ୍ତିଗତ ଭାବେ ଜ୍ଞାନବୃଦ୍ଧି ପାଇଁ ବ୍ୟସ୍ତ ଥିଲେ, ତାହା ନୁହେଁ, କେବଳ ବ୍ୟାକରଣ, ସାହିତ୍ୟ କାବ୍ୟ, ଦର୍ଶନ, ଶାସ୍ତ୍ର ଶିକ୍ଷାରେ ବ୍ୟସ୍ତଥିଲେ, ତାହାନୁହେଁ, ସାଧାରଣ ଭାବେ ଦୃଷ୍ଟି ଶକ୍ତିର ପରିଚାଳନ ଓ ସୁପ୍ରଣାଳୀବଦ୍ଧ ପଦ୍ଧତି କ୍ରମେ ଦୃଷ୍ଟ ଓ ଶ୍ରୁତ ବିଷୟ ସକଳର ମୀମାଂସା କରି ନିଶ୍ଚିତ ହୋଇ ରହିବାର ପାତ୍ର ମଧ୍ୟ ନଥିଲେ । ତାହାଙ୍କର ରାଜୋଚିତ ଗୁଣସଂପନ୍ନ ହୃଦୟ ମନ, ସର୍ବଦା ହିଁ ଅର୍ଜ୍ଜିତ ବିଦ୍ୟା ଓ ଜ୍ଞାନବଳରେ ନିଜର ଓ ଜନସାଧାରଣଙ୍କର ହିତସାଧନରେ ସର୍ବଦା ତତ୍ପର ଥିଲା । ତେଣୁ ଭାରତର ରାଜଧାନୀର ଶ୍ରେଷ୍ଠତର ଶିକ୍ଷାକେନ୍ଦ୍ର ମାନ ପରିଭ୍ରମଣ ଓ ପରିଦର୍ଶନ କରି ନିଶ୍ଚିତ ହୋଇପାରି ନାହାନ୍ତି । ଇଂରେଜ୍ ସୌଦାଗରମାନଙ୍କ କାର୍ଯ୍ୟାଳୟମାନ, କଲିକତାର 'ବଡ଼ବଜାର' ର ମାରୱାଡ଼ି ଓ ଅନ୍ୟାନ୍ୟ ବ୍ୟବସାୟୀଙ୍କର କର୍ମକ୍ଷେତ୍ର, ହାଟଖଲାର କାରବାର ସ୍ଥାନ ସକଳ ମଧ୍ୟ ତନ୍ନ ତନ୍ନ କରି ଦେଖିଥିଲେ । ଅଳ୍ପ ମୂଳଧନରେ ବହୁଶ୍ରମ ସହକାରେ



Digitized by srujanika@gmail.com

କାର୍ଯ୍ୟରେ ସୁସିଦ୍ଧି ଲାଭର୍ ଉପାୟ ସବୁ ଜାଣିବାର ଚେଷ୍ଟା କରିଥିଲେ, ଏଥିରୁ ସ୍ପଷ୍ଟ ବୁଝାପଡ଼େ ଯେ, କେବଳ ନିଜର ଜ୍ଞାନବୃଦ୍ଧି ହିଁ ତାହାଙ୍କର ଲକ୍ଷ୍ୟ ନଥିଲା । ରାଜ୍ୟର ଓ ପ୍ରଜାମଣ୍ଡଳୀଙ୍କର ସର୍ବବିଧ କଲ୍ୟାଣ ସାଧନର ସହଜ ଉପାୟ ସକଳ ଅବଗତ ହେବା ମଧ୍ୟ ତାହାଙ୍କର ଏହି ଅସଂଗତ କ୍ଳେଶ ସ୍ୱୀକାରରର ଅନ୍ୟତମ ଉଦ୍ଦେଶ୍ୟ ଥିଲା ।

ରାଜା ବାସୁଦେବ କୌଣସି ବିଷୟରେ ସମ୍ବାଦ ବା ମର୍ମକଥା ଲୋକମୁଖରେ ଶୁଣି କିମ୍ୱା ଅଭିଜ୍ଞ ବ୍ୟକ୍ତିଗଣଙ୍କର ପ୍ରଦତ୍ତ ବିବରଣୀ ଉପରେ ନିର୍ଭର କରି ସନ୍ତୁଷ୍ଟ ହୋଇ ପାରୁନଥିଲେ । ସକଳ ବିଷୟ ସ୍ୱୟଂ ସ୍ୱଚକ୍ଷୁରେ ଦେଖି ଓ ସେହି ସବୁର ତାତ୍ପର୍ଯ୍ୟ ଦୃଷ୍ଟିଗତ କରି ତେବେ ଯାଇ ନିଶ୍ଚିନ୍ତ ହେଉଥିଲେ । କୌଣସି ବିଷୟକୁ ସହଜରେ ଛାଡ଼ିଦେବାର ପାତ୍ର ସେ ନଥିଲେ । ତେଣୁ କଲିକତା ଅବସ୍ଥାନ କାଳରେ ତାହାଙ୍କର ଜାଣିବାର ବିବିଧ ବିଷୟ କଲିକତାର ସୀମା ଭିତରେ ଆବଦ୍ଧ ନଥିଲା । କଲିକତା ଅବସ୍ଥାନ କାଳରେ ସେ ଶ୍ରୀରାମପୁର କାଗଜ କଳ, ଚଟକଳ ଓ ଫ୍ଲାଇସଟଲ୍ ତନ୍ତ ଦେଖିବାକୁ ଯାଇଥିଲେ । ସେଠାରେ କାଗଜ ପ୍ରସ୍ତୁତ କରିବାର ନିୟମ ପଦ୍ଧତି ଓ ତନ୍ତରେ ବସ୍ତ୍ର ବୟନ ଦେଖି ଯେଉଁ ନୂତନ ଜ୍ଞାନ ଅର୍ଜନ କରିଥିଲେ, ପରବର୍ତ୍ତୀ କାଳରେ ନିଜ ରାଜ୍ୟରେ ସେହି ସକଳ ଉପାୟର ଅବଲମ୍ବନରେ କୃତକାର୍ଯ୍ୟ ମଧ୍ୟ ହୋଇଥିଲେ । ସେହି ସମସ୍ତ ବିଷୟ ତାହାଙ୍କର ରାଜ୍ୟର ଶ୍ରୀବୃଦ୍ଧି ସାଧନ ବିବରଣୀ ମଧ୍ୟରେ ଆଲୋଚିତ ହେବ ।

ସେ କେବଳ ଏତକ ଜାଣି ବା ଶୁଣି ସନ୍ତୁଷ୍ଟ ହୋଇ ନାହାନ୍ତି । କଲିକତା ବନ୍ଦରରେ ଭାଗିରଥୀ ବକ୍ଷରେ ବିଦେଶୀୟ ବାଣିଜ୍ୟ ପୋତ ସବୁ ଧାଡ଼ିବାନ୍ଧି ସର୍ବଦା ବିରାଜିତ । କିପରି ବ୍ୟବସ୍ଥା ସୂତ୍ରେ କେଉଁ କେଉଁ ଦ୍ରବ୍ୟ କେଉଁ କେଉଁ ଦେଶରୁ ଆମ ଦେଶକୁ ଆସୁଅଛି, ଏବଂ ତତ୍‌ପରିବର୍ତ୍ତେ ସ୍ୱଦେଶ ଜାତ ଯେଉଁ ସବୁ ଦ୍ରବ୍ୟ ବିଦେଶକୁ ରପ୍ତାନି ହେଉଅଛି, ସେ ସବୁ ଏବଂ ସେହି ବିଦେଶୀ ଦ୍ରବ୍ୟର ଆମଦାନୀ ଓ ଦେଶୀୟ ଦ୍ରବ୍ୟ ସଂଭାର ରପ୍ତାନିର ନିୟମ ପଦ୍ଧତି  ପର୍ଯ୍ୟନ୍ତ ଜାଣିବା ଓ ବୁଝିବାର ଚେଷ୍ଟା କରିଥିଲେ । ଆଉ ରାଜା ବାସୁଦେବଙ୍କର ଏହି ସମସ୍ତ ଶିକ୍ଷାକେନ୍ଦ୍ର ଓ କର୍ମକ୍ଷେତ୍ର ପରିଦର୍ଶନଟା, ବଙ୍ଗ-ବିହାର ଓ ଓଡ଼ିଶାର ସାଧାରଣ ଓ ପଦସ୍ଥ ଶିକ୍ଷିତ ବ୍ୟକ୍ତିଗଣଙ୍କ ଦେଖିବା ପରି ଦେଖିବା ନୁହେଁ । ଆମଦେଶର ଧନସଂପଦ ସଂପନ୍ନ ବାବୁମାନେ, ଆଳସ୍ୟଭରେ ହାଇମାରୁ ମାରୁ ଉପର ଠାଉରିଆ, ଐଶ୍ୱର୍ଯ୍ୟ ସଂପଦ ବୃଦ୍ଧିର ଏହି ସକଳ ଅସାମାନ୍ୟ ଆୟୋଜନ ପ୍ରତି ଉଦାସ ଉପେକ୍ଷାର ଦୃଷ୍ଟିପାତ କରି କୃତାର୍ଥ ହୁଅନ୍ତି ଓ ଆୟୋଜନ କର୍ତ୍ତାମାନଙ୍କ ଅପୂର୍ବ ଶକ୍ତି ସାମର୍ଥ୍ୟର ପ୍ରଶଂସା କରି ଆନନ୍ଦ ଅନୁଭବ କରିଥାନ୍ତି । ରାଜା ବାସୁଦେବ ସୁଢ଼ଳଦେବ ଏହି ଶ୍ରେଣୀର ସୌଖିନୀ ବ୍ୟକ୍ତି ନଥିଲେ । ଏହି ହତଭାଗ୍ୟ ଦେଶର ଅସଂଖ୍ୟ କୋଟି ଜୀବମଣ୍ଡଳୀର ମଧ୍ୟସ୍ଥଳେ ରାଜା



Digitized by srujanika@gmail.com

ବାସୁଦେବ ଜନ୍ମଗ୍ରହଣ କରି ଭୀଷଣ ଅରଣ୍ୟ ବେଷ୍ଟିତ ପାଷାଣ କ୍ଷେତ୍ରକୁ ଜନସାଧାରଣଙ୍କ ସୁଖ ସୌଭାଗ୍ୟ ସଂଭୋଗ ଉପଯୋଗ ଆନନ୍ଦ ନିକେତନରେ ପରିଣତ କରି ଯାଇଛନ୍ତି । ତାହାଙ୍କର ରାଜ୍ୟ ଶାସନ ଓ ପ୍ରଜାପାଳନ ପଦ୍ଧତିର ପୁନଃ ପୁନଃ ପ୍ରଶଂସାରେ ମଧ୍ୟ ଭାରତର ବାହରିକ ଶାସନ ବିବରଣୀ ପୂର୍ଣ୍ଣ ଦେଖିବାକୁ ମିଳିଥାଏ ।

ଏଥିରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ ଯେ, ରାଜା, ଆପଣା ରାଜକୀର୍ତ୍ତି ବଳରେ ଭାରତର ବର୍ତ୍ତମାନ ସମ୍ରାଟ ଶକ୍ତି ସଂପନ୍ନ ଇଂରେଜ ରାଜଚକ୍ରବର୍ତ୍ତୀଙ୍କର ପ୍ରୀତି ସାଧନର ସଂଗେ ସଂଗେ ସ୍ୱଦେଶୀୟ ଜନମଣ୍ଡଳୀଙ୍କର ଗଭୀର ଭକ୍ତି ଓ ସ୍ଥାୟୀ ସମାଦରର ପାତ୍ର ହୋଇ ପାରିଥିଲେ, ଏହା ସାଧାରଣ ସୌଭାଗ୍ୟ ନୁହେଁ । ଏହାର ପ୍ରଧାନ କାରଣ ଏହି ଯେ, ରାଜା ବାସୁଦେବ ଉନ୍ନତତର ରାଷ୍ଟ୍ରନୀତିଜ୍ଞ ଥିଲେ । ରାଜ୍ୟର ପରିମାଣ ଫଳ ଅଧିକ ନୁହେଁ, କିନ୍ତୁ ବିବିଧ ଉପାୟରେ ଆପଣା ରାଜ୍ୟର ଉତ୍ପନ୍ନ ଦ୍ରବ୍ୟ ରପ୍ତାନିର ପନ୍ଥା ଉଦ୍‌ଭାବନ କରି ରାଜ୍ୟର ସଂପଦ ବୃଦ୍ଧି ଓ ଧନାଗମର ନିତ୍ୟ ନୂତନ ଉପାୟ ଅବଲମ୍ବନ କରୁଥିଲେ । ସେହି ବର୍ଦ୍ଧିତ ଅର୍ଥ ସାହାଯ୍ୟରେ ରାଜପଥ ରଚନା, ପୁଷ୍କରିଣୀ ଖନନ, ବିଦ୍ୟାଳୟ ପ୍ରତିଷ୍ଠା, କୃଷିକାର୍ଯ୍ୟର ଉନ୍ନତି ସାଧନ, ରାଜକର୍ମଚାରୀମାନଙ୍କ ଆର୍ଥିକ ଦୁରାବସ୍ଥାର ପରିବର୍ତ୍ତନ, ରାଜ ସଂସାର ସଂପର୍କିତ ବ୍ୟକ୍ତିବୃନ୍ଦଙ୍କର ଅଳସ ଭାବରେ ବସି ବସି ଅନ୍ନଜଳ ଗ୍ରହଣ ନିବାରଣ, ସେମାନଙ୍କୁ ନୂତନ ପଦ୍ଧତି ଅନୁସାରେ ଜୀବିକା ଅର୍ଜ୍ଜନର ପନ୍ଥା ଦେଖାଇ ମୂଳଧନ ପ୍ରଦାନ ଏବଂ ସ୍ଥାନୀୟ ଲୋକମାନଙ୍କୁ ରାଜକାର୍ଯ୍ୟ ଉପଯୋଗୀ କରି ତୋଳିବା ପାଇଁ ପ୍ରାଣପଣ ପ୍ରଚେଷ୍ଟା କରିବାରେ, ରାଜା ବାସୁଦେବ ସୁଢ଼ଳଦେବଙ୍କ ଜୀବନର ଆଦର୍ଶ ଥିଲା ।

କଲିକତା ସହିତ ପରିଚିତ ହୋଇ, ରାଜଧାନୀର ଏକ ଛାପ ବକ୍ଷରେ ଧାରଣ କରି ରାଜା ବାହାଦୁର ପଶ୍ଚିମ ଭାରତ ପଥରେ ଅଗ୍ରସର ହେଲେ । କଲିକତାରୁ ରାଜା ବାସୁଦେବ କାଶୀଯାତ୍ରା କରନ୍ତି । ସେଠାରେ ଉପସ୍ଥିତ ହୋଇ ସର୍ବାଗ୍ରେ ପୁଣ୍ୟ କ୍ଷେତ୍ରରେ ଧର୍ମାନୁଷ୍ଠାନ କାର୍ଯ୍ୟ ସଂପନ୍ନ କରନ୍ତି, ମଣିକର୍ଣ୍ଣିକା ସ୍ନାନ, ବିଶେଶ୍ୱର ଓ ଅନ୍ନପୂର୍ଣ୍ଣା ଦର୍ଶନ, ତୀର୍ଥଶ୍ରାଦ୍ଧ ସଂପାଦନ, ଦୀନ ଦୁଃଖୀଙ୍କୁ ଦାନ, ବ୍ରାହ୍ମଣ ପଣ୍ଡିତଗଣଙ୍କୁ ନିମନ୍ତ୍ରଣ କରି ଭୋଜ୍ୟ ଓ ଅଧ୍ୟାପକ ବିଦାୟ ଦାନ ଇତ୍ୟାଦି ସ୍ଥାନୀୟ ଲୌକିକ ଓ ଆଧ୍ୟାତ୍ମିକ ଅନୁଷ୍ଠାନ ମାନ ସଂପନ୍ନ କରି ପରେ ନଗର ଦର୍ଶନ ଓ ପଣ୍ଡିତଗଣଙ୍କ ସହିତ ପୁନଃପୁନଃ ଧର୍ମଶାସ୍ତ୍ର ବିଷୟକ ସଦାଳାପ ଇତ୍ୟାଦି କାର୍ଯ୍ୟରେ ବ୍ୟାପୃତ ହେଲେ । କାଶୀର କୁଇନ୍‌ସ କଲେଜ ଓ ଶିଖ୍‌ରୋଲର ଇଂରେଜ ନିବାସ ସମ୍ବଳିତ ପ୍ରାଚୀନ କ୍ୟାଣ୍ଟନ୍‌ମେଣ୍ଟର ପ୍ରାନ୍ତର ପରିଦର୍ଶନ କାର୍ଯ୍ୟ ସମାପନ କଲେ । ଏଠାକାର ମାନ ମନ୍ଦିର ଓ ଜ୍ୟୋତିଷଶାସ୍ତ୍ର ଅଧ୍ୟାପନାର ବ୍ୟବସ୍ଥା ଦେଖି ଅତିଶୟ ଆନନ୍ଦ ଉପଭୋଗ କରିଥିଲେ ।



Digitized by srujanika@gmail.com

ଧର୍ମକ୍ଷେତ୍ର କାଶୀର ଧର୍ମାନୁଷ୍ଠାନ ନିରତ ସାଧୁଜନମଣ୍ଡଳୀଙ୍କର ସମ୍ବାଦ ଗ୍ରହଣ କରିବାରେ ରାଜା ବାସୁଦେବ ତ୍ରୁଟି କରି ନାହାନ୍ତି । ଉତ୍ତର କାଳରେ ବାମଣ୍ଡାର ବିଜ୍ଞାନଗାର ପ୍ରତିଷ୍ଠାର ଉଲ୍ଲେଖ କାଳରେ ପୁନରାୟ କାଶୀର ଉଲ୍ଲେଖ ପ୍ରୟୋଜନ ହେବ ।

ରାଜାବାହାଦୁର ଏଠାରୁ ଲକ୍ଷ୍ନୌ ଯାତ୍ରା କରନ୍ତି, ପଥରେ ପ୍ରାଚୀନ ଅଯୋଧ୍ୟା ବା ଫୟଜାବାଦ ଅବତରଣ ପୂର୍ବକ ଦେବ ଦର୍ଶନ ଓ ରାମକାହାଣୀ ସଂପୃକ୍ତ ନାନା ବିବରଣ ପରିଜ୍ଞାତ ହୋଇ ଲକ୍ଷ୍ନୌରେ ଉପସ୍ଥିତ ହୁଅନ୍ତି । ଲକ୍ଷ୍ନୌ ନଗରରେ ଦର୍ଶନୀୟ ବସ୍ତୁ ଅନେକ । ଲକ୍ଷ୍ନୌର ଶେଷ ନବାବ ମହାମାନ୍ୟ ଓ୍ବଜେଦ୍ ଅଲ୍ଲୀଙ୍କ ରାଜଭବନ ଦର୍ଶନୀୟ ସ୍ଥାନ । ସଂପଦ ଓ ସୌଭାଗ୍ୟଜାତ ସଉକ୍‌ର କ୍ଷେତ୍ର ଲକ୍ଷ୍ନୌ ନଗର । ନବାବ କହିଲେ ହିଁ ତାହାର ଅନ୍ତରାଳରେ ଏଭଳି ଏକ ବିଳାସ ବାସନାର ଚରିତାର୍ଥତା ସଂପାଦନ ବୁଝାଏ, ଯେ ଆଜିକାଲି କାହାରି ମଧ୍ୟ ସଂସାର ଯାତ୍ରା ନିର୍ବାହରେ ଅତିରିକ୍ତତା ଦେଖିବା ମାତ୍ରେ ହିଁ ଲୋକେ ତାହାଙ୍କୁ ନବାବ ବୋଲି ତିରସ୍କାର କରିଥାନ୍ତି । କହନ୍ତି 'ଲୋକଟିର ନବାବୀ ଚାଲ୍ ଦେଖିଛ ?' ଏହି ନବାବୀ ଚାଲି ଚଳନର ପୂର୍ଣ୍ଣାଙ୍ଗ ଚିତ୍ର ଲକ୍ଷ୍ନୌର କୈଶରବାଗ୍‌ରେ ବିଦ୍ୟମାନ । ରାଜାବାହାଦୁର ଲକ୍ଷ୍ନୌର ଲୀଳା-ନିକେତନ କୈଶରବାଗ୍ ଦର୍ଶନ କରି ବେଶ୍ ବୁଝିପାରିଥିଲେ, କେଉଁ ପାପ ଫଳରେ ମୁସଲମାନ ରାଜଶକ୍ତି ଭାରତ ଲକ୍ଷ୍ମୀଙ୍କର ଅଙ୍କଚ୍ୟୁତ ହୋଇଥିଲେ । କଲିକତାର ଦକ୍ଷିଣ-ପଶ୍ଚିମ ପ୍ରାନ୍ତବର୍ତ୍ତୀ ମେଟିୟାବ୍ରୁଜର ନବାବ ନିକେତନରେ ନଜର ବନ୍ଦୀ ନବାବ ଓ୍ବାଜେଦ୍ ଅଲ୍ଲୀଙ୍କର ଲକ୍ଷ୍ନୌସ୍ଥିତ ରାଜଭବନର ବେଗମ୍ ମହଲରେ ତିନିଶହ ପଅଁଷଠୀ ପୃଥକ୍ ପୃଥକ୍ ବେଗମ୍ ନିକେତନ । ଏଗୁଡ଼ିକର ପ୍ରତ୍ୟେକଟିରେ ଜଣେ ଜଣେ ବେଗମ ବାସ କରୁଥିଲେ । ସେମାନଙ୍କର ମୋଟ ସଂଖ୍ୟା ତିନିଶହ ପଅଁଷଠି, ଏହିସବୁ ହିଁ ଓ୍ବାଜେଦ୍‌ଙ୍କ ଅଧଃପତନର ପ୍ରଶସ୍ତ ସୋପାନ ରୂପେ ଦୀର୍ଘକାଳ ବିଦ୍ୟମାନ । ରାଜା ବାସୁଦେବ ସୁଡ଼ଳଦେବ ଏସବୁ ଦେଖିବା ସମୟରେ ଅବଶ୍ୟ ହିଁ ଦୀର୍ଘ ନିଃଶ୍ୱାସ ଭରେ ଭାରତର ସେକାଳର ଭାଗ୍ୟାକାଶରେ ମହାପରିବର୍ତ୍ତନର ଚିହ୍ନ ସକଳ ଅଙ୍କିତ ହୋଇଥିବା ଦେଖିଥିଲେ । ସେହି ପରିତ୍ୟକ୍ତ ରାଜଭବନରେ ବିଳାସ ପ୍ରସାଦର ଚିହ୍ନ ସ୍ୱରୂପ କେବଳ କ'ଣ ଏହାହିଁ ଦେଖିଥିଲେ ? ନା ଆହୁରି ମଧ୍ୟ ଦେଖିଥିଲେ, ସେହି ରାଜଅନ୍ତଃପୁରର ଅଙ୍ଗନରେ ନବାବଙ୍କ ମହିଷୀ ସହ ଜଳକ୍ରୀଡ଼ାପାଇଁ ମର୍ମର ନିର୍ମିତ କୃତ୍ରିମ ଜଳାଶୟ ପ୍ରତିଷ୍ଠିତ ଥିଲା । ଆକଣ୍ଠ ମଗ୍ନ ହେବାର ଉପଯୋଗୀ ଜଳାଶୟରେ ସନ୍ତରଣ କାଳରେ, ସଂଚିତ ଜଳରାଶି ସହସା ତିରୋହିତ ହେଲେ ନବାବଙ୍କ ସଦନେ ମର୍ଯ୍ୟାଦା ରକ୍ଷା ଓ ଲଜ୍ଜା ନିବାରଣରେ ଅସମର୍ଥ ବେଗମଗଣଙ୍କର ଅସହାୟ ଅବସ୍ଥା ନବାବଙ୍କର ଅସୀମ ପ୍ରୀତି ବୃଦ୍ଧି କରୁଥିଲା । ସେହି କୃତ୍ରିମ ଜଳାଶୟ ଦୀର୍ଘକାଳ ବିଦ୍ୟମାନ ରହି ନବାବୀ



Digitized by srujanika@gmail.com

ଇତିହାସର ସାକ୍ଷ୍ୟଦାନ କରୁଅଛି । ରାଜା ବାସୁଦେବ ଏ ସମସ୍ତ ଦେଖି ହୃଦୟର ଲୁକ୍କାୟିତ ବକ୍ଷରେ ଅନୁଭବ କରିଥିଲେ ।

ଇଂରେଜ ରାଜଶକ୍ତିର ଭାରତୀୟ ପରିଚାଳକଗଣଙ୍କ ମଧ୍ୟରେ ଅକ୍ଷୟ କୀର୍ତ୍ତି-ସଂପନ୍ନ କେତେକ ମହାତ୍ମାଙ୍କ ମଧ୍ୟରୁ ଅନ୍ୟତମ ପ୍ରାତଃ ସ୍ମରଣୀୟ ଲର୍ଡ଼ କ୍ୟାନିଂକର ନାମ ସଂଯୁକ୍ତ 'କ୍ୟାନିଂ କଲେଜ' ପରିଦର୍ଶନ କରନ୍ତି । ଲକ୍ଷ୍ନୌର ଲାମାଟିନିୟା ବିଦ୍ୟାଳୟ ଭବନ ଅତି ସୁନ୍ଦର । ତାହା ମଧ୍ୟ ଦେଖିଥିଲେ । ଛତ୍ରମଂଜିଲ୍ ନାମକ (ବର୍ତ୍ତମାନ ବିଚାରଳୟରେ ପରିବର୍ତ୍ତିତ) ସୁଦୃଶ୍ୟ ପ୍ରାଚୀନ ସ୍ୱର୍ଣ୍ଣଚୂଡ଼ ହର୍ମ୍ୟର ନିର୍ମାଣ ପରିପାଟି ଦର୍ଶନରେ ପ୍ରୀତି ଲାଭ କରିଥିଲେ । ଲକ୍ଷ୍ନୌର ପ୍ରସିଦ୍ଧ ଇମାମ୍‌ବାଡ଼ି ଦେଖିବା ବସ୍ତୁ, ସେଠାକୁ ପ୍ରବେଶ ଦ୍ୱାର ଏତେ ଉଚ୍ଚ ଯେ ବିସ୍ମୟ ସହକାରେ ଉପରକୁ ବହୁ ସମୟ ଧରି ଦୃଷ୍ଟିପାତ ନକଲେ, ତାହାର ସୌନ୍ଦର୍ଯ୍ୟ ସଂଭୋଗ ସମ୍ଭବପର ନୁହେଁ । ସେହି ପ୍ରବେଶ ଦ୍ୱାର ଅତିକ୍ରମ କରି ଭିତର କାରୁକାର୍ଯ୍ୟ ଖଚିତ ଇମାରତ ମନୋମୁଗ୍ଧକର, ତାହା ମଧ୍ୟେ ଭଜନାଳୟ । ସେଠାରେ କେତେ ମଣିମୁକ୍ତା ସଂଗୃହୀତ ଓ ସୁସଜ୍ଜିତ ହୋଇ ଶୋଭା ପାଉଅଛି, ତାହା ନ ଦେଖିଲେ ହୃଦୟଙ୍ଗମ ହେବ ନାହିଁ । ରାଜା ବାହାଦୁର ଏହି ସବୁ ଦେଖି ବେଲିଗାର୍ଡ଼ ଦେଖିବା ପାଇଁ ଯାଆନ୍ତି । ସିପାହୀ ବିଦ୍ରୋହ ସମୟରେ ଇଂରେଜମାନେ ଏହି ଉଦ୍ୟାନ ଭବନରେ ଆବଦ୍ଧ ହୋଇ ପଡ଼ିଥିଲେ, ସେମାନଙ୍କ ମଧ୍ୟରୁ ଅନେକେ ଆତ୍ମରକ୍ଷା ପାଇଁ ଯୁଦ୍ଧ କରି ପ୍ରାଣ ବିସର୍ଜନ କରିଥିଲେ । ବାହାରୁ ସିପାହୀମାନେ ଆକ୍ରମଣ କାଳରେ ଯେଉଁ ଗୋଳା ବାରୁଦ ନିକ୍ଷେପ କରିଥିଲେ, ସେହି ସବୁର ଚିହ୍ନ ଅଦ୍ୟପି ସଯତ୍ନରେ ସୁରକ୍ଷିତ । ଯେଉଁମାନେ ଲକ୍ଷ୍ନୌ ଗମନ କରନ୍ତି ସେମାନେ ବେଲିଗାର୍ଡ଼ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୁଅନ୍ତି । ରାଜବାହାଦୁର ଏଠାରେ ସିପାହୀ ବିଦ୍ରୋହର ବିବରଣୀ ଅବଗତ ହୋଇ ବିସ୍ମୟ ପ୍ରକାଶ କରିଥିଲେ । ଯେଉଁ ଗୋମତୀ ତୀରରେ ପ୍ରାଚୀନ ଅଯୋଧ୍ୟା ନଗରୀ ଓ ବର୍ତ୍ତମାନ ଫୟଜାବାଦ୍ ଅବସ୍ଥିତ, ଲକ୍ଷ୍ନୌ ନଗର ମଧ୍ୟ ସେହି ଗୋମତୀ ତୀରରେ ପ୍ରତିଷ୍ଠିତ । ଏଠାରେ ନଦୀ ପାରି ହେବାପାଇଁ ଗୋମତୀ ଉପରେ ସୁନ୍ଦର ସେତୁ ପ୍ରସ୍ତୁତ ହୋଇଅଛି । ଏହି ସମସ୍ତ ସ୍ଥାନ ପରିଦର୍ଶନ ଓ ଅନ୍ୟ ନାନାବିଧ ବିଷୟ ପରିଜ୍ଞାତ ହୋଇ ସେ କାନପୁର ଯାତ୍ରା କରିଥିଲେ ।

ରାଜା ବାସୁଦେବ ସୁଢ଼ଳଦେବ ଯେଉଁ ସମୟରେ କାନପୁର ଭ୍ରମଣରେ ଯାଇଥିଲେ, ସେହି ସମୟରେ କାନପୁର ଇଂରେଜମାନଙ୍କର ବାଣିଜ୍ୟକେନ୍ଦ୍ର ରୂପେ ପ୍ରତିଷ୍ଠିତ ହୋଇନାହିଁ । ସେହି ସମୟରେ ଇଂରେଜ ବ୍ୟବସାୟୀମାନଙ୍କ ପାଇଁ କେବଳ କାର୍ପାସ ତୁଳାର ବ୍ୟବସାୟର ଶ୍ରୀବୃଦ୍ଧି ହେଉଥିଲା । ସୁତରାଂ ଲକ୍ଷ୍ନୌ ଓ କାନପୁରରେ ଦେଶୀୟମାନଙ୍କର ବ୍ୟବସାୟ ଓ ବାଣିଜ୍ୟ କେନ୍ଦ୍ରମାନ ଦେଖିବାର ସୁଯୋଗ ମିଳିଥିଲା । ବୈଦେଶୀକ ବଣିକଗଣ ତଥାପି



Digitized by srujanika@gmail.com

ଏହି ଅଞ୍ଚଳରେ ବିଶେଷ ପ୍ରତିଷ୍ଠା ଲାଭ କରିନଥିଲେ । ରାଜା ବାସୁଦେବ ସିପାହୀ ବିଦ୍ରୋହର ଜୀବନ୍ତ ସାକ୍ଷ୍ୟ ସ୍ୱଚକ୍ଷୁରେ ଦେଖି ସ୍ତମ୍ଭୀତ ହୋଇଥିଲେ । ରାଜା ଲକ୍ଷ୍ନୌ ଓ କାନପୁର ଭ୍ରମଣ କରିସାରି ଦିଲ୍ଲୀ ଯାତ୍ରା କରନ୍ତି । ଦିଲ୍ଲୀ ଭାରତର ମୋଗଲ ଓ ପଠାଣ ରାଜଧାନୀ । ତତ୍‌ପୂର୍ବେ ଦିଲ୍ଲୀର ଅନତିଦୂରରେ ଭାରତ ହିନ୍ଦୁ ସମ୍ରାଟ ମହାରାଜ ଯୁଧିଷ୍ଠିଙ୍କର ରାଜଧାନୀ ଇନ୍ଦ୍ରପ୍ରସ୍ଥ ଓ ହସ୍ତୀନାପୁର ପ୍ରତିଷ୍ଠିତ ଥିଲା । ରାଜା ବାସୁଦେବ ପଠାଣ ଓ ମୋଗଲ କୀର୍ତ୍ତି ସକଳ ପରିଦର୍ଶନ ସଂଗେ ସଂଗେ ପୌରାଣିକ ଭାରତର ଇନ୍ଦ୍ରପ୍ରସ୍ଥ ଓ ହସ୍ତିନାପୁର ଧ୍ୱଂସସ୍ତୂପ ଓ କୁରୁକ୍ଷେତ୍ର ଦର୍ଶନ କରନ୍ତି । ଓଡ଼ିଶାର ଗଙ୍ଗବଂଶୀୟ କ୍ଷତ୍ରିୟ ରାଜା ବାସୁଦେବ ସୁଢ଼ଳଦେବଙ୍କ ହୃଦୟରେ ଏହି ସକଳ ପ୍ରାଚୀନ ସ୍ମୃତି କି ଭାବର ସଂଚାର କରିଥିଲା, ଆଜି ତାହା ଜାଣିବାର ଉପାୟ ନାହିଁ । ତେବେ ସେ ଯେପରି ସ୍ୱଦେଶାନୁରାଗୀ ଓ ପ୍ରଜାବତ୍ସଳ ରାଜା ଥିଲେ, ସେଥିରେ ତାଙ୍କ ହୃଦୟରେ ଯେ ଅବସାଦର ସଂଚାର ହୋଇ ନାହିଁ, ଏ କଥା ନିଶ୍ଚୟ କରିହୁଏ ନାହିଁ ।

ଦିଲ୍ଲୀରୁ ରାଜା ବାସୁଦେବ ଆଗ୍ରାର ମୋଗଲ ରାଜଶକ୍ତିର ଅତୁଳ  କୀର୍ତ୍ତି ଜଗତର ସପ୍ତଖ୍ୟାତିର ଅନ୍ୟତମ ମମତାଜ ମହଲ ଦେଖିବାକୁ ଯାଆନ୍ତି । ସ୍ଥପତିବିଦ୍ୟା ଓ ଶିଳ୍ପ ଚାତୁରୀର ଶ୍ରେଷ୍ଠ ନିଦର୍ଶନ,  ଜଗତର ଜନମଣ୍ଡଳୀଙ୍କର ବିସ୍ମୟକର ଓ ଚମକପ୍ରଦ ତାଜ୍ ପୂର୍ବ ଗୌରବରେ, ସେ ମଣିମାଣିକ୍ୟ ଓ ହୀରା ଅଳଙ୍କାରରେ  ବଂଚିତ ହେଲେ ମଧ୍ୟ, ଅପୂର୍ବ ଦୃଶ୍ୟ, ରାଜା ସେହି ଜଗଜ୍ଜନ ସମାଦୃତ ଅପୂର୍ବ ଶିଳ୍ପ ସୌନ୍ଦର୍ଯ୍ୟର ଅକ୍ଷୟ ନିକେତନ ତାଜମହଲ ଦେଖି ବିସ୍ମୟରେ ଅଭିଭୂତ ହୋଇଥିଲେ । ଦିଲ୍ଲୀ ପରି ଆଗ୍ରା ମଧ୍ୟ ମୋଗଲ ସାମ୍ରାଜ୍ୟର କୀର୍ତ୍ତି ନିକେତନ । ଏଠାକାର ଦେଖିବାର ବିଷୟ  ସକଳର ପୂର୍ଣ୍ଣ ସମ୍ବାଦ ସଂଗ୍ରହ କରି ରାଜା ବାସୁଦେବ ମଥୁରା ଓ ବୃନ୍ଦାବନ ଯାତ୍ରା କରନ୍ତି । ମଥୁରା, ବୃନ୍ଦାବନ, ଗୋକୁଳ ଇତ୍ୟାଦି ସମ୍ବଳିତ ବିସ୍ତୀର୍ଣ୍ଣ କ୍ଷେତ୍ର ହିନ୍ଦୁତୀର୍ଥ ଓ ବୈଷ୍ଣବ ଧର୍ମର ପ୍ରଧାନ ସ୍ଥାନ । ମଥୁରା ଓ ବୃନ୍ଦାବନରେ ତୀର୍ଥ କାର୍ଯ୍ୟ ସଂପନ୍ନ  କରି, ଦେବ ଦର୍ଶନ  ବୈଷ୍ଣବ ତତ୍ତ୍ୱ ଓ ମହାତ୍ମ୍ୟ ଅବଗତ ହୋଇ ଆନନ୍ଦ ଉପଭୋଗ କରିଥିଲେ । ଏଠାରୁ ପ୍ରୟାଗ ଆଗମନ କରନ୍ତି । ଏଠାରେ ବେଣି ତୀର୍ଥରେ ସ୍ନାନଦାନ ଓ ଧର୍ମାନୁଷ୍ଠାନ ସଂପନ୍ନ କରି, ଅନ୍ୟାନ୍ୟ ଦ୍ରଷ୍ଟବ୍ୟ ସ୍ଥାନକୁ ଗମନ କରିବାକୁ ଲାଗିଲେ । ପ୍ରୟାଗର ଅକ୍ଷୟ ବଟବୃକ୍ଷ, ଏଲାହାବାଦର ଦୁର୍ଗ ମଧ୍ୟରେ ଅବସ୍ଥିତ । ସେହି ବୃକ୍ଷ ଦର୍ଶନ ସଂଗେ ସଂଗେ ଏଲାହାବାଦ ଦୁର୍ଗ ଦର୍ଶନ ମଧ୍ୟହେଲା । ଏଠାରେ ଇଂରେଜମାନଙ୍କର ଏକ ଅସ୍ତ୍ରାଗାର ମଧ୍ୟ ପ୍ରତିଷ୍ଠିତ । ସେହି ଅସ୍ତ୍ରାଗାର ଦର୍ଶନର ଅଧିକାର ସମସ୍ତଙ୍କର ନଥାଏ । ରାଜା ପୂର୍ବରୁ ତାହା ଦର୍ଶନ କରିବାର ଅନୁମତି ପତ୍ରପାଇ ପରେ ତାହା ଦର୍ଶନ କରିବାକୁ ଯାଇଥିଲେ । ସେହି ଅସ୍ତ୍ରାଗାରରେ ଯୁଦ୍ଧର ସକଳ ସରଞ୍ଜାମ ପ୍ରସ୍ତୁତ ହୋଇ ସୁସଜ୍ଜିତ ରହିଅଛି । ଭାରତର ନାନା ସ୍ଥାନେ ଅସ୍ତ୍ର



Digitized by srujanika@gmail.com

ପ୍ରୟୋଜନ ହେଲେ, ଏଠାରୁ ପ୍ରେରିତ ହୁଏ । ଏଠାରେ ପ୍ରାଚୀନ ସେନାନିବାସ ସ୍ଥାନ, ଆଲବର୍ଟ ପାର୍କ, ଖସରୁବାଗ୍, ମେୟର କଲେଜ, ଯମୁନା ସେତୁ ଇତ୍ୟାଦି ଦେଖି ପରେ ପୂର୍ବାଭିମୁଖେ ଗୟା ଯାତ୍ରା କରନ୍ତି । ଗୟା ଆସି ବିଷ୍ଣୁପାଦରେ ପିଣ୍ଡଦାନ ଓ ତୀର୍ଥକର୍ମ ସଂପନ୍ନ କରି ପରେ ବୁଦ୍ଧଗୟା ଦେଖିବାକୁ ଯାଆନ୍ତି । ଏଠାରେ ବୁଦ୍ଧଙ୍କର ସମାଧିସ୍ଥ ସୁନ୍ଦର ମୂର୍ତ୍ତି ଓ ମନ୍ଦିର ଦର୍ଶନକରି ବୁଦ୍ଧଦେବଙ୍କର ସାଧନା ଓ ସିଦ୍ଧି ଲାଭର ସ୍ଥାନ ଦର୍ଶନ କରି ଆନନ୍ଦିତ ହୋଇଥିଲେ । ଏଠାରୁ ବୈଦ୍ୟନାଥ ଯାତ୍ରା କରନ୍ତି । ବୈଦ୍ୟନାଥରେ କେତେକ ଦିନ ବାସ କରନ୍ତି । ସେଠାକାର ପ୍ରଧାନ ପଣ୍ଡାଙ୍କ ସହିତ ଧର୍ମ ବିଷୟରେ ଅନେକ କଥାବାର୍ତ୍ତା ହୁଏ । ଏଠାରେ କୁଷ୍ଠରୋଗୀଙ୍କର ସଂଖ୍ୟା ଅନେକ । କୁଷ୍ଠରୋଗୀମାନଙ୍କର ବିଶ୍ୱାସ ବାବା ବୈଦ୍ୟନାଥଙ୍କ ଦ୍ୱାରରେ ପଡ଼ିରହିଲେ ବାବା ବୈଦ୍ୟନାଥଙ୍କ କୃପାରେ ସେମାନେ ରୋଗମୁକ୍ତ ହେବେ । ଏଠାରେ ଧର୍ମକର୍ମରେ, ବ୍ରାହ୍ମଣ ଭୋଜନରେ ଯଥେଷ୍ଟ ଅର୍ଥବ୍ୟୟ କରି ଓ ରୋଗୀମାନଙ୍କର ସେବାରେ ସାହାଯ୍ୟ ଦାନ କରି ସିଂହଭୂମି ପଥ ଦେଇ ରାଜା ବାସୁଦେବ ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ପଥରେ ନାନା ସ୍ଥାନରେ ପିତାଙ୍କର ଅନୁସନ୍ଧାନ କରି କୌଣସି ସ୍ଥାନରେ ତାଙ୍କର ସମ୍ବାଦ ପାଇ ନଥିଲେ । ଶେଷରେ ରାଜଧାନୀରେ ସମାଗତ ହୋଇ ଶୁଣିଲେ ହରିହର ଦେବ ପୀଡ଼ିତ ହୋଇ ଅଜ୍ଞାତବାସରେ ସମ୍ବଲପୁରଠାରେ ଅବସ୍ଥାନ କରୁଛନ୍ତି । ରାଜା ବାସୁଦେବ ଏହି ସମ୍ବାଦ ପ୍ରାପ୍ତ ହୋଇ ତ୍ୱରିତ ସମ୍ବଲପୁର ଯାତ୍ରା କଲେ ଏବଂ ନାନା ଭାବରେ ପିତାଙ୍କର ବିରକ୍ତିର ତୀବ୍ରତା ଦୂର କରି ଓ ନିର୍ଜ୍ଜନବାସର ପଣ ଭଙ୍ଗ କରାଇ ତାଙ୍କୁ ରାଜଧାନୀ ନେଇ ଫେରି ଆସିଲେ ।





Digitized by srujanika@gmail.com

## ପଞ୍ଚମ ଅଧ୍ୟାୟ

# ରାଷ୍ଟ୍ରୀୟ ଉନ୍ନତିର ସୂଚନା

ରାଜା ବାସୁଦେବ ସୁଢ଼ଳଦେବ ଏହି ଦୀର୍ଘ ଭ୍ରମଣରେ ନାନା ଦେଶ ଦର୍ଶନ, ତୀର୍ଥ ପର୍ଯ୍ୟଟନ ଏବଂ ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟଲାଭ ସଂଗେ ସଂଗେ, ବିବିଧ ବିଷୟରେ ପ୍ରଭୂତ ଜ୍ଞାନ ସଂଚୟ କରି ସ୍ୱରାଜ୍ୟକୁ ପ୍ରତ୍ୟାଗମନ କଲେ । ପିତାଙ୍କର କୌଣସି ସଂବାଦ ନପାଇ ଯେଉଁ ଗ୍ଳାନି ଗୋପନେ ଗୋପନେ ଅନ୍ତର୍ଦାହ ଉତ୍ପାଦନ କରୁଥିଲେ, ପିତାଙ୍କ ସମ୍ବାଦ ପାଇ, ତାଙ୍କୁ ଫେରାଇ ଆଣି, ସେହି ମାନସିକ ଅଶାନ୍ତି ମଧ୍ୟ ତିରୋହିତ ହେଲା । ରାଜଧାନୀକୁ ଆସି କୁମାର ସଚ୍ଚିଦାନନ୍ଦଙ୍କ ଶାରୀରିକ ସୁସ୍ଥତା ଦେଖି ନିଶ୍ଚିତ ହୋଇ, ଏଥର ସେ ବିଶେଷ ଅନୁରାଗଭରେ ରାଜକାର୍ଯ୍ୟରେ ମନୋନିବେଶ କଲେ । ରାଜା ବାସୁଦେବ ଏଥର ଆପଣାର ବିଦ୍ୟା, ବୁଦ୍ଧି ଓ ଅର୍ଜିତ ଜ୍ଞାନର ପ୍ରଭାବରେ ଯେଉଁ ଉଚ୍ଚ ରାଜାଦର୍ଶ ସମ୍ମୁଖରେ ଧାରଣ କରିଅଛନ୍ତି, ତାହାକୁ ପୂର୍ଣ୍ଣାବୟବରେ ଫୁଟାଇ ତୋଳିବା ପାଇଁ 'ମନ୍ତ୍ରର ସାଧନ କି ଶରୀର ପତନ' ପଣ କରି କାର୍ଯ୍ୟାରମ୍ଭ କଲେ । ସେ ଅଦୂରଦର୍ଶୀ ରାଜା ନ ଥିଲେ । ସେ ଭଲଭାବରେ ଜାଣିଥିଲେ ଏବଂ ଅନୁଭବ କରୁଥିଲେ, ରାଜ୍ୟର ପୂର୍ଣ୍ଣାଙ୍ଗ ଶ୍ରୀବୃଦ୍ଧି ସାଧନ, ବିପୁଳ ଅର୍ଥ ସାପେକ୍ଷ । ତାହାଙ୍କର ଆଦର୍ଶ ପରିପୂରଣ ଉପଯୋଗୀ ଅର୍ଥ ରାଜକୋଷରେ ସର୍ବଦା ସଞ୍ଚିତ ନଥିଲା, ତେଣୁ ଅଳ୍ପ ଅଳ୍ପ କରି କାର୍ଯ୍ୟାରମ୍ଭ କଲେ ଏବଂ ଅଳ୍ପ ଅଳ୍ପ କରି ଉଦ୍ଦେଶ୍ୟ ସିଦ୍ଧିର ପଥରେ ଅଗ୍ରସର ହେବାରେ ଲାଗିଲେ । ରାଜା ବାସୁଦେବ ସୁଢ଼ଳଦେବ ସର୍ବାଗ୍ରେ ସମଗ୍ର ବାମଣ୍ଡାରାଜ୍ୟ, ତିନିଗୋଟି ତହସିଲ୍‌ରେ ବିଭକ୍ତ କଲେ । ଦେବଗଡ଼ ତହସିଲ୍‌ର କାର୍ଯ୍ୟ ପରିଚାଳନା ପାଇଁ ଜଣେ ପ୍ରଥମ ଶ୍ରେଣୀର ମାଜିଷ୍ଟ୍ରେଟ୍ ନିଯୁକ୍ତ ହେଲେ । କୋଚିଣ୍ଡା ନାମକ ଦ୍ୱିତୀୟ ତହସିଲ୍‌ରେ ଜଣେ ପ୍ରଥମ ଶ୍ରେଣୀର ମାଜିଷ୍ଟ୍ରେଟ୍ ଏବଂ ତୃତୀୟ ବାରକୋଟ ତହସିଲ୍‌ରେ ଜଣେ ଦ୍ୱିତୀୟ ଶ୍ରେଣୀର ମାଜିଷ୍ଟ୍ରେଟ୍ ଓ ଅନ୍ୟାନ୍ୟ କର୍ମଚାରୀ ନିଯୁକ୍ତ ହେଲେ । ମାଜିଷ୍ଟ୍ରେଟ୍‌ମାନେ କଲେକ୍ଟର କ୍ଷମତା ପ୍ରାପ୍ତ ହୋଇ ରାଜ୍ୟର ସୁବନ୍ଦୋବସ୍ତ ଓ ନାନା କାର୍ଯ୍ୟ ପରିଚାଳନା କରିବାରେ ଲାଗିଲେ ।



Digitized by srujanika@gmail.com

ଏତଦ୍‌ଭିନ୍ନ ସବୁ ତହସିଲ୍ ସହିତ ନଣକୂଳ ଗୌଡ଼ପାଲି ଓ ଗୋବିନ୍ଦପୁରରେ ପୋଲିସ୍ ଷ୍ଟେସନ ପ୍ରତିଷ୍ଠିତ ହେଲା । ରାଜଧାନୀ ଦେବଗଡ଼ରେ ଅପିଲ ଅଦାଲତ, ଜେଲଖାନା ଓ ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠିତ ହେଲା । ଇତିପୂର୍ବେ ଯେ ଏସବୁ ନଥିଲା, ଏପରି ନୁହେଁ, ତେବେ ସେଗୁଡ଼ିକ ନାମକୁ ମାତ୍ର ଥିଲା । ଆଇନ୍ ଅଦାଲତ, ବିଚାର ଆଚାର ସବୁକିଛି ଅତି ସାମାନ୍ୟ ଅକାରରେ ବିଦ୍ୟମାନ ଥିଲା । ପୂର୍ବ ରାଜାମାନଙ୍କର ବାଚନିକ ଆଦେଶରେ ପ୍ରାୟ ସକଳ କାର୍ଯ୍ୟ ସଂପନ୍ନ ହେଉଥିଲା । ଆଉ କିଛିଦିନ ପୂର୍ବ ପର୍ଯ୍ୟନ୍ତ ଓଡ଼ିଶାର ଗଡ଼ଜାତ ଓ ମଧ୍ୟପ୍ରଦେଶର ରାଜନ୍ୟବର୍ଗଙ୍କର ଆଭ୍ୟନ୍ତରୀଣ କାର୍ଯ୍ୟକଳାପ ଏହିପରି ଭାବରେ ସଂପନ୍ନ ହେଉଥିଲା । ରାଜା ବାସୁଦେବଙ୍କର ରାଜ୍ୟ ପାଳନ ପଦ୍ଧତି ଅବଲମ୍ବନ ଦେଖିବାପରେ ଇଂରେଜ ସରକାର ଏହି ସମସ୍ତ ଦେଶୀୟ ରାଜ୍ୟରେ ନୂତନ ପଦ୍ଧତି ଅନୁସାରେ ବିଧି ବ୍ୟବସ୍ଥାର ସୁପ୍ରତିଷ୍ଠା ପାଇଁ ବାରମ୍ବାର ଇଙ୍ଗିତ କରି ମଧ୍ୟ ଉତ୍ତମ ଫଳ ଲାଭ ନ ହେବା ଫଳରେ, ପରିଣାମରେ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିଯୁକ୍ତ । କର୍ମଚାରୀଙ୍କ ଦ୍ୱାରା ସେହିସବୁ ପରିବର୍ତ୍ତନ ଆନୟନର ବ୍ୟବସ୍ଥା କରିଥିଲେ । ରାଜା ବାସୁଦେବ ସୁଢ଼ଳଦେବ ନିଜର ବୁଦ୍ଧି ବଳରେ ଓ ଆତ୍ମ ପ୍ରଭାବ କୌଶଳରେ, ବାହ୍ୟ ଉପଦେଶ ଓ ସେସବୁ ପରିପାଳନ ଆଦେଶର ହାତଠାରୁ ଚିରଦିନ ପାଇଁ ଅବ୍ୟାହତି ଲାଭକରି, ଆପଣା ମନରେ ରାଜ୍ୟର ପ୍ରକୃତ ଉନ୍ନତି ସାଧନ କରିଯାଇଅଛନ୍ତି । ପାର୍ଶ୍ୱବର୍ତ୍ତୀ ରାଜାମାନେ, ରାଜା ବାସୁଦେବଙ୍କ ଅବଲମ୍ବିତ ପଦ୍ଧତିର ଅନୁକରଣରେ ନିଜ ନିଜ ରାଜ୍ୟରେ ଶାସନ ଏବଂ ପ୍ରଜାଙ୍କ ଉନ୍ନତି ସାଧନରେ ଅଗ୍ରସର ହେଲେ, ରାଜ୍ୟର ଅନେକ ଧନ ସଂପଦ, ରାଜ୍ୟର ଶକ୍ତି ବୃଦ୍ଧି ଓ ପ୍ରଜାଙ୍କ ହିତ ସାଧନରେ ନିୟୋଜିତ ହୋଇ ପାରନ୍ତା; କିନ୍ତୁ ଉନ୍ନତି ବିମୁଖ ଭାରତର ପ୍ରଧାନମାନେ ସର୍ବଦା ହିଁ ଅବସାଦେ ଆତ୍ମସୁଖେ ରତ । ତେଣୁ ଇଂରେଜ ସରକାର ବାଧ୍ୟ ହୋଇ ଏହି ସକଳ ଦେଶୀୟ ରାଜ୍ୟ କର୍ମସ୍ଥାନେ ପ୍ରବେଶ କରି ଓ ସେହି ସେହି ସ୍ଥାନରେ ଆବର୍ଜ୍ଜନା ଯଥାସଂଭବ ଦୂର କରିବା ପାଇଁ ବାଧ୍ୟ ହୋଇଛନ୍ତି । ଏହି ହସ୍ତକ୍ଷେପ ଇଂରେଜ ସରକାରଙ୍କର ଇଚ୍ଛାକୃତ ନୁହେଁ । ଦେଶୀୟ ନୃପତିବୃନ୍ଦଙ୍କର ଅମନଯୋଗୀତାର ଫଳ । ରାଜା ବାସୁଦେବ ସୁଢ଼ଳଦେବ ନିଜକୁ ଓ ନିଜ ରାଜ୍ୟକୁ ଏହି ବାହ୍ୟ ଦୃଷ୍ଟିପାତ ଠାରୁ ରକ୍ଷାକରି ସ୍ୱେଚ୍ଛାକୃତ ରାଜ୍ୟର ଉନ୍ନତି ସାଧନ କରି ଚରିତାର୍ଥତା ଲାଭ କରିଅଛନ୍ତି । ସଂଗେ ସଂଗେ ଇଂରେଜ ରାଜଶକ୍ତିର ପୁନଃ ପୁନଃ ପ୍ରଶଂସାପୂର୍ଣ୍ଣ ସମାଲୋଚନାର ପାତ୍ର ହୋଇଛନ୍ତି । ଏହାହିଁ ରାଜା ବାସୁଦେବଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ, ଆଉ ଏଥିପାଇଁ ତାଙ୍କ ରାଜ ଜୀବନୀ ଦେଶର ଲୋକଙ୍କର ଜ୍ଞାନକ୍ଷେତ୍ର ପରିସ୍ଫୁଟନର ଆଦର୍ଶସ୍ଥଳ । ନିଜର ଜନସାଧାରଣଙ୍କ ପ୍ରକୃତ ଉନ୍ନତିକାମୀ ମହାତ୍ମା ବ୍ୟକ୍ତିଙ୍କର ସ୍ୱାବଲମ୍ବନ ଫଳରେ, ଦେଶର କେତେ କଲ୍ୟାଣ ସାଧିତ ହୋଇପାରେ ଏହି ରାଜ ଜୀବନୀ ସେହି ବିଷୟରେ, ପ୍ରତି ବର୍ଷର ନୂତନ ପଞ୍ଜିକା ପରି ଶୁଭ ଫଳପ୍ରଦ ।



Digitized by srujanika@gmail.com

ସେଥିପାଇଁ ଏହି ମହାମୂଲ୍ୟ ଜୀବନ ଯାପନର ଆଲୋଚନାର ପ୍ରୟୋଜନ । ପାଠକେ ଯେତେ ଯେତେ ଏହି ମହାତ୍ମାଙ୍କର ଯାପିତ ଜୀବନର ମୂଳମନ୍ତ୍ର ଓ ସେହି ମନ୍ତ୍ର ସାଧନାର ତତ୍ତ୍ୱ ଅବଗତ ହେବେ, ସେତେସେତେ ଆପଣମାନଙ୍କର ହୃଦୟ ବିସ୍ମୟରେ ଏବଂ ଆନନ୍ଦରେ ପରିପୂର୍ଣ୍ଣ ହୋଇ ଉଠିବ । କିଭଳି ଭାବରେ ସେ ବହୁ ବିଘ୍ନର ମଧ୍ୟସ୍ଥଳରେ ଆତ୍ମସ୍ଥ ପୁରୁଷ ଭଳି ସ୍ୱକର୍ତ୍ତବ୍ୟ ସାଧନ କରି ବର୍ତ୍ତମାନ ଯୁଗରେ ଭାରତୀୟ ରାଜ ଜୀବନରେ ଉଚ୍ଚ ଆଦର୍ଶ ପ୍ରତିଷ୍ଠାରେ ସକ୍ଷମ ହୋଇଥିଲେ । ତାହା ଜ୍ଞାତ ହେବା ଏବଂ ତାହାଙ୍କଠାରୁ ଏହି ଅନ୍ନହୀନ ଜାତିର ଅନ୍ନ ସଂସ୍ଥାନ-ମଂତ୍ର ଶିକ୍ଷା କରିବା, ଅବଶ୍ୟ କର୍ତ୍ତବ୍ୟ । ଏଥିପାଇଁ ଏହି ଜୀବନର ଆଲୋଚନା ପ୍ରୟୋଜନ ।

ଦେବଗଡ଼ରେ ଉଚ୍ଚ ଓ ନିମ୍ନ ଅଦାଲତ ପ୍ରତିଷ୍ଠିତ ହେଲା । ପୂର୍ବେ ଏକ ମୃତ୍ତିକା ନିର୍ମିତ ଓ ମୃତ୍ତିକାର ପ୍ରାଚୀର ବେଷ୍ଟିତ ଗୃହରେ ଜେଲଖାନା ପ୍ରତିଷ୍ଠିତ ଥିଲା । ତାହା ପିଲାମାନଙ୍କର ଖେଳଘର ସଦୃଶ ଥିଲା । ରାଜା ବାସୁଦେବ କଏଦୀମାନଙ୍କ ପାଇଁ ସୁନ୍ଦର ସ୍ୱାସ୍ଥ୍ୟକର ଇଷ୍ଟକ ନିର୍ମିତ କାରାନିବାସ ପ୍ରସ୍ତୁତ କରାଇଛନ୍ତି । ବିଚାରାଳୟ ଓ ପୋଲିସ ଗୃହ ସକଳ ମୃତ୍ତିକା ନିର୍ମିତ ଥିଲା । ଏଗୁଡ଼ିକୁ ଶୋଭନଦୃଶ୍ୟ ଉତ୍ତମ ଅଟ୍ଟାଳିକାରେ ପ୍ରତିଷ୍ଠିତ କରାଇ ବାମଣ୍ଡାର ରାଜଧାନୀ ଦେବଗଡ଼ର ସୌଷ୍ଠବ ଓ ଶୋଭାବର୍ଦ୍ଧନ କରିଅଛନ୍ତି । ଏହି ସକଳ ଓ ଏହିପରି ବିବିଧ ପରିବର୍ତ୍ତନ ସାଧନରେ ରାଜାଙ୍କୁ ପ୍ରଚୁର ଅର୍ଥବ୍ୟୟ କରିବାକୁ ପଡ଼ିଥିଲା । ଦୁଇଟି ଉପବିଭାଗ ମଧ୍ୟରେ କୋଚିଣ୍ଡାର ଆୟ ପ୍ରଚୁର, ସୁତରାଂ କାର୍ଯ୍ୟର ପରିମାଣ ମଧ୍ୟ ଅଧିକ । ଏହି ମହକୁମା ରାଜଧାନୀ ଦେବଗଡ଼ଠାରୁ ପଶ୍ଚିମୋତ୍ତର ଦିଗରେ ପ୍ରାୟ ୧୩/୧୪ କୋଶ ହେବ । ବାମଣ୍ଡା ରେଳ ଷ୍ଟେସନ ଠାରୁ ରାଜଧାନୀ ଦେବଗଡ଼ ଯିବାପାଇଁ କୋଚିଣ୍ଡା ପ୍ରାୟ ଅର୍ଦ୍ଧେକ ପଥ । ଏହି ଅଞ୍ଚଳରେ ଜଙ୍ଗଲ ଓ ପର୍ବତ ସଂଖ୍ୟା ଅଳ୍ପ । ଶସ୍ୟ କ୍ଷେତ୍ରର ପରିମାଣ ଅଧିକ । ଭୂମି ଉର୍ବରା, ବାର୍ଷିକ ଦୁଇଟି ଫସଲ ହୋଇଥାଏ । ଏଥିପାଇଁ ଏଠାକାର ଅଫିସ, ଅଦାଲତ, ପୋଲିସ ଇତ୍ୟାଦି ସମସ୍ତ ପକ୍କା ଗୃହରେ ପ୍ରତିଷ୍ଠିତ ହେଲା । ସଂଗେ ସଂଗେ ରାଜ୍ୟର ଅପର ମହକୁମା ବାରକୋଟ ମଧ୍ୟ ଏହି ସମସ୍ତ ସୁବ୍ୟବସ୍ଥାର ଅଧିକାରରେ ଅଧିକ ଦିନ ବଞ୍ଚିତ ରହିଲା ନାହିଁ । ରାଜସ୍ୱ ଆଦାୟର ସୁବ୍ୟବସ୍ଥାର ସଂଗେ ସଂଗେ ଶାସନ ପଦ୍ଧତିର ମଧ୍ୟ ଉତ୍କର୍ଷ ସାଧିତ ହୋଇଥିଲା । ପ୍ରତ୍ୟେକ ଦଶ ବର୍ଷ ପରେ ପରେ, ରାଜ୍ୟର ସମସ୍ତ ଆବାଦୀ ଜମିର ଉନ୍ନତି ଅବନତି, ନିର୍ଦ୍ଧାରିତ କରର ହ୍ରାସ ବୃଦ୍ଧି, ଜମିର ପରିମାଣାନୁ ସଂଧାନ ଓ ନୂତନ ଆବାଦୀ ଜମିର କର ନିର୍ଦ୍ଧାରଣ ଇତ୍ୟାଦି ବିଷୟରେ ଦୃଷ୍ଟି ରଖିବା ପାଇଁ ଓ ଏହି ବିଷୟର ବାତ୍ସରିକ ବିବରଣୀ ପ୍ରସ୍ତୁତ କରିବା ପାଇଁ ଜଣେ ଉଚ୍ଚ ଶ୍ରେଣୀର ସେଟେଲମେଣ୍ଟ ଅଫିସର ନିଯୁକ୍ତ ହେଲେ ।



Digitized by srujanika@gmail.com

ଇତିପୂର୍ବେ ଅମାତ୍ୟ ପରିବେଷ୍ଟିତ ରାଜ ସଭାକୁ 'ବାମଣ୍ଡାର ରାଜ ଦରବାର' ବୋଲି ଅଭିହିତ କରାଯାଉଥିଲା । ଇଂରେଜ ରାଜସରକାରଙ୍କ ସହିତ ପତ୍ରାଳାପରେ ସର୍ବଦା 'ଦରବାର' ଶବ୍ଦ ବ୍ୟବହୃତ ହେଉଥିଲା । ରାଜା ବାସୁଦେବ ୧୮୮୦ ଖ୍ରୀଷ୍ଟାବ୍ଦରେ ଦରବାର ଶବ୍ଦ ରହିତ କରି ଏହା ବଦଳରେ 'କାଉନ୍‌ସେଲ୍' ଶବ୍ଦ ବ୍ୟବହାର କରିବାର ଆଦେଶ ଦିଅନ୍ତି । ଏହି କାଉନ୍‌ସେଲରେ ସର୍ବପ୍ରଥମ ନଅ ଜଣ ସଦସ୍ୟ ଆସନ ପ୍ରାପ୍ତ ହୋଇଥିଲେ । ସେହି କାଉନ୍‌ସେଲ୍‌ର ସଭାପତି ଥିଲେ ସ୍ୱୟଂ ରାଜା ବାସୁଦେବ ସୁଢ଼ଳଦେବ । ରାଜା ବାସୁଦେବଙ୍କ ପ୍ରାଇଭେଟ୍ ସେକ୍ରେଟାରୀ, ସେକ୍ରେଟେରୀ ଭାବରେ କାଉନ୍‌ସେଲ୍‌ର ସମସ୍ତ କାର୍ଯ୍ୟ ସଂପନ୍ନ କରିବାର ଭାର ପ୍ରାପ୍ତ ହୁଅନ୍ତି ।

ସେହି ସମୟରେ ସମ୍ବଲପୁର ଗଭର୍ଣ୍ଣମେଣ୍ଟ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ବାବୁ ଗିରୀଶ ଚନ୍ଦ୍ର ଘୋଷ, ସରକାରୀ ଚାକିରିରୁ ଅବସର ଗ୍ରହଣ କରି ଟିକାୟେତ୍ ସଚ୍ଚିଦାନନ୍ଦଙ୍କ ଶିକ୍ଷକ ଭାବରେ ନିଯୁକ୍ତ ହୋଇ ବାମଣ୍ଡା ଆଗମନ କରନ୍ତି । ସେ ବିଚକ୍ଷଣ ଓ ବୁଦ୍ଧିମାନ ବ୍ୟକ୍ତି ଥିଲେ । ବିଦ୍ୟାଳୟର ଶିକ୍ଷକ ହୋଇ ମଧ୍ୟ ଆଇନଜ୍ଞ ଥିଲେ । ଗଭର୍ଣ୍ଣମେଣ୍ଟଙ୍କ କାର୍ଯ୍ୟକଳାପର ରୀତି ପଦ୍ଧତି ବିଷୟରେ ଖ୍ଙ୍କର ବେଶ୍ ଅଭିଜ୍ଞତା ଥିଲା । କାଉନ୍‌ସେଲ୍ ଗଠନ କାର୍ଯ୍ୟରେ ତାହାଙ୍କର ସୁପରାମର୍ଶ ଓ ସାହାଯ୍ୟ ଗ୍ରହଣ କରାଯାଇଥିଲା । ରାଜା ବାସୁଦେବ ଆଇନ ଘଟିତ ଅନେକ ଜଟିଳ ବିଷୟରେ ତାଙ୍କର ପରାମର୍ଶ ଗ୍ରହଣ କରୁଥିଲେ । ବିଶେଷ ବିଶେଷ ଅପିଲ୍ ମାମଲାରେ ଗିରୀଶ ବାବୁଙ୍କର ସିଦ୍ଧାନ୍ତ ଅନେକ ସମୟରେ ରାଜାଙ୍କର ମନଃପୂତ ହେଉଥିଲା ଏବଂ ରାଜା ସେହି ଅନୁସାରେ ବିଚାର କାର୍ଯ୍ୟ ସଂପନ୍ନ କରୁଥିଲେ । ବାମଣ୍ଡାର ରାଜା ବାସୁଦେବ ସୁଢ଼ଳଦେବଙ୍କ ହସ୍ତରେ ଅପରାଧୀ ପ୍ରତି ପ୍ରାଣଦଣ୍ଡର ଆଦେଶ ଦେବାର ଅଧିକାର ନ୍ୟସ୍ତ ଥିଲା । ସେହି କ୍ଷମତା ପରିଚାଳନାରେ କୌଣସି ବ୍ୟାଘାତ ଘଟିନାହିଁ ଏବଂ ସନ୍ଧି ସୂତ୍ରରେ ଏହି ଅଧିକାର ଚିରଦିନ ଅଛି ଏବଂ ଥିବମଧ୍ୟ ।

ହିଂସ୍ରଜନ୍ତୁର ଅତ୍ୟାଚାରରେ ଓ ସର୍ପ ଦଂଶନରେ ବାର୍ଷିକ ମୃତ୍ୟୁ ସଂଖ୍ୟା ବୃଦ୍ଧି ପାଇଥିଲେ ମଧ୍ୟ, ନାନାବିଧ ରୋଗରେ ଲୋକକ୍ଷୟ ନିତ୍ୟାନ୍ତ ଅଳ୍ପ ନଥିଲା । ଅତି ପ୍ରାଚୀନକାଳରୁ ରାଜା ବାସୁଦେବଙ୍କର ରାଜ୍ୟଭାର ଗ୍ରହଣ ପୂର୍ବ ପର୍ଯ୍ୟନ୍ତ, ଆଧିଭୌତିକ ଓ ଆଧିଦୈବୀକ ବିପଦ ସଂଗେ ସଂଗେ, ସ୍ୱାସ୍ଥ୍ୟ ରକ୍ଷାରେ ସଂପୂର୍ଣ୍ଣ ଅନଭିଜ୍ଞ ପ୍ରଜାମଣ୍ଡଳୀଙ୍କର ସଂକ୍ରାମକ ରୋଗରେ, ଉତ୍ତମ ଚିକିତ୍ସକଙ୍କ ଅଭାବରେ, ଔଷଧ ଓ ପଥ୍ୟର ବ୍ୟବସ୍ଥାର ଦୋଷହେତୁ, ଜୀବନ ବିସର୍ଜନ ସହଜ ଥିଲା । ଚିକିତ୍ସକ ଓ ଚିକିତ୍ସାର ସୁବ୍ୟବସ୍ଥା ନଥିଲା । ଅଜ୍ଞ ଗ୍ରାମ୍ୟ ଚିକିତ୍ସକଙ୍କ ଅପରୀକ୍ଷିତ ଚେରମୂଳୀ ଓ ଅନ୍ୟବିଧ ଔଷଧ ଉପରେ ଜନସାଧାରଣଙ୍କୁ ନିର୍ଭର କରିବାକୁ ପଡୁଥିଲା । ତେଣୁ ମୃତ୍ୟୁ ଥିଲା ଖୁବ୍ ସହଜ । ଏଭଳି ଅବସ୍ଥାରେ,



Digitized by srujanika@gmail.com

ପ୍ରୟୋଜନ ହେଲେ ସମ୍ବଲପୁରରୁ ଡାକ୍ତରଙ୍କୁ ଅଣାଇ ଚିକିତ୍ସା କରାଇବାକୁ ପଡୁଥିଲା । ତେଣୁ ରାଜ ଶାସନ ଓ ପ୍ରଜାପାଳନ ବିଷୟରେ ରାଜା ବାସୁଦେବ ମନଯୋଗୀ ହୋଇ ଦେଖିଲେ, ରାଜା ସଂସାରର ଶାରୀରିକ ବ୍ୟାଧିର ଚକିତ୍ସା ପାଇଁ ଜଣେ ଉଚ୍ଚ ଶ୍ରେଣୀର ଚିକିତ୍ସକ ନିଯୁକ୍ତ ହୋଇଥିଲେ ମଧ୍ୟ, ଦାତବ୍ୟ ଔଷଧାଳୟର ଅଭାବରେ ପ୍ରଜାସାଧାରଣଙ୍କର ବିଶେଷ ଉପକାର ହେଉନାହିଁ, ଏଥିପାଇଁ ୧୮୮୩ ଖ୍ରୀଷ୍ଟାବ୍ଦରେ ଦେବଗଡ଼ଠାରେ ସର୍ବପ୍ରଥମ ଦାତବ୍ୟ ଚିକିତ୍ସାଳୟର ପ୍ରତିଷ୍ଠା କରାଇଥିଲେ । ବାମଣ୍ଡାର ସର୍ବପ୍ରଥମ ଡାକ୍ତର ନାରାୟଣ ପ୍ରସାଦ ଦେବ ଚିକିତ୍ସକ ନିଯୁକ୍ତ ହୋଇଥିଲେ । ପରେ କ୍ରମେ କ୍ରମେ ବହୁ ସୁଚିକିତ୍ସକ ବାମଣ୍ଡାର ଚିକିତ୍ସକ ପଦ ଅଳଂକୃତ କରିଅଛନ୍ତି । ଦେବଗଡ଼ର ବର୍ତ୍ତମାନ ଚିକିତ୍ସକ ଡାକ୍ତର ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ସିଂହ ଏଲ୍.ଏମ୍. ଏସ୍ ମହାଶୟ ଯୋଗ୍ୟ ଓ ବିଶେଷ ଗୁଣସଂପନ୍ନ ବ୍ୟକ୍ତି । କ୍ରମେ କୋଚିଣ୍ଡା ଠାରେ ଦାତବ୍ୟ ଔଷଧାଳୟର ଶାଖା ପ୍ରତିଷ୍ଠିତ ହୁଏ । ଏହିପରି କ୍ରମେ ରାଜ୍ୟର ଶ୍ରୀବୃଦ୍ଧି ସାଧନ କ୍ଷେତ୍ରରେ ଧୀରେ ଧୀରେ ପରିବର୍ତ୍ତନ ଓ ସଂସ୍କାରର ସ୍ରୋତ ପ୍ରବାହିତ ହେବାରେ ଲାଗିଲା । ରାଜା ବାହାଦୁର ଯେ, କେବଳ ଜୀବନଯାତ୍ରା ନିର୍ବାହର ଉପଯୋଗୀ କେତେଗୁଡ଼ିଏ ଅନୁଷ୍ଠାନ କରାଇ ନିଶ୍ଚିନ୍ତ ଥିଲେ, ତାହା ନୁହେଁ । ରାଜ୍ୟ ମଧ୍ୟରେ ଜ୍ଞାନ ବିସ୍ତାର ଓ ଦୀର୍ଘକାଳବ୍ୟାପୀ ବଦ୍ଧମୂଳ କୁସଂସ୍କାର ସବୁ ଦୂର କରିବାର ପ୍ରବଳ ଆକାଙ୍‌କ୍ଷାର ବଶବର୍ତ୍ତୀ ହୋଇ ବିଦ୍ୟାଳୟ ପ୍ରତିଷ୍ଠା ଓ ସମାଜର ବିବିଧ ସଂସ୍କାର କାର୍ଯ୍ୟରେ ହସ୍ତକ୍ଷେପ କଲେ ।

ଏହାପରେ ଉଲ୍ଲେଖଯୋଗ୍ୟ ଶତବିଧ ଘଟଣା ମଧ୍ୟରେ ଅସଂଖ୍ୟ ରାଜପଥ ନିର୍ମାଣ । ବାମଣ୍ଡା ରାଜ୍ୟର ଏକସ୍ଥାନରୁ ଅନ୍ୟସ୍ଥାନକୁ ଏବଂ ପାର୍ଶ୍ୱବର୍ତ୍ତୀ ରାଜ୍ୟ ସମୂହକୁ ପ୍ରବେଶ ଉତ୍ତମ ପଥ ଆଦୌ ନଥିଲା । ରାଜ୍ୟର ଦୂରବର୍ତ୍ତୀ ସ୍ଥାନକୁ ଯିବାକୁ ହେଲେ, କିମ୍ବା ରାଜ୍ୟାନ୍ତରକୁ ଯିବାର ପ୍ରୟୋଜନ ହେଲେ, ହସ୍ତୀପୃଷ୍ଠେ ବନଭୂମି ଅତିକ୍ରମ କରି ଶ୍ୱାପଦ ସଂକୁଳ ଅନିର୍ଦ୍ଦିଷ୍ଟ ପଥରେ ସର୍ବଦା ହିଁ ବିଚରଣ କରିବାକୁ ପଡୁଥିଲା । ସେହିପରି ଯାତାୟତର ଅସୁବିଧା ଓ କ୍ଳେଶ ଏକପକ୍ଷରେ ଯେପରି ବର୍ଣ୍ଣନା ଦ୍ୱାରା ବୁଝାଇବା ସଂଭବ ନୁହେଁ, ଅପରପକ୍ଷରେ ଏହିପରି ଅନିର୍ଦ୍ଦିଷ୍ଟ ପଥରେ ସର୍ବଦାହିଁ ଯାନ ଓ ଯାତ୍ରୀଦଳର ବିନାଶ ଘଟୁଥିଲା । ରାଜା ସାର୍ ବାସୁଦେବ ନିଜର କାୟିକ ପରିଶ୍ରମ ଓ ରାଜକୋଷର ଅର୍ଥବ୍ୟୟ କରି ରାଜ୍ୟର ଏହି ଦୀର୍ଘସ୍ଥାୟୀ ଅଭାବ ଦୂର କରିବା ପାଇଁ ଅଗ୍ରସର ହେଲେ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ ପ୍ରଚୁର ଅର୍ଥବ୍ୟୟ ଏବଂ ମଜୁରିଆମାନଙ୍କ ସହିତ ଥାଇ ଅସଂଗତ କ୍ଳେଶ ସ୍ୱୀକାର କରିବା ସଂଗେ ସଂଗେ, ନିଜେ ହିଁ ଏହି ସମସ୍ତ ରାଜପଥ ରଚନାରେ ଇଂଜିନିୟର କାର୍ଯ୍ୟ କରିଥିଲେ । ବହୁ ଅର୍ଥ ବ୍ୟୟ କରି ଜଣେ ଇଂଜିନିୟର ନିଯୁକ୍ତ ନକରି, ନିଜେ ଏହି ସମସ୍ତ କାମର ମାନଚିତ୍ର



Digitized by srujanika@gmail.com

ପ୍ରସ୍ତୁତ କରିଥିଲେ, କେଉଁପଥ କିଭଳି ଗଠନ କଲେ, ଅଳ୍ପବ୍ୟୟ ହେବ ଅଥଚ ଗ୍ରାମରୁ ଗ୍ରାମାନ୍ତରକୁ ଯାତାୟତରେ ସୁବିଧା ହେବ । ପଥରେ ଯେଉଁ ଇଟା ଓ ଲୁହାର ସେତୁ ନିର୍ମାଣ କରାଯାଇଅଛି, ସେ ସମସ୍ତ ତାଙ୍କ ନିଜ ବୁଦ୍ଧି ଦ୍ୱାରା ପ୍ରସ୍ତୁତ । ରାଜ୍ୟରେ ରାସ୍ତାଘାଟ ନିର୍ମାଣ ପ୍ରୟୋଜନ ବୋଧହେଲେ, ଅନେକ ରାଜା ତାହା କରାଇଥାନ୍ତି; କିନ୍ତୁ ସ୍ୱୟଂ ଇଂଜିନିୟର ହୋଇ ମଜୁରିଆମାନଙ୍କ ସହିତ ଶ୍ରମ କରିବା ଓ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବା କେଉଁ ରାଜାଙ୍କ ପକ୍ଷେ ସହଜସାଧ୍ୟ ବ୍ୟାପାର ବୋଲି ଧାରଣା ହୁଏ ନାହିଁ; କିନ୍ତୁ ସାର୍ ବାସୁଦେବ ପ୍ରକୃତରେ ଏହିପରି ଭାବରେ ନିଜର କାୟିକ ଓ ମାନସିକ ଶ୍ରମଦ୍ୱାରା ବାମଣ୍ଡାର ରାଜପଥ ଗୁଡ଼ିକ ନିର୍ମାଣ କରି ଯାଇଛନ୍ତି । ପ୍ରତ୍ୟେକଟି ପଥ ସହିତ ତାଙ୍କର ଶ୍ରମସ୍ମୃତି ଜଡ଼ିତ ହୋଇ ରହି ଆଜି ବାମଣ୍ଡାର ପ୍ରଜାମଣ୍ଡଳୀଙ୍କ ସମ୍ମୁଖରେ ସାର୍ ବାସୁଦେବଙ୍କୁ ଅମର କରି ରଖିଅଛି । ପାଠକମଣ୍ଡଳୀଙ୍କ ମଧ୍ୟରେ ଯେଉଁମାନେ କୁଟବୁଦ୍ଧି ପରାୟଣ, ସେମାନେ ହୁଏତ ମନେ କରିବେ ରାଜା କୃପଣ ସ୍ୱଭାବର ଲୋକ ଥିଲେ । ଉତ୍ତରରେ ଏହା କୁହାଯାଇପାରେ ଯେ କୃପଣ ବ୍ୟକ୍ତିଙ୍କ ପକ୍ଷରେ ଏଭଳି ରାଜପଥମାନ ନିର୍ମାଣର ପ୍ରୟୋଜନ ବୋଧ ହିଁ ନଥାଏ, ତାହାପରେ ସେ ଅନ୍ୟ ଶତବିଧ ଅନୁଷ୍ଠାନରେ ଯେପରି ଅକାତରରେ ଅର୍ଥବ୍ୟୟ କରି ଅଛନ୍ତି, ସେଥିରେ କାର୍ପଣ୍ୟ ଦୋଷ ଲେଶମାତ୍ର ତାହାଙ୍କୁ ସ୍ପର୍ଶ କରେ ନାହିଁ । ପ୍ରକୃତ କଥା ଏହା ଯେ, କୌଣସି କାର୍ଯ୍ୟାନୁଷ୍ଠାନ କରାଇ ତାହା ସୂଚାରୁ ରୂପେ ସଂପନ୍ନ ହେବା ବିଷୟରେ, ତାଙ୍କର ଆନ୍ତରିକ ଯତ୍ନ ଓ ଚେଷ୍ଟାର ପ୍ରବଳତା ହିଁ ତାଙ୍କୁ ସର୍ବଦା ଏହିପରି ଶ୍ରମକର କାର୍ଯ୍ୟରେ ନିଯୁକ୍ତ କରାଇଛି । ଏହି ବିଷୟରେ ସେ ଶୀତ ତାପ ଓ ବର୍ଷାର ବାରିଧାରା ସହଜରେ ଉପେକ୍ଷା କରିବାରେ ଏବଂ ମଜୁରିଆମାନଙ୍କ ସହିତ ଶ୍ରମ କରିବାରେ ଆନନ୍ଦ ଉପଭୋଗ କରୁଥିଲେ । ରାଜପଥ, ତାହାପୁଣି କ'ଣ ଦୁଇ ଚାରିଟା ? ରାଜଧାନୀ ଦେବଗଡ଼କୁ କେନ୍ଦ୍ରକରି ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ, ଚାରିଦିଗରେ ଅସଂଖ୍ୟ ରାଜପଥ ନିର୍ମାଣ କରାଇଯାଇଛନ୍ତି । ସମସ୍ତ ପଥ ସମାନ ଦୀର୍ଘ ନହେଲେ ମଧ୍ୟ, ଏଭଳି ଦୁଇଚାରିଟା ପଥ ଅଛି, ଯେଉଁଗୁଡ଼ିକର ଦୈର୍ଘ୍ୟ କଲିକତା ରାଜଧାନୀ ଠାରୁ ଯଶୋହର ଯିବାର ସେକାଳର ପଥର ଦୈର୍ଘ୍ୟ ଅପେକ୍ଷା ଅଳ୍ପ ନୁହେଁ । ଯେଉଁ ରାଜପଥ ଅଦ୍ୟାପି ବର୍ତ୍ତମାନ ଥାଇ, କଲିକତାରୁ ଯଶୋହର ଯାତାୟତରେ ସାହାଯ୍ୟ କରିଥାଏ, ସେହିପଥର ଶ୍ୟାମବାଜାର ଖାଲର ସେତୁ ପାରିହୋଇ ଦମଦମା ଓ ବୀରାଣତ୍ର ମଧ୍ୟଦେଇ ଗୋବରଡାଙ୍ଗ ଓ ବନାଗ୍ରାମ ହୋଇ ଯଶୋହରରେ ପହଞ୍ଚିଛି, ଏହାର ଦୈର୍ଘ୍ୟ ୭୫ ମାଇଲ୍ । ବାମଣ୍ଡାର ପ୍ରଜାଗଣଙ୍କର ଯାତାୟତର ସୁବିଧା ପାଇଁ, ବ୍ୟବସାୟ ବାଣିଜ୍ୟର ସୌକାର୍ଯ୍ୟାର୍ଥେ ଓ ଭିନ୍ନ ଭିନ୍ନ ରାଜାମାନଙ୍କର ରାଜ୍ୟ ସହିତ ସମ୍ବନ୍ଧ ରକ୍ଷା ପାଇଁ, ସାର୍ ବାସୁଦେବ ଏହିପରି ଦୀର୍ଘପଥମାନ ମଧ୍ୟ ପ୍ରସ୍ତୁତ କରାଇଥିଲେ । ବେଙ୍ଗଲ୍ ନାଗପୁର ରେଲୱେର ବାମଣ୍ଡା ଷ୍ଟେସନଠାରୁ ରାଜଧାନୀ ଦେବଗଡ଼ ପର୍ଯ୍ୟନ୍ତ ଯେଉଁ ରାଜପଥ ପ୍ରସାରିତ ତାହାର ଦୈର୍ଘ୍ୟ ୫୮ ମାଇଲ୍ । ଏହି ପଥ ଅନେକ



Digitized by srujanika@gmail.com

ସ୍ଥାନରେ ପାହାଡ଼ ଉପର ଦେଇ ଯାଇଅଛି । ଏହି ପାହାଡ଼ ପଥ ନିର୍ମାଣରେ ଯେ ସ୍ଥପତି ବିଦ୍ୟାର ପରିଚୟ ବିଦ୍ୟମାନ, ତାହା କୌଣସି ବିଜ୍ଞ ଇଂରେଜ ଇଂଜିନିୟରଙ୍କର ବୁଦ୍ଧି ପ୍ରସୂତ ବୋଲି ବିଶ୍ୱାସ ହେବ, କୌଣସି ଅନଭିଜ୍ଞ ବ୍ୟକ୍ତିଙ୍କର ତୀକ୍ଷ୍ଣ ବୁଦ୍ଧିରେ ଯେ, ସହଜରେ ସେହି ସବୁ କାର୍ଯ୍ୟର ନିୟମ ପଦ୍ଧତି ସ୍ଥାନ ପାଇପାରେ, ତାହା କୌଣସିମତେ ହିଁ ବିଶ୍ୱାସଯୋଗ୍ୟ ବୋଲି ମନେ ହେବ ନାହିଁ । ମଧ୍ୟପ୍ରଦେଶର ଶାସନକର୍ତ୍ତା, ରାୟପୁରର ପଲିଟିକାଲ୍ ଏଜେଣ୍ଟ୍ ଓ ସମ୍ବଲପୁର ଇଂରେଜ୍ ରାଜକର୍ମଚାରୀଗଣ ବାମଣ୍ଡା ଷ୍ଟେସନଠାରୁ ଦେବଗଡ଼ ରାଜପଥ ପର୍ଯ୍ୟବେକ୍ଷଣ କରି ବିସ୍ମୟ ସହକାରେ ପୁନଃ ପୁନଃ ଜିଜ୍ଞାସା କରିଛନ୍ତି, କେଉଁ ଇଂରେଜ ଇଞ୍ଜିନିୟର ଏହି ପଥର ନକ୍ସା ପ୍ରସ୍ତୁତ ଏବଂ ନିର୍ମାଣ ତଦାରଖ କରିଛନ୍ତି ? ସମସ୍ତେ ହିଁ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ବୁଦ୍ଧିପ୍ରସୂତ ପ୍ରଣାଳୀର ଅବଲମ୍ବନରେ ଏହି ରାଜପଥ ନିର୍ମିତ ହୋଇଅଛି ଶୁଣି, ଆଶ୍ଚର୍ଯ୍ୟାନ୍ୱିତ ହୋଇଛନ୍ତି । ଆମ ଦେଶର ଐଶ୍ୱର୍ଯ୍ୟ-ସଂପଦ, ଶ୍ରମ ବିମୁଖ, ଗାଲୁଗଳ୍ପ ପ୍ରିୟ ବିଳାସୀ ବ୍ୟକ୍ତିଗଣଙ୍କ ସମକ୍ଷରେ କର୍ମଶୀଳତାର, ଲୋକସେବାର, ଅଧ୍ୟବସାୟର ଓ ସୁକୀର୍ତ୍ତିପରାୟଣତାର ଅତ୍ୟୁତ୍ତମ ଦୃଷ୍ଟାନ୍ତ ସ୍ଥଳ ବୋଲି ସ୍ୱୀକୃତ ହେଲେ ମଧ୍ୟ, ତାଙ୍କ ପ୍ରତି ପ୍ରଚୁର ସମ୍ମାନ ପ୍ରଦତ୍ତ ହେଲା ବୋଲି ମନେ ହୁଏନାହିଁ । ଏଭଳି ମହାତ୍ମା ବ୍ୟକ୍ତିଙ୍କ ଜୀବନାଦର୍ଶ ସର୍ବତ୍ର ସମାଦୃତ ଓ ପୂଜା ପ୍ରାପ୍ତ ହେଲେ ଯାଇ ଯତ୍‌କିଂଚିତ୍ ପୁରସ୍କାର ହେଲା ବୋଲି ମନେହୁଏ । ନେପୋଲିୟନଙ୍କ ସୈନ୍ୟଦଳ ଇଟାଲୀର ଉତ୍ତର ଆଲ୍‌ପସ୍ ପର୍ବତମାଳା ଉତ୍ତୀର୍ଣ୍ଣ ହୋଇ ଯେତେବେଳେ ନିର୍ଦ୍ଦିଷ୍ଟ ସ୍ଥାନରେ ଶିବିର ସ୍ଥାପନ କରନ୍ତି, ସେତେବେଳେ ସମ୍ରାଟଙ୍କ ପାଇଁ ଜଣେ ବିଶପ୍‌ଙ୍କ ଗୃହରେ ବିଶ୍ରାମ ଓ ରାତ୍ରିଯାପନ ସ୍ଥାନ ନିର୍ଦ୍ଦିଷ୍ଟ ଥିଲା । ସମ୍ରାଟ ବିଶପଙ୍କର ସେହି ସମାଦର ପୂର୍ଣ୍ଣ ସମ୍ବର୍ଦ୍ଧନା ତ୍ୟାଗ କରି ନିକଟବର୍ତ୍ତୀ ଏକ କୃଷକର ଗୁହାଳ ଘରେ ଅତି କଷ୍ଟରେ ରାତ୍ରିଯାପନ କରି ପ୍ରାତଃକାଳେ ସୈନ୍ୟମଣ୍ଡଳୀରେ ଦେଖା ଦେବାମାତ୍ରେ ଚାରିଦିଗରେ ଆନନ୍ଦଧ୍ୱନି ନିନାଦିତ ହୋଇଥିଲା । ସମ୍ରାଟ ସେନାପତି, ବିଶପ୍‌ଙ୍କୁ ପ୍ରଶ୍ନୋତ୍ତରରେ କହିଥିଲେ- 'ମୋର ସର୍ବସ୍ୱ ଖୋଲା ପଡ଼ିଆରେ, ଅନାହାରରେ ଶୀତକ୍ଳିଷ୍ଟରେ, ମୁଁ କିପରି ଆପଣଙ୍କ ସେବା ଗ୍ରହଣ କରିବି ?' ରାଜା ବାସୁଦେବ ନେପୋଲିୟନ ସମ୍ବାଦ ଅବଗତ ନଥିଲେ, କିନ୍ତୁ ଶ୍ରମଜୀବୀମାନଙ୍କ ସହିତ ଉପବାସରେ ଓ ସମାନ ଆହାରରେ ତୁଷ୍ଟ ହୋଇ ସେମାନଙ୍କ ସହିତ ରୌଦ୍ର-ବର୍ଷାରେ ଶ୍ରମକରି ରାଜ ଚରିତ୍ରର ମର୍ଯ୍ୟାଦା ବୃଦ୍ଧି କରି ଯାଇଛନ୍ତି । ଏଭଳି ଦୃଷ୍ଟାନ୍ତ ବିଦେଶରେ ବିରଳ ନ ହେଲେ ମଧ୍ୟ, ଆମ ଦେଶରେ ନିତ୍ୟାନ୍ତ ବିରଳ, ସନ୍ଦେହ ନାହିଁ ।

ଓଡ଼ିଶାର ଗଡ଼ଜାତ ଓ ମଧ୍ୟପ୍ରଦେଶର ଛତିଶଗଡ଼ ଅଞ୍ଚଳ ପର୍ବତମୟ ବାନଭୂମିର ବକ୍ଷରେ ଅସଂଖ୍ୟ କ୍ଷୁଦ୍ର ବୃହତ୍ କରଦ ରାଜ୍ୟର ରାଜାମାନେ ବାସ କରନ୍ତି । ସେହି ସମସ୍ତ



Digitized by srujanika@gmail.com

ରାଜ୍ୟର ରାଜା ଓ ପ୍ରଜାମଣ୍ଡଳୀଙ୍କର ସାଧାରଣ ଅବସ୍ଥା ଅତି ଶୋଚନୀୟ । ସମଗ୍ର ଭୂଭାଗର ପରିଣାମ ଫଳ ବହୁ ବହୁ ସହସ୍ର ବର୍ଗମାଇଲ । ଏହି ସମଗ୍ର ପ୍ରଦେଶର ଜନସଂଖ୍ୟାର ଇୟତ୍ତା ନାହିଁ । ଏହା ମଧ୍ୟରେ ବାମଣ୍ଡାର ପରିମାଣ ଫଳ ଓ ଜନସଂଖ୍ୟା ତୁଳନାରେ ନିତ୍ୟାନ୍ତ ଅଳ୍ପ; ପ୍ରକୃତ କଥା ଏହି ଯେ, ଏହି ବିସ୍ତୃତ ଭୂଖଣ୍ଡ ମଧ୍ୟରେ ଏହି ଅଳ୍ପ ପରିସର ରାଜ୍ୟ ଏବଂ ଏଭଳି ଅଳ୍ପ ସଂଖ୍ୟକ ପ୍ରଜାନେଇ ପ୍ରଭୁତ ଆୟର ସୃଷ୍ଟିକରି ରାଜସଂସାରର ଓ ସାଧାରଣ ପ୍ରଜାମାନଙ୍କର ସର୍ବବିଧ ଉନ୍ନତି ସାଧନ ଚେଷ୍ଟା ସାଧାରଣ ଲୋକର କର୍ମ ନୁହେଁ । ଅପେକ୍ଷାକୃତ ବୃହତ୍ତର ରାଜ୍ୟର ସୁଖ ସୁବିଧା ସାଧନର ଭାର ରାଜା ସାର ବାସୁଦେବଙ୍କ ପରି କର୍ମଶୀଳ ମହାତ୍ମା ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ ଥିଲେ, ଜାଣେନା, ଆହୁରି କେତେ ଶୁଭ ଫଳ ସଂଭୋଗ କରି ବୃହତ୍ତର ଜନସମାଜ ଉପକୃତ ହୋଇଥାନ୍ତେ । କର୍ମଯୋଗୀ ସାର୍ ବାସୁଦେବଙ୍କ ଅନୁଷ୍ଠିତ କର୍ମକ୍ଷେତ୍ରର ସଂଖ୍ୟା ଓ ପରିସର ବୃଦ୍ଧି ସଂଗେ ସଂଗେ ରାଜ୍ୟର ପ୍ରଜାମଣ୍ଡଳୀଙ୍କର କାର୍ଯ୍ୟକ୍ଷମତା କର୍ମପଟୁତା ଓ କର୍ମାନୁରାଗ ବୃଦ୍ଧିପ୍ରାପ୍ତ ହୋଇଅଛି । ବ୍ୟବସାୟୀମାନେ ନିଜ ନିଜ ବ୍ୟବସାୟର ଉନ୍ନତି ସାଧନରେ ଅନଳସ ଓ ଶ୍ରମଶୀଳ କୃଷକମାନେ କୃଷିକାର୍ଯ୍ୟେ ରାଜାଦର୍ଶେ ନିତ୍ୟନୂତନ ପଦ୍ଧତିର ଅବଲମ୍ବନରେ ଅଗ୍ରସର । ଶ୍ରମଜୀବୀମାନେ ନିତ୍ୟ ନୂତନ ଉପାର୍ଜନର ପଥରେ ଅଗ୍ରସର । ଏହିପରି ଭାବରେ ରାଜ୍ୟର ପ୍ରଜାଗଣ କାର୍ଯ୍ୟରେ ନିଯୁକ୍ତ ବାମଣ୍ଡାରେ ସବୁ ସମୟରେ ମଜୁରିଆ କାମରେ ନିଯୁକ୍ତ କରିବାରେ ଲୋକାଭାବ ହୋଇଥାଏ, ତେଣୁ ପାର୍ଶ୍ୱବର୍ତ୍ତୀ ପାଲ୍ଲହଡ଼ା, ତାଳଚେର, ଗାଙ୍ଗପୁର ଓ ବଣାଇ ପ୍ରଭୃତି ରାଜ୍ୟର ଅସଂଖ୍ୟ ଶ୍ରମଜୀବୀ ବାମଣ୍ଡାକୁ ଶ୍ରମ କରିବା ପାଇଁ ଆସିଥାନ୍ତି । ଅଥଚ ବାମଣ୍ଡାର ଜଣେ ହେଲେ ପ୍ରାଣୀକୁ ଅନ୍ନ ସଂସ୍ଥାନ ପାଇଁ ରାଜ୍ୟ ବାହାରକୁ ଯିବାକୁ ପଡ଼େ ନାହିଁ । ତାହା କିପରି ଦେଶ, ଯେଉଁଠାରେ ପ୍ରଜାମାନେ ସୁଖରେ ମୁଠାଏ ଅନ୍ନ ପାଆନ୍ତି ଅଥଚ ବିଦେଶୀ ଜନଗଣ ଉପସ୍ଥିତ ହେଲେ କାମ ପାଆନ୍ତି ଓ କ୍ଷୁଧା ନିବୃତ୍ତି କରନ୍ତି ? ଭାରତବ୍ୟାପୀ ଅନ୍ନାଭାବରେ ହାହାକାରର ମଧ୍ୟସ୍ଥଳେ ଏଭଳି ବିନ୍ଦୁଏ ସ୍ଥାନକୁ ସାହାରା ପରିବେଷ୍ଟିତ ଶସ୍ୟ ଶ୍ୟାମଳ ଉର୍ବର କ୍ଷେତ୍ର ବୋଲି ମନେ ହେଲେ କ'ଣ କିଛି ଦୋଷ ହେବ ? ସାର୍ ବାସୁଦେବଙ୍କର ବାମଣ୍ଡା ପ୍ରକୃତରେ ଏତାଦୃଶ ପୂଣ୍ୟ ଭୂମିରେ ପରିଣତ ହୋଇଅଛି, ଆଉ ତଦୀୟ ଗୁଣବାନ୍ ପୁତ୍ର ଶ୍ରୀଯୁକ୍ତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଏହି ପିତୃ କୀର୍ତ୍ତି ସମ୍ୟକ୍ ରକ୍ଷାରେ ସର୍ବଦା ଯତ୍ନ ତତ୍ପର, ତେଣୁ ସର୍ବଦା ପିତାଙ୍କର ଶୁଭଦୃଷ୍ଟି ଓ ଆଶୀର୍ବାଦ-ଭାଜନ ହୋଇ, ନିତ୍ୟ ନୂତନ ଉନ୍ନତିର ପଥ ଅବଲମ୍ବନ କରୁଅଛନ୍ତି । ଏହା ପିତା-ପୁତ୍ର ଉଭୟଙ୍କର ଗୌରବର କଥା, ସନ୍ଦେହ ନାହିଁ ।

ବାମଣ୍ଡାର ରାଜଧାନୀ ଦେବଗଡ଼ର ରାଜପଥ ସବୁର ନିର୍ମାଣ ସୌଷ୍ଠବ, ସେହି ସକଳ ପଥରେ ଯାତାୟତର ଆରାମ ଏବଂ ସେଗୁଡ଼ିକର ମଧ୍ୟରୁ ସଂଖ୍ୟାଧିକ୍ୟ ପାର୍ବତ୍ୟପ୍ରଦେଶ ଓ ଅରଣ୍ୟ ମଧ୍ୟ ଦେଇ ଯେଉଁ ବିବିଧ କ୍ଲେଶ ଭୋଗରେ ଏହି ସକଳ ରାଜପଥ ନିର୍ମିତ ହୋଇଅଛି,


Digitized by srujanika@gmail.com

ତାହା ଚିନ୍ତା କଲେ, ରାଜା ସାର୍ ବାସୁଦେବଙ୍କ ଅନନ୍ୟ ସାଧାରଣ ଅଧ୍ୟବସାୟ ଓ ଶ୍ରମଶୀଳତା, ଅର୍ଥବ୍ୟୟ, ଉପବାସ ଭୋଗ ଇତ୍ୟାଦିର ପ୍ରଶଂସା ନ କରି ରହିହୁଏ ନାହିଁ । ନିଜର ରାଜଧାନୀ ଠାରୁ ରାଜ୍ୟର ସର୍ବତ୍ର ଯାତାୟତର ସୁବିଧା ସାଧନ କରି ରାଜା ବାହାଦୁର କ୍ଷାନ୍ତ ହୋଇ ନାହାନ୍ତି । ଦେବଗଡ଼ଠାରୁ ସମ୍ବଲପୁର ଓ ବାମଣ୍ଡା ରେଳ ଷ୍ଟେସନ ଯିବାପାଇଁ ପ୍ରଶସ୍ତତର ରାଜପଥ ନିର୍ମାଣ କରାଇ ସେ ନିଶ୍ଚିତ ହୋଇ ନାହାନ୍ତି । ସେ ତାଙ୍କର ନିଜରାଜ୍ୟଠାରୁ ପାର୍ଶ୍ୱବର୍ତ୍ତୀ ଅନ୍ୟାନ୍ୟ ରାଜାଙ୍କ ରାଜ୍ୟମଧ୍ୟକୁ ପ୍ରବେଶର ଉତ୍ତମ ରାଜପଥ ମାନ ନିର୍ମାଣ କରାଇ ଆନନ୍ଦ ଉପଭୋଗ କରିଥିଲେ । ଦେବଗଡ଼ଠାରୁ ପାଲ୍ଲହଡ଼ା, ବଣାଇ, ରେଢ଼ାଖୋଲ, ତାଳଚେର ପ୍ରଭୃତି ରାଜ୍ୟର ସୀମା ପର୍ଯ୍ୟନ୍ତ ଅକ୍ଲେଶରେ ଯିବାପାଇଁ ସହଜ ସୁନ୍ଦର ରାଜପଥମାନ ନିର୍ମାଣ କରାଇ ଏହି ପ୍ରଦେଶର ଲୋକଙ୍କର ଆଶୀର୍ବାଦଭାଜନ ହୋଇଯାଇଛନ୍ତି । ଏହି ରାଜପଥମାନ ତିଆରି କରିବାରେ ଯେ କେତେ ପାହାଡ଼ କାଟିବାପାଇଁ ହୋଇଛି, ଡିନାମାଇଟ ଦ୍ୱାରା ପର୍ବତ ଭାଙ୍ଗିବାକୁ ପଡ଼ିଛି, କେତେ ବଣ ଜଙ୍ଗଲ କାଟି ପରିଷ୍କାର କରିବାକୁ ପଡ଼ିଛି, ସେ ସବୁର ସଂଖ୍ୟା ଗଣନୀୟ ନୁହେଁ । ରାଜା ସାର୍ ବାସୁଦେବ ଏହି ସବୁ ଅନୁଷ୍ଠାନ ସଂପନ୍ନ କରିବାର ଆଦେଶ ଦେଇ ନିଶ୍ଚିନ୍ତ ହୋଇ ନାହାନ୍ତି । ପ୍ରତ୍ୟେକ ପଥ ନିର୍ମାଣ କାଳରେ ନିଜେ ଷ୍ଟେଟ୍ ନିଯୁକ୍ତ ଇଞ୍ଜିନିୟର ପରି ପଥ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିଛନ୍ତି । ଏଥିରେ ହିଁ ତାହାଙ୍କର ଆନନ୍ଦ, ଏଥିରେ ହିଁ ତାହାଙ୍କର ବ୍ୟକ୍ତିଗତ ବିଶେଷତ୍ୱ ।





Digitized by srujanika@gmail.com

## ଷଷ୍ଠ ଅଧ୍ୟାୟ

# ରାଜ ପରିବାର

ରାଜା ବାସୁଦେବ ସୁଢ଼ଳଦେବଙ୍କର ପାଟରାଣୀ ଗିରିରାଜକୁମାରୀଙ୍କର ଲୋକାନ୍ତର ଗମନ ଫଳରେ ରାଜା ବାସୁଦେବଙ୍କ ହୃଦୟରେ ଦାରୁଣ ଅବସାଦ ଓ ତଦ୍‌ଜାତ ବୈରାଗ୍ୟର ସଂଚାର ହୁଏ । ଯେଉଁ ବୈରାଗ୍ୟର ଦୀର୍ଘସ୍ଥାୟୀ ନିବନ୍ଧନ ଦେବଗଡ଼ ରାଜଭବନ ତାହାଙ୍କ ପକ୍ଷରେ ବିଷମୟ ହୋଇ ଉଠିଥିଲା । ଯେଉଁ ଅଶାନ୍ତିକର ମାନସିକ ଅବସ୍ଥାର ତାଡ଼ନାରେ ରାଜା ଦେଶ ଭ୍ରମଣ ଓ ତୀର୍ଥପର୍ଯ୍ୟଟନ ଶ୍ରେୟ ବୋଲି ଅନୁଭବ କରିଥିଲେ, ସେହି ଶ୍ରେୟ ପଥରେ ପଦାର୍ପଣ କରି ରାଜା ବାସୁଦେବ ନାନା ଦେଶ ଓ ନାନା ତୀର୍ଥ ଭ୍ରମଣକରି, ନାନା ସ୍ଥାନେ ଦେବଦର୍ଶନ, ପୁଣ୍ୟକର୍ମ ଅନୁଷ୍ଠାନ ଓ ସାଧୁ ସଜ୍ଜନଙ୍କର ସଙ୍ଗଲାଭ ଦ୍ୱାରା କ୍ରମଶଃ ସ୍ୱଭାବେ ସୁପ୍ରତିଷ୍ଠିତ ହୋଇଥିଲେ । ଏହା ସଂଗେ ଭାରତର ନାନା ସ୍ଥାନର ଜନତାଙ୍କ ବିଷୟରେ ଅଭିଜ୍ଞତା ଅର୍ଜନ, ଦେଶର ପ୍ରାଚୀନ ଓ ଆଧୁନିକ ଐତିହାସିକ ତତ୍ତ୍ୱର ସାର ସଂଗ୍ରହ, ଭିନ୍ନ ଭିନ୍ନ ସ୍ଥାନର ବ୍ୟବସାୟ ବାଣିଜ୍ୟ କେନ୍ଦ୍ରମାନ ପର୍ଯ୍ୟବେକ୍ଷଣ ପ୍ରଭୃତି ବୈଷୟିକ ଜ୍ଞାନଲାଭ କରି ସବଳ ଦେହେ ଓ ସୁସ୍ଥ ମନେ ରାଜଧାନୀକୁ ପ୍ରତ୍ୟାବୃତ୍ତ ହେବାପରେ, ଗୁରୁଜନଗଣ ଓ ଆତ୍ମିୟ ସ୍ୱଜନ ପୁନରାୟ ଦାର ପରିଗ୍ରହଣ ପାଇଁ ଅନୁରୋଧ କଲେ । ରାଜା ବାସୁଦେବ ବିଦେଶ ଯାତ୍ରା ସମୟରେ ଯାଇଥିଲେ ଏକ ଭାବରେ, ଫେରିଥିଲେ ସଂପୂର୍ଣ୍ଣ ଅନ୍ୟ ଭାବରେ । ବିଷୟକ୍ରମେ ବିତରାଗ ଓ ବୈରାଗ୍ୟମାର୍ଗ ଅବଲମ୍ବନ ଇଚ୍ଛା ପରିବର୍ତ୍ତେ, ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ ବାସନା ତାହାଙ୍କର ହୃଦୟ ମନ ଅଧିକାର କରିଅଛି । ସେ ବୁଝି ପାରିଲେ, ସଂସାରରେ ଆଉ ରାଜସଂସାରର ଓ ପ୍ରଜାମଣ୍ଡଳୀଙ୍କର ସର୍ବବିଧ କଲ୍ୟାଣ ସାଧନ ଚେଷ୍ଟା ଯେତେବେଳେ ତାହାଙ୍କର ଲକ୍ଷ୍ୟ, ସେତେବେଳେ ସମସ୍ତଙ୍କ ଅନୁରୋଧରେ ପୁନରାୟ ପତ୍ନୀ ଗ୍ରହଣ ପ୍ରସ୍ତାବରେ ସମ୍ମତି ପ୍ରଦାନ କରିବା ତାଙ୍କର କର୍ତ୍ତବ୍ୟ । ତେଣୁ ପାତ୍ରୀ ଅନୁସନ୍ଧାନ ପାଇଁ ଘଟକ ଓ ପୁରୋହିତ ପ୍ରେରିତ ହେଲା ।

ସେମାନେ ନାନା ସ୍ଥାନ ଭ୍ରମଣ କରି, ପରିଶେଷରେ ମୟୂରଭଞ୍ଜ ରାଜଶାଖା ଅନ୍ତର୍ଗତ ରରୁଆଁର କ୍ଷତ୍ରିୟ ଜମିଦାରଙ୍କ ଦୁଇ କନ୍ୟା ନିର୍ବାଚନ କରି ରାଜାଙ୍କୁ ସମ୍ବାଦ ଦେଲେ ।



Digitized by srujanika@gmail.com

ରାଜା ବାସୁଦେବ ସୁଢ଼ଳଦେବ ଯଥାକ୍ରମେ ନିର୍ଦ୍ଦିଷ୍ଟ ଦିନେ ରଗୁଆଁ ଗମନ ପୂର୍ବକ ଏହି ଭଗ୍ନି ଯୁଗଳଙ୍କର ପାଣି ଗ୍ରହଣ କରି, ବଧୂସହ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ । ଏହାପରେ ଏକଦା କଲିକତା ପରିଭ୍ରମଣାନ୍ତର ରାଜଧାନୀ ପ୍ରତ୍ୟାବର୍ତ୍ତନ କାଳରେ ସିଂହଭୂମ୍ ଅନ୍ତର୍ଗତ ଖରସୁଆଁର ଠାକୁର ନୀଳମଣି ବାହାଦୁରଙ୍କ ଭାଣିଜୀଙ୍କର ପାଣି ଗ୍ରହଣ କରି ବଧୂସହ ରାଜଭବନରେ ଉପସ୍ଥିତ ହୁଅନ୍ତି । ଅତଃପରେ ଏହି ତିନି ରାଣୀ ବାମଣ୍ଡାର ରାଜ ସଂସାରରେ ରାଜ ପରିଚର୍ଯ୍ୟାରେ ନିଯୁକ୍ତି ଥାଇ ପରମ ସୁଖେ ଓ ଶାନ୍ତିରେ କାଳ ଯାପନ କରିଛନ୍ତି । 'ପରମ ସୁଖେ ଓ ଶାନ୍ତିରେ'- କହିବାର ତାତ୍ପର୍ଯ୍ୟ ଏହି ଯେ, ଅଳ୍ପ ବୟସରେ ହିଁ ରାଜା ରାଣୀ ଗିରିରାଜକୁମାରୀଙ୍କ ଲୋକାନ୍ତର ଗମନରେ ଭଗ୍ନ ହୃଦୟ ହୋଇ, ବୈରାଗ୍ୟମାର୍ଗ ଅବଲମ୍ବନ କରି, ଦେବଦର୍ଶନ, ତୀର୍ଥ ପର୍ଯ୍ୟଟନ ଓ ଦେଶ ଭ୍ରମଣରେ ବହିର୍ଗତ ହୋଇଥିଲେ; ତାହା ହିଁ ତାହାଙ୍କର ହୃଦୟର ସ୍ୱାଭାବିକ ଭାବ । ତାଙ୍କ ତରୁଣ ବୟସର ବିରହ ବେଦନା ତାଙ୍କର ସୁକୁମାର ହୃଦୟରେ ଯେଉଁ ପରିବର୍ତ୍ତନ ଆଣିଥିଲା, ସେହି ପରିବର୍ତ୍ତନର ପ୍ରବଳ ଶକ୍ତି ତାଙ୍କର ଉଚ୍ଚ ଶିକ୍ଷାଗତ ଉଚ୍ଚଭାବ ସଂପନ୍ନ ହୃଦୟରେ ପ୍ରତିଷ୍ଠାଲାଭ କରିଥିଲା । ତେଣୁ ଜୀବନର ଶେଷଦିନ ପର୍ଯ୍ୟନ୍ତ ତାଙ୍କର ଅନାସକ୍ତ ହୃଦୟ ମନ, ପରବର୍ତ୍ତୀ ରାଣୀମାନଙ୍କର କାହାରି ନିକଟରେ ମଧ୍ୟ ଅସଂଗତ ଆନୁଗତ୍ୟ ସ୍ୱୀକାର କରିନାହିଁ । ଏକ ପକ୍ଷରେ କାହାରି ପ୍ରତି ମଧ୍ୟ ଅବଜ୍ଞା, ଅନାଦାର ବା ଉପେକ୍ଷା ପ୍ରଦର୍ଶନ ତାଙ୍କର ସ୍ୱଭାବ ବିରୁଦ୍ଧ ଥିଲା, ଠିକ୍ ସେହିପରି ପୁଣି କାହାରିକି ମଧ୍ୟ ନିଜ ଜୀବନ ଉପରେ ପ୍ରଭୁତ୍ୱ କରିବା ପାଇଁ ଦେବା ତାଙ୍କର ଶିକ୍ଷା ଦୀକ୍ଷା ଓ ସ୍ୱାଭାବ ଚରିତ୍ରର ଲକ୍ଷଣ ନଥିଲା । ତେଣୁ ସେ ନାନା ସୂତ୍ରେ ପରିଚାଳିତ ହୋଇ, କ୍ରମାନ୍ୱୟରେ ତିନି ବିବାହ କରିଥିଲେ ମଧ୍ୟ ସେମାନଙ୍କ ପ୍ରତି ପ୍ରେମପୂର୍ଣ୍ଣ ସଦ୍‌ବ୍ୟବହାର ଦ୍ୱାରା ସେମାନଙ୍କୁ ସମାନ ଭାବରେ ବଶରେ ରଖି ଜୀବନଯାତ୍ରା ନିର୍ବାହ କରିଯାଇଛନ୍ତି । ତିନି ରାଣୀ ବର୍ତ୍ତମାନେ ଅଯୋଧ୍ୟାର ରାଜସଂସାରରେ ଯେଉଁ ଦାବାନଳର ସୃଷ୍ଟି ହୋଇଥିଲା, କୌଶଲ୍ୟା ବର୍ତ୍ତମାନେ ରାମଙ୍କର ବନବାସର ବ୍ୟବସ୍ଥା ହୋଇଥିଲା । ଏଠାରେ ମାତୃହୀନ ଜ୍ୟେଷ୍ଠ ରାଜକୁମାର ସଚ୍ଚିଦାନନ୍ଦଙ୍କର ନିର୍ବାସନର ବ୍ୟବସ୍ଥା ହୋଇନାହିଁ, ବରଂ ରାଣୀତ୍ରୟ ସର୍ବଦା ହିଁ ମାତୃହୀନ ଜ୍ୟେଷ୍ଠ ତନୟ ପ୍ରତି ସ୍ନେହପରାୟଣା ଥିଲେ । ନିଜ ନିଜର ପୁତ୍ରକନ୍ୟା ଥିବା ସତ୍ତ୍ୱେ ମଧ୍ୟ ସମସ୍ତେ ମିଳିତ ହୋଇ ଜ୍ୟେଷ୍ଠ କୁମାର ସଚ୍ଚିଦାନନ୍ଦଙ୍କର ସର୍ବବିଧ ସୁଖ ସାଧନରେ ସର୍ବଦା ଯତ୍ନବତୀ ଥିଲେ, ଏଥିରୁ ଜଣାପଡ଼େ, ରାଜା ବାସୁଦେବଙ୍କ ବ୍ୟକ୍ତିତ୍ୱ ଓ ତଦ୍ୱାରା ଆଚାର ଆଚରଣ କିଭଳି ସୁନ୍ଦର ଥିଲା । ସେ କିଭଳି ସହଜ ଓ ସୁନ୍ଦର ଭାବରେ ସଂସାର ଧର୍ମ ପାଳନ କରି ଯାଇଛନ୍ତି, ଏଥିରୁ ତାହା ଉତ୍ତମ ରୂପେ ହୃଦୟଙ୍ଗମ କରାଯାଇପାରେ । ଯେଉଁ ଉଚ୍ଚ ଉଦାର ନୀତି ତାଙ୍କ ବାହ୍ୟ କର୍ମ ଜୀବନକୁ ନିୟମିତ



Digitized by srujanika@gmail.com

କରୁଥିଲା, ସେହି ପନ୍ଥା ଅବଲମ୍ବନରେ ସେ ତିନି ରାଣୀ ଥାଇ ସୁଦ୍ଧା, ରାଜ ଅନ୍ତଃପୁରରେ ସୁଖ ଓ ଶାନ୍ତିରେ କାଳାତିପାତ କରିବାରେ ସକ୍ଷମ ହୋଇଥିଲେ ।

ତାଙ୍କର ଏହି ତିନି ରାଣୀଙ୍କ ଗର୍ଭରୁ ଏଗାରଟି କନ୍ୟା ଓ ଆଠଟି ପୁତ୍ର ଜନ୍ମଗ୍ରହଣ କରନ୍ତି । ଏହାଙ୍କ ମଧ୍ୟରେ ଦ୍ୱିତୀୟା ରାଣୀଙ୍କର ଦୁଇ ପୁତ୍ର ଓ ତିନି କନ୍ୟା, ତୃତୀୟାଙ୍କର ପାଞ୍ଚ କନ୍ୟା ଓ ତିନି ପୁତ୍ର ଏବଂ ଚତୁର୍ଥ ରାଣୀଙ୍କ ତିନି କନ୍ୟା ଓ ତିନି ପୁତ୍ର । ଦ୍ୱିତୀୟା ରାଣୀଙ୍କର ପ୍ରଥମ କନ୍ୟାହିଁ ଜ୍ୟେଷ୍ଠା ରାଜକୁମାରୀ । ରାଜା ବାସୁଦେବଙ୍କ ରାଜ ସଂସାରରେ ଏହି ରାଜକୁମାରୀ ହିଁ ସର୍ବପ୍ରଥମ କନ୍ୟାରୂପେ ଆନନ୍ଦ ବିତରଣରେ ସଂସାରକୁ ସରସ ଓ ମୁଖରିତ କରାଇଥିଲେ । ରାଜା ବାସୁଦେବଙ୍କର ଯତ୍ନ ଚେଷ୍ଟା ଫଳରେ ପରିଣିତା ହୋଇଥିଲେ; କିନ୍ତୁ ଏହି ରାଜାବାଳା ଓ ରାଜବଧୂ ଦୀର୍ଘକାଳ ସଂସାର ଜୀବନ ଯାପନ କରିପାରି ନାହାନ୍ତି । ବିବାହ ପରେ ତାଙ୍କର ଲୋକାନ୍ତର ଗମନ ନିବନ୍ଧନ ପିତାମାତାଙ୍କର ବିରହ ବେଦନା ଦୀର୍ଘସ୍ଥାୟୀ ହୋଇ ରାଜାରାଣୀଙ୍କୁ କ୍ଲେଶ ଦେଇଅଛି । ଏହାଙ୍କ ଜନ୍ମ ଗ୍ରହଣ ପରେ ତୃତୀୟା ରାଣୀଙ୍କର ଏକ ପୁତ୍ର ସନ୍ତାନ ଲାଭ କରିବା ଫଳରେ ରାଜସଂସାର ପୁନରାୟ ଆନନ୍ଦପୂର୍ଣ୍ଣ ହୋଇ ଉଠିଲା । ଏହି ପୁତ୍ର ସନ୍ତାନ ବଡ଼ କୁମାର ଶ୍ରୀଯୁକ୍ତ ବଳଭଦ୍ର ଦେବ । ସଚରାଚର ଓଡ଼ିଶାର ରାଜସଂସାରରେ ଜ୍ୟେଷ୍ଠପୁତ୍ର ଟିକାୟେତ୍ ଓ ମଧ୍ୟମପୁତ୍ର ବଡ଼ କୁମାର ବୋଲି ଅବିହିତ ହୋଇଥାନ୍ତି । ଅପରାପର କୁମାରଗଣଙ୍କ ନାମ ପୂର୍ବରୁ 'ଲାଲ୍' ଶବ୍ଦ ବ୍ୟବହୃତ ହୋଇଥାଏ । ଲାଲ୍ ଦୁଷ୍ମନ୍ତ ଦେବ, ଲାଲ୍ ଦୟାନିଧି ଦେବ, ଲାଲ୍ ଜୟନାରାୟଣ ଦେବ, ଲାଲ୍ ରାଜୀବ ଲୋଚନ ଦେବ, ଲାଲ୍ ଲଳିତ ମୋହନ ଦେବ, ଲାଲ୍ ପଦ୍ମଲୋଚନ ଦେବ, ଲାଲ୍ ଲାଲ୍‌ମୋହନ ଦେବ । ଏହି ସମସ୍ତ ରାଜକୁମାରଙ୍କ ମଧ୍ୟରୁ ଶେଷ ଦୁଇ ରାଜକୁମାର ପଦ୍ମଲୋଚନ ଦେବ ଏବଂ ଲାଲ୍ ମୋହନ ଦେବ ବର୍ତ୍ତମାନ ପର୍ଯ୍ୟନ୍ତ ଅବିବାହିତ । କନିଷ୍ଠ ବିଦ୍ୟାର୍ଜ୍ଜନ ନିରତ ହୋଇ ଜୀବନର ପଥରେ ଅଗ୍ରସର ହୋଇଛନ୍ତି । ଅପର ରାଜକୁମାରଗଣ ସଂସାରରେ ପ୍ରବେଶ ଲାଭ କରି ପ୍ରତିଷ୍ଠା ଓ ପ୍ରତିପତ୍ତି ଅର୍ଜ୍ଜନରେ ବଦ୍ଧପରିକର । ରାଜା ବାସୁଦେବ ପ୍ରତ୍ୟେକଙ୍କର ସ୍ୱତନ୍ତ୍ର ସଂସାର ଯାତ୍ରା ନିର୍ବାହ ପାଇଁ ସୁବ୍ୟବସ୍ଥା କରିଦେଇ ଯାଇଛନ୍ତି ।

ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କର ରାଜ ଶକ୍ତିର ଚନ୍ଦ୍ରାତପ ତଳେ, କୁମାରଗଣ ପ୍ରାପ୍ତ ସଂପତ୍ତିର ପରିରକ୍ଷଣ ଓ ପରିବର୍ଦ୍ଧନ ଦ୍ୱାରା ନିଜ ନିଜ ଧନ ସଂପଦ ଓ ଐଶ୍ୱର୍ଯ୍ୟ ସଂଭୋଗ ସୁଖ ଏବଂ ରାଜାଶ୍ରୟରେ ମୁଖ୍ୟ ଶାନ୍ତିରେ କାଳ କର୍ତ୍ତନର ସୁବର୍ଣ୍ଣ ସୁଯୋଗ ପାଇଛନ୍ତି । ଧନ ବୃଦ୍ଧିର ସଦୁପାୟ ଶିକ୍ଷା ଦେବା ସଂଗେ ସଂଗେ, ରାଜା ସାର୍ ବାସୁଦେବ କୁମାରଗଣ ପ୍ରତ୍ୟେକଙ୍କୁ ବ୍ୟବସାୟ ବାଣିଜ୍ୟ ଦ୍ୱାରା ଧନାଗମନ ଓ ଧନବୃଦ୍ଧିର ଉପଯୋଗୀ



Digitized by srujanika@gmail.com

ମୂଳଧନ ଦେଇ, ପ୍ରତ୍ୟେକଙ୍କୁ ସ୍ୱାବଲମ୍ବନ ପଥ ଦେଖାଇ ଦେଇ ଯାଇଛନ୍ତି । ଏମାନେ ମଧ୍ୟ ପିତୃ ଉପଦେଶ ଫଳରେ ଜୀବନ ପଥ ଅଗ୍ରସର ହେଉଛନ୍ତି ।

ରାଜକୁମାରୀଙ୍କ ମଧ୍ୟରେ ଜ୍ୟେଷ୍ଠାଙ୍କ ବିଷୟରେ ପୂର୍ବେ କୁହାଯାଇଅଛି । ରାଜାଙ୍କର ମଧ୍ୟମା ରାଜକୁମାରୀ ଶ୍ରୀମତୀ ଦେବୀଙ୍କ ସହିତ ସୁରଗୁଜାର ଯୁବରାଜଙ୍କର ବିବାହ ହୋଇଥିଲା । ଦୁର୍ଭାଗ୍ୟବଶତଃ ଅଳ୍ପ ବୟସରେ ହିଁ ଏହି ରାଜକୁମାରୀ ବୈଧବ୍ୟଦଶା ପ୍ରାପ୍ତ ହୁଅନ୍ତି । ସୁରଗୁଜା ଯୁବରାଜଙ୍କ ଅକାଳ ମୃତ୍ୟୁରେ, ସେହି ସଂସାରର ଯେଉଁ ପରିବର୍ତ୍ତନ ସଂଘଟିତ ହୁଏ, ତାହା ଫଳରେ ଶ୍ରୀମତୀ ଦେବୀଙ୍କର ଅବସ୍ଥା ବିପର୍ଯ୍ୟୟ ହେବା ଫଳରେ, ତାହାଙ୍କୁ ସ୍ଥାନାନ୍ତରିତ କରିବାର ପ୍ରୟୋଜନ ଅନିବାର୍ଯ୍ୟ ହୋଇପଡ଼େ । ରାଜା ବାସୁଦେବ ସ୍ୱୟଂ ନାନା ଉପାୟରେ ଚେଷ୍ଟାକରି, କନ୍ୟାକୁ ଆଣି ନପାରି, ନିତ୍ୟାନ୍ତ କାତର ହୋଇ ପଡ଼ନ୍ତି । ଇତିପୂର୍ବେ ଓଡ଼ିଶାର ଓ ମଧ୍ୟପ୍ରଦେଶର ରାଜନ୍ୟବର୍ଗଙ୍କ ମଧ୍ୟରେ ଏହିପରି ପ୍ରଥା ପ୍ରଚଳିତ ଥିଲା ଯେ, ବିବାହ ସଂଗେ ସଂଗେ ପିତୃଗୃହ ସହିତ ରାଜକୁମାରୀମାନଙ୍କର ସମସ୍ତ ସମ୍ବନ୍ଧ ଛିଣ୍ଡି ଯାଉଥିଲା । କନ୍ୟାମାନେ ବିବାହ ପରେ ଦୀର୍ଘ ଜୀବନରେ କେତେବେଳେ ହେଲେ କୌଣସି କାରଣରେ, ଆଉ ପିତୃଗୃହେ ପଦାର୍ପଣ କରିପାରୁ ନଥିଲେ । ଏହି ପ୍ରଥା ଯେ ଭୟାନକ କୁପ୍ରଥା, ସେହି ବିଷୟରେ ସନ୍ଦେହ ନାହିଁ । ରାଜ ସଂସାରରେ କନ୍ୟା ବିବାହ ଓ ମୃତ୍ୟୁ ଏକ ପର୍ଯ୍ୟାୟଭୁକ୍ତ ଥିଲା ।  କନ୍ୟାମାନେ ବିବାହାନ୍ତେ ଆଉ ସେହି ବାଲ୍ୟସ୍ମୃତି ଜଡ଼ିତ ପିତ୍ରାଳୟ, ସାନ ସାନ ଭାଇ ଭଗିନୀ ପ୍ରଭୃତି କାହାରିକି ଆଉ ଦେଖି ପାରୁ ନଥିଲେ । ମା', ମାଉସୀ, ପିଉସୀ ସହିତ ଜନ୍ମରେ ଆଉ ସାକ୍ଷାତ ହେବାର ଉପାୟ ନଥିଲା । ଏହି ହିସାବରେ ରାଜକନ୍ୟାଗଣଙ୍କର ବିବାହ ମୃତ୍ୟୁର ନାମାନ୍ତରେ ପରିଣତ ହୋଇଥିଲା । ଏପରିକି ପିତାମାତାଙ୍କର ମୃତ୍ୟୁ କାଳରେ ମଧ୍ୟ ରାଜକନ୍ୟାମାନେ ଶ୍ୱଶୁରାଳୟରୁ ପିତୃଗୃହକୁ ଆସିବା ପାଇଁ ଏବଂ ପିତାମାତାଙ୍କର ଶେଷ ପରିଚର୍ଯ୍ୟା କରିବା ପାଇଁ ବା ଥରେ ମାତ୍ର ଶେଷଦର୍ଶନ ପାଇଁ  ଯାଇ ପାରୁନଥିଲେ । ଦୀର୍ଘକାଳ ଧରି ଏହି ଅଞ୍ଚଳର ରାଜସଂସାର ଗୁଡ଼ିକ ଏହି କୁରୀତି ବାହାଲ୍ କରି ପିତାମାନଙ୍କ ସହିତ କନ୍ୟାମାନଙ୍କ ସମ୍ବନ୍ଧର ବନ୍ଧନ ବିନାଶ କରିଚାଲିଥିଲେ । ରାଜା ସାର୍ ବାସୁଦେବ ସୁଢ଼ଳଦେବ ବିଧବା କନ୍ୟାର ବିବିଧ କ୍ଳେଶଭୋଗର ସମ୍ବାଦ ପାଇ ଓ ବହୁ ଯତ୍ନ ଚେଷ୍ଟା ଦ୍ୱାରା କନ୍ୟାକୁ ସ୍ୱଗୃହକୁ ଫେରାଇ ଆଣି ନପାରି ବଡ଼ ବ୍ୟଥିତ ଓ ବ୍ୟାକୁଳ ହୋଇ ପଡ଼ିଲେ । ପରିଶେଷରେ ନିରୂପାୟ ହୋଇ କନ୍ୟାର ଉଦ୍ଧାର ସାଧନ ପାଇଁ ଇଂରେଜ ସରକାରଙ୍କର ଆଶ୍ରୟ ଗ୍ରହଣ କଲେ । ରାଜକର୍ମଚାରୀମାନଙ୍କୁ ପ୍ରକୃତ ଅବସ୍ଥା ଉତ୍ତମରୂପେ ବୁଝାଇ ଦେଇ, ତାଙ୍କ ମାଧ୍ୟମରେ ସୁରଗୁଜା ରାଜାଙ୍କ ଉପରେ କନ୍ୟାକୁ ପିତୃଗୃହକୁ ଆନୟନର ଆଦେଶ ପାଇଲେ ।



Digitized by srujanika@gmail.com

ତାହାପରେ ମଧ୍ୟ ରାଜକୁମାରୀ ଶ୍ରୀମତୀ ଦେବୀ, ନାନା ନିର୍ଯ୍ୟାତନା ଓ କ୍ଳେଶଭୋଗ ପରେ ପିତୃହସ୍ତେ ଅର୍ପିତ ହେଲେ ।

ଏହି ଉପଲକ୍ଷେ ରାଜା ସାର୍ ବାସୁଦେବଙ୍କର ଏହି ବ୍ୟକ୍ତିଗତ କ୍ଳେଶ ଭୋଗ ପରେ, ହୃଦୟରେ ଏକ ପ୍ରବଳ ଆକାଙ୍‌କ୍ଷାର ଉଦୟ ହେଲା । କି ଉପାୟ ଅବଲମ୍ବନ କଲେ, ଏହି ବର୍ବର ପ୍ରଥାର ବିନାଶ ସାଧନ କରି ପାରିବେ । ସ୍ଥିର ପ୍ରତିଜ୍ଞ ରାଜା ବାସୁଦେବ ଏକ ପକ୍ଷରେ ସମ୍ବାଦପତ୍ରରେ ଏହି କୁପ୍ରଥା ବିରୁଦ୍ଧରେ ଆନ୍ଦୋଳନ ଉପସ୍ଥିତ କଲେ, ଅପର ପକ୍ଷରେ ସଂବାଦପତ୍ରରେ ଏହି ଅଞ୍ଚଳର କ୍ଷତ୍ରିୟ ରାଜା ଓ ଜମିଦାର ସମସ୍ତଙ୍କୁ ଏହି ମର୍ମ ବେଦନାଦାୟକ ସାମାଜିକ ରୀତିର ପରିବର୍ତ୍ତନ ପ୍ରୟୋଜନୀୟତା ବୁଝାଇବାରେ ଚେଷ୍ଟା କରିବାରେ ଲାଗିଲେ । ପରବର୍ତ୍ତୀ କାଳରେ, ନିଜ ପୁତ୍ର କନ୍ୟାମାନଙ୍କର ବିବାହ କାଳରେ ଏହି ସାମାଜିକ ନିୟମର କଠୋରତା ବୁଝାଇ ବନ୍ଧନମୁକ୍ତି ସମ୍ବନ୍ଧରେ ଅପର ପକ୍ଷଙ୍କୁ ସମ୍ମତ କରାଇ, ତତ୍‌ପରେ ବିବାହ ପ୍ରସ୍ତାବ ସ୍ଥିର କରିବାରେ ଲାଗିଲେ । ଦେବଗଡ଼ର ରାଜପରିବାର ନିକଟରେ ଏହି କୁରୀତି ଏବଂ ଏହିପରି ନାନା ଅସଂଗତ ସାମାଜିକ ଅନୁଷ୍ଠାନର ପରିବର୍ତ୍ତନ ପାଇଁ ଓଡ଼ିଶା ଓ ମଧ୍ୟପ୍ରଦେଶର ରାଜାମାନେ ଋଣୀ । ରାଜା ସାର୍ ବାସୁଦେବ ନିଜ କୁମାରମାନଙ୍କର ବିବାହ ଅନୁଷ୍ଠାନ କାଳରେ କନ୍ୟାପକ୍ଷଙ୍କୁ ପ୍ରୟୋଜନ ହେଲେ କନ୍ୟାକୁ ପୁନର୍ବାର ନେଇ ଯିବାର ଅଧିକାର ଦାନ କରି ସହଜରେ ଏହି ଚିର ନିର୍ବାସନ ପ୍ରଥାର ମସ୍ତକରେ କୁଠାରଘାତ କରି ପାରିଥିଲେ । ସଂସାର ସର୍ବଦା କ'ଣ ଦେଖେ ? ସ୍ୱାର୍ଥ ? ରାଜା ବାସୁଦେବ ନିଜ କନ୍ୟାମାନଙ୍କର ବିବାହ ସମୟରେ, ବିବାହ ପରେ, କନ୍ୟା ଆନୟନର ପ୍ରସ୍ତାବ କଲେ, ଅପରପକ୍ଷ ସାମାନ୍ୟ ଇତଃସ୍ତତଃ ହେଲେ ମଧ୍ୟ, ବିବାହାନ୍ତେ ସେମାନଙ୍କର ନିଜ କନ୍ୟାକୁ ଗୃହରେ ପୁନରାୟ ପାଇବାର ଆଶାରେ ସହଜରେ ସମ୍ମତ ହେଉଥିଲେ । ଜଣେ ରାଜା ସାର୍ ବାସୁଦେବଙ୍କ ଚେଷ୍ଟା ଫଳରେ ବର୍ତ୍ତମାନ ସମଗ୍ର ପ୍ରଦେଶର ରାଜ ସଂସାରରେ ଏହି କୁପ୍ରଥା ଏକାବେଳକେ ରହିତ ହୋଇ ଯାଇଅଛି ।

ଏହି କାର୍ଯ୍ୟଟିକୁ ସୁସିଦ୍ଧ କରି ତୋଳିବା ପାଇଁ ରାଜା ସାର୍ ବାସୁଦେବଙ୍କୁ ଲୋକମତ ପରିବର୍ତ୍ତନ ପାଇଁ ଦୀର୍ଘକାଳ ଧରି ନାନା ଉପାୟ ଅବଲମ୍ବନ କରିବାକୁ ପଡ଼ିଥିଲା । ଯେତେ ନିନ୍ଦନୀୟ ହେଉନା କାହିଁକି, କୌଣସି ପ୍ରଥା ଥରେ ଜନସମାଜରେ ପ୍ରଚଳିତ ହୋଇଗଲେ ତାହା ରହିତ କରିବାର ଶକ୍ତି ଅଳ୍ପ ଲୋକଙ୍କର ଥାଏ । ବ୍ୟବସ୍ଥାର ବନ୍ଧନରେ ବଦ୍ଧ ହୋଇ, ନ୍ୟାୟାନ୍ୟାୟ ବିଚାର ବିରହିତ ଭାବରେ, ସେହି ପ୍ରଥାର ପାଦତଳେ ମୁଣ୍ଡ ନୁଆଁଇ ଜୀବନ ଧାରଣ ଓ ଜୀବନ ଯାପନ କରିବା ହିଁ ମନୁଷ୍ୟର ସାଧାରଣ ନିୟତି । ନ୍ୟାୟାନ୍ୟାୟ ବୁଝି ନ୍ୟାୟର ପକ୍ଷ ସମର୍ଥନରେ ଯେଉଁ ଶକ୍ତିର ପ୍ରୟୋଜନ, ସେହି ପୁରୁଷଶକ୍ତି ବିଶିଷ୍ଟ ମନୁଷ୍ୟଙ୍କର



Digitized by srujanika@gmail.com

ସଂଖ୍ୟା ହିଁ ଅଳ୍ପ । ତେଣୁ ସାର୍ ରାଜା ବାସୁଦେବଙ୍କୁ, ଏହି କୁପ୍ରଥା ଉଠାଇ ଦେବା ପାଇଁ ବହୁଶ୍ରମ କରିବାକୁ ପଡ଼ିଥିଲା; କିନ୍ତୁ ତାଙ୍କ ପଣଭଂଗ କରିବା ପାଇଁ ପ୍ରତିପକ୍ଷ ଯେତେ ପ୍ରବଳ ହୁଅନ୍ତୁ ନା କାହିଁକି ସେଥିରେ ସେ ଆଦୌ ଭୀତ ହୋଇ ନାହାନ୍ତି । ତାଙ୍କ ହୃଦୟ ବଳ ଓ ମନର ଦୃଢ଼ତା ଅପରିସୀମ, ଯାହା କରିବାକୁ ହେବ କାର୍ଯ୍ୟ ଶେଷ ନକରି ନିରସ୍ତ ହେଉନଥିଲେ । ଏଥିପାଇଁ ପ୍ରାଣପଣ କରିବା ତାଙ୍କର ସ୍ୱଭାବ ଥିଲା । ବିଧବା ରାଜକୁମାରୀଙ୍କର ଉଦ୍ଧାର ସାଧନ ଉପଲକ୍ଷେ, ଏହି ସାମାଜିକ କୁପ୍ରଥା ରହିତ କରିବାର ବାସନା ତାହାଙ୍କ ହୃଦୟରେ ଜାଗ୍ରତ ହୋଇଥିଲା ବୋଲି, ପ୍ରସଂଗ କ୍ରମେ ଏହିଠାରେ ହିଁ ସମାଜର ଏହି କୁନୀତିର ନିବାରଣ ଚେଷ୍ଟା ଆଲୋଚନା କରାଗଲା; କିନ୍ତୁ  ପାଠକେ ପରେ ଦେଖିବେ, ସମାଜ ସଂସ୍କାରର ପ୍ରବଳ ଉଦ୍ୟମ ଫଳରେ ତାଙ୍କ ରାଜ୍ୟରେ ଓ ସଂଗେ ସଂଗେ ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କରେ କେତେ ଉନ୍ନତିକର ଅନୁଷ୍ଠାନ ସ୍ଥାନ ପାଇ, ସମାଜର ସାଧାରଣ ଅବସ୍ଥା କେତେ ଉନ୍ନତତର କରି ତୋଳିଅଛି ।

ବିବାହାନ୍ତେ କନ୍ୟାମାନଙ୍କର ପିତ୍ରାଳୟକୁ ଯିବା ଅଧିକାର ଚିର ସଂଚିତ ଥିବା କଥା ଯେ ଓଡ଼ିଶା ଓ ମଧ୍ୟପ୍ରଦେଶ ରାଜସଂସାରର ସମସ୍ତଙ୍କୁ ସର୍ବପ୍ରଥମ ସୂଚିତ ହୋଇଥିଲା, ଏହିପରି ବୋଧହୁଏ ନାହିଁ । କାରଣ ଏହି ପ୍ରଦେଶର ରାଜାମାନେ ତ ଭାରତର ଅନ୍ୟାନ୍ୟ ପ୍ରଦେଶୀୟ ରାଜାମାନଙ୍କ ଠାରୁ ପୃଥକ ସଂପ୍ରଦାୟ ନୁହନ୍ତି । ଏମାନେ ସମସ୍ତେ ହିଁ ଭାରତୀୟ ପୂର୍ବ କ୍ଷତ୍ରିୟ ରାଜାମାନଙ୍କର ବଂଶଧର । ଭାରତରେ ମୋଗଲ ପଠାଣମାନଙ୍କର ଆବିର୍ଭାବରେ ଓ ଅଭ୍ୟୁଦୟରେ, ବିଶେଷ ଭାବରେ ସମ୍ରାଟ ଆକ୍‌ବରଙ୍କ ସମୟରେ, କ୍ଷତ୍ରିୟ ରାଜକୁମାରୀଗଣଙ୍କର ମୋଗଲ କୁଳବଧୂ ରୂପେ ପରିଗୃହୀତ ହେବାର ପ୍ରଥା ପ୍ରଚଳିତ ହେବାଫଳରେ, ବିବାହାନ୍ତେ ଭାରତୀୟ ରାଜକୁମାରୀଗଣଙ୍କ ପିତ୍ରାଳୟରେ ପଦାର୍ପଣ ସୁଖ ଚିରଦିନ ଅସ୍ତମିତ ହୋଇଥିଲା, ତାହା ମଧ୍ୟ ବୋଧହୁଏ ନାହିଁ । ତତ୍‌ପୂର୍ବେ ମଧ୍ୟ ଯେ ଏହି କୁପ୍ରଥା ପ୍ରଚଳିତ ନଥିଲା ଏଭଳି ମଧ୍ୟ ମନେହୁଏ ନାହିଁ । ଦେବ କୁଳରେ ସତୀ, ପିତୃଗୃହେ ଯଜ୍ଞାନୁଷ୍ଠାନେ ବିନା ନିମନ୍ତ୍ରଣରେ ଯାଇ, ପିତୃମୁଖରେ ପତିନିନ୍ଦା ହେତୁ ଦେହତ୍ୟାଗ କରି ଗିରିରାଜ କୁମାରୀ ରୂପେ, ବତ୍ସରାନ୍ତେ ବସନ୍ତେ ଓ ଶରତ୍‌କାଳେ ଥରେ ଥରେ ଆଗମନ କରୁଥିଲେ ମଧ୍ୟ ଭୋଜରାଜକୁମାରୀ ଭାନୁମତୀ କେବଳ ପିତ୍ରାଳୟରେ କାହିଁକି, ସ୍ୱେଚ୍ଛାମତେ ସର୍ବତ୍ର ବିଚରଣ କରି ପାରିଲେ ମଧ୍ୟ, ସାଧାରଣତଃ ରାଜକନ୍ୟାଗଣଙ୍କୁ ବିବାହ ପରେ ପିତ୍ରାଳୟର ସ୍ନେହ ମମତାରୁ ବଂଚିତ ରହିବାକୁ ପଡୁଥିଲା ।

ରାମାୟଣର ବିବରଣୀରେ କୌଶଲ୍ୟା, କୈକେୟୀ, ସୁମିତ୍ରା ପ୍ରଭୃତିଙ୍କର ପିତ୍ରାଳୟ ଗମନର ଉଲ୍ଲେଖ ନାହିଁ । ଆଦର୍ଶ ପତି ସହବାସେ ଶତବିଧ ଦୁଃଖକ୍ଲେଶ, ନିର୍ଯ୍ୟାତନ ଓ



Digitized by srujanika@gmail.com

ଯନ୍ତଣା ଭୋଗକରି ମଧ୍ୟ, ନାରୀର ଆଦର୍ଶ ସୀତାଦେବୀ କୌଣସି ଦିନ ବିପନ୍ନା ହୋଇ ଜନକସଦନରେ ଆଶ୍ରୟ ଗ୍ରହଣ କରି ନାହାନ୍ତି । ତାଙ୍କର ପରିଣୟ ସଂଗେ ସଂଗେ ପିତୃଗୃହ ସମ୍ବନ୍ଧ ଛିନ୍ନ ହୋଇଥିଲା । ରାମଙ୍କ ବନବାସ ଏବଂ ସୀତାଙ୍କ ବନବାସ, ଜନକ କନ୍ୟା ସୀତାଦେବୀଙ୍କର ସମ୍ବାଦ ରଖିଛନ୍ତି ବୋଲି ପ୍ରକାଶ ପାଇନାହିଁ । ଶାନ୍ତାଙ୍କର ମଧ୍ୟ ସେହିପରି ରାଜା ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ପ୍ରତ୍ୟାଖ୍ୟାନ କରିବା ପରେ, କନ୍ୟା ଶକୁନ୍ତଳା ପିତା ମହର୍ଷି କଣ୍ୱଙ୍କ ଆଶ୍ରମଗତା ହୋଇନାହାନ୍ତି । ହେମକୁଟରେ ମହର୍ଷି କଶ୍ୟପଙ୍କ ଆଶ୍ରମରେ କୁଟିର ନିର୍ମାଣ କରି ରାଜା ଦୁଷ୍ମନ୍ତଙ୍କ ଅପେକ୍ଷାରେ ଜୀବନ ଧାରଣ କରିଥିଲେ ।

ମହାଭାରତର ବିବରଣୀମାଳା ଭିତରେ ମଧ୍ୟ କୁଳବଧୂଗଣଙ୍କର ପିତ୍ରାଳୟ ଗମନର ସମ୍ବାଦ ମିଳେ ନାହିଁ । ରାଜପୁତାନାର ରାଜନ୍ୟବର୍ଗଙ୍କର କୁଳବଧୂମାନେ ପିତ୍ରାଳୟ ଯାଇ ପାରୁଥିଲେ ବୋଲି ଶୁଣାଯାଏ ନାହିଁ । ଦ୍ରୌପଦୀଙ୍କର ସ୍ୱୟମ୍ବରାନୁଷ୍ଠାନ ପରି, ଜୟଚନ୍ଦ୍ରଙ୍କର ରାଜଭବନରେ ସଂଯୁକ୍ତାଙ୍କ ସ୍ୱୟଂମ୍ବର କ୍ଷେତ୍ରରେ, ସୁବୃହତ୍ ଯୁଦ୍ଧାନୁଷ୍ଠାନ ସହଯୋଗରେ ବିବାହାନୁଷ୍ଠାନ ସଂପନ୍ନ ହୋଇଥିଲା । ଏଥିରୁ ବେଶ୍ ସ୍ପଷ୍ଟ ଭାବରେ ପ୍ରତୀୟମାନ ହୁଏ ଯେ ବିବାହାନ୍ତେ ରାଜକନ୍ୟାଗଣଙ୍କର ପିତୃଗୃହ ଦର୍ଶନ ବହୁ ପ୍ରାଚୀନ କାଳଠାରୁ ରହିତ ହୋଇ ଆସିଛନ୍ତି । ଓଡ଼ିଶା ଓ ମଧ୍ୟପ୍ରଦେଶର ରାଜପରିବାରମାନଙ୍କରେ ମଧ୍ୟ ଏହି ପ୍ରଥା ପ୍ରବଳ ଭାବରେ ପ୍ରତିଷ୍ଠିତ ଥିଲା ଏବଂ ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହି କୁପ୍ରଥା ନିବାରଣ ଓ ବିବାହାନ୍ତେ ରାଜକନ୍ୟାଗଣଙ୍କର ପିତୃଗୃହକୁ ଯାତାୟତର ସୁଯୋଗ ସାଧନ ଦ୍ୱାରା ଓଡ଼ିଶାର ରାଜପରିବାରରେ ସୁବୃହତ୍ ପରିବର୍ତ୍ତନ ସାଧନ କରାଇ ଯାଇଛନ୍ତି । ଓଡ଼ିଶା ଓ ମଧ୍ୟପ୍ରଦେଶ ଏଥି ନିମନ୍ତେ ତାହାଙ୍କ ନିକଟରେ ଋଣୀ ।

ଅନ୍ୟାନ୍ୟ ରାଜକୁମାରୀଗଣଙ୍କ ମଧ୍ୟରେ ରାଜାଙ୍କ ଜୀବଦ୍ଦଶାରେ ସୁଲୋଚନା ଜେମା, (୧) ପ୍ରିୟମ୍ବଦା ଜେମା ଓ କୁସୁମ ଜେମା ପରବର୍ତ୍ତୀ କାଳରେ ଅଳ୍ପ ବୟସରେ ହିଁ ମୃତ୍ୟୁମୁଖରେ ପତିତ ହୋଇ ଦାରୁଣ ଦୁଃଖ ଶୋକରେ ରାଜପରିବାରକୁ ଦଗ୍ଧ କରି ଯାଇଛନ୍ତି । ପ୍ରିୟମ୍ବଦା ଦେବୀ ପାଲ୍ଲହଡ଼ାର ରାଣୀ ହୋଇଥିଲେ । ଭାରତବର୍ଷର ମାନଚିତ୍ରରେ ହାଇଦ୍ରାବାଦର ପୂର୍ବଦିଗରେ ଓ ମଧ୍ୟପ୍ରଦେଶର ପୂର୍ବ-ଦକ୍ଷିଣ ପ୍ରାନ୍ତରେ ଯେଉଁ ସୁବିସ୍ତୃତ ରାଜ୍ୟ ଦେଖିବାକୁ ମିଳେ, ତାହାର ନାମ ବସ୍ତର୍ । ଏହି ସୁବୃହତ୍ ପ୍ରଦେଶର ରାଜଧାନୀ ଜଗଦଳପୁର । ଗୋଦାବରୀର ଉପନଦୀ ଇନ୍ଦ୍ରାବତୀ ତୀରରେ ଅବସ୍ଥିତ । ରାଜ୍ୟ ଯେପରି ବିସ୍ତୀର୍ଣ୍ଣ ଐଶ୍ୱର୍ଯ୍ୟ, ସଂପଦ ମଧ୍ୟ ସେହିପରି ପ୍ରଚୁର । ରାଜା ସାର୍ ବାସୁଦେବ ପ୍ରିୟତମା କନ୍ୟା କୁସୁମ ଜେମା ବସ୍ତରର ରାଜରାଣୀ ହୋଇଥିଲେ । ଏହି ରାଜକନ୍ୟା ଏକ ପକ୍ଷରେ ଯେପରି ଅସାମାନ୍ୟ ସୁନ୍ଦର ଥିଲେ, ଅନ୍ୟପକ୍ଷରେ ତଦନୁରୂପ ଗୁଣବତୀ ମଧ୍ୟ ଥିଲେ । ସଂସ୍କୃତ ଓ ଓଡ଼ିଆ ଭାଷା



Digitized by srujanika@gmail.com

ଶିକ୍ଷା ସହିତ ଏହି ରାଜକୁମାରୀ ସଂଗୀତାଦି କଳାଶାସ୍ତ୍ରରେ ମଧ୍ୟ ଉତ୍ତମ ପାରଦର୍ଶିତା ଲାଭ କରିଥିଲେ । ରାଜା ବହୁ ଯତ୍ନରେ କନ୍ୟାଙ୍କୁ ବିବିଧଗୁଣରେ ସଜାଇଁ, ବସ୍ତର ରାଜପରିବାରକୁ ପଠାଇଥିଲେ । ସେଠାରେ ନବୀନା ରାଣୀ ରୂପେ ତାଙ୍କର ପ୍ରଚୁର ସମ୍ମାନ ଲାଭ ଘଟୁ ନ ଘଟୁ, ନବୀନା ରାଣୀ ଅକାଳରେ କାଳଗ୍ରାସରେ ପତିତ ହୁଅନ୍ତି ।

ଗୌରୀ ଜେମା ତାଳଚେରରେ ରାଜରାଣୀ । ଗୋଦାବରୀ ଜେମା ଟାଙ୍ଗବାସର କେରା ଠାକୁରଙ୍କର ପୁତ୍ରବଧୂ । ଅମରାବତୀ ଜେମା ବଣାଇର ରାଣୀ । କୁମୁଦବତୀ ଜେମା ପଞ୍ଚକୋଟି କାଶୀପୁରର କ୍ଷତ୍ରିୟ ଜମିଦାରଙ୍କର ପୁତ୍ରବଧୂ । ଚିତ୍ରା ଜେମା ଟିକ୍‌ଲି ରାଜାଙ୍କ ପୁତ୍ରବଧୂ । ଦିଲ୍ଲୀ ଜେମା ସରାଇକେଲା ରାଜାଙ୍କର ପୁତ୍ରବଧୂ ।

ସାମାଜିକ ମାନ ମର୍ଯ୍ୟାଦା ହିସାବରେ କଳାହାଣ୍ଡି ଅନ୍ତର୍ଗତ କାଶୀପୁର ଥାଟରାଜା ବିଶେଷ ଭାବେ ପ୍ରତିଷ୍ଠାବାନ ଥିଲେ । ଇଂଲଣ୍ଡ ଦୃଷ୍ଟିରେ ହଲାଣ୍ଡ ଯେଭଳି ଚିରଦିନ ସମ୍ମାନର ପାତ୍ରୀ, ଇଂଲଣ୍ଡର ରାଜାମାନେ ହଲାଣ୍ଡ ରାଜକୁମାରୀଙ୍କର ପାଣିଗ୍ରହଣ ଯେଭଳି ସର୍ବାପେକ୍ଷା ସମ୍ମାନଜନକ ବୋଲି ଅନୁଭବ କରିଥାନ୍ତି । ଯେପରି ଇଂଲଣ୍ଡ ରାଜପରିବାରରେ ଓ ହଲାଣ୍ଡ ରାଜପରିବାରରେ ବହୁ ବହୁ ବୈବାହିକ ସମ୍ବନ୍ଧ ସ୍ଥାପିତ ହୋଇଅଛି, ତଦ୍ରୂପ ଓଡ଼ିଶାର ରାଜପରିବାରରେ କାଶୀପୁରର ମର୍ଯ୍ୟାଦା ଅତ୍ୟନ୍ତ ଅଧିକ । ତେଣୁ କାଶୀପୁରର ରାଜକୁମାରୀ ଲାଭ ଏହି ପ୍ରଦେଶର ରାଜାମାନଙ୍କର ବହୁ ସମ୍ମାନଜନକ ବୋଲି ସଂସ୍କାର ରହିଛି । କାଶୀପୁର ରାଜା ବୈଦ୍ୟନାଥ ସିଂହ ଦେବଙ୍କର ସ୍ୱର୍ଗାରୋହଣ ହେବା ପରେ ତଦୀୟ ରାଣୀ ସୂର୍ଯ୍ୟକୁମାରୀ ସନ୍ତାନମାନଙ୍କର ଅଳ୍ପ ବୟସ ହେତୁ ସ୍ୱୟଂ ରାଜକାର୍ଯ୍ୟ ପରିଚାଳନା କରନ୍ତି । ତାଙ୍କର ଦୟା ମାୟା ସମଦୃଷ୍ଟି ସଂଗେ ସଂଗେ ରାଜକାର୍ଯ୍ୟ ପରିଚାଳନା ଉପଯୋଗୀ ତୀକ୍ଷ୍ଣ ବୁଦ୍ଧିର ଅଭାବ ନଥିଲା । ରାଜ୍ୟରେ ଅତିଥି ଅଭ୍ୟାଗତଙ୍କର ପରିଚର୍ଯ୍ୟାଠାରୁ ଆରମ୍ଭ କରି ରାଜ୍ୟରକ୍ଷା, ରାଜ୍ୟ ଶାସନ ଓ ପ୍ରଜାପାଳନରେ ସର୍ବଦା ସମାନ ଦୃଷ୍ଟି ରଖୁଥିଲେ । ପାର୍ଶ୍ୱବର୍ତ୍ତୀ ସମସ୍ତ ରାଜ୍ୟ ଏହି ପ୍ରଥିତଯଶା ରାଣୀ ସୂର୍ଯ୍ୟକୁମାରୀଙ୍କ ବିବିଧ ଗୁଣ କୀର୍ତ୍ତନରେ ଧ୍ୱନିତ ହେଉଥାଏ । ସମସ୍ତେ ତାଙ୍କର ନାମ ଶୁଣିଛନ୍ତି ଏବଂ ସସମ୍ମାନେ ତାଙ୍କର ନାମ ଉଲ୍ଲେଖ କରିଥାନ୍ତି ।

ରାଜା ସାର୍ ବାସୁଦେବ, ରାଣୀ ସୂର୍ଯ୍ୟକୁମାରୀଙ୍କର ବିବିଧ ଗୁଣର ପରିଚୟ ପାଇ ତଦୀୟା ଜ୍ୟେଷ୍ଠ କନ୍ୟା ଶ୍ରୀମତୀ ତମ୍ବରୁଧର ପ୍ରିୟା ଜେମାମଣିଙ୍କ ସହିତ ନିଜର ଜ୍ୟେଷ୍ଠ ପୁତ୍ର ଓ ବାମଣ୍ଡାର ଭାବୀ ରାଜା ଶ୍ରୀଯୁକ୍ତ ସଚ୍ଚିଦାନନ୍ଦଙ୍କର ବିବାହାନୁଷ୍ଠାନ ସଂପନ୍ନ କରିବାର ସଂକଳ୍ପ କରି, ସ୍ୱୟଂ କାଶୀପୁର ଯାତ୍ରା କଲେ । ପ୍ରାୟ ପନ୍ଦର ଦିନର ପଥ । ନାନା ବିଘ୍ନ ଅତିକ୍ରମ କରି ରାଜଧାନୀରେ ଉପସ୍ଥିତ ହୋଇ, ରାଣୀ ସୂର୍ଯ୍ୟକୁମାରୀଙ୍କର ଆଦର



Digitized by srujanika@gmail.com

ଆପ୍ୟାୟନରେ ଏବଂ ସମାଦର ପୂର୍ଣ୍ଣ ପରିଚର୍ଯ୍ୟାରେ ପରିତୃଷ୍ଟ ହୋଇଥିଲେ ଏବଂ ରାଣୀଙ୍କର ରାଜ୍ୟପାଳନ ପଦ୍ଧତି ପରିଦର୍ଶନ କରି ଗଭୀର ଆନନ୍ଦ ପ୍ରକାଶ କରିଥିଲେ । ସପ୍ତାହେ କାଳ ସେଠାରେ ଅବସ୍ଥାନ ଓ ବିଶ୍ରାମ କରିବା ପରେ, କୁମାରଙ୍କର ବିବାହାନ୍ତେ ଆତ୍ମୀୟ-ସ୍ୱଜନ ପରିବେଷ୍ଟିତ ବଧୂସହ ସେ ଦେବଗଡ଼ ରାଜଧାନୀରେ ଉପସ୍ଥିତ ହେଲେ । ଦେବଗଡ଼ ଆସି, ରାଜ୍ୟଯୋଗ୍ୟ ଆୟୋଜନରେ, ମହାସମାରୋହ ସହକାରେ, ଟିକାୟେତ୍ ସଚ୍ଚିଦାନନ୍ଦଙ୍କ ପରିଣୟର ପରବର୍ତ୍ତୀ ଅନୁଷ୍ଠାନ ୧୮୮୯ ଖ୍ରୀଷ୍ଟାବ୍ଦରେ ସଂପନ୍ନ କରାଇଥିଲେ । ଏହି ବିବାହ ଉପଲକ୍ଷେ ନାନା ଦେଶାଗତ ଜନମଣ୍ଡଳୀ ପରିଚର୍ଯ୍ୟାରେ ରାଜା ବାସୁଦେବ ପ୍ରଚୁର ଅର୍ଥବ୍ୟୟ କରି ସମସ୍ତଙ୍କୁ ସନ୍ତୁଷ୍ଟ କରିଥିଲେ । ବହୁଦେଶରୁ ନିମନ୍ତ୍ରିତ ଅଧ୍ୟାପକ ଓ ପଣ୍ଡିତଗଣଙ୍କର ସମାଗମ ହୋଇଥିଲା । ଦିନେ ସେମାନଙ୍କୁ ନେଇ ଏକ ବିରାଟ ସଭାର ଅନୁଷ୍ଠାନ ହୁଏ । ସେହି ସଭାରେ ରାଜା ବାସୁଦେବ ସମସ୍ତ ଦେଶୀୟ ପଣ୍ଡିତଗଣଙ୍କୁ ବିଦାୟ ଓ ବିବିଧ ଉପଢ଼ୌକନ ଦେଇ ପରିତୁଷ୍ଟ କରିଥିଲେ । ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ଚର୍ଚ୍ଚାରେ ରାଜାଙ୍କର ବିଶେଷ ଅନୁରାଗ ଥିବାହେତୁ, ବାମଣ୍ଡାରେ ଏପରି ସଭାର ଅନୁଷ୍ଠାନ ସର୍ବଦା ହେଉଥିଲା ଏବଂ ଗୁଣାନୁସାରେ ପଣ୍ଡିତଗଣ ବିଦାୟରେ ଆପ୍ୟାୟିତ ହୋଇ ସ୍ୱଗୃହକୁ ଗମନ କରୁଥିଲେ । ଟିକାୟେତ୍ ସଚ୍ଚିଦାନନ୍ଦଙ୍କ ବିବାହାନୁଷ୍ଠାନ ପାଇଁ ଆହୂତ ସଭାରେ ଉପସ୍ଥିତ ପଣ୍ଡିତଗଣ ବିଶେଷ ଭାବରେ ଅର୍ଚ୍ଚିତ ଓ ସମ୍ମାନିତ ହୋଇ ସ୍ୱସ୍ଥାନ ପ୍ରସ୍ଥାନ କରିଥିଲେ ।

କାଶୀପୁରର ରାଜମାତା ରାଣୀ ସୂର୍ଯ୍ୟକୁମାରୀଙ୍କର ତିନି କନ୍ୟା । ଜ୍ୟେଷ୍ଠା ରାଜକୁମାରୀ ବାମଣ୍ଡାର, ଦ୍ୱିତୀୟା ଗାଙ୍ଗପୁରର ଓ ତୃତୀୟା ସୋନପୁରର ଯୁବରାଜଙ୍କ ମହିଷୀ ହୋଇ ସୁଖରେ କାଳଯାପନ କରୁଅଛନ୍ତି । ଗୋଟିଏ ରାଜପରିବାରର କନ୍ୟାମାନେ ଏଭଳି ଭିନ୍ନ ଭିନ୍ନ ସ୍ଥାନରେ ବୃହତ୍ତର ରାଜପରିବାରର ପାଟରାଣୀ ରୂପେ ରାଜ୍ୟର ମଙ୍ଗଳାମଙ୍ଗଳ ସହିତ ଜଡ଼ିତ ହୋଇ ସୁଖରେ କାଳ ଅତିବାହିତ କରୁଛନ୍ତି, ଏଭଳି ଦୃଷ୍ଟାନ୍ତ ଖୁବ୍ ବେଶି ଦେଖାଯାଏ ନାହିଁ । ତେଣୁ କାଶୀପୁରକୁ ହଲାଣ୍ଡ ସହିତ ତୁଳନା କରାଯାଇଅଛି ଏବଂ ସେହି ତୁଳନା ଅସଂଗତ ନୁହେଁ । ଆକ୍ଷେପର ବିଷୟ ଗାଙ୍ଗପୁର ଯୁବରାଜ ଓ ଯୁବରାଜପତ୍ନୀ ପରବର୍ତ୍ତୀ କାଳରେ ଉଭୟେ ହିଁ ଅସମୟରେ ଲୋକାନ୍ତରିତ ହୋଇଛନ୍ତି । ସେମାନଙ୍କର ଏକମାତ୍ର ପୁତ୍ର ହିଁ ଭାବୀ ଗାଙ୍ଗପୁର ରାଜା ।

ଏହି ସଂସାରରେ ଯେଉଁମାନେ ବହୁ ପୁତ୍ର କନ୍ୟାଙ୍କର ପିତା-ମାତା, ସେମାନଙ୍କର ଶୋକ-ତାପ ଭୋଗ ମଧ୍ୟ ତଦ୍ରୂପ ଅତ୍ୟନ୍ତ ଅଧିକ ହୋଇଥାଏ । ଏହି ଦୃଷ୍ଟିରୁ ଦେଖିଲେ, ରାଜା ବାସୁଦେବ ମୋଟ ଉପରେ ଦେବତା ମଣିଷ ଥିଲେ । କାରଣ ତାଙ୍କର ବହୁ ପୁତ୍ର କନ୍ୟାଙ୍କ ମଧ୍ୟରେ ଶ୍ରୀମତୀ ଦେବୀ ବିଧବା ହୋଇ ପିତୃ ସଂସାରରେ ଜୀବନ ଯାପନ



Digitized by srujanika@gmail.com

କରୁଅଛନ୍ତି । ଅନ୍ୟ ଦୁଇକନ୍ୟା ଜ୍ୟେଷ୍ଠା ରାଜକୁମାରୀ ଓ ସୁଲୋଚନା ଜେମା ଅକାଳରେ କାଳର କ୍ରୋଡ଼ରେ ଆଶ୍ରୟ ନେଇଥିଲେ । ଏତଦ୍ ଭିନ୍ନ ସକଳ ପୁତ୍ର କନ୍ୟା ରାଜା ସାର୍ ବାସୁଦେବଙ୍କର ଜୀବଦ୍ଦଶାରେ ସୁସ୍ଥ ଦେହରେ ଜୀବିତ ଥାଇ ରାଜାଙ୍କର ଏବଂ ରାଜ ପରିବାରର ଆନନ୍ଦ ବର୍ଦ୍ଧନ କରି ଅଛନ୍ତି । ରାଜା ବାସୁଦେବ ଏହି ସୁବୃହତ୍ ରାଜ ପରିବାରର ସୁଖ ସାଧନରେ ସର୍ବଦା ସମାନ ମନୋଯୋଗୀ ଥାଇ ମଧ୍ୟ ରାଜ୍ୟର ଶତବିଧ ଉନ୍ନତି ସାଧନରେ ଏକନିଷ୍ଠ ସାଧକଙ୍କ ପରି କିପରି ଜୀବନ ଉତ୍ସର୍ଗ କରିବାରେ ନିଯୁକ୍ତ ଥିଲେ, ଭାରତର ବୃହତ୍ତର ରାଜ୍ୟମାନଙ୍କ ତୁଳନାରେ ଏକ କ୍ଷୁଦ୍ର ରାଜ୍ୟକୁ ସେ କିପରି ସ୍ୱର୍ଣ୍ଣ ଖଣିରେ ପରିଣତ କରି ଯାଇଛନ୍ତି, ତାହା ହିଁ ଜାଣିବାର ବିଷୟ । ଜୀବନର ଶ୍ରମ ଓ ଅସାଧାରଣ ଅଧ୍ୟବସାୟ ସହକାରେ ସେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ କରି ଓଡ଼ିଶାର ସାମନ୍ତ ରାଜାଗଣଙ୍କର ଶୀର୍ଷସ୍ଥାନ ଅଧିକାର କରି ଯାଇଛନ୍ତି, ସେହି ସମ୍ବାଦ ହିଁ ବର୍ତ୍ତମାନ ସମୟର ପୁଷ୍ଟସଂପଦ, ଅଥଚ ଆଳସ୍ୟ ପ୍ରିୟ ଓ ବ୍ୟସନାଶକ୍ତ ବ୍ୟକ୍ତି ବୃନ୍ଦଙ୍କର ଜାଣିବାର ଓ ସେହି ତତ୍ତ୍ୱଠାରୁ ଜୀବନ ସଂଗ୍ରାମରେ ଜୟ ଲାଭର ଗୁପ୍ତମନ୍ତ୍ର ସଂଗ୍ରହ କରିବା ପ୍ରୟୋଜନ ।



---

ପାଦଟୀକା

(୧) ଓଡ଼ିଶାରେ 'ଜେମା' ଶବ୍ଦ ରାଜକୁମାରୀ ଅର୍ଥରେ ବ୍ୟବହୃତ ହୋଇଥାଏ ।



Digitized by srujanika@gmail.com

## ସପ୍ତମ ଅଧ୍ୟାୟ

# କୁମାରଗଣଙ୍କ ଶିକ୍ଷା ଓ ବିଦ୍ୟାଳୟ ପ୍ରତିଷ୍ଠା

ଟିକାୟତ୍ ସଚ୍ଚିଦାନନ୍ଦ ଶୈଶବରୁ ମାତୃହୀନ । ପିତାମହୀଙ୍କର ରକ୍ଷଣାବେକ୍ଷଣରେ ପାଳିତ ହୋଇ, ଧୀରେ ଧୀରେ ଜୀବନ ପଥରେ ଅଗ୍ରସର ହେଉଛନ୍ତି । ସେ ଶୈଶବରେ ଓ ବାଲ୍ୟକାଳରେ ନିତ୍ୟାନ୍ତ ଦୁର୍ବଳ ଥିଲେ, ସବଳ ଓ ପୁଷ୍ଟାଙ୍ଗ ହେବାରେ ବିଳମ୍ବ ହୋଇଥିଲା । ତଥାପି ପଞ୍ଚମ ବର୍ଷରେ ରାଜରୀତି ଅନୁସାରେ ବାଳକର ବିଦ୍ୟାରମ୍ଭ ହୋଇଥିଲା । ଏହି ଅନୁଷ୍ଠାନ ସଂଗେ ସଂଗେ ମେଦିନୀପୁର ନିବାସୀ ବାବୁ ଈଶ୍ୱର ଚନ୍ଦ୍ର ମିତ୍ର ରାଜକୁମାରଙ୍କର ବର୍ଣ୍ଣ ପରିଚୟ ଓ ଓଡ଼ିଆ ଭାଷା ଶିକ୍ଷା ଦେବା ଭାରପ୍ରାପ୍ତ ହୁଅନ୍ତି । ସଂଗେ ସଂଗେ ବଂଗଳା ଓ ଇଂରାଜୀ ବର୍ଣ୍ଣ ପରିଚୟ ସୂତ୍ରପାତ ମଧ୍ୟ ହୋଇଥିଲା । ସତ୍ୟ ଘଟଣା ବୋଲି ଓଡ଼ିଶାରେ ସର୍ବତ୍ର ବିଦିତ ଯେ, ସେକାଳରେ ପୁରୀର ରାଜକୁମାରଙ୍କ ବିଦ୍ୟାରମ୍ଭ ସମୟରେ ରାଜକୁମାରଙ୍କୁ ଅ, ଆ, କ, ଖ, ଇତ୍ୟାଦି ବର୍ଣ୍ଣୋଚ୍ଚାରଣ କରାଇବା ସମୟରେ ଗୁରୁଦେବଙ୍କୁ କହିବାକୁ ପଡୁଥିଲା- 'ମଣିମାନ୍, ଶ୍ରୀ ଅଙ୍ଗକୁ ସାବଧାନ୍, ଶ୍ରୀମୁଖେ 'କ' ବୋଲିବାକୁ ଆଜ୍ଞା ହୁଅନ୍ତୁ ।' ଇତ୍ୟାଦି କଥା ପ୍ରତ୍ୟେକ ବର୍ଣ୍ଣ ଶିଖାଇବା ସମୟରେ କହିବାକୁ ପଡୁଥିଲା । ଦେଶର କେତେ ପରିମାଣରେ ଦୁର୍ଦ୍ଦଶା ହେଲେ, ଶିକ୍ଷକଙ୍କୁ ଏଭଳି ଶିଷ୍ଟଶାନ୍ତ ହୋଇ ଓ ବିନୟ ନମ୍ରତା ସହକାରେ ଛାତ୍ରର ପରିଚର୍ଯ୍ୟାରେ ନିଯୁକ୍ତ ହେବାକୁ ପଡ଼େ । ସୁଖର ବିଷୟ, ରାଜକୁମାର ସଚ୍ଚିଦାନନ୍ଦଙ୍କ ବିଦ୍ୟାରମ୍ଭକାଳରେ ବର୍ଣ୍ଣ ପରିଚୟ କରାଉଥିବା ଗୁରୁଙ୍କୁ ଏତାଦୃଶ ବିପନ୍ନ ହେବାକୁ ପଡ଼ିନାହିଁ । ଈଶ୍ୱରବାବୁ, କର୍ମାନ୍ତରେ ନିଯୁକ୍ତ ହେବା ପରେ, ବାବୁ ରାମଲାଲ୍ ମୈତ୍ର ଯୁବରାଜଙ୍କ ଶିକ୍ଷକ ପଦରେ ନିଯୁକ୍ତ ହୋଇଥିଲେ । ଏହାଙ୍କର ଶିକ୍ଷାଦାନ ବିଷୟରେ ବିଶେଷ ପ୍ରଶଂସା ଥିଲା । ଏହି ସମୟରେ ଲାଲ୍ କେଶବ ଚନ୍ଦ୍ର ଦେବ ଓ ଜଳନ୍ଧର ଦେବ ଟିକାୟେତଙ୍କର ସହପାଠୀ ରୂପେ ଏକତ୍ର ଅଧ୍ୟୟନ କରୁଥିଲେ । ତପରେ ବାଲେଶ୍ୱର ନିବାସୀ ଭୋଳାନାଥ ସାମନ୍ତରାୟ କୁମାରଗଣଙ୍କ ଶିକ୍ଷାର ଭାରପ୍ରାପ୍ତ ହୁଅନ୍ତି । ସେ ଛଅ ମାସ ମାତ୍ର ବାମଣ୍ଡାରେ ଅବସ୍ଥାନ କରି ଚାଲିଯାଆନ୍ତି । ଏହି ସମୟରେ କୁମାରଗଣ ପଞ୍ଚମ ଶ୍ରେଣୀର ସମସ୍ତ ଇଂରାଜୀ ଗ୍ରନ୍ଥ,



Digitized by srujanika@gmail.com

ଓଡ଼ିଆ ଏବଂ ବଙ୍ଗଳା ଇତ୍ୟାଦି ଶିଖି ସାରିଥିଲେ । ରାଜା ସାର୍ ବାସୁଦେବଙ୍କର ରାଜକାର୍ଯ୍ୟରେ ସହାୟତା ପାଇଁ ସମ୍ବଲପୁର ଇଂରାଜୀ ବିଦ୍ୟାଳୟର ଅବସର ପ୍ରାପ୍ତ ଶିକ୍ଷକ ବାବୁ ଗିରୀଶ ଚନ୍ଦ୍ର ଘୋଷ ମହାଶୟ ବାମଣ୍ଡାରେ ପଦାର୍ପଣ କରନ୍ତି ।

ଭୋଳାନାଥ ବାବୁଙ୍କର ଅବସର ଗ୍ରହଣ ଫଳରେ କୁମାରଗଣଙ୍କର ଶିକ୍ଷାର ଭାର ଗିରୀଶବାବୁଙ୍କ ଉପରେ ନ୍ୟସ୍ତ ହୁଏ । ଗିରୀଶବାବୁ ପାରଦର୍ଶୀ ପୁରାତନ ଶିକ୍ଷକ । ସୁତରାଂ ତାଙ୍କ ତତ୍ତ୍ୱାବଧାନରେ ଯୁବରାଜ ଉତ୍ତମ ଉନ୍ନତି ଲାଭ କରିବାରେ ଲାଗିଲେ । ଚତୁର୍ଥ ଶ୍ରେଣୀର ଇଂରାଜୀ ସାହିତ୍ୟ, ଓଡ଼ିଆ ଓ ବଙ୍ଗଳା ରଚନା, ପାଟିଗଣିତ, ବୀଜଗଣିତ ପ୍ରଭୃତି ବିଷୟରେ ଗିରୀଶବାବୁ  ଶିକ୍ଷା ଦେଇଥିଲେ । ସେ କିଛିକାଳ ଏହି କାର୍ଯ୍ୟ ଉପଲକ୍ଷେ ବାମଣ୍ଡାରେ ଅବସ୍ଥାନ କରି ରାଜକାର୍ଯ୍ୟର ବିବିଧ ଉନ୍ନତି ସାଧନ ବିଷୟରେ ମଧ୍ୟ ରାଜ୍ୟଙ୍କୁ ବିଶେଷ ସହାୟତା କରିଥିଲେ । ବାମଣ୍ଡାରେ ଅବସ୍ଥାନ କାଳରେ ମଂତ୍ରଣାଦାତା ଓ ଶିକ୍ଷକ ଗିରୀଶବାବୁଙ୍କର ଜଣେ ପୁତ୍ର ମୃତ୍ୟୁମୁଖରେ ପତିତ ହେବା ଫଳରେ ସେ ପତ୍ନୀସହ ଭଗ୍ନ ହୃଦୟରେ ବାମଣ୍ଡା ତ୍ୟାଗ କରନ୍ତି ।

ଗିରୀଶବାବୁଙ୍କର ଅବସର ଗ୍ରହଣ ପରେ ବାମଣ୍ଡାର ଶିକ୍ଷକ ପଦଶୂନ୍ୟ ହେଲା । ଯୁବରାଜ ଏବଂ ଅନ୍ୟାନ୍ୟ କୁମାରଗଣ କ୍ରମେ ବୟୋବୃଦ୍ଧି ସଂଗେ ସଂଗେ ଅଧିକତର ଉନ୍ନତିର ପଥରେ ଅଗ୍ରସର, ଏହି ସମୟରେ, ଯେମିତି ସେମିତି ଲୋକଙ୍କର ହାତରେ ଶିକ୍ଷା କାର୍ଯ୍ୟର ଭାର ଦେବା ବିଧେୟ ନୁହେଁ, ଏହି ବିବେଚନାରେ ରାଜା ସାମାନ୍ୟ ବିବ୍ରତ ହେଲେ । ଇତି ପୂର୍ବେ ପ୍ରସଂଗକ୍ରମେ କୁହାଯାଇଅଛି ଯେ, ପ୍ରଥମ କଲିକତା ପ୍ରବାସ କାଳରେ ରାଜା ବାହାଦୁର ବିଦ୍ୟାସାଗର ମହାଶୟଙ୍କ ସହିତ ପରିଚୟ ହୋଇଥିଲେ । ବର୍ତ୍ତମାନ ଯୁବରାଜ ଏବଂ ଅନ୍ୟ କୁମାରଗଣଙ୍କ ଶିକ୍ଷାର ଭାରାର୍ପଣ ପାଇଁ ଏବଂ ସେହି ସମୟରେ ପ୍ରତିଷ୍ଠିତ ବିଦ୍ୟାଳୟ ପାଇଁ, ରାଜା ସାର୍ ବାସୁଦେବ ବିଦ୍ୟାସାଗର ମହାଶୟଙ୍କ ନିକଟକୁ ଜଣେ ଉପଯୁକ୍ତ ଶିକ୍ଷକ ନିର୍ବାଚନ କରି ପଠାଇବା ପାଇଁ ଅନୁରୋଧ କରି ପତ୍ର ଲେଖିଲେ । ଅନୁରୋଧ ଫଳରେ, ସ୍ୱର୍ଗୀୟ ବିଦ୍ୟାସାଗର ମହାଶୟ ଅଧୁନା ବଙ୍ଗ ସାହିତ୍ୟରେ ସୁପରିଚିତ ବହୁଦର୍ଶୀ ପ୍ରବୀଣ ଲେଖକ ଶ୍ରୀଯୁକ୍ତ ବିଜୟ ଚନ୍ଦ୍ର ମଜୁମ୍‌ଦାର, ବି.ଏ. ମହାଶୟଙ୍କୁ ସେହି ପୂର୍ବତନ କାଳରେ ନିର୍ବାଚନ କରି ବାମଣ୍ଡା ପଠାଇଥିଲେ । ତାହା ଆଜିକୁ ପ୍ରାୟ ତିରିଶ ବର୍ଷ ତଳର କଥା । ବିଜୟବାବୁ ସେତେବେଳେ ପରିଣତ ବୟସର ଯୁବା ପୁରୁଷ । ବିଜୟବାବୁ ଏହି କର୍ମ ଗ୍ରହଣ କରି କଟକ ପଥରେ ବାମଣ୍ଡା ଯାଇଥିଲେ । ତାଙ୍କର ବାମଣ୍ଡା ଯିବା ସମୟରେ, ଯୁବରାଜଙ୍କ ପ୍ରଥମ ଶିକ୍ଷକ ଈଶ୍ୱରବାବୁ କଟକରେ ଥିଲେ । ରାଜାଙ୍କ ଆଦେଶରେ ସେ ହିଁ ବିଜୟବାବୁଙ୍କର ବାମଣ୍ଡା ଯିବାର ସୁବ୍ୟବସ୍ଥା କରାଇ



Digitized by srujanika@gmail.com

ଦେଇଥିଲେ । ବିଜୟବାବୁ ପାଲିଙ୍କି ଦ୍ୱାରା ଢ଼େଙ୍କାନାଳର ଶ୍ୱାପଦସଙ୍କୁଳ ଅରଣ୍ୟ ପଥରେ ବାମଣ୍ଡା ଯାଇଥିଲେ । ଏହି କଟକ ଯାତ୍ରା, ଅରଣ୍ୟ ଭ୍ରମଣ, ଶିକ୍ଷକତା ଇତ୍ୟାଦି ଘଟଣା ମିଳିତ ହୋଇ ଶ୍ରୀଯୁକ୍ତ ବିଜୟ ଚନ୍ଦ୍ର ମଜୁମଦାର ମହାଶୟଙ୍କୁ ଓଡ଼ିଶା, ଗଡ଼ଜାତ ଓ ସମ୍ବଲପୁର ସହିତ ଦୀର୍ଘସ୍ଥାୟୀ ସମ୍ବନ୍ଧ ସୂତ୍ରରେ ଆବଦ୍ଧ କରିଅଛି । ଏହି କର୍ମସୂତ୍ରେ ସେ କଟକର ଜ୍ୱାଇଁ, ବାମଣ୍ଡାର ବର୍ତ୍ତମାନ ରାଜଶ୍ରୀସଂପନ୍ନ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ବାହାଦୁରଙ୍କ ଶିକ୍ଷକ ଓ ସମ୍ବଲପୁରର ପ୍ରଧାନ ଓକିଲ ଏବଂ ବଙ୍ଗଳା ସାହିତ୍ୟର ଲବ୍ଧପ୍ରତିଷ୍ଠ କବି ଓ ପ୍ରତ୍ନତତ୍ତ୍ୱର ଉପାସକଗଣଙ୍କ ପୁରୋଭାଗରେ ଉପବିଷ୍ଟ । ବିଜୟବାବୁ ତିନିବର୍ଷ କାଳ ବାମଣ୍ଡାରେ ଅବସ୍ଥାନ କରି ବର୍ତ୍ତମାନ ରାଜାଙ୍କର ପ୍ରଥମ ଯୌବନରେ ସୁଚିନ୍ତା ଓ ସୁଶିକ୍ଷା ରୂପକ ବୀଜ ବପନ କରାଇ ରାଜା ଜୀବନର ଗୌରବ ବର୍ଦ୍ଧନରେ ସହାୟତା କରିବା, ସଂଗେ ସଂଗେ ଶିଷ୍ୟଙ୍କର ଜୀବନରେ ନିଜର ଅଧୀତ ବିଦ୍ୟା ଓ ବିବିଧ ବିଷୟକ ଅନୁସନ୍ଧିତ୍ସା-ବୃତ୍ତିର ଏକ ସ୍ଥାୟୀଛାପ ରଖି ବିଦାୟ ଗ୍ରହଣ କରିଥିଲେ । ତେଣୁ ବର୍ତ୍ତମାନ ବାମଣ୍ଡାଧିପତିଙ୍କର ସହିତ ତାଙ୍କର ସ୍ନେହ ପ୍ରୀତିର ସମ୍ବନ୍ଧ ଦୀର୍ଘସ୍ଥାୟୀ ହୋଇପାରିଛି ।

ବିଜୟବାବୁ ତିନିବର୍ଷ କାଳ ବାମଣ୍ଡାର ବିଦ୍ୟାଳୟରେ ପ୍ରଧାନଶିକ୍ଷକ ପଦରେ ପ୍ରତିଷ୍ଠିତ ଥିଲେ । ସେହି କାଳରେ ଯୁବରାଜ ସଚ୍ଚିଦାନନ୍ଦଙ୍କର ସୁପ୍ରଣାଳୀ ସଂଗତ ଇଂରାଜୀ ଶିକ୍ଷାଲାଭ ପକ୍ଷରେ ବିଜୟବାବୁ ଯଥେଷ୍ଟ ସହାୟତା କରିଅଛନ୍ତି । ଇଂରାଜୀ ଗ୍ରନ୍ଥ ସବୁ ପଠନ ସଂଗେ ସଂଗେ ଉଚ୍ଚାଙ୍ଗ ଇଂରାଜୀ ସମ୍ବାଦପତ୍ର ଗୁଡ଼ିକର ସାରମର୍ମ ବୁଝାଇ ଦେଉଥିଲେ । ତେଣୁ ଯୁବରାଜ ଅତି ସହଜରେ ନିତ୍ୟ ନୂତନ ନୂତନ ବିଷୟ ଜ୍ଞାନ ଓ ସେହି ସବୁ ବିଷୟର ସ୍ୱପକ୍ଷ ବିପକ୍ଷ ଯୁକ୍ତିମାନ ସହଜରେ ଆୟତ୍ତ କରି ପାରୁଥିଲେ । ବିଜୟବାବୁ ବାମଣ୍ଡା ପରିତ୍ୟାଗ କରିବା ସମୟରେ ସମ୍ବଲପୁରଠାରୁ ମହାନଦୀ ପଥରେ କଟକ ଯାତ୍ରା କରିଥିଲେ । ଏହାପରେ ବିଜୟବାବୁ ସୋନପୁର ରାଜକୁମାରଙ୍କ ଶିକ୍ଷକ ହୋଇ ପୁନରାୟ ଆଉଥରେ ଗଡ଼ଜାତ ଯାଇଥିଲେ । ତତ୍ପରେ ସମ୍ବଲପୁରରେ ଓକିଲାତି ଆରମ୍ଭ କରି ସେହି ସ୍ଥାନରେ ସ୍ଥାୟୀ ଭାବରେ ବାସ କରିଆସୁଥିଲେ । ବିଜୟବାବୁଙ୍କର ପରେ, ବାବୁ ଗୋପାଳଚନ୍ଦ୍ର ବନ୍ଦୋପାଧ୍ୟାୟ ବାମଣ୍ଡା ବିଦ୍ୟାଳୟ ପ୍ରଧାନ ଶିକ୍ଷକ ଓ ରାଜକୁମାରଗଣଙ୍କର ତତ୍ତ୍ୱାବଧାନର ଭାର ଗ୍ରହଣ କରି ବାମଣ୍ଡାରେ କିଛିକାଳ ଅବସ୍ଥାନ କରିଥିଲେ ।

ରାଜକୁମାରଗଣଙ୍କ ଶିକ୍ଷାର ସୂଚନା ସଂଗେ ସଂଗେ ବାମଣ୍ଡାର ଇଂରାଜୀ ବିଦ୍ୟାଳୟର ପ୍ରତିଷ୍ଠା ହୁଏ; କିନ୍ତୁ ସେହି ବିଦ୍ୟାଳୟ ଏତେଦିନ ଉଚ୍ଚ ଶ୍ରେଣୀର ଛାତ୍ରାଭାବରୁ କେବଳ ନାମକୁ ମାତ୍ର ଉଚ୍ଚବିଦ୍ୟାଳୟ ବୋଲି ଅଭିହିତ ହେଉଥିଲା ଏବଂ ମଧ୍ୟପ୍ରଦେଶର ମାଇନର ପରୀକ୍ଷା ପାଇଁ ବେଳେ ବେଳେ ଛାତ୍ର ପ୍ରେରିତ ହେଉଥିଲେ । ବର୍ତ୍ତମାନ କୁମାରଗଣଙ୍କର



Digitized by srujanika@gmail.com

ସହିତ ସ୍ଥାନୀୟ ଅନ୍ୟାନ୍ୟ ବାଳକଗଣ ଉଚ୍ଚ ପରୀକ୍ଷାରେ ପାରଦର୍ଶିତା ଲାଭ କରିବାଭଳି ଶିକ୍ଷାପ୍ରାପ୍ତ ହୋଇଛନ୍ତି, ଏହି ସମୟରେ ବାବୁ ଗଣେଶ୍ୱର ପଟ୍ଟନାୟକ ବି.ଏ. ମହଶୟ ବାମଣ୍ଡାର ପ୍ରଧାନ ଶିକ୍ଷକ ପଦବୀ ଗ୍ରହଣ କରି ବାମଣ୍ଡା ଆଗମନ କରନ୍ତି । ତାଙ୍କ ସମୟର ବିଦ୍ୟାଳୟ, ବାମଣ୍ଡା ଉଚ୍ଚଶ୍ରେଣୀର ବିଦ୍ୟାଳୟରେ ପରିଣତ ହୁଏ; କିନ୍ତୁ ସେ ମଧ୍ୟ ବେଶିଦିନ ସେହି ପଦରେ ପ୍ରତିଷ୍ଠିତ ହୋଇ ରହି ନଥିଲେ, ତାଙ୍କ ସ୍ଥାନରେ ଯୁବରାଜ ଓ ଅନ୍ୟାନ୍ୟ କୁମାରଗଣଙ୍କ ଏବଂ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ପଦରେ ଯେଉଁ ମହାତ୍ମା ନିଯୁକ୍ତ ହୋଇ ବାମଣ୍ଡାକୁ ଆସିଥିଲେ ଏବଂ ଆଜି ପର୍ଯ୍ୟନ୍ତ ବାମଣ୍ଡାର ପ୍ରଜାମଣ୍ଡଳୀ ଓ କୁମାରଗଣ ଯାହାଙ୍କ ନାମ ଉଚ୍ଚାରଣ ମାତ୍ରେ ଭକ୍ତି ଗଦ୍‌ଗଦ୍ ହୋଇ ଅଶ୍ରୁପାତ କରନ୍ତି, ତାଙ୍କର ନାମ ବାବୁ ରେବତୀ ମୋହନ ଦାଶଗୁପ୍ତ ଏମ୍.ଏ. । ଏହି ମହାଶୟ ରାଜକୁମାରଗଣଙ୍କୁ ଶିକ୍ଷ୍ୟ ଲାଭରେ ବିଶେଷ ମନଯୋଗୀ ହେଲେ ମଧ୍ୟ, ବାମଣ୍ଡାର ସାଧାରଣ ଜନତା ଏହାଙ୍କର ଶିକ୍ଷାଦାନର ଉତ୍ତମ ଫଳ ଲାଭ କରି ଚରିତାର୍ଥ ହୋଇଛନ୍ତି ଏବଂ ସେଥିପାଇଁ ସ୍ଥାନୀୟ ଜନସାଧାରଣ ଶ୍ରଦ୍ଧାଭରେ ତାଙ୍କର ନାମରେ ଭକ୍ତି ପୁଷ୍ପ ଅର୍ପଣ କରିଥାନ୍ତି । ପ୍ରକୃତ ଭାବରେ ସେ ହିଁ ବର୍ତ୍ତମାନର ରାଜକୁମାର ବିଦ୍ୟାଳୟ ଗଠନ ଓ ଏହାର ଶ୍ରୀବୃଦ୍ଧି ସାଧନ କରି ଆସିଅଛନ୍ତି ।

ରେବତୀବାବୁଙ୍କ ସହିତ ବିଦ୍ୟାଳୟର ଛାତ୍ରଗଣଙ୍କର ଏକ ଗୁରୁ ଶିଷ୍ୟର ସମ୍ବନ୍ଧ ସ୍ଥାପିତ ହୋଇଥିଲା । ତାଙ୍କ ସମୟରେ ହିଁ ବାମଣ୍ଡା ବିଦ୍ୟାଳୟରୁ ସର୍ବପ୍ରଥମ ପ୍ରବେଶିକା ପରୀକ୍ଷାରେ ଛାତ୍ର ପ୍ରେରିତ ହୋଇଥିଲା ଏବଂ ତାଙ୍କ ସମୟରେ ହିଁ କ୍ରମେ କ୍ରମେ ଉତ୍ତୀର୍ଣ୍ଣ ଛାତ୍ରଙ୍କ ସଂଖ୍ୟା ବୃଦ୍ଧିର ସୂତ୍ରପାତ ହୋଇଥିଲା । ସେ ଯୁବରାଜ ଓ ଅନ୍ୟାନ୍ୟ କୁମାରଗଣଙ୍କର ସୁଶିକ୍ଷା ପରିପୁଷ୍ଟି ସାଧନରେ ପ୍ରାଣପଣେ ସହାୟତା କରିଥିଲେ । ସେ ଛାତ୍ର ସମିତି ଗଠନ କରାଇ ସେଠାରେ ବିବିଧ ବିଷୟରେ ପ୍ରବନ୍ଧ ରଚନା ଓ ବକ୍ତୃତା ଦେବାର ପଦ୍ଧତି ଶିକ୍ଷା ଦେଉଥିଲେ । ବର୍ତ୍ତମାନ ଯେ, ସମଗ୍ର ଓଡ଼ିଶାରେ, କଟକ ବ୍ୟତୀତ ବାମଣ୍ଡାରେ ହିଁ ଅଧିକ ପରିମାଣରେ ସାହିତ୍ୟ ଚର୍ଚ୍ଚା, କବିତା ରଚନା ଓ ସାଧାରଣ ଶିକ୍ଷିତ ଓଡ଼ିଆଙ୍କର ସଂଖ୍ୟା ଅଧିକ, ତାରି ମୂଳରେ ସାର୍ ବାସୁଦେବ ସୁଢ଼ଳଦେବଙ୍କ ଉତ୍ସାହ ଓ ଉଦ୍ୟମ ଏବଂ ରେବତୀ ବାବୁଙ୍କର ଯତ୍ନ ଓ ଚେଷ୍ଟାର ଶୁଭଫଳ ହିଁ କାର୍ଯ୍ୟ କରିଅଛି, ଏ କଥା ସ୍ଥାନୀୟ ସମସ୍ତେ ସ୍ୱୀକାର କରିଥାନ୍ତି । ସେହି ସଭାରେ (ଛାତ୍ର ସମିତିର ସଭାରେ) ସକଳ ଧର୍ମର ଉଚ୍ଚଉପଦେଶମାନ ଆଲୋଚନା ଫଳରେ ଛାତ୍ରଗଣଙ୍କ ହୃଦୟରେ ଉନ୍ନତ ଓ ଉଦାର ଧର୍ମ ଭାବର ସଂଚାର କରିବାପାଇଁ ଯତ୍ନବାନ ହୋଇଥିଲେ । ତାଙ୍କର ସେହି ଚେଷ୍ଟା ଯେ ଏକାବେଳକେ ବ୍ୟର୍ଥ ହୋଇନାହିଁ ବାମଣ୍ଡାର ବର୍ତ୍ତମାନ ସାମନ୍ତରାଜ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦଙ୍କର ବ୍ୟବହାର ଓ ଆଚରଣ ଲକ୍ଷ୍ୟ କଲେ, ତାହା ବେଶ୍ ବୁଝି ହୁଏ । ଏଭଳି ଛାତ୍ରଙ୍କ ସଂଖ୍ୟା



Digitized by srujanika@gmail.com

ବାମଣ୍ଡାର ପରିଣତ ବୟସ୍କ ବ୍ୟକ୍ତି-ବର୍ଗଙ୍କ ଭିତରେ ଆଜି ନିତ୍ୟାନ୍ତ ବିରଳ ନୁହେଁ । ପରବର୍ତ୍ତୀ କାଳରେ ରେବତୀବାବୁ ସରକାରୀ ଚାକିରି ପାଇ ଆସାମ ଗମନ କରନ୍ତି । ବର୍ତ୍ତମାନ କଲିକତାଠାରେ ବେଙ୍ଗଲ ଅଫିସ୍‌ରେ କର୍ମ କରୁଅଛନ୍ତି । ସେ ଯେତେବେଳେ ବାମଣ୍ଡା ତ୍ୟାଗ କରି ଆସାମ ଯାଇଥିଲେ, ସେତେବେଳେ ବାମଣ୍ଡା ବିଦ୍ୟାଳୟର କୁମାରଗଣ ଓ ଅନ୍ୟାନ୍ୟ ଛାତ୍ରମଣ୍ଡଳୀ, ତାଙ୍କର ସଂଗଚ୍ୟୁତ ହେବା ଫଳରେ ନିଦାରୁଣ କ୍ଳେଶ ଅନୁଭବ କରି ହୃଦୟର ବେଦନାଭରେ ଅଜସ୍ର ଅଶ୍ରୁପାତ କରି କରି ତାଙ୍କୁ ବିଦାୟ ଦେଇଥିଲେ । ବିଦ୍ୟାଳୟର ଛାତ୍ରଗଣ ନୟନର ଜଳରେ ସିକ୍ତ ହୋଇ ହୃଦୟର ଭାଷାରେ ଅଭିନନ୍ଦନ ରଚନା ମୁଦ୍ରିତ କରାଇ ତାଙ୍କୁ ଅର୍ପଣ କରିଥିଲେ । ସେହି ବିଦାୟ ସଭାରେ ବାମଣ୍ଡାର ସେହି ସମୟର ସମସ୍ତ ପ୍ରଧାନଗଣ ଉପସ୍ଥିତ ଥିଲେ ।

ବାମଣ୍ଡାର ଇଂରାଜୀ ବିଦ୍ୟାଳୟ ଆଧୁନିକ ପଦ୍ଧତି ଅନୁଯାୟୀ ସୁଶିକ୍ଷାଲାଭର ଏକ ପ୍ରଧାନ କେନ୍ଦ୍ରରେ ପରିଣତ ହେବା ଫଳରେ, ରାଜ୍ୟ ମଧ୍ୟରେ ଓ ରାଜଧାନୀରେ ଅନେକ ଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ପାଠଶାଳା ଓ ନିମ୍ନ ଏବଂ ଉଚ୍ଚ ପ୍ରାଇମେରୀ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇ କ୍ରମେ ଉନ୍ନତି ଲାଭ କରୁଅଛି । ଏହି ପ୍ରାଥମିକ ଶିକ୍ଷାକେନ୍ଦ୍ର ସବୁ ରାଜ୍ୟ ବ୍ୟୟରେ ପରିଚାଳିତ ହୋଇଥାଏ । ପ୍ରାଥମିକ ଶିକ୍ଷା ପାଇଁ ପ୍ରଜାମାନଙ୍କୁ ସେଭଳି କିଛି ବ୍ୟୟ କରିବାକୁ ପଡ଼େ ନାହିଁ । ବରଂ ନିର୍ଦ୍ଦିଷ୍ଟ ବୟସ ପୂର୍ଣ୍ଣ ହେବାମାତ୍ରେ, ବାଳକମାନଙ୍କୁ ବିଦ୍ୟାଳୟ ନ ପଠାଇଲେ, ଅଭିଭାବକଙ୍କୁ ଦଣ୍ଡ ଭୋଗ କରିବାକୁ ପଡ଼େ । ରାଜା ବାସୁଦେବ ଏକପକ୍ଷରେ ବିନାବ୍ୟୟରେ ପ୍ରଜାମାନଙ୍କ ପ୍ରାଥମିକ ଶିକ୍ଷାଲାଭର ବ୍ୟବସ୍ଥା କରି, ଅପର ପକ୍ଷରେ ବାଧ୍ୟତାମୂଳକ ଶିକ୍ଷା ପଦ୍ଧତି ପ୍ରଚାର ଦ୍ୱାରା ବାମଣ୍ଡା ରାଜ୍ୟର ଜନସାଧାରଣଙ୍କର ଅଶେଷ କଲ୍ୟାଣର ସହଜ ପଥ ପ୍ରତିଷ୍ଠା କରି ଯାଇଛନ୍ତି । ଏଥିପାଇଁ ରାଜ୍ୟର ନିତ୍ୟ ନୂତନ ଉନ୍ନତି ସଂଗେ ସଂଗେ ତାଙ୍କର ଏହି ମହିୟସୀ କୀର୍ତ୍ତି ଅକ୍ଷୁଣ୍ଣ ରହି ତାଙ୍କୁ ଅମର କରି ରଖିବ । ରାଜା ସାର୍ ବାସୁଦେବ ଯେ କେବଳ ରାଜ୍ୟବ୍ୟୟରେ ଏହି ସମସ୍ତ ବିଦ୍ୟାଳୟ ରକ୍ଷାକରି ଯେ କେବଳ ରାଜ କର୍ତ୍ତବ୍ୟ ସଂପନ୍ନ କରନ୍ତି, ତାହା ନୁହେଁ, ଅନେକ ସମୟରେ ସେ ନିଜେ ଉପସ୍ଥିତ ରହି ବିଦ୍ୟାଳୟ ଗୁଡ଼ିକର ବାର୍ଷିକ ପାରିତୋଷିକ ବିତରଣ ସଭାର ମର୍ଯ୍ୟାଦା ବୃଦ୍ଧି କରନ୍ତି ଏବଂ ଶିକ୍ଷକ ଓ ଛାତ୍ରଗଣଙ୍କୁ ନାନାବିଧ ଉପଦେଶ ଦ୍ୱାରା ନୂତନ ବର୍ଷରେ ନୂତନ ଉନ୍ନତି ଲାଭ ପାଇଁ ପ୍ରୋତ୍ସାହିତ କରନ୍ତି ।

ସାର୍ ବାସୁଦେବଙ୍କ ବିଦ୍ୟାନୁରାଗ ଏତେ ପ୍ରବଳ ଥିଲା ଯେ, ସେ କେବଳ ସ୍ୱରାଜ୍ୟର ବିଦ୍ୟା ଗୌରବ ବର୍ଦ୍ଧିତ କରାଇ ନିଶ୍ଚିନ୍ତ ରହି ନାହାନ୍ତି । ବିଦେଶରେ ବିଦ୍ୟାଳୟ ପ୍ରତିଷ୍ଠା, ଗୃହ ନିର୍ମାଣ ଓ ପାରିତୋଷିକ ବିତରଣ ପାଇଁ ଅର୍ଥ ସାହାଯ୍ୟ କରୁଥିଲେ । ନିମନ୍ତ୍ରିତ ହେଲେ,



Digitized by srujanika@gmail.com

ସ୍ୱରାଜ୍ୟ ବାହାରେ ମଧ୍ୟ ବିଦ୍ୟାଳୟ ପରିଦର୍ଶନ, ପାରିତୋଷିକ ବିତରଣ ସଭାରେ ସଭାପତି ପଦ ଗ୍ରହଣ ଓ ସଂଗେ ସଂଗେ ପ୍ରଚୁର ସାହାଯ୍ୟ ଦାନ ତାଙ୍କର ପ୍ରିୟ କାର୍ଯ୍ୟରେ ପରିଣତ ହୋଇଥିଲା । ଏହିପରି ଭାବରେ ସେ ସମଗ୍ର ଓଡ଼ିଶାରେ ତତ୍କାଳିନ ଛାତ୍ରମହଲରେ ପରମ ସହୃଦରୂପେ ପରିଗୃହୀତ ହୋଇଥିଲେ । ବିଳାସ ବିମୁଗ୍ଧତା ଓ ବ୍ୟସନ-ବନ୍ଧନ ଦେଶରେ ଯେଉଁ ରାଜପଦର ନାଗଫାଶ, ଚାଟୁବାକ୍ୟଚଟୁଳ ପରିଷଦବର୍ଗଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଜୀବନଯାପନ ଯେଉଁ ପ୍ରକାର ପରମ ସୁଖ, ସେହି ରାଜପଦରେ ପ୍ରତିଷ୍ଠିତ ଥାଇ ସାର୍ ବାସୁଦେବଙ୍କର ଅକୁଣ୍ଠିତ ଚିତ୍ତେ ଓ ଅକ୍ଲାନ୍ତ ଦେହରେ ପରିଶ୍ରମ ସହକାରେ ମାନବ ସାଧାରଣଙ୍କର ଜ୍ଞାନବୃଦ୍ଧିର ପଥ ସହଜ କରିବା ପାଇଁ ପ୍ରାଣପ୍ରଣେ ଚେଷ୍ଟାକରି ଯାଇଛନ୍ତି । ଏହା ମଧ୍ୟ ସାମାନ୍ୟ ପ୍ରଶଂସାର କଥା ନୁହେଁ । ତାଙ୍କର ସ୍ୱଦେଶର ରାଜନ୍ୟବର୍ଗ ଓ ଅନ୍ୟ ପଦସ୍ଥ ଧନୀଗଣ ତାଙ୍କ ଆଦର୍ଶର ଅନୁକରଣ କଲେ, ଦେଶର ଶୁଭଦିନ ସମୁପସ୍ଥିତ ହେବାରେ ବହୁ ବିଳମ୍ବ ହେବ ନାହିଁ ।

ରାଜା ବାସୁଦେବ ଯୁବରାଜଙ୍କୁ ଏବଂ ଅନ୍ୟାନ୍ୟ କୁମାରଗଣଙ୍କୁ ବହୁ ଅର୍ଥ ବ୍ୟୟ କରି କେବଳ ଇଂରାଜୀ ବିଦ୍ୟାରେ ଯେ ପାରଦର୍ଶୀ କରାଇଥିଲେ, ତାହା ନୁହେଁ, ସେ ଉପଯୁକ୍ତ ପଣ୍ଡିତ ନିଯୁକ୍ତ କରାଇ ଟିକାଯେତ ଏବଂ ଅନ୍ୟ କୁମାରୀଗଣଙ୍କର ସଂସ୍କୃତ ଶିକ୍ଷାର ମଧ୍ୟ ସୁବ୍ୟବସ୍ଥା କରାଇଥିଲେ । ସର୍ବପ୍ରଥମ ପଣ୍ଡିତ ବଳରାମ ବିଦ୍ୟାରତ୍ନ ଯୁବରାଜଙ୍କୁ 'ସିଦ୍ଧାନ୍ତ ଚନ୍ଦ୍ରିକା' ପଢ଼ାଇଥିଲେ, ପରେ ପଣ୍ଡିତ ବିଶ୍ୱନାଥ ମହାପାତ୍ର ଶର୍ମା 'ମୁଗ୍ଧବୋଧ ବ୍ୟାକରଣ' ଶିକ୍ଷାଦିଅନ୍ତି, ତତ୍ପରେ ପଣ୍ଡିତ କାଳୀଚରଣ ବିଦ୍ୟାଭୂଷଣ 'ଜୁମର ବ୍ୟାକରଣ' ପଢ଼ାଇଥିଲେ । ଏହାପରେ ପଣ୍ଡିତ ଚିନ୍ତାମଣି ମିଶ୍ର ତର୍କ ବାଚସ୍ପତି ରଘୁବଂଶ, କୁମାର ସଂଭବ କାବ୍ୟ ଓ ପ୍ରକାଶ ଚନ୍ଦ୍ରୋଦୟର ପଠନ କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି । ପରେ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି ଅଭିଜ୍ଞାନ ଶାକୁନ୍ତଳମ୍, ସାହିତ୍ୟ ଦର୍ପଣ, ଅଳଙ୍କାର ଚନ୍ଦ୍ରିକା, ମୁରାରି ଚନ୍ଦ୍ରାଲୋକ ଏବଂ ବେଦାନ୍ତ ପରିଭାଷା ପ୍ରଭୃତି ଉଚ୍ଚ ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ଗ୍ରନ୍ଥରେ ପ୍ରବେଶ ଲାଭ କରାଇଥିଲେ । ଅନ୍ୟାନ୍ୟ କୁମାରଗଣ ଏହି ବିଦ୍ୟା ଅର୍ଜ୍ଜନରେ ତାଦୃଶ ପାରଦର୍ଶିତା ଲାଭ କରିପାରି ନଥିଲେ ମଧ୍ୟ ଯୁବରାଜ ସଚ୍ଚିଦାନନ୍ଦ ପ୍ରଭୂତ ଶ୍ରମ ସ୍ୱୀକାର କରି ଏହି ସକଳ ପାଠ ଆୟତ୍ତ କରିପାରିଥିଲେ ଏବଂ ସେହି ଅଧୀତ ବିଦ୍ୟାର ଉତ୍ତମ ପାରଦର୍ଶିତା ପ୍ରଦର୍ଶନ ମଧ୍ୟ କରିପାରିଥିଲେ ବର୍ତ୍ତମାନ ତାଙ୍କ ସହ କଥୋପକଥନ କରି ବସିଲେ, ପ୍ରୟୋଜନ ବଶତଃ ସେହି ସମସ୍ତ ବିଷୟରେ ଆଲୋଚନା ଉପସ୍ଥିତ ହେଲେ, ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ପିତାଙ୍କ ପରି ଅଧୀତ ବିଦ୍ୟାର ଗୌରବ ବର୍ଦ୍ଧନରେ ସମ୍ୟକ୍ ପାରଦର୍ଶିତା ପ୍ରଦର୍ଶନରେ ସକ୍ଷମ । ଏହା ସାର୍ ବାସୁଦେବଙ୍କର ଜ୍ୟେଷ୍ଠ ପୁତ୍ରଙ୍କ



Digitized by srujanika@gmail.com

ପକ୍ଷରେ ବିଶିଷ୍ଟ ପ୍ରଶଂସାର ବିଷୟ ସନ୍ଦେହ ନାହିଁ। ଆମ୍ଭମାନଙ୍କର ହତଭାଗ୍ୟ ଦେଶରେ ସେକାଳ ପରି, ଆଜି ଆଉ ବହୁ ପୁରୁଷ ଧରି ବିଦ୍ୟାଚର୍ଚ୍ଚା ଓ ବିଦ୍ୟା ବିଷୟରେ ସାଗର ସଦୃଶ ଗଭୀର ବୋଲି ପରିଚୟ ଦେବା ସ୍ଥଳ କ୍ରମଶଃ ଲୋପ ପାଇଯାଉଅଛି । ଆଜି କାଲିକାର ଏହି 'ଅଳ୍ପ ବିଦ୍ୟା ଭୟଙ୍କର' ବ୍ୟକ୍ତିବର୍ଗଙ୍କର ପଲ୍ଲବ ଗ୍ରାହିତାର ଦିନରେ, ରାଜସିଂହାସନରେ ଉପବିଷ୍ଟ ସୁପଣ୍ଡିତ ସାର୍ ବାସୁଦେବଙ୍କ ବଂଶଧର ବାମଣ୍ଡାର ବର୍ତ୍ତମାନ ରାଜା ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ବାହାଦୁର ଉଚ୍ଚାଂଗ ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ଜ୍ଞାନ ବିଷୟରେ ପାରଦର୍ଶୀ, ଏହା ବାମଣ୍ଡାର ରାଜବଂଶ ପକ୍ଷରେ ମଧ୍ୟ ସାମାନ୍ୟ ଗୌରବର କଥାନୁହେଁ । ରାଜା ସଚ୍ଚିଦାନନ୍ଦଙ୍କର ମଧ୍ୟମ ଭ୍ରାତା, ରାଜ ପରିବାରର ବଡ଼କୁମାର ଶ୍ରୀଯୁକ୍ତ ବଳଭଦ୍ର ଦେବ ମଧ୍ୟ ବିଦ୍ୟା ଓ ଜ୍ଞାନାର୍ଜ୍ଜନ ବିଷୟରେ ଅନ୍ୟାନ୍ୟ କୁମାର ଗଣଙ୍କର ଅପେକ୍ଷା ଅଧିକତର ଉନ୍ନତି ଲାଭ କରିଅଛନ୍ତି । ଇଂରାଜୀରେ ସାଧାରଣ ଭାବରେ ଲେଖି-ପଢ଼ିବାର ସକ୍ଷମ, ମାତୃଭାଷାରେ ଉତ୍ତମ ଗଦ୍ୟ-ପଦ୍ୟ ରଚନାରେ ନିପୁଣତା ଲାଭ କରି ଅଛନ୍ତି ଏବଂ ସଂସ୍କୃତ ଭାଷାରେ ମଧ୍ୟ ଉତ୍ତମରୂପେ ବ୍ୟୁତ୍ପନ୍ନ । ଲାଲ ପଦ୍ମଲୋଚନ ଦେବ ଓ ଲାଲ୍ ମୋହନ ଦେବଙ୍କ ବ୍ୟତୀତ ଅପର କୁମାରଗଣ ସମସ୍ତେ ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ଭାଷାରେ ସାଧାରଣ ଭାବରେ ଲେଖି ପଢ଼ିବାରେ ଏକପ୍ରକାର କାମ ଚଳେଇବାରେ ସଂପୂର୍ଣ୍ଣ ସକ୍ଷମ । କନିଷ୍ଠ କୁମାର ଲାଲ୍‌ମୋହନ ବର୍ତ୍ତମାନ ସୁଦ୍ଧା ବାଳକ ଏବଂ ଛାତ୍ରଜୀବନ ଯାପନ କରୁଅଛନ୍ତି ।

ପ୍ରତ୍ୟେକ ରାଜକୁମାରଙ୍କର ସ୍ୱତନ୍ତ୍ର ପାଠାଗାର ଓ ନିଜ ନିଜର ପାଠପାଇଁ ପ୍ରଚୁର ପରିମାଣରେ ପୁସ୍ତକ ସଂଗୃହୀତ ହୋଇ ସ୍ୱତନ୍ତ୍ର ସ୍ୱତନ୍ତ୍ର ପୁସ୍ତକାଗାର ରହିଅଛି । କୌଣସି ପୁସ୍ତକ ଜଣକୁ ଅନ୍ୟଙ୍କୁ ମାଗିବାକୁ ପଡ଼େ ନାହିଁ। ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜକୀୟ ପୁସ୍ତକାଗାର ବର୍ତ୍ତମାନ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବ ବ୍ୟବହାର କରୁଅଛନ୍ତି। ଏତଦ୍‌ଭିନ୍ନ ସାଧାରଣଙ୍କର ପ୍ରୟୋଜନ ସାଧନ ହେତୁ ସ୍ୱତନ୍ତ୍ର ପୁସ୍ତକାଗାର ବିଦ୍ୟାମାନ ଥାଇ ସାଧାରଣଙ୍କର ଜ୍ଞାନପିପାସା ନିବାରଣରେ ସାହାଯ୍ୟ କରୁଅଛି ।

ଟିକାୟେତ ସଚ୍ଚିଦାନନ୍ଦଙ୍କର ରାଜକାର୍ଯ୍ୟ ଶିକ୍ଷା ବିଷୟରେ ସାହାଯ୍ୟ କରିବା ପାଇଁ ଶ୍ରୀଯୁକ୍ତ ନାରାୟଣ ଚନ୍ଦ୍ର ଦାସ (ବର୍ତ୍ତମାନ କୁଚିଣ୍ଡା ମହକୁମାର ମାଜିଷ୍ଟ୍ରେଟ୍) ନିଯୁକ୍ତ ହୋଇଥିଲେ। ରାଜନୀତି ବିଷୟରେ ଶିକ୍ଷାଦାନ, ଗଭର୍ଣ୍ଣମେଣ୍ଟଙ୍କ ସହିତ ପତ୍ରାଳାପ ଓ ବିବିଧ ଗୁରୁତର ଆଲୋଚନାରେ କିଭଳି ପଦ୍ଧତି ଅବଲମ୍ବନ କରି କାର୍ଯ୍ୟ ପରିଚାଳନାର ଆବଶ୍ୟକ ଏହି ସବୁ ବିଷୟରେ ଜ୍ଞାନ ଲାଭରେ ସେ ସହାୟତା କରିଥିଲେ । ସାର୍ ବାସୁଦେବ କ୍ରମେ ରାଜ୍ୟର ସାଧାରଣ କାର୍ଯ୍ୟଭାର ଟିକାୟତଙ୍କ ଉପରେ ଅର୍ପଣ କରି,



Digitized by srujanika@gmail.com

କେବଳ ଅପିଲ୍ ଅଦାଲତର କାର୍ଯ୍ୟଭାର ନିଜ ପାଖରେ ରଖିଥିଲେ । ଏହିପରି ଭାବରେ ନିଜ ଜୀବଦ୍ଦଶାରେ ହିଁ ଯୁବରାଜଙ୍କୁ ରାଜ୍ୟର ସକଳ ବିଭାଗ କାର୍ଯ୍ୟ ପରିଚାଳନା ପଦ୍ଧତିର ଶିକ୍ଷାଦାନରେ ଅଗ୍ରସର ହୋଇଥିଲେ । ତାହାଙ୍କର ସେହି ଦୂରଦର୍ଶନର ଉତ୍ତମ ଫଳ ଫଳିଅଛି । ପିତୃବିୟୋଗ ପରେ ରାଜା ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କୁ ରାଜକାର୍ଯ୍ୟ ପରିଚାଳନାରେ ଦିନକ ପାଇଁ ମଧ୍ୟ ବିବ୍ରତ ହେବାକୁ ପଡ଼ିନାହିଁ । କାରଣ ପୂର୍ବରୁ ହିଁ ତାଙ୍କର ସମସ୍ତ ବିଷୟରେ ଉତ୍ତମ ଅଭିଜ୍ଞତା ଜନ୍ମିଥିଲା ।

ଟିକାୟତ ଓ ଅନ୍ୟାନ୍ୟ ରାଜକୁମାରଗଣଙ୍କର ସଂଗୀତାଦି କଳାବିଦ୍ୟା ଶିକ୍ଷାପାଇଁ ସ୍ୱତନ୍ତ୍ର ଶିକ୍ଷକ ନିଯୁକ୍ତ ହୋଇଥିଲେ । ସବୁ ରାଜକୁମାରଗଣ ଏହି ସକଳ ଶିକ୍ଷାରେ ଅଳ୍ପାଧିକ ପାରଦର୍ଶିତା ପ୍ରଦର୍ଶନରେ ସକ୍ଷମ ହେଲେ ମଧ୍ୟ ସଂଗୀତ ଓ ବିଶେଷ ଭାବରେ ଚିତ୍ର ବିଦ୍ୟାରେ ଜ୍ୟେଷ୍ଠ ରାଜକୁମାର ସଚ୍ଚିଦାନନ୍ଦ ସମ୍ୟକ୍ ଯୋଗ୍ୟତା ପ୍ରଦର୍ଶନ କରିଅଛନ୍ତି । ତାଙ୍କ ଦ୍ୱାରା ଅଙ୍କିତ ବହୁଚିତ୍ର ଏବଂ ଚିତ୍ରଗୁଡ଼ିକର ସୂଚନାର ନମୂନା ଆମ୍ଭେ ସ୍ୱଚକ୍ଷୁରେ ଦର୍ଶନ କରିଅଛୁଁ । କିଛିଦିନ ପୂର୍ବେ ବାମଣ୍ଡା ରାଜା ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଅଙ୍କିତ ଏକ ଚିତ୍ରର ପ୍ରତିଲିପି ବଙ୍ଗର ଅନ୍ୟତମ ମାସିକ ପତ୍ରିକା 'ଭାରତବର୍ଷ' ରେ ପ୍ରକାଶିତ ହୋଇଅଛି । ସ୍ୱଭାବର ଶୋଭା ଅଙ୍କନରେ ବର୍ତ୍ତମାନ ରାଜାବାହାଦୁର ସିଦ୍ଧହସ୍ତ ।

ରାଜକୁମାରଗଣଙ୍କୁ ଯୁଦ୍ଧ ବିଗ୍ରହରେ ଅଗ୍ରସର ହେବା ଉପଯୋଗୀ କ୍ଷାତ୍ର ବିଦ୍ୟାରେ ଉପଯୁକ୍ତ ରୂପେ ଶିକ୍ଷା ଦେବାପାଇଁ ରାଜା ସାର୍ ବାସୁଦେବ ସୁଢ଼ଳଦେବ ତ୍ରୁଟି କରି ନାହାନ୍ତି । ତେଣୁ ସେ ଭିନ୍ନ ଭିନ୍ନ ବିଷୟରେ ଶିକ୍ଷା ଦେବାପାଇଁ ସ୍ୱଦେଶୀୟ ଓ ବିଦେଶୀୟ ଶିକ୍ଷକ ନିଯୁକ୍ତ କରିଥିଲେ । ରାଜା ବାହାଦୁର ନିଜେ ଉତ୍ତମ ଧନୁର୍ଦ୍ଧର ଥିଲେ । ତରବାରୀ ଚାଳନାରେ ଓ ଆଗ୍ନେୟାସ୍ତ୍ର ବ୍ୟବହାରରେ ସାର୍ ବାସୁଦେବ ସୁଢ଼ଳଦେବଙ୍କ ବିଶିଷ୍ଟ ରୂପେ କ୍ଷମତା ଥିଲା । କ୍ଷତ୍ରିୟୋଚିତ୍ ସତ୍ ସାହସ ପ୍ରଦର୍ଶନରେ ସର୍ବଦାହିଁ ଅଗ୍ରସର ଥିଲେ । ଏକଦା ଏକାଦଶୀ ଉପବାସରେ ଅପରାହ୍ନ କାଳରେ ବ୍ୟାଘ୍ର ଗାଭୀ ଧରିଛି ଶୁଣି, ତତ୍କ୍ଷଣାତ୍ ସଶସ୍ତ୍ରରେ ସେଠାରେ ଉପସ୍ଥିତ ହୋଇ ବ୍ୟାଘ୍ର ମାରି, ଗ୍ରାମ୍ୟ ଜନଗଣଙ୍କର ଦୁର୍ଭାବନା ନିବାରଣ କରି ଅକ୍ଷତଦେହରେ ରାଜାବାଟିକୁ ପ୍ରତ୍ୟାବୃତ୍ତ ହୁଅନ୍ତି । କୁମାରଗଣଙ୍କୁ ଲକ୍ଷ୍ୟଭେଦ ଶିକ୍ଷା ଦେବାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଥିଲା । କୁମାରଗଣ ଗଜାରୋହଣ, ଅଶ୍ୱାରୋହଣ, ତରବାରୀ ଚାଳନା, ଅନ୍ୟ ନାନାବିଧ ଅସ୍ତ୍ରଧାରଣ ନିୟମ ପଦ୍ଧତି ବିଷୟରେ ଉତ୍ତମ ଶିକ୍ଷାଲାଭ କରିଥିଲେ । ଏହି ବିଷୟରେ ସାର୍ ବାସୁଦେବ ବିନ୍ଦୁମାତ୍ର ତ୍ରୁଟି କରି ନାହାନ୍ତି । ଏହି ସମସ୍ତ ବିଷୟ ଶିକ୍ଷା ଦେବାପାଇଁ ଯେପରି ସ୍ୱତନ୍ତ୍ର ଶିକ୍ଷକ ଥିଲେ, ସେହିପରି ରାଜବାଟିର ପଶ୍ଚିମ ଦିଗରେ ଏକ ସୁବିସ୍ତୃତ କ୍ଷେତ୍ରରେ ମଲ୍ଲବିଦ୍ୟା, ଯୁଦ୍ଧବିଦ୍ୟା, ଲକ୍ଷ୍ୟଭେଦ ଇତ୍ୟାଦି ବିଷୟରେ ଶିକ୍ଷା



Digitized by srujanika@gmail.com

ଦେବାପାଇଁ ଆଖଡ଼ା ନିର୍ମିତ ହୋଇଥିଲା । ଶିକ୍ଷକ ଓ ଛାତ୍ରଗଣ, ଓସ୍ତାଦ୍ ରୂପରେ ସେହି ଶିକ୍ଷାକ୍ଷେତ୍ରରେ ମିଳିତ ହେଉଥିଲେ ଏବଂ ଦିନପରେ ଦିନ କୁମାରଗଣ ଉନ୍ନତି ଲାଭ କରି ରାଜାଙ୍କର ଆନନ୍ଦ ବର୍ଦ୍ଧନ କରୁଥିଲେ । ରାଜାଦେଶେ ଏହି ସକଳ ଶିକ୍ଷା ବିଷୟରେ ପରୀକ୍ଷା ଗୃହୀତ ଓ ରାଜାବାହାଦୁରଙ୍କ କର୍ତ୍ତୃକ ପାରିତୋଷିକ ବିତରିତ ହେଉଥିଲା । ରାଜା ସାର୍ ବାସୁଦେବ ନିଜେ କ୍ଷାତ୍ର ବିଦ୍ୟାରେ ପାରଦର୍ଶୀ ବିଜ୍ଞ ବ୍ୟକ୍ତି ଥିଲେ । କୁମାରଗଣଙ୍କୁ ମଧ୍ୟ ତଦନୁରୂପ ଉପଯୁକ୍ତ କରି ତୋଳିବା ପାଇଁ ପ୍ରାଣପଣେ ଯତ୍ନ କରିଯାଇଛନ୍ତି । କୁମାର ସଚ୍ଚିଦାନନ୍ଦ, କେଶବଚନ୍ଦ୍ର ଜଳନ୍ଧର ଲକ୍ଷ୍ୟ ଭେଦରେ ସିଦ୍ଧହସ୍ତ ଓ ପାରିତୋଷିକ ପ୍ରାପ୍ତ । ଜ୍ୟେଷ୍ଠ ରାଜକୁମାର, ଅଳ୍ପ ହେଲେ ମଧ୍ୟ, ଶତାଧିକ ବ୍ୟାଘ୍ର ଶିକାର କରିଛନ୍ତି । ରାଜଧାନୀ ଠାରୁ କୋଡ଼ିଏ ମାଇଲ୍ ମଧ୍ୟରେ ଅରଣ୍ୟରେ ରାଜ ପରିବାର ଭିନ୍ନ ଅନ୍ୟ କାହାରି ଶିକାର କରିବାର ଅନୁମତି ନାହିଁ ।

ସାର୍ ବାସୁଦେବ ବାଳକମାନଙ୍କ ସୁଶିକ୍ଷା ଲାଭର ସୁବ୍ୟବସ୍ଥା କରି କ୍ଷାନ୍ତ ହୋଇନଥିଲେ । ଦେବଗଡ଼ର ରାଜବାଟିରେ ବାଳିକାମାନଙ୍କ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ ଅଛି ଏବଂ ରାଜ୍ୟର ଅନ୍ୟାନ୍ୟ ସ୍ଥାନରେ ନିମ୍ନ ଓ ଉଚ୍ଚ ପ୍ରାଇମେରୀ ବିଦ୍ୟାଳୟରେ ବାଳକବାଳିକାମାନେ ଏକତ୍ର ଶିକ୍ଷା ଲାଭ କରିଥାନ୍ତି । ସାର୍ ବାସୁଦେବ ପ୍ରାଚୀନ ପଦ୍ଧତି ଅନୁଯାୟୀ ଉଚ୍ଚ ଶିକ୍ଷାରେ ଶିକ୍ଷିତ ହେଲେ ମଧ୍ୟ, ଦେଶ, କାଳ ଓ ପାତ୍ର ବିଚାର କରି ପୁରାତନର ରକ୍ଷା ସଂଗେ ସଂଗେ ନୂତନ ପରିବର୍ତ୍ତନର ପ୍ରବାହକୁ ସମାଦରେ ଗ୍ରହଣ କରିବାର ଶକ୍ତି ଧାରଣ କରିଥିଲେ । ଆଧୁନିକ କାଳର ସମାଜସଂସ୍କାରକଗଣଙ୍କ ପରି ବକ୍ତୃତା ମଞ୍ଚରେ ଶ୍ରୋତାଗଣଙ୍କର ପ୍ରାଣ ମତାଇ ଗାର୍ଗୀ, ମୈତ୍ରେୟୀ ଲୀଳାବତୀ, ଖନା ପ୍ରଭୃତି ପ୍ରାଚୀନତମ କାଳର ପ୍ରାତଃସ୍ମରଣୀୟା ବିଦୁଷୀମହିଳାମାନଙ୍କ ବିଦ୍ୟାର୍ଜ୍ଜନ ବିଷୟରେ ମାମୁଲି ମୌଖିକ ଗୌରବ ଅନୁଭୂତିର ବୀଣା ବାଦନ କରି ନିଶ୍ଚିତ ହେବାର ପାତ୍ର ନଥିଲେ, ଅଥବା ଅନ୍ୟାନ୍ୟ ରାଜାମାନଙ୍କ ପରି ତାଙ୍କର ସ୍ୱରାଜ୍ୟରେ ସଂସ୍କାର ସବୁକୁ ସ୍ଥାନ ଦେବାର ସୁଯୋଗ ସୁବିଧା ଗୁଡ଼ିକୁ ଉପେକ୍ଷାର ବିଷୟ ବୋଲି କେବେହେଲେ ମନେ କରିନାହାନ୍ତି । ତେଣୁ ପ୍ରଜାସାଧାରଣଙ୍କ ମଧ୍ୟରେ ବି ନାରୀ ଜାତିର ବୁଦ୍ଧି ବୃତ୍ତିର ପରିସ୍ଫୁଟନ ଓ ଜ୍ଞାନ ଲାଭର ସୁବ୍ୟବସ୍ଥା କରି ଯାଇଛନ୍ତି । ସ୍ତ୍ରୀ ଶିକ୍ଷା ବିଷୟରେ ତାଙ୍କର ଯତ୍ନ ଚେଷ୍ଟା ଏବଂ ତତ୍ପରେ ତାଙ୍କର ବହୁଗୁଣ ସଂପନ୍ନ ପୁତ୍ର ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କର ଉଚ୍ଚ ଉଦାର ରାଜ୍ୟ ଶାସନ ନୀତି ଫଳରେ, ଏତେଟା ସୁଫଳ ପ୍ରସବ କରିଅଛି ଯେ, ବାମଣ୍ଡାର ବର୍ତ୍ତମାନ ସ୍ତ୍ରୀ ମଣ୍ଡଳରେ ମୋଟାମୋଟି ଲେଖିପଢ଼ି ଜାଣିଥିବା ନାରୀଙ୍କର ସଂଖ୍ୟା ନିତ୍ୟାନ୍ତ ଅଳ୍ପ ନୁହେଁ ଏବଂ ସମୟ ସମୟରେ ସେହି ସମସ୍ତ ଶିକ୍ଷିତା ରମଣୀମାନଙ୍କ ରଚିତ ଗଦ୍ୟ-ପଦ୍ୟ ଓଡ଼ିଆ



Digitized by srujanika@gmail.com

ଭାଷାରେ ପରିଚାଳିତ ସମ୍ବାଦପତ୍ରମାନଙ୍କର କଳେବର ପୂର୍ଣ୍ଣ ହୋଇଥାଏ ଏବଂ ସେସବୁ ମଧ୍ୟରେ ଅନେକ ଆଲୋଚନା କୌଣସି ଦୃଷ୍ଟିରୁ ବଙ୍ଗାଳୀ ମହିଳାଗଣଙ୍କର ରଚିତ ସନ୍ଦର୍ଭ ସହିତ ତୁଳନାରେ ହୀନ ନୁହେଁ । ଏହି କାର୍ଯ୍ୟ ଅନୁଷ୍ଠାନରେ ସାର୍ ବାସୁଦେବ ସୁଢ଼ଳଦେବ ଯେଉଁ କର୍ମମୂଳକ ସହାୟତା କରିଯାଇଅଛନ୍ତି, ତାହା ମଧ୍ୟ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ପୃଷ୍ଟପୋଷକତାରେ ଦିନୁ ଦିନ ଶ୍ରୀବୃଦ୍ଧି ଲାଭ କରି ନାରୀ ଜାତିର ବିବିଧ କଲ୍ୟାଣର ପଥ ପ୍ରଶସ୍ତତର କରୁଅଛି ।

ଓଡ଼ିଶା ରାଜନ୍ୟବର୍ଗଙ୍କ ମଧ୍ୟରେ ରାଜପରିବାରର କନ୍ୟାଗଣଙ୍କର ସର୍ବଦା ହିଁ କନ୍ୟାକାଳ ଅତିକ୍ରାନ୍ତ ହେବା ପରେ, ଉପଯୁକ୍ତ ବୟସରେ ବିବାହ ହୋଇଥାଏ । ଏହା ପ୍ରାଚୀନ ପ୍ରଥା । ଏଥିପାଇଁ ସାର୍ ବାସୁଦେବଙ୍କୁ ବିଶେଷ କିଛି କରିବା ପାଇଁ ପଡ଼ିନାହିଁ । ତେବେ ସାଧାରଣତଃ ଅନ୍ୟ ସମସ୍ତଙ୍କ ପରିବାରରେ, କି ବଡ଼, କି ସାମାନ୍ୟ ଗୃହସ୍ଥର ପରିବାରରେ, ସର୍ବଦା ହିଁ ଶୈଶବ ଓ ବାଲ୍ୟକାଳେ ବାଳିକାମାନେ ପ୍ରାଦେଶିକ ରୀତି ଅନୁଯାୟୀ ଧୂଳିଖେଳ ଓ ବାରବ୍ରତର ଅନୁଷ୍ଠାନରେ ସମୟାତିପାତ କରିଥାନ୍ତି । ପୂର୍ବେ ବଙ୍ଗର ଘରେ ଘରେ ରଘୁନନ୍ଦନଙ୍କର ବ୍ୟବସ୍ଥାବନ୍ଧନରେ ଆବଦ୍ଧ ବଙ୍ଗାଳୀ ଜନକ ଜନନୀ ସାତ, ଆଠ କିମ୍ବା ନଅ ବର୍ଷ ବୟସ ଅତିବାହିତ ହେବା ପୂର୍ବେ ହିଁ, କୁମାରୀଗଣଙ୍କ ବାରବ୍ରତ ସମାପ୍ତ କରାଇ ପରଘରକୁ ପ୍ରେରଣର ବ୍ୟବସ୍ଥା କରି ଆସୁଥିଲେ । ଆଜିକାଲି ଅବସ୍ଥା ବୈଗୁଣ୍ୟ ହେତୁ ସେ ସବୁ ପ୍ରଥା ପ୍ରଚଳନର ଲୋପ ପାଇ ଆସୁଅଛି । ବର୍ତ୍ତମାନ ବଙ୍ଗର ବାଳିକାମାନଙ୍କର ବିବାହରେ ସାଧାରଣତଃ ସାତ, ଆଠ, ନଅ, ବର୍ଷ ଲୋପ ପାଇଅଛି । ବାରରୁ ଷୋହଳ ବର୍ଷ ପର୍ଯ୍ୟନ୍ତ, ସମୟ ସମୟରେ ତା'ଠାରୁ ମଧ୍ୟ ଅଧିକ କାଳ ପର୍ଯ୍ୟନ୍ତ ବାଳିକାମାନଙ୍କର ବିବାହ କାଳ ଆପଣାଛାଏଁ ନିର୍ଦ୍ଧାରିତ ହୋଇଯାଇଅଛି; କିନ୍ତୁ ସମଗ୍ର ଦେଶର କ୍ଷତ୍ରିୟକୁଳରେ କନ୍ୟାଗଣ ବୟଃପ୍ରାପ୍ତ ନହେଲେ ପରିଣୀତ ହୁଅନ୍ତି ନାହିଁ । ସୁତରାଂ ରାଜବାଳାଗଣଙ୍କର ଅଳ୍ପାଧିକ ବିଦ୍ୟାଚର୍ଚ୍ଚାର ସୁଯୋଗ ଘଟିଥାଏ; କିନ୍ତୁ ସାର୍ ବାସୁଦେବ ଏହି ବିଷୟରେ ବିଶେଷ ମନଯୋଗୀ ଥିଲେ । ସେ ତାଙ୍କର କର୍ମଚାରୀଙ୍କ ସମକ୍ଷରେ ସର୍ବଦା କହି ଆସୁଥିଲେ- "କେବଳ କଥାରେ କିଛି ହୁଏ ନାହିଁ, କାର୍ଯ୍ୟରେ କରି ଦେଖାଇବା ଆବଶ୍ୟକ, ଆଉ କୌଣସି ବିଷୟରେ ସାଧାରଣ ଜନମଣ୍ଡଳୀଙ୍କୁ ଶିକ୍ଷା ଦେଲେ, ସର୍ବାଗ୍ରେ ତାହା ନିଜର ଘରେ ନିଜର ପରିଜନବର୍ଗଙ୍କ ମଧ୍ୟରେ ଫୁଟାଇ ତୋଳିବାକୁ ହେବ ।'*(୧)* ରାଜାଙ୍କର ଏହି ବାକ୍ୟ ଅନ୍ତରର ଅନ୍ତରତମ ପ୍ରଦେଶରୁ ପ୍ରକାଶ ପାଉଥିଲା । ସେ କେବଳ ଯୁବରାଜ ଓ ଅନ୍ୟ କୁମାରଗଣଙ୍କର ସୁଶିକ୍ଷା ଲାଭର ସୁବ୍ୟବସ୍ଥା କରି ନିଶ୍ଚିନ୍ତ ହୋଇ ନାହାନ୍ତି । ରାଜକୁମାରୀମାନଙ୍କୁ ସଂସ୍କୃତ, ଓଡ଼ିଆ ଏବଂ ବଙ୍ଗଳା ଶିକ୍ଷାରେ ଅନୁରାଗ ଓ



Digitized by srujanika@gmail.com

ଆଗ୍ରହର ଆତିଶଯ୍ୟ ସଂଦର୍ଶନ ସହିତ କୌଣସି କୌଣସି ରାଜକୁମାରୀଙ୍କ ଇଂରାଜୀ ଶିକ୍ଷା ଲାଭର ସୁବ୍ୟବସ୍ଥା କରାଇଥିଲେ । ତାଙ୍କ କନ୍ୟାଗଣଙ୍କ ମଧ୍ୟରୁ କେହି ହେଲେ ସୁଶିକ୍ଷିତା ନହୋଇ ପରିଣୟ ପାଶରେ ଆବଦ୍ଧ ହୋଇ ନାହାନ୍ତି । ସମସ୍ତଙ୍କୁ ସାହିତ୍ୟ ଶିକ୍ଷାଦାନ ସଂଗେ ସଂଗେ ସଂଗୀତ ଶିକ୍ଷାଦାନ କରାଯାଉଥିଲା । କନ୍ୟାମାନଙ୍କ ହାର୍‌ମୋନିୟମ୍‌ରେ ଅଙ୍ଗୁଳି ସଂଚାଳନରେ ସୁନ୍ଦର ସୁରଲହରୀ କର୍ଣ୍ଣରେ ଅମୃତ ଲହରୀ ସେଚନ କରୁଥିଲା । ଏହି ବିଷୟରେ ସେ ରାଜକନ୍ୟାଗଣଙ୍କ ଉତ୍ସାହ ଆୟୋଜନର ପୂର୍ଣ୍ଣ ପୃଷ୍ଠପୋଷକ ଥିଲେ । ତେଣୁ ତାଙ୍କ ହାତରେ ଗଢ଼ା ପ୍ରିୟତମ ପୁତ୍ର ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ପ୍ରଦତ୍ତ ରାଜାଦେଶରେ ଦେଶର ବାଳିକାମାନଙ୍କର ଶିକ୍ଷାର ସୁପ୍ରଚାର ସାଧନ ଚେଷ୍ଟା ସ୍ୱାଭାବିକ ଓ ସଂଗତ ବୋଲି ପ୍ରଜାମଣ୍ଡଳୀ ସର୍ବତ୍ର ନିଜନିଜ କନ୍ୟାଗଣଙ୍କୁ ବିଦ୍ୟାଶିକ୍ଷା ପାଇଁ ବିଦ୍ୟାଳୟରେ ପ୍ରେରଣ କରିବାକୁ କୁଣ୍ଠାବୋଧ କରି ନାହାନ୍ତି, କେହି କେତେବେଳେ ଆପତ୍ତି ମଧ୍ୟ କରିନାହାନ୍ତି । ରାଜାଙ୍କ ରାଜାଦେଶ ଏହି ରୂପେ ପ୍ରକୃତ ଅନୁଷ୍ଠାନ ଦ୍ୱାରା ପୃଷ୍ଠପୋଷିତ ଓ ସବଳୀକୃତ ହେଲେ, ଯେଉଁପରି ଉତ୍ତମ ଫଳ ଲାଭର ସଂଭାବନା, ତାହାହିଁ ହୋଇଅଛି ଓ ତାହାଙ୍କର ପ୍ରଜାମଣ୍ଡଳୀଙ୍କ ମଧ୍ୟରେ ବାଳକ ବାଳିକାଗଣଙ୍କର ଶିକ୍ଷା ଲାଭରେ ସର୍ବଦା ହିଁ ସେହିପରି ଉତ୍ତମ ଫଳ ଫଳୁଅଛି ।

କେତେ ବର୍ଷ ଶିକ୍ଷା ପ୍ରଚାର ଫଳରେ ରାଜ୍ୟରେ ଅନେକ ବାଳକ ବାଳିକା ନିମ୍ନ ଓ ଉଚ୍ଚ ପ୍ରାଇମେରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଉଚ୍ଚଶ୍ରେଣୀ ପ୍ରାଇମେରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଉଚ୍ଚ ଶ୍ରେଣୀର ଇଂରାଜୀ ବିଦ୍ୟାଳୟରୁ ଏ ପର୍ଯ୍ୟନ୍ତ ଅନେକ ଛାତ୍ର ପ୍ରବେଶିକା ଓ ମ୍ୟାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବିଦ୍ୟାଳୟର ଗୌରବ ବର୍ଦ୍ଧନ କରି ଅଛନ୍ତି । ସାର୍ ବାସୁଦେବଙ୍କ ବହୁଶ୍ରମ ଓ ଅର୍ଥବ୍ୟୟ ସ୍ୱୀକାର ଫଳରେ ବାମଣ୍ଡାରେ ଯେଉଁ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ସ୍ଥାନୀୟ ଜନସାଧାରଣଙ୍କ ଓ ସଂଗେ ସଂଗେ ବିଦେଶୀୟ ଦରିଦ୍ର ଛାତ୍ରଗଣଙ୍କ ବିଦ୍ୟାଲାଭରେ ପ୍ରଚୁର ସହାୟତା କରିଅଛି, ସେଥିପାଇଁ ତାଙ୍କର ଗଭୀର ଆନନ୍ଦ ସଂଭୋଗ କରିବା ଯଥେଷ୍ଟ କାରଣ ଅଛି, ଆଜି ତାଙ୍କର ପୌତ୍ର ବର୍ତ୍ତମାନର ଟିକାୟତ୍ ଦିବ୍ୟଶଙ୍କରଦେବ ତାଙ୍କଦ୍ୱାରା ପ୍ରତିଷ୍ଠିତ ବିଦ୍ୟାଳୟରୁ ମ୍ୟାଟ୍ରିକୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲିକତାର ସେଣ୍ଟ୍ ଜେଭିୟାରସ୍ କଲେଜରେ ଅଧ୍ୟୟନ କରିଅଛନ୍ତି । ଆଜି ସେ ଜୀବିତ ରହିଥିଲେ, ତାଙ୍କ ଦ୍ୱାରା ରୋପିତ ମହାଦ୍ରୁମର ବୃହଦାୟତନ ଓ ଉତ୍ତମ ଫଳ ଦର୍ଶନରେ ଅବିମିଶ୍ର ଆନନ୍ଦ ସଂଭୋଗ କରିଥାନ୍ତେ, ସନ୍ଦେହ ନାହିଁ । ତାଙ୍କର ଉଚ୍ଚ ଲୋକବାସୀ ଆତ୍ମାର ଆଶୀର୍ବାଦରେ ଆଜି ବାମଣ୍ଡା ରାଜ୍ୟ ଉଚ୍ଚ ପ୍ରତିଷ୍ଠା ଓ ଉଚ୍ଚ ପରିଣତି ପଥରେ ଅଗ୍ରସର ହେଉ, ଏହା ହିଁ ବର୍ତ୍ତମାନ ରାଜା ବାହାଦୁରଙ୍କ ନିତ୍ୟ ଚିନ୍ତା



Digitized by srujanika@gmail.com

ଓ ନିତ୍ୟ ପ୍ରାର୍ଥନା । ଉନ୍ନତମନା ମହାତ୍ମାଙ୍କର ଆଶୀର୍ବାଦରେ ଅବଶ୍ୟ ହିଁ ତାହା ସୁସିଦ୍ଧ ହେବ ।

ତାଙ୍କଦ୍ୱାରା ପ୍ରତିଷ୍ଠିତ ବିଦ୍ୟାଳୟ ନାମ ରାଜକୁମାର ବିଦ୍ୟାଳୟ; କିନ୍ତୁ ସେହି ବିଦ୍ୟାଳୟରେ ରାଜପରିବାରର ବାଳକଗଣଙ୍କ ସହିତ ସାଧାରଣ ପ୍ରଜାଗଣଙ୍କ ସନ୍ତାନମାନେ ଏକତ୍ର ଅଧ୍ୟୟନର ଅଧିକାର ପାଇଅଛନ୍ତି । ସେ ଶିକ୍ଷାକ୍ଷେତ୍ରରେ ଗୁରୁଙ୍କ ସମୀପରେ ରାଜା ପ୍ରଜାର ବିଚାର କରିନାହାନ୍ତି । ତାଙ୍କର ଏହି ଉଦାର ନୀତି ଫଳରେ ରାଜକୁମାରଗଣଙ୍କ ସହିତ ସାଧାରଣ ପ୍ରଜାଙ୍କ ସନ୍ତାନଗଣଙ୍କ ଦୀର୍ଘ-ସ୍ଥାୟୀ ଆତ୍ମୀୟତା ପ୍ରତିଷ୍ଠିତ ହୋଇ କୁମାର ଗଣଙ୍କର ବ୍ୟକ୍ତିତ୍ୱର ବିକାଶ ଓ ରାଜ୍ୟର ମଙ୍ଗଳ ବୃଦ୍ଧି କରିଅଛି ।

ବ୍ରିଟିଶ ଭାରତର ଜାତିବର୍ଣ୍ଣ ନିର୍ବିଶେଷରେ, ପ୍ରଜାମଣ୍ଡଳୀଙ୍କୁ ସୁଶିକ୍ଷା ଲାଭର ସୁଯୋଗ ଦାନ ଇଂରେଜ ସରକାରଙ୍କ ମହାନ୍ କୀର୍ତ୍ତି । ଏହି କୀର୍ତ୍ତି ପ୍ରତିଷ୍ଠାରେ ଇଂରେଜ ସରକାରଙ୍କୁ ସମୟ ସମୟରେ ପ୍ରତିକୂଳ ପରିସ୍ଥିତିର ସାମ୍ନା କରିବାକୁ ପଡ଼ିଅଛି । ଏହି ଦେଶର ପ୍ରାଚୀନ ଇତିହାସ ତାହାର ସାକ୍ଷ୍ୟଦାନ କରିଥାଏ । ନିତ୍ୟାନ୍ତ ଅସ୍ପୃଶ୍ୟ ଜାତି ମଧ୍ୟରେ ବ୍ରିଟିଶ୍ ଭାରତରେ ଏଯାବତ୍ ଶିକ୍ଷାର ବହୁଳ ପ୍ରଚାର ସାଧିତ ହୋଇନାହିଁ । ଏହି ଦେଶରେ ଆଦିବାସୀ ଓ ତତ୍ତୁଲ୍ୟ ହୀନ ଜାତି ସକଳ ଅସ୍ପୃଶ୍ୟ ହେଲେ ମଧ୍ୟ ତାଦୃଶହୀନ ଜାତି ନୁହନ୍ତି । ଏହି ଦେଶର ହିନ୍ଦୁ ସମାଜର ସର୍ବ ନିମ୍ନ ସ୍ତରରେ ଏଭଳି ହୀନ ଜାତି ସବୁ ଏବେ ବି ରହିଛନ୍ତି । ଯେଉଁମାନଙ୍କୁ ସ୍ପର୍ଶ କଲେ ସ୍ନାନ କରିବାକୁ ହୁଏ, ଏହି ଦେଶୀୟ ଉଚ୍ଚଶ୍ରେଣୀଙ୍କ ଭିତରେ ବର୍ତ୍ତମାନ ମଧ୍ୟ ଏଭଳି ସଂସ୍କାର ବିଦ୍ୟମାନ । ଆଜି ପର୍ଯ୍ୟନ୍ତ ସେହି ସମସ୍ତ ଜାତି ମଧ୍ୟରେ ଇଂରେଜମାନଙ୍କର ମହାଦାନ ମହାକୀର୍ତ୍ତି- 'ମାନବ ମାତ୍ରେ ହିଁ ଶିକ୍ଷା ଲାଭର ଅଧିକାରୀ' ଏହି ତତ୍ତ୍ୱ କଥାର ସୁପ୍ରଚାର ସାଧନରେ ଯେଭଳି ଏକନିଷ୍ଠ ଦୃଢ଼ତାର ପରିଚୟ ମିଳେ, ତହିଁରୁ ସମୟ କ୍ରମେ ଯେ ଏହି ଶିକ୍ଷା ବିସ୍ତାରର ଅଗ୍ରଭାଗ ତ୍ୱରିତ ସେମାନଙ୍କୁ ସ୍ପର୍ଶ କରିବ ସେଥିରେ ସନ୍ଦେହ ନାହିଁ । ସାର୍ ବାସୁଦେବ ସୁଢ଼ଳଦେବଙ୍କ ଉଦାର ନୀତିମୂଳକ ଶିକ୍ଷାପଦ୍ଧତିର ପ୍ରବର୍ତ୍ତନ ଫଳରେ, ତଦୀୟ ପୁତ୍ର ଏହି ଶ୍ରେଣୀର ହୀନାବସ୍ଥା ସଂପନ୍ନ ଲୋକମଣ୍ଡଳୀଙ୍କ ପାଇଁ ସ୍ୱତନ୍ତ୍ର ବ୍ୟୟରେ ସ୍ୱତନ୍ତ୍ର ବିଦ୍ୟାଳୟ ପ୍ରତିଷ୍ଠିତ କରିଅଛନ୍ତି । ରାଜ୍ୟର ସାଧାରଣ ପ୍ରଜାମଣ୍ଡଳୀ, ପ୍ରାଣଗଲେ ସୁଦ୍ଧା, ଏହି ହୀନଜାତିର ଛାତ୍ରମାନଙ୍କ ସହିତ ଆପଣାର ସନ୍ତାନମାନଙ୍କୁ ଏକସ୍ଥାନରେ ବସିବାକୁ ଓ ଏକ ବିଦ୍ୟାଳୟରେ ଏକ ସଂଗେ ପଢ଼ିବାପାଇଁ ଦେବେ ନାହିଁ । ବଳପୂର୍ବକ ରାଜାଦେଶ ଦ୍ୱାରା ସେପରି ଦାବାନଳ ସୃଷ୍ଟି କରିବା ଅବିଧେୟ ବୋଧରୁ, ରାଜା ବାହାଦୁର ସେମାନଙ୍କ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ ରକ୍ଷା ଓ ପୋଷଣର ଆଦେଶ ଦେଇଥିଲେ । ସାଂସ୍କୃତିକ ପଣ୍ଡିତ ଓ ବିବିଧ ପ୍ରାଚୀନ ସଂସ୍କାର ଜଡ଼ିତ ଶାସ୍ତ୍ରାଦେଶର



Digitized by srujanika@gmail.com

ଅନୁଗତ ରାଜା ବାହାଦୁର ଯେ ସେମାନଙ୍କ କଲ୍ୟାଣ କାମନା କରି ରାଜ୍ୟ ବ୍ୟୟରେ ସେମାନଙ୍କ ଶିକ୍ଷାଲାଭର ସୂତ୍ରପାତ କରି ଯାଇଛନ୍ତି । ଏହା ସ୍ମରଣ କଲେ ତାଙ୍କର ମହଦନ୍ତଃକରଣ ଉଦାରତାରେ ଆତ୍ମହରା ହେବାକୁ ପଡ଼ିଥାଏ ଏବଂ ଏଥିରୁ ବେଶ୍ ସ୍ପଷ୍ଟ ପ୍ରତୀୟମାନ ହୁଏ, ରାଜସିଂହାସନରେ ରାଜା ରୂପେ, ଶିକ୍ଷାକ୍ଷେତ୍ରରେ ମାନବ ସୁହୃଦ ରୂପେ ସେ ତାଙ୍କ ସମୟର ସୀମା ଅତିକ୍ରମ କରି ପରିବର୍ତ୍ତନର ପଥରେ, ଉନ୍ନତିର ପଥରେ ପଦାର୍ପଣ କରିଥିଲେ ।

ଅଧୁନା କିଛିକାଳ ହେଲା ଦେଖାଯାଉଅଛି, ଭାରତୀୟ କ୍ଷୁଦ୍ର ବୃହତ୍ ସାମନ୍ତ ରାଜାଗଣ ବିଶେଷ ଭାବରେ ବିଦେଶ ଭ୍ରମଣର ପକ୍ଷପାତି ହୋଇ ଉଠିଛନ୍ତି । ଭାରତୀୟ ରାଜନ୍ୟବର୍ଗଙ୍କ ମଧ୍ୟରୁ ଅନେକେ ହିଁ ଅନେକ ସମୟରେ ବହୁ ଅର୍ଥ ବ୍ୟୟ କରି ଇଉରୋପ, ଆମେରିକାର ନାନା ସ୍ଥାନ ପରିଭ୍ରମଣ କରି ଆସୁଅଛନ୍ତି । ଏପରି ଭ୍ରମଣ ଫଳରେ ଅର୍ଜିତ ଜ୍ଞାନ ଦ୍ୱାରା ସେମାନେ ସେମାନଙ୍କର ଆଶ୍ରିତ ପ୍ରଜାମଣ୍ଡଳୀଙ୍କର କୌଣସି ପ୍ରକାର କଲ୍ୟାଣ ସାଧନର ଉପାୟ ଉଦ୍‌ଭାବନ କରନ୍ତି କି ନା, କୁହାଯାଇ ପାରିବ ନାହିଁ । ରାଜନୀତିର ହିସାବରେ ରାଜସିଂହାସନରେ ଉପବିଷ୍ଟ, ରାଜ ସଂପଦ ଶୋଭିତ ମହାତ୍ମାଗଣ ଅପେକ୍ଷାକୃତ ହୀନତର ପ୍ରଜାସାଧାରଣଙ୍କର ବିବିଧ କଲ୍ୟାଣରେ ନିଯୁକ୍ତ ହେଲେ ହିଁ ଶୋଭାପାଆନ୍ତି-ଭଲମାନେ; କିନ୍ତୁ ଆକ୍ଷେପର ବିଷୟ, ଏମାନେ ସମସ୍ତେ ବିଦେଶ ଭ୍ରମଣରେ, ନିଜ ନିଜ ରାଜ୍ୟର କଲ୍ୟାଣ ସାଧନ ତ ଦୂରର କଥା ରାଜ ସଂସାରର ସଂଚିତ ପ୍ରଚୁର ଅର୍ଥ ଏବଂ ପ୍ରଜାଙ୍କର ବହୁ କଷ୍ଟରେ ଅର୍ଜିତ ଓ ପ୍ରଦତ୍ତ ଅର୍ଥର ଅକାରଣ ବ୍ୟୟରେ, କ୍ଷୁବ୍ଧ ହୋଇ, ଏକଦା ଭୂତପୂର୍ବ ରାଜପ୍ରତିନିଧି ମହାମାନ୍ୟ ବଡ଼ଲାଟ ଲର୍ଡ଼ କର୍ଜ୍ଜନ ମହାଶୟ ଦେଶୀୟ ରାଜ୍ୟବୃନ୍ଦଙ୍କର ସ୍ୱେଚ୍ଛାମତେ ବିଦେଶ ଯାତ୍ରା ନିବାରଣ ପାଇଁ ଏକ ଆଇନ୍ ପ୍ରଚାର କରି ଏପରି ଅପବ୍ୟୟ ନିବାରଣ ଚେଷ୍ଟା କରିଥିଲେ ।

ଦେଶୀୟ ରାଜାମାନଙ୍କର ବିଲାତୀ ଦ୍ରବ୍ୟାଦି ପ୍ରତି ଅଂସଗତ ଅନୁରାଗ ବୃଦ୍ଧି ଦର୍ଶନ କରି ରାଜ ପ୍ରତିନିଧି ମହାମତି ଲର୍ଡ଼ କର୍ଜ୍ଜନ, ଗଭୀର ଆକ୍ଷେପ ସହ ଭାରତୀୟ ସାମନ୍ତ ନୃପତି ଗଣଙ୍କର ସ୍ୱଦେଶୀୟ ଶିଳ୍ପ ସଂଭାରର ଉନ୍ନତି କଳ୍ପେ ବିଶେଷ ମନଯୋଗ ଦେବାପାଇଁ ଏକ ରାଜଦରବାରରେ ଆପଣା ଅଭିପ୍ରାୟ ପ୍ରକାଶ କରିଥିଲେ । ବିଦେଶରେ ଭ୍ରମଣ ପାଇଁ ଅର୍ଥ ଅପବ୍ୟୟ ଓ ସେମାନଙ୍କର ସହାନୁଭୂତିର ଅଭାବରେ ଦେଶୀୟ ଶିଳ୍ପର ଅବନତି, ଭାରତୀୟ ରାଜନ୍ୟବର୍ଗଙ୍କର ଏହି ଦ୍ୱିବିଧ ଗୁରୁତର ତୃଟିର ବିଷୟ ଉଲ୍ଲେଖ କରି ସେ ଭାରତ ସାମ୍ରାଜ୍ୟର ଶୀର୍ଷ ସ୍ଥାନୀୟ ବ୍ୟକ୍ତିର ଉପଯୁକ୍ତ କାର୍ଯ୍ୟ କରିଯାଇଛନ୍ତି; କିନ୍ତୁ ଏତିକିରେ କୌଣସି ପରିବର୍ତ୍ତନ ସାଧିତ ହୋଇନାହିଁ । ଭାରତୀୟ ରାଜାମାନଙ୍କର ଅବସ୍ଥା ପୂର୍ବାପର ସମାନ ହିଁ ରହିଯାଇଅଛି ।



Digitized by srujanika@gmail.com

ଆଉ ବାମଣ୍ଡାଧିପତି ରାଜା ବାସୁଦେବ ସୁଢ଼ଳଦେବ ମଧ୍ୟପ୍ରଦେଶର ଶାସନ ବିବରଣୀରେ ବର୍ଷ ପରେ ବର୍ଷ ପ୍ରାଚୀନ ତନ୍ତ୍ରର ଅର୍ଥାତ୍ ସେହି କାଳର ନିୟମ ପଦ୍ଧତିର ଉପାସକ ବୋଲି ଉଲ୍ଲିଖିତ ହୋଇ ନବ୍ୟତନ୍ତ୍ରର ଅଶେଷବିଧି ଗୁଣାବଳୀର ପରିଚୟ ଦାନ କରି ରାଜାଦର୍ଶର ଉଚ୍ଚତମ ଚିତ୍ର ଅଙ୍କିତ କରି ଅଛନ୍ତି । ସେହି ସମସ୍ତ ବିଷୟରେ ଆଲୋଚନା ପରେ କରାହେବ । ଏଠାରେ କେବଳ ଗୋଟିଏ ବିଷୟରେ ଆଲୋଚନା ଆବଶ୍ୟକ । ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ଭ୍ରମଣ ବୃତ୍ତି ଅତ୍ୟନ୍ତ ପ୍ରବଳ ଥିଲା । ଭ୍ରମଣ ପାଇଁ ଶତବିଧ କ୍ଳେଶ ଭୋଗ ଓ ଅର୍ଥବ୍ୟୟରେ କୁଣ୍ଠାବୋଧ କରୁନଥିଲେ । ଭାରତବର୍ଷର ବାହାରକୁ କୌଣସି ସ୍ଥାନକୁ ଯିବାକୁ ପ୍ରୟୋଜନ ହେଲେ ଏବଂ ପ୍ରବୃତ୍ତି ଥିଲେ, ତତ୍ ସାଧନରେ ତାଙ୍କର ଅର୍ଥର ଅଭାବ ହୋଇନଥାନ୍ତା; କିନ୍ତୁ ସେ ସର୍ବାଗ୍ରେ ସ୍ୱଦେଶର ସକଳ ଅବସ୍ଥା ଜାଣିବା ପାଇଁ ସର୍ବଦା ହିଁ ବ୍ୟସ୍ତ ଥିଲେ । ତେଣୁ ଦକ୍ଷିଣ ଓ ପଶ୍ଚିମ ପ୍ରଦେଶର ନାନା ସ୍ଥାନେ ପୁନଃ ପୁନଃ ଭ୍ରମଣ କରି ଅଭିଜ୍ଞତା ଅର୍ଜନର ପ୍ରୟାସ କରିଅଛନ୍ତି । ଇତି ପୂର୍ବେ ହିଁ ତାଙ୍କର ଏକ ଦୀର୍ଘ ଭ୍ରମଣର ଆଲୋଚନା ଶେଷ ହୋଇଅଛି । ଅପରଗୁଡ଼ିକ ପ୍ରୟୋଜନ ଅନୁସାରେ କ୍ରମେ କରାଯିବ । ସେ ବହୁ ଭ୍ରମଣ ଫଳରେ ଯେଉଁ ଜ୍ଞାନ, ଯେଉଁ ଅଭିଜ୍ଞତା ଅର୍ଜନ କରିଥିଲେ, ତଦ୍ୱାରା ସେ ତାଙ୍କ ରାଜ୍ୟର ନାନାବିଧ ଶ୍ରୀବୃଦ୍ଧି ସାଧନ ବାସନା ଚରିତାର୍ଥ କରିଯାଇଛନ୍ତି । ଏହି କର୍ମ କିଏ କରନ୍ତି ? ଆଉ କେତେଜଣ ରାଜାଙ୍କର ବା ସେହିପରି ଆଗ୍ରହ ଓ ଆକାଙ୍‌କ୍ଷାର ଚିହ୍ନ ରାଜ୍ୟ ମଧ୍ୟରେ ଦୃଷ୍ଟିଗୋଚର ହୋଇଥାଏ ? ଆଜିକୁ କେତେକ ବର୍ଷ ହେଲା, ରାଜା ସାର୍ ବାସୁଦେବ ସୁଢ଼ଳଦେବ ସ୍ୱର୍ଗାରୋହଣ କରି ଅଛନ୍ତି, ବର୍ତ୍ତମାନ ସୁଦ୍ଧା ବାମଣ୍ଡା ଗଲେ, ସେହି ଅତୁଳ କୀର୍ତ୍ତି ସଂପନ୍ନ ମହାତ୍ମାଙ୍କର କର୍ମଗତ ସ୍ମୃତିର ବହୁବିଧ ଚିହ୍ନ ଦେଖି ଅନୁଭବ କରିହେବ ଯେ, ଏହି ଅରଣ୍ୟ ମଧ୍ୟରେ ପଥର କଟାଇ ଏଭଳି ସୁନ୍ଦର ଓ ସୌଷ୍ଠବ ସଂପନ୍ନ ସଂପଦ ଶୋଭାରେ ସଜ୍ଜିତ ଏକ ନଗରୀ ଯିଏ ନିର୍ମାଣ କରାଇ ଯାଇଛନ୍ତି, ସେ ଅବଶ୍ୟ ହିଁ ନରକୁଳର ଅଳଙ୍କାର । ଲୋକ ହିତେ ନିୟୋଜିତ ଶିକ୍ଷା ଓ ସୁବିବେଚନା, ଆଗ୍ରହ ଓ ଆକାଂକ୍ଷା, ସେହି ଜୀବନକୁ ଲତା-ବଲ୍ଲରୀ ପରି ଆଶ୍ରୟ କରିଥିଲା । କ୍ଷୟପ୍ରାପ୍ତ କସ୍ତୁରୀ ପରି ସେହି ମହାଭାଗ ମହାପୁରୁଷଙ୍କର ଚରିତ୍ର-ସୌରଭ ଭବିଷ୍ୟତରେ ଦୀର୍ଘକାଳ ବାମଣ୍ଡାରାଜ୍ୟକୁ ମୋହିତ କରି ରଖିବ ।

ସ୍ୱରାଜ୍ୟ ଓ ସ୍ୱଦେଶ ସେବାରେ ସାର୍ ବାସୁଦେବ ସୁଢ଼ଳଦେବଙ୍କର ତୁଳନା ମିଳେ ନାହିଁ । ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ପ୍ରଜାସାଧାରଣଙ୍କର ସୁଶିକ୍ଷା ଲାଭ ଓ ଜ୍ଞାନ ବୃଦ୍ଧି ପାଇଁ ରାଜା ପ୍ରାଣପ୍ରଣେ ଚେଷ୍ଟା କରି ଯେ କେବଳ ଅକ୍ଷୟକୀର୍ତ୍ତି ରଖି ଯାଇଛନ୍ତି ତାହା ନୁହେଁ, ରାଜ ପରିବାରରେ ପ୍ରତ୍ୟେକଙ୍କର ସୁଶିକ୍ଷା ବିଧାନରେ ଯେ ତାଙ୍କର ସମସ୍ତ ଉଦ୍ୟମ ଆୟୋଜନ



Digitized by srujanika@gmail.com

ପର୍ଯ୍ୟବସିତ ହୋଇଅଛି ତାହାନୁହେଁ, ରାଜକୁମାରଗଣଙ୍କର ଓ ଶିକ୍ଷିତ ପ୍ରଜାଗଣଙ୍କର ଉଚ୍ଚତର ଜ୍ଞାନାର୍ଜନ ପାଇଁ ମଧ୍ୟ ରାଜା ପ୍ରଚୁର ଅର୍ଥବ୍ୟୟ କରିଯାଇଛନ୍ତି । ତେଣୁ ମଧ୍ୟପ୍ରଦେଶର ଫ୍ୟୁଡ଼େଟେରୀ ରାଜନ୍ୟବର୍ଗଙ୍କର ୧୮୯୨ ଖ୍ରୀଷ୍ଟାବ୍ଦର ବାର୍ଷିକ ଶାସନ ବିବରଣୀରେ ପୋଲିଟିକାଲ୍ ଏଜେଣ୍ଟ ଏଇଚ୍. ଏଇଚ୍. ପ୍ରିଷ୍ଟ୍ ବାହାଦୁର ନିମ୍ନଲିଖିତ ଭାବରେ ତାଙ୍କର ମନ୍ତବ୍ୟ ଲିପିବଦ୍ଧ କରିଥିଲେ- "ରାଜା ସୁଢ଼ଳଦେବ ସର୍ବତୋଭାବେ ଉପଯୁକ୍ତ ଓ ଉଚ୍ଚ ଜ୍ଞାନସଂପନ୍ନ ଶାସନକର୍ତ୍ତା । ସେ ଯେ କେବଳ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନ କରି ନିଶ୍ଚିନ୍ତ ତାହା ନୁହେଁ । ସେ ତାଙ୍କର ପୁତ୍ରମାନଙ୍କୁ ଇଂରାଜୀ ଓ ଦେଶୀୟ ଉଭୟବିଧ ଭାଷାରେ ଶିକ୍ଷାଦାନ କରି ରାଜ୍ୟ ପ୍ରଜା ମଣ୍ଡଳୀର ଭାବୀ ସୌଭାଗ୍ୟର ପଥ ପ୍ରଶସ୍ତତର କରିବାରେ ପ୍ରାଣପଣ ଯତ୍ନ କରି ଅଛନ୍ତି ।'*(୨)*

ନାଗପୁର, ବୋମ୍ବାଇ, ବାରଣାସୀ ପ୍ରଭୃତି ସ୍ଥାନ ପରିଭ୍ରମଣ କରି ରାଜା ବାସୁଦେବ ସୁଢ଼ଳଦେବ ଭିନ୍ନ ଭିନ୍ନ ସ୍ଥାନରେ ଯେଉଁସବୁ ଜନହିତକର ଓ ଉନ୍ନତି ସାଧନ-ଉପଯୋଗୀ ଅନୁଷ୍ଠାନ ସଂଦର୍ଶନ କରିଥିଲେ, ସେହି ସବୁ କାର୍ଯ୍ୟର ଅନୁଷ୍ଠାନ ଦ୍ୱାରା ସ୍ୱରାଜ୍ୟର ମଙ୍ଗଳକର ଉନ୍ନତି ସାଧନରେ କ୍ରମେ କ୍ରମେ ଅଗ୍ରସର ହୋଇଥିଲେ । ଭ୍ରମଣୋପଲକ୍ଷ୍ୟରେ କାଶୀ ଅବସ୍ଥାନ କାଳରେ ପ୍ରାଚୀନ ତନ୍ତ୍ରର ପକ୍ଷପାତୀ ବାମଣ୍ଡାଧିପତିଙ୍କର ହୃଦୟରେ ବର୍ତ୍ତମାନ ସମୟର ଉପଯୋଗୀ କାଶୀର ମାନମନ୍ଦିର ଅନୁରୂପ ବିଜ୍ଞାନଗାର ପ୍ରତିଷ୍ଠାର ବାସନା ସଂଚାର ହୁଏ । ରାଜକୁମାରଗଣ ରାଜଧାନୀରେ ବସି ବିଜ୍ଞାନ ଶିକ୍ଷା କରିବେ, ଅନ୍ୟାନ୍ୟ ଜ୍ଞାନପିପାସୁ ବ୍ୟକ୍ତିଗଣ ଏହି ବିଜ୍ଞାନାଗାର ସାହାଯ୍ୟରେ ଆପଣା ଆପଣାର ଚିତ୍ତବୃତ୍ତିର ଉତ୍କର୍ଷ ଓ ଚରିତାର୍ଥର ଆନନ୍ଦ ଲାଭ କରିବେ, ଏଇଥିପାଇଁ ବହୁ ଅର୍ଥ ବ୍ୟୟରେ ବାମଣ୍ଡାରେ ବିଜ୍ଞାନାଗାର ପ୍ରତିଷ୍ଠିତ ହୋଇଥିଲା । ସେହି ଅନୁଷ୍ଠାନର ଶୁଭ ଫଳ ଫଳିଅଛି । ରାଜକୁମାରଗଣ, ବିଶେଷ ଭାବରେ ବର୍ତ୍ତମାନ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ବାହାଦୁର ବିଜ୍ଞାନାନୁଶୀଳନ ପଟୁ । ରାଜାଙ୍କର ପିତୃଦେବ ସାର୍ ବାସୁଦେବ ସୁଢ଼ଳଦେବ ଆଳଙ୍କାରିକ ଓ ଦାର୍ଶନିକ କବି ଥିଲେ । ପୁତ୍ର ବର୍ତ୍ତମାନର ରାଜା ବୈଜ୍ଞାନିକ କବି । ତାଙ୍କ କାବ୍ୟ ରଚନାରେ ସୃଷ୍ଟି ରହସ୍ୟ, ଆକାଶ ତତ୍ତ୍ୱ ଓ ଜଗତର ଶୋଭା-ସୌନ୍ଦର୍ଯ୍ୟର ମର୍ମଗତ ଭାବ ଉତ୍ତମ ରୂପେ ଫୁଟିଅଛି । ସେହି ବିଷୟରେ ତାଙ୍କର ଲେଖନୀ ଧାରଣ ସାର୍ଥକ ହୋଇଅଛି । ବାମଣ୍ଡାର ବର୍ତ୍ତମାନ ରାଜାଙ୍କର ରଚିତ କାବ୍ୟ କାନନର କେତୋଟି ମାତ୍ର କବିତା ଅନ୍ଧକବିଙ୍କ ଅନୁବାଦରେ ଚମତ୍କାର ଫୁଟି ଅଛି । ବଙ୍ଗାଳୀ କାବ୍ୟମୋଦୀଗଣ କବି ବିଜୟଚନ୍ଦ୍ର କୃତି ସେହି ଅନୁବାଦ ପଢ଼ିଅଛନ୍ତି । ତହିଁରେ ରାଜାଙ୍କର ସୌନ୍ଦର୍ଯ୍ୟ ସୃଷ୍ଟିକରିବା ଅସୀମ ଶକ୍ତିର ପରିଚୟ ପରିଲକ୍ଷିତ ।

କାଶୀର ମାନ ମନ୍ଦିରର ଅନୁରୂପ ମାନମନ୍ଦିର ସମ୍ବଳିତ ଶୋଭନ ଦୃଶ୍ୟ ବିଜ୍ଞାନଗାର ବହୁ ଅର୍ଥବ୍ୟୟରେ ପ୍ରତିଷ୍ଠିତ ହେଲା । ରାଜା ବାସୁଦେବଙ୍କର ଉତ୍ତମ ଭୌଗୋଳିକ ଜ୍ଞାନ


Digitized by srujanika@gmail.com

ଥିଲା । ସେ ନିଜେ ଜ୍ୟୋତିଷ ଥିଲେ । କାଶୀରେ ଅବସ୍ଥାନ ପୂର୍ବକ ମାନମନ୍ଦିର ପ୍ରତିଷ୍ଠାନ, ତାହାର ରୀତି ପଦ୍ଧତିର ଅବଲମ୍ବନ ଅବଗତ ହୋଇ, ସ୍ୱରାଜ୍ୟରେ ମାନମନ୍ଦିରର ପ୍ରତିଷ୍ଠା କାର୍ଯ୍ୟରେ ହସ୍ତକ୍ଷେପ କରନ୍ତି, କାଶୀ ଏବଂ ମିଥିଳା ଠାରୁ ଜ୍ୟୋତିଷଜ୍ଞ ପଣ୍ଡିତଙ୍କୁ ଅଣାଇ ପ୍ରାଚୀନ ପଦ୍ଧତିର ପୂର୍ଣ୍ଣତା ସଂପାଦନରେ ପ୍ରାଣପଣେ ଯତ୍ନ କରିଥିଲେ । ଏହି ବିଜ୍ଞାନଗାରରେ ବହୁ ଅର୍ଥ ବ୍ୟୟ କରି ବୈଜ୍ଞାନିକ ଯନ୍ତ୍ରସବୁ ସଂଗ୍ରହ କରାହୁଏ । ବିଦ୍ୟୁତ୍ ପ୍ରସ୍ତୁତ କରିବାର ଯନ୍ତ୍ର, ରଂଜନ ଆଲୋକ (X-rays), ବିବିଧ ବିଷୟର ବିଶ୍ଳେଷଣ ଯନ୍ତ୍ର, ଦୂରବୀକ୍ଷଣ ପ୍ରଭୃତି ବିବିଧ ଯନ୍ତ୍ର ଓ ସେସବୁର ବ୍ୟବହାର ଉପଯୋଗୀ ଉପଦେଶପୂର୍ଣ୍ଣ ଗ୍ରନ୍ଥମାନ ସଂଗ୍ରହ କରିବା ପାଇଁ ରାଜା ବାହାଦୁରଙ୍କ ରାଶିକୃତ ଅର୍ଥ ବ୍ୟୟ ହୋଇଥିଲା ।  ଏହି ବିଜ୍ଞାନଗାରର ପୂର୍ଣ୍ଣାଙ୍ଗ ଉନ୍ନତି ସାଧନ ପାଇଁ ଭିନ୍ନ ଭିନ୍ନ ସମୟରେ ବହୁଅର୍ଥ ବ୍ୟୟ କରିଥିଲେ, ସେସବୁର ପରିମାଣ ନିର୍ଦ୍ଦେଶ କରିବା କଠିନ ବ୍ୟାପାର । ମାନ ମନ୍ଦିର ଓ ବିଜ୍ଞାନାଗାର ପ୍ରସ୍ତୁତ ହେବାପରେ ସର୍ବପ୍ରଥମେ ଟ.୧୫,୦୦୦ର ଯନ୍ତ୍ରପାତି ଅଣା ହୋଇଥିଲା । ପରେ ଯେତେବେଳେ ଯାହା ଯାହା ପ୍ରୟୋଜନ ହୋଇଅଛି, ଅକାତରେ ସେଥିପାଇଁ ଅର୍ଥ ବ୍ୟୟ କରିଛନ୍ତି ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ କୌଣସି କାର୍ଯ୍ୟରେ ହାତ ଦେଇ ତାହା ଅଙ୍ଗହୀନ ବା ଅସଂପୂର୍ଣ୍ଣ ରଖିବା ଜାଣି ନଥିଲେ, ତେଣୁ ନିଜର ଅଭିଜ୍ଞତା ପରିଚାଳିତ ରାଜା ବାହାଦୁର ଆପଣାର ବୁଦ୍ଧି ବିବେଚନା ଅନୁରୂପ ପ୍ରାଚୀନ ପଦ୍ଧତି ସଂଗେ ସଂଗେ ଆଧୁନିକ ବିଜ୍ଞାନ ତନ୍ତ୍ରର ମିଳନ ସାଧନ କରାଇ, ପରେ କଟକ କଲେଜର ବିଜ୍ଞାନାଚାର୍ଯ୍ୟ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ମହୋଦୟଙ୍କୁ ବହୁ ସମାଦରରେ ନିମନ୍ତ୍ରଣ କରି ବାମଣ୍ଡା ବିଜ୍ଞାନାଗାର ପରିଦର୍ଶନ ପାଇଁ ଅଣାଇଥିଲେ । ସେ ରାଜାଙ୍କର ରୁଚି ଆକାଙ୍କ୍ଷା ଓ ଆଦର୍ଶର ଭୂୟସୀ ପ୍ରଶଂସା କରିଥିଲେ । ଆଧୁନିକ ତନ୍ତ୍ରର ଯାହାକିଛି ଅଭାବ ଥିଲା ସେ ସବୁ ଯୋଗେଶବାବୁଙ୍କ ଉପଦେଶ  ମୁତାବକ ପରିପୂରଣ କରି ଗଭୀର ଆନନ୍ଦ ଉପଭୋଗ କରିଥିଲେ । ତାହାଙ୍କର କାର୍ଯ୍ୟରୀତି ହିଁ ଏହିପରି ଥିଲା । ତେଣୁ ଓଡ଼ିଶାର ଜଣେ ସାହିତ୍ୟସେବୀ ମହୋଦୟ ଗୌରବଭରେ ଲେଖିଛନ୍ତି- 'ବାସୁଦେବ କେବଳ ବିଧିର ନୃପତି ନଥିଲେ, ସେ ନିସର୍ଗ ନୃପତି । ରାଜୋଚିତ ଗୁଣ ଥାଉ ବା ନଥାଉ, କେବଳ ମାତ୍ର  ଜନ୍ମଗ୍ରହଣର କଷ୍ଟ ସ୍ୱୀକାର କରିବାର ଦାବୀ ହେତୁ ଅଧିକାଂଶ ରାଜା, ରାଜା ହୋଇଥାନ୍ତି । ରାଜତନ୍ତ୍ର ଦେଶ ସମୂହରେ ପିତାଙ୍କର ପୁତ୍ର ହେବା ସିଂହାସନ ଲାଭର ଯଥେଷ୍ଟ ଗୁଣବତ୍ତା ବୋଲି ସର୍ବତ୍ର ପରିଗୃହୀତ । ବାସୁଦେବ ମଧ୍ୟ ଏହିପରି ଭାଗ୍ୟଧର ହୋଇ ଜନ୍ମଗ୍ରହଣ କରିଥିଲେ ସତ୍ୟ; କିନ୍ତୁ ସେ ପୂର୍ଣ୍ଣମାତ୍ରାରେ ଏହି ସୌଭାଗ୍ୟର ଉପଯୁକ୍ତ ଥିଲେ । ତାହାଙ୍କର ଅମୂଲ୍ୟ ଜୀବନ ଏହାର ଅଭ୍ରାନ୍ତ ପ୍ରମାଣ ପ୍ରଦାନ କରୁଅଛି । ସିଂହାସନ ଲାଭ ଦ୍ୱାରା ଯେଉଁ ସାଧନ



Digitized by srujanika@gmail.com

ନିଚୟ ତାହାଙ୍କର ହସ୍ତଗତ ହୋଇଥିଲା, ତାହାଙ୍କର ସାଧନା ମଧ୍ୟ ସେହିପରି ଥିଲା ଏବଂ ସିଦ୍ଧି ମଧ୍ୟ ସାଧନାର ଅନୁରୂପ ହୋଇଥିଲା ।'*(୩)*

ଏହାପରେ ରାଜାବାସୁଦେବଙ୍କ ସମ୍ବନ୍ଧରେ କବି ନନ୍ଦକିଶୋରଙ୍କର ନିମ୍ନୋଦ୍ଧୃତ କବିତ୍ୱପୂର୍ଣ୍ଣ ଉକ୍ତି ସଂପୂର୍ଣ୍ଣ ସତ୍ୟ-

"ଦୁର୍ଲଭ ଆସନ ଭଜି ସପତ୍ନୀ ଭାବ ବରଜି
ବିଶାଳ ବକ୍ଷେ ଲୋଟନ୍ତି କମଳା ବାଣୀ
ବିନୀତା ଭାରତୀ ସତୀ ଅଟନ୍ତି ପ୍ରେୟସୀ ଅତି
ସାମ୍ରାଜ୍ୟ ଲକ୍ଷ୍ମୀ ଯଦ୍ଧିବା ପ୍ରେୟସୀ ରାଣୀ
ବୁଝିଛି ଏ ମର୍ମ୍ମ ନରେଶ
ଘୋଷେ ତବ ଯଶ ତେଣୁ ଉତ୍କଳ ଦେଶ ।"

ରାଜା ଦଶରଥଙ୍କର କୌଶଲ୍ୟା ଏବଂ କୈକେୟୀଙ୍କ ପରି ବାସୁଦେବଙ୍କ କବିଙ୍କ ବର୍ଣ୍ଣିତ ମହିଷୀଦ୍ୱୟଙ୍କ ମଧ୍ୟରେ ଯଥାକ୍ରମେ ସରସ୍ୱତୀ 'ଅର୍ଚ୍ଚିତା' ଏବଂ ଲକ୍ଷ୍ମୀ 'ପ୍ରିୟା' ଥିଲେ ।*(୪)* ଲକ୍ଷ୍ମୀ ସ୍ୱଭାବତଃ ତାହାଙ୍କର ପୂର୍ଣ୍ଣ ସ୍ନେହଭାଜନ ଥିଲେ; କିନ୍ତୁ ସରସ୍ୱତୀ ସମାଧିକ ସମ୍ମାନିତା ହେଉଥିଲେ ।

ତେଣୁ ପୁଣି କହୁଅଛି, ଓଡ଼ିଶାର ଶିକ୍ଷା ବିଭାଗୀୟ ପ୍ରଧାନ ପୁରୁଷ ରାୟ ରାଧାନାଥ ରାୟ ବାହାଦୁର ମହୋଦୟ ସାର୍ ବାସୁଦେବ ସୁଢ଼ଳଦେବଙ୍କ ଜୀବନାଭିନୟ ସଂଦର୍ଶନ ମୁଗ୍ଧ ମନେ ନିଜ ଅଭିଜ୍ଞତାପୂର୍ଣ୍ଣ ବିବରଣୀ ମାଳାର ଏକସ୍ଥାନେ ଲେଖିଅଛନ୍ତି- 'ସୁଢ଼ଳଦେବଙ୍କୁ ଯେଉଁମାନେ ଉତ୍ତମରୂପେ ଜାଣନ୍ତି, ସେମାନେ ଏକ ବାକ୍ୟରେ ସ୍ୱୀକାର କରିବେ ଯେ, ରାଜା ସୁଢ଼ଳଦେବ ନିଜର ଅସାମାନ୍ୟ ପ୍ରତିଭାର ଅନୁରୂପ କ୍ଷେତ୍ର ଏବଂ ମନର ଅନୁରୂପ ଧନ ପାଇ ନାହାନ୍ତି ।"

କେବଳ କ'ଣ ଏତିକି ? ପ୍ରଜାରଞ୍ଜନ ପ୍ରିୟ ଲୋକହିତ ସାଧନ ନିରତ ଅସାମାନ୍ୟ ଗୁଣ ସଂପନ୍ନ ରାଜା ବାସୁଦେବ ସୁଢ଼ଳଦେବ ? କିପରି ଉଚ୍ଚ ପ୍ରକୃତି, ଉଚ୍ଚ ଜ୍ଞାନ ଓ ବିଶାଳ ହୃଦୟ ବିଶିଷ୍ଟ ବ୍ୟକ୍ତି ଥିଲେ, ତାହାଙ୍କର ପରିଚର୍ଯ୍ୟାରେ ପାଳିତ ବାମଣ୍ଡା ରାଜ୍ୟର ରାଜ୍ୟପାଳନ ପଦ୍ଧତିର ପ୍ରଶଂସାପୂର୍ଣ୍ଣ ବାର୍ଷିକ ବିବରଣୀର ଆଲୋଚନାରେ ତାହା ପରେ ପ୍ରକାଶ ପାଇବ ଏହି ସ୍ଥାନରେ କେବଳ ୧୮୯୨ ଖ୍ରୀଷ୍ଟାବ୍ଦର ଶାସନ ବିବରଣୀର କିଛି ଅଂଶ ଉଦ୍ଧୃତ କରି ତାଙ୍କ ରାଜ୍ୟର ଶିକ୍ଷାଦାନ ଓ ତନ୍ନିବନ୍ଧନ ଲୋକହିତ ସାଧନ ବିଷୟରେ ଆଲୋଚନା ଶେଷ କରୁଅଛି -



Digitized by srujanika@gmail.com

'ମୁଁ ମନେକରେ ବାମଣ୍ଡାର ବର୍ତ୍ତମାନ ଶାସନକର୍ତ୍ତାଙ୍କର ପର୍ଯ୍ୟବେକ୍ଷଣରେ ରାଜ୍ୟର ଯେପରି ଆଶ୍ଚର୍ଯ୍ୟ ଉନ୍ନତି ସାଧିତ ହୋଇଅଛି, ତାହା ସର୍ବାନ୍ତକରଣରେ ପ୍ରଶଂସା କରିବା ଯୋଗ୍ୟ । ଭାରତ ସାମ୍ରାଜ୍ୟର ଅନ୍ୟାନ୍ୟ ପ୍ରଦେଶ ମଧ୍ୟରେ ଏହିପରି ଦେଶୀୟ ରାଜ୍ୟର ଉଲ୍ଲେଖ ଅସଂଭବ, ଯେଉଁ ସ୍ଥାନରେ ଏପରି ଅଳ୍ପ ଆୟରେ ଏହିପରି ବିବିଧ ଉନ୍ନତି ସାଧିତ ହୋଇଅଛି ।' *(୫)*

ବାମଣ୍ଡାରେ ବିଜ୍ଞାନାଗାର ଓ ମାନମନ୍ଦିର ଓଡ଼ିଶା ଓ ଛତ୍ରିଶଗଡ଼ର ଗୌରବ ଗଡ଼ଜାତ ରାଜଗଣର ରାଜ୍ୟ ମଧ୍ୟେ ରାଜ୍ୟର ପରିମାଣ ଫଳ ଓ ରାଜସ୍ୱ ହିସାବରେ ବାମଣ୍ଡାର ସ୍ଥାନ ଅନେକ ତଳେ; ଆହୁରି ବୃହତ୍ତର ରାଜ୍ୟ ଅନେକ ଅଛି, ସେ ସବୁ ମଧ୍ୟରେ ବସ୍ତର ଓ ମୟୂରଭଞ୍ଜ ସର୍ବାପେକ୍ଷା ବଡ଼ ।

ଏହି ସମସ୍ତ ରାଜ୍ୟ ମଧ୍ୟରେ କୌଣସିଠାରେ ବିଦ୍ୟାଚର୍ଚ୍ଚା ଓ ସାଧାରଣ ପ୍ରଜାମଣ୍ଡଳୀଙ୍କ ଜ୍ଞାନବୃଦ୍ଧି କଳ୍ପେ ବାମଣ୍ଡା ପରି ଅନୁଷ୍ଠାନ ଅନ୍ୟାନ୍ୟ ପ୍ରଦେଶର ସାମନ୍ତ ରାଜାଗଣଙ୍କର ରାଜ୍ୟରେ ନାହିଁ । ଶିକ୍ଷାଦାନ ବିଷୟରେ ଆୟର ଅନୁପାତରେ ଏପରି ଅସଂଗତ ବ୍ୟୟ ବହନ ଦେଖାଯାଏ କି ନା ସନ୍ଦେହର ବିଷୟ । ଆହୁରି ଏକ କଥା ଏହି ଯେ, ଭାରତ ସାମ୍ରାଜ୍ୟର ଅନେକ ପ୍ରତିଷ୍ଠାପନ୍ନ ନଗରରେ ମଧ୍ୟ ବାମଣ୍ଡାର ନାଗରିକ ଜୀବନର ସୁଖ ସଂଭୋଗର ସୁବିଧା ଅଛି କି ନା, ସେହି ବିଷୟରେ ସନ୍ଦେହ ଅଛି । ବାମଣ୍ଡାର ବିଦ୍ୟାଳୟ, ବାମଣ୍ଡାର ସଭା ସମିତି, ବାମଣ୍ଡାର ବିଦ୍ୟାଚର୍ଚ୍ଚା, ବଙ୍ଗ ଦେଶର ଅନେକ ଜିଲ୍ଲାର ରାଜକୀୟ କେନ୍ଦ୍ର ସ୍ଥଳରେ ମଧ୍ୟ ଅନୁକରଣ ଯୋଗ୍ୟ ଏପରି ଏକ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧନରେ ନିଯୁକ୍ତ । ମହଦନ୍ତଃକରଣ ବିଶିଷ୍ଟ ବ୍ୟକ୍ତିଙ୍କର ମହାପ୍ରାଣର ମର୍ଯ୍ୟାଦା ବୃଦ୍ଧି କଳ୍ପେ ଆମେ ମୁକ୍ତ ହୃଦୟ ହେଲେ, ଦେଶ ଓ ଦଶର କଲ୍ୟାଣ ହେବ, ସନ୍ଦେହ ନାହିଁ । ଆଉ ବାମଣ୍ଡାର ଉତ୍ତର ଦକ୍ଷିଣ ପୂର୍ବ ଦିଗରେ ସ୍ଥିତି ବହୁ ସଂଖ୍ୟକ ଦେଶୀୟ କ୍ଷୁଦ୍ର ବୃହତ୍ ରାଜାମାନେ ଓ  ତଦୀୟ କର୍ମଚାରୀବୃନ୍ଦ ବାମଣ୍ଡା ପ୍ରତି ଈର୍ଷାର ଦୃଷ୍ଟିପାତ ନକରି, ଏହାର ଆଦର୍ଶରେ ନିଜ ନିଜ ଉନ୍ନତି ସାଧନରେ ରତ ହେଲେ, ଭାରତର ଏକ ସୁବିସ୍ତୀର୍ଣ୍ଣ ଭୂଭାଗର ଆଭ୍ୟନ୍ତରୀଣ ପରିବର୍ତ୍ତନ ଓ ଉନ୍ନତି କିୟତ ପରିମାଣରେ ସହଜ ସାଧ୍ୟ ହୋଇପାରିବ । ଇତର ଜୀବନ ଗୌରବାନୁଭବ ଅପେକ୍ଷା, ଉନ୍ନତ ଜୀବନର ଆଦର୍ଶ ତଳେ ଲୋଟି ପଡ଼ିବା ଯେ ଅଶେଷ  କଲ୍ୟାଣ ଜନନୀ ଆମ ଦେଶର ଲୋକମଣ୍ଡଳୀ କ'ଣ ଏହି ମହାସତ୍ୟ ଅନୁଭବ କରିବାକୁ ଶିଖିବେ ନାହିଁ ? ଏକ ଦିଗରେ ପରିବେଷ୍ଟିତ ସୁରସଭାରେ ସୁରାପାତ୍ର ହସ୍ତେ ନର୍ତ୍ତନ, ଆଉ ଏକ ଦିଗରେ ଚରିତ୍ର ଶୋଭାରେ ରାଜସିଂହାସନ ଅଳଂକୃତ କରି ଓ ଦେହର ଶୋଣିତ ବିନ୍ଦୁପାତ କରି ଜନସାଧାରଣଙ୍କର କଲ୍ୟାଣ ସାଧନ,



Digitized by srujanika@gmail.com

ଉଭୟରୁ କେଉଁଟା ମାନବର ଆଦର୍ଶ, ତାହା କ'ଣ କହିଦେବାକୁ ପଡ଼ିବ ? ଅବଶ୍ୟ ମାନମନ୍ଦିର ପରିଶୋଭିତ ବିଜ୍ଞାନଗାରର ଦ୍ୱାରୋଦ୍‌ଘାଟନ ପାଇଁ ଦଣ୍ଡାୟମାନ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ହିଁ ଯେ ଦେଶୀ ରାଜନ୍ୟବର୍ଗଙ୍କ ପୂଜାର ଯୋଗ୍ୟ ଆଦର୍ଶ, କିଏ ବା ସ୍ୱୀକାର ନ କରିବ ? ତେଣୁ ମନେ ହୁଏ, ଅଧୁନା ବାମଣ୍ଡାର ରାଜସଂସାରରେ ରାଜା ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନଦେବଙ୍କର ଅନୁଷ୍ଠିତ ନିତ୍ୟ ନୂତନ ଉନ୍ନତି ସଂଗେ ସାର୍ ବାସୁଦେବଙ୍କର ଜୀବନ୍ତ ଚିତ୍ର ଅଧିକତର ପରିସ୍ଫୁଟ ହେବ ।



---

**ପାଦଟୀକା**

(୧) ଷ୍ଟେଟ୍ କର୍ମଚାରୀ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାଶଗୁପ୍ତ ।

(୨) Raja Sudhal Deb is a throughly compitent and enlightened ruler,not only has he himself done a great deal to improve his state,but by giving his sons the excellent education both in English and vernacular, he has done his best to secure the future prosperity of his peoples. (1892 .H.H.Priest)

(୩) ରାୟ ରାଧାନାଥ ରାୟ ବାହାଦୁର ।

(୪) ଅର୍ଚ୍ଚିତା ତସ୍ୟ କୌଶଲ୍ୟା ପ୍ରିୟା କୈକୟବଂଶଜା-ରଘୁବଂଶ ।

(୫) "I think him entitled to cordial recognition for the great progress, which Bamra has made under his rule, there are very few chiefs even in other parts of India who, with such small revenues have effected so much for improvement of their states."

(Sd) H.H. Priest

Political Agent



Digitized by srujanika@gmail.com

## ଅଷ୍ଟମ ଅଧ୍ୟାୟ

# ସାହିତ୍ୟ ସେବା, ମୁଦ୍ରାଯନ୍ତ୍ର ଓ ସମ୍ବାଦପତ୍ର ପ୍ରତିଷ୍ଠା

ଛତ୍ରିଶଗଡ଼ର ରାଜାମାନଙ୍କର ମାତୃଭାଷା ଏକ ନୁହେଁ । କେତେକ ରାଜ୍ୟରେ ହିନ୍ଦୀ ଭାଷା ପ୍ରଚଳିତ । ଆଉ ରାୟପୁର, ବିଳାସପୁର, ସମ୍ବଲପୁର ଅଞ୍ଚଳର, ଅର୍ଥାତ୍ ମଧ୍ୟ-ପ୍ରଦେଶର ପୂର୍ବୋତ୍ତର ଅଞ୍ଚଳର ରାଜନ୍ୟବର୍ଗ ଓ ଇତର ଭଦ୍ର ଜନମଣ୍ଡଳୀଙ୍କ ମାତୃଭାଷା ଓଡ଼ିଆ । ସୁତରାଂ ଭାଷା ହିସାବରେ ଛତିଶଗଡ଼ର କେତେକ ଅଂଶ ଓଡ଼ିଶାର ଅନ୍ତର୍ଭୁକ୍ତ । କାମ ଦାମରେ, ଆଚାର ବ୍ୟବହାରରେ ରୀତିନୀତି ବିଷୟରେ ଓଡ଼ିଶାର ସାଧାରଣ ଭଦ୍ର ସମାଜ, ଓଡ଼ିଶାର ଗଡ଼ଜାତର ରାଜନ୍ୟବର୍ଗ ଓ ମଧ୍ୟପ୍ରଦେଶର ପୂର୍ବୋତ୍ତର ଅଞ୍ଚଳର ଜନମଣ୍ଡଳୀ ଏକ ପ୍ରକାର ସାମାଜିକ ଶାସନରେ ଶାସିତ କୁହାଯାଇପାରେ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ଅଭ୍ୟୁଦୟ ପୂର୍ବେ ଏହି ସମଗ୍ର ପ୍ରଦେଶର ବିଶେଷ ଭାବରେ ଗଡ଼ଜାତର ଲିଖିତ ଓ କଥିତ ଭାଷାରେ କୌଣସି ପାର୍ଥକ୍ୟ ନ ଥିଲା । ଭାଷାର ବିଶୁଦ୍ଧତା ଓ ସୌଷ୍ଠବ ନଥିଲା । ସାଧାରଣଙ୍କ ବଙ୍ଗଦେଶରେ ରାଜା ରାମମୋହନ ରାୟଙ୍କର ଅଭ୍ୟୁଦୟ ପୂର୍ବେ ଯେ ଏକ ପ୍ରକାର ଲିଖିତ ବଙ୍ଗଭାଷା ଏ ଦେଶରେ ପ୍ରଚଳିତ ଥିଲା, ସର୍ବପ୍ରଥମ ବିଦ୍ୟାସାଗର ମହାଶୟଙ୍କ ରଚିତ, ମୁଦ୍ରିତ ଓ ପ୍ରକାଶିତ 'ବେତାଳ ପଞ୍ଚବିଂଶତି' ଓ ପରେ ପ୍ୟାରୀଚାନ୍ଦ ମିତ୍ରଙ୍କର 'ଆଲୋଲେର୍ ଘରେର ଦୁଲାଲ୍' ଯେଉଁ ପରିବର୍ତ୍ତନ ଆନୟନ କରିଅଛି, ସେହି ଅତ୍ୟାଶ୍ଚର୍ଯ୍ୟ ପରିବର୍ତ୍ତନର ପୂର୍ବ ଯୁଗରେ, ବଙ୍ଗର ଅସଂଲଗ୍ନ, ଅସଂପୂର୍ଣ୍ଣ ଓ କିମ୍ଭୁତକିମାକାର କଥିତ ଓ ଲିଖିତ ଭାଷାପରି ହୀନ ଓ ଦୈନ୍ୟଦଶାପନ୍ନ ଓଡ଼ିଆ ଭାଷା, ସମଗ୍ର ଓଡ଼ିଶାର ଓ ଗଡ଼ଜାତର ମାତୃଭାଷା ଥିଲା ଏବଂ ସ୍ଥାନୀୟ ଲୋକମଣ୍ଡଳୀ ଭିନ୍ନ, ଅନ୍ୟାନ୍ୟ ପ୍ରଦେଶର ଲୋକଙ୍କ ପକ୍ଷରେ ତାହା ଏକାବେଳକେ ଅବୋଧ୍ୟ ହିଁ ଥିଲା । ଏହିପରି ଅବସ୍ଥାପନ୍ନ ଦେଶର ମାତୃଭାଷାର ସେବା କ୍ଷେତ୍ରରେ, ରାଜା ସାର୍ ବାସୁଦେବଙ୍କର ସମସାମୟିକ କେତେକ ମହାତ୍ମାଙ୍କର ଆବିର୍ଭାବ ଫଳରେ ଇଂରେଜ ଅଧିକୃତ ଓଡ଼ିଶାର



Digitized by srujanika@gmail.com

ରାଜଧାନୀ କଟକ ନଗରୀରେ ଓଡ଼ିଶା ଭାଷାର ସାମାନ୍ୟତର ଉନ୍ନତିର ଲକ୍ଷଣ ଦେଖା ଦେଇଥିଲା । ଏହି ସାମାନ୍ୟତର ଉନ୍ନତିର ସୂଚନାକାଳରେ ବାମଣ୍ଡାଧିପତି ରାଜା ସାର୍ ବାସୁଦେବ ସୁଢ଼ଳଦେବ ମାତୃଭାଷାର ପରିଚର୍ଯ୍ୟାରେ ବଦ୍ଧପରିକର ହୁଅନ୍ତି । ତେଣୁ ଓଡ଼ିଶାର ସାହିତ୍ୟ ସେବା କ୍ଷେତ୍ରରେ ବାସୁଦେବ ଅକ୍ଷୟକୀର୍ତ୍ତି ସଂପନ୍ନ ସୁସନ୍ତାନ ।

୧୮୮୬ ଖ୍ରୀଷ୍ଟାବ୍ଦରେ ରାଜା ବାସୁଦେବ ସମଗ୍ର ଓଡ଼ିଶାର୍ ସମ୍ୟକ୍ କଲ୍ୟାଣ ମାନସରେ ବାମଣ୍ଡାର ରାଜଧାନୀରେ 'ଜଗନ୍ନାଥ ବଲ୍ଲଭ' ନାମକ ଏକ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା କରନ୍ତି, ଏବଂ ୧୮୮୭ (୧୮୮୯) ଖ୍ରୀଷ୍ଟାବ୍ଦରେ 'ସମ୍ବଲପୁର ହିତୈଷିଣୀ' ନାମରେ ଏକ ସାପ୍ତାହିକ ସମ୍ବାଦପତ୍ରର ପ୍ରଚାର ଆରମ୍ଭ କରନ୍ତି । ରାଜା ସ୍ୱୟଂ ପୃଷ୍ଠପୋଷକ ଏବଂ ପରିଚାଳକ ରୂପେ ଏହିଁ ପତ୍ରିକାର ସାହିତ୍ୟିକ ସଂପଦ ଓ ସମ୍ମାନ ବୃଦ୍ଧି କରିବାରେ ପ୍ରାଣପଣେ ଚେଷ୍ଟା କରିବାରେ ଲାଗିଲେ । ତାଙ୍କର ଏହି କାର୍ଯ୍ୟରେ, ସର୍ବପ୍ରଥମ ଗଣେଶ୍ୱର ପଟ୍ଟନାୟକ, ପରେ ଦୀର୍ଘକାଳ ବ୍ୟାପୀ ସହକାରୀ ଥିଲେ ପତ୍ରିକା ସଂପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । ବର୍ତ୍ତମାନ ବାମଣ୍ଡାଧିପତି ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ପିତୃକୀର୍ତ୍ତି ମୁଦ୍ରଣଯନ୍ତ୍ର ଓ 'ସମ୍ବଲପୁର ହିତୈଷିଣୀ' ସଂପୂର୍ଣ୍ଣ ସଜୀବ ଅବସ୍ଥାରେ ରକ୍ଷାକରି ଅକ୍ଷୟ ଯଶଅର୍ଜନ କରୁଅଛନ୍ତି ଏହି ପତ୍ରିକାର ପ୍ରଚାର ହେବା ଫଳରେ ଓଡ଼ିଶାର ସାହିତ୍ୟିକ ଉନ୍ନତିର କ୍ଷେତ୍ରରେ ଯୁଗାନ୍ତର ଘଟି ଯାଇଅଛି ।

'ସମ୍ବଲପୁର ହିତୈଷିଣୀ'ରେ ସମଗ୍ର ଓଡ଼ିଶାର ପ୍ରାଚୀନ ଗୌରବ ଗାଥାର ଆଲୋଚନା ଦ୍ୱାରା, ଅପେକ୍ଷାକୃତ ସଂଗତିପନ୍ନ ଶିକ୍ଷିତ ଜନଗଣଙ୍କ ମଧ୍ୟରେ ଗଡ଼ଜାତର ରାଜନ୍ୟବର୍ଗଙ୍କ ଅନ୍ତରରେ ଆତ୍ମଚିନ୍ତା ଓ ଆତ୍ମମର୍ଯ୍ୟାଦା ଜ୍ଞାନ ସଂଚାର ହେବା ସଂଗେ ସଂଗେ ସ୍ୱଦେଶାନୁରାଗ ଓ ସ୍ୱଦେଶସେବାର ପ୍ରବୃତ୍ତି ଦାନର ଚେଷ୍ଟା ଏକପକ୍ଷରେ, ଅନ୍ୟପକ୍ଷରେ ଦେଶର ତଦାନିନ୍ତନ କାଳରେ ଦୂରବସ୍ଥା ଦୂରକରିବା ପାଇଁ ବିବିଧ ଇଂଗିତ ପ୍ରଦର୍ଶନ ହେଉଥିଲା । ଦେଶରେ ଦସ୍ୟୁବୃତ୍ତି ସହଜ ଥିଲା, ଧନାଗମର ସମସ୍ତ ଉପାୟ ବହୁଦୂରବ୍ୟାପୀ ବିଶାଳକାୟା ଅରଣ୍ୟାନୀର ନିଭୃତ କକ୍ଷରେ ଲୁକ୍କାୟିତ ଥିଲା, ସେହି ସବୁ ତତ୍ତ୍ୱର ଆଲୋଚନା; ବ୍ୟବସାୟ ବାଣିଜ୍ୟର ସମସ୍ତ ପଥ ଚିରରୁଦ୍ଧ ହୋଇଥିଲା । କି ଉପାୟ ଅବଲମ୍ବନ କଲେ ଦେଶରେ ବ୍ୟବସାୟ ବାଣିଜ୍ୟ ସୂତ୍ରେ ଧନାଗମର ସହଜ ପଥ ସୁନିର୍ଦ୍ଦିଷ୍ଟ ହୋଇପାରେ, ଏହିପରି ବିବିଧ ବିଷୟମାନଙ୍କର ଆଲୋଚନା ଦ୍ୱାରା ଓଡ଼ିଶାର ଜନମଣ୍ଡଳୀଙ୍କ ଜ୍ଞାନବୃଦ୍ଧି ଓ ବୁଦ୍ଧିବୃତ୍ତିର ପରିମାର୍ଜିତ କାର୍ଯ୍ୟରେ ହିତୈଷିଣୀ ସପ୍ତାହ ପରେ ସପ୍ତାହ ନାନା ପ୍ରଶ୍ନ, ନାନା ତତ୍ତ୍ୱ ଏବଂ ସେସବୁର ମୀମାଂସା ବକ୍ଷରେ ଧାରଣ କରି ପ୍ରକାଶିତ ହେବାରେ ଲାଗିଲା । ସେହି ସମୟରେ ଓଡ଼ିଶା ଜନସାଧାରଣଙ୍କ ସର୍ବ ବିଷୟକ



Digitized by srujanika@gmail.com

ଅବସ୍ଥାର ନିବନ୍ଧନ, ଓଡ଼ିଶା ବାହାରର ବହୁ ବହୁ ସ୍ଥାନରେ ଉନ୍ନତିର ଯେଉଁ ଖର ପ୍ରବାହ ପ୍ରବାହିତ ଏବଂ ସେଥିପାଇଁ ଜନସାଧାରଣଙ୍କ ଜ୍ଞାନର ପ୍ରସାର ବର୍ଦ୍ଧିତ, ସେହି ଦିଗରେ ଉଦାସ ଉପେକ୍ଷାର ଦୃଷ୍ଟି ଓଡ଼ିଶାର ଆଳସ୍ୟ ଓ ଅକର୍ମଣ୍ୟତା ବୃଦ୍ଧି କରିଚାଲିଥିଲା, ରାଜା ବାସୁଦେବଙ୍କ ପ୍ରେଷିତ ହିତୈଷିଣୀ ସେହି ସ୍ୱଦେଶୀୟ ଆଳସ୍ୟ ଉଦାସୀନତା ଓ ଅକର୍ମଣ୍ୟତାର ମସ୍ତକ ଉପରେ ଲୌହ ମୁଦ୍ଗରର ଆଘାତ ଆରମ୍ଭ କରିଥିଲେ । ହିତୈଷିଣୀ, ପରିଚାଳନା ପଟୁତା ଓ ଲିଖନ ପରିପାଟି ତ୍ୱରିତ ଦେଶରେ ନବଭାବର ସଞ୍ଚାର ସଂଗେ ସଂଗେ ଆତ୍ମନିର୍ଭରଶୀଳତାର ପ୍ରବୃତ୍ତି ବୃଦ୍ଧି କରିବାରେ ଲାଗିଲା ।

ସାର୍ ବାସୁଦେବ ଅତିପ୍ରାଚୀନ ଗଙ୍ଗବଂଶୀୟ ରାଜାହେଲେ ମଧ୍ୟ, ସେ ପ୍ରାଚୀନତ୍ୱର ଅଭିମାନ ଦୂରରେ ରଖି, ରାଜ ପରିବାରରେ, ଆତ୍ମୀୟ ସ୍ୱଜନଙ୍କ ମଧ୍ୟରେ, ପ୍ରଜା ସାଧାରଣଙ୍କ ଭିତରେ, ଅନ୍ୟାନ୍ୟ ଗଡ଼ଜାତ ରାଜ୍ୟର ଜନସାଧାରଣଙ୍କ ସପକ୍ଷରେ ଏବଂ ସମଗ୍ର ଓଡ଼ିଶାର ଲୋକ ସାଧାରଣଙ୍କ ସପକ୍ଷରେ ସମାଜ ସଂସ୍କାର ବିଷୟରେ, ଦୃଷ୍ଟାନ୍ତ ପ୍ରଦର୍ଶନ ପଟୁ, ସଂଗତ ପରିବର୍ତ୍ତନର ପକ୍ଷପାତୀ ବୋଲି ପରିଚିତ ଏବଂ ତାହାଙ୍କ କର୍ତ୍ତୃକ ପୋଷିତ ଓ ପାଳିତ ହିତୈଷିଣୀ ସର୍ବଦା ହିଁ ସମାଜ ସଂସ୍କାରର ସୁସଂଗତ ବଂଶୀବାଦନରେ ନିଯୁକ୍ତ । ବର୍ତ୍ତମାନ ମଧ୍ୟ ସେହି କାର୍ଯ୍ୟର ଗୁରୁତ୍ୱ ସ୍ମରଣରେ 'ସମ୍ବଲପୁର ହିତୈଷିଣୀ' ବିରତ ହୋଇନାହିଁ । ଦେଶରେ ପ୍ରଚଳିତ ନାନାବିଧ କୁପ୍ରଥାର ନିବାରଣ ପାଇଁ, ତାହାଙ୍କର ପରିପୋଷିତ ସମ୍ବାଦପତ୍ର ନିର୍ଭୟରେ ଆଲୋଚନା ଆରମ୍ଭ କରିଥିଲା । ଏହି ସମୟରେ ରାୟ ରାଧାନାଥ ରାୟ ବାହାଦୁର, ରାୟ ମଧୁସୂଦନ ରାଓ ବାହାଦୁର, ରାମନାରାୟଣ ରାୟ, ବିଶ୍ୱନାଥ କର, ଫକୀର ମୋହନ ସେନାପତି, ଭୋଳାନାଥ ସାମନ୍ତରାୟ, ଦାମୋଦର କବିରତ୍ନ, ଗୋବିନ୍ଦଚନ୍ଦ୍ର ମହାପାତ୍ର ଶର୍ମା, ରାମକୃଷ୍ଣ ସାହୁ, ଚିନ୍ତାମଣି ମିଶ୍ର ଶାସ୍ତ୍ରୀ, ମଧୁସୂଦନ ମିଶ୍ର ତର୍କ ବାଚସ୍ପତି, ଯୁବରାଜ ସଚ୍ଚିଦାନନ୍ଦ, ରାଜକୁମାର ବଳଭଦ୍ର ଦେବ, ପଣ୍ଡିତ ରତ୍ନାକର ଶର୍ମା, ଦୀନବନ୍ଧୁ ପ୍ରଧାନ, କରୁଣାକର ସାହୁ, ରସାନନ୍ଦ ପ୍ରଧାନ ପ୍ରଭୃତି ବହୁ ବହୁ ସାହିତ୍ୟିକ, ହିତୈଷିଣୀର କଳେବରର ସୌନ୍ଦର୍ଯ୍ୟ ସଂପାଦନରେ ନିଯୁକ୍ତ ଥିଲେ । ଏହି ଲେଖକ ସଂପ୍ରଦାୟରୁ ଅନେକେ ବର୍ତ୍ତମାନ ଲୋକାନ୍ତରିତ ଓ ଅବସରପ୍ରାପ୍ତ । ଏହିପରି ଭାବରେ ସକଳ ବିଷୟରେ ଉତ୍ତମତର ଓ ଉନ୍ନତତର ଆଲୋଚନାରେ ସମ୍ବଲପୁର ହିତୈଷିଣୀର କଳେବର ପୂର୍ଣ୍ଣ ହେବାରେ ଲାଗିଲା, ଗଞ୍ଜାମଠାରୁ ବାଲେଶ୍ୱର ଓ ମୟୂରଭଞ୍ଜ ପର୍ଯ୍ୟନ୍ତ, ରାୟପୁର ବିଳାସପୁର ଓ ସମ୍ବଲପୁରଠାରୁ ସମୁଦ୍ରତଟ ପର୍ଯ୍ୟନ୍ତ, ସମଗ୍ର ଓଡ଼ିଶାରେ ହିତୈଷିଣୀର ହିତ ସାଧନ ଚେଷ୍ଟାର ଦୁନ୍ଦୁଭିଧ୍ୱନି ନିନାଦିତ ହେବାରେ ଲାଗିଲା । ସେତେବେଳେ ହିତୈଷିଣୀର ସେହି ମହାପ୍ରତାପ ଯୁଗରେ ଦୈବକ୍ରମେ ଏକ ସୁବୃହତ୍ ସାହିତ୍ୟିକ କଳହର ସୂତ୍ରପାତ ହେଲା ।



Digitized by srujanika@gmail.com

ସାହିତ୍ୟ ସେବାର ପ୍ରାଥମିକ ଯୁଗରେ ସବୁ ଦେଶରେ ଯେଉଳି, ଓଡ଼ିଶାରେ ମଧ୍ୟ ଠିକ୍ ସେହିପରି ସାହିତ୍ୟସେବୀ ଗଣଙ୍କର କେହି କେହି ବୀଣାପାଣିଙ୍କର ପୂଜାରେ ଇତର ଭାବର ଅବତାରଣାର ଲୋଭ ସମ୍ବରଣ କରିପାରି ନାହାନ୍ତି । ବଙ୍ଗ ଦେଶରେ ବ୍ରାହ୍ମସମାଜ ପ୍ରତିଷ୍ଠା କଲେ ଓ ସର୍ବବିଧ ସମାଜ ସଂସ୍କାର କାର୍ଯ୍ୟ ଅନୁଷ୍ଠାନରେ, ରାଜା ରାମମୋହନ ରାୟଙ୍କ ବିରୁଦ୍ଧରେ ଗୌରୀଶଙ୍କର ଭଟ୍ଟାଚାର୍ଯ୍ୟ ଲେଖନୀ ଧାରଣ କରି ଅତି କୁତ୍ସିତ ଭାବରେ ସମାଜ ସଂସ୍କାର ଓ ବ୍ରହ୍ମପୂଜା ବିରୁଦ୍ଧରେ ବାଦ ପ୍ରତିବାଦ ଚଳାଇଥିଲେ । ଗୌରୀଶଙ୍କରଙ୍କର ଆକ୍ରମଣର ଫଳ ସ୍ଥାୟୀ ହୋଇନାହିଁ । ରାଜା ରାମମୋହନ କାର୍ଯ୍ୟ ହିଁ ପ୍ରତିଷ୍ଠା ଲାଭ କରି ଦୀର୍ଘସ୍ଥାୟୀ ହୋଇଅଛି; କିନ୍ତୁ ସେହି ଆକ୍ରମଣ ହେତୁ, ଉଭୟ ପକ୍ଷର ପକ୍ଷ ସମର୍ଥନରେ, ବଙ୍ଗ ଭାଷା ଏକ ପାଦ ଅଗ୍ରସର ହୋଇଥିଲା । ସକଳ ଦେଶର ସକଳ ଲିଖିତ ବାକ୍‌ବିତଣ୍ଡାର ଫଳ ଏହିପରି ହୋଇଥାଏ । ସତ୍ୟପୁଷ୍ଟ ପକ୍ଷ ହିଁ ସ୍ଥାୟୀ ପ୍ରତିଷ୍ଠା ଲାଭ କରେ, ଅପର ପକ୍ଷ ସାମୟିକ କାର୍ଯ୍ୟ ସାଧନ କରି ଅଦୃଶ୍ୟ ହୋଇଥାଏ । ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ସଂଘଟିତ କଳହ ମଧ୍ୟ ଏହିପରି ସାମୟିକ ମନୋମାଳିନ୍ୟର ଲୀଳାକ୍ଷେତ୍ରରେ ପରିଣତ ହୁଏ ଓ ସେଥିପାଇଁ କଟକରୁ ପ୍ରକାଶିତ 'ଉତ୍କଳ ଦୀପିକା' ଏବଂ ବାମଣ୍ଡାରୁ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ' ଏହି ଦୁଇ ସମ୍ବାଦପତ୍ରର ଲେଖକଗଣ ସଂଗ୍ରାମର ରଙ୍ଗଭୂମିରେ ଅବତୀର୍ଣ୍ଣ ହୋଇଥିଲେ ।

ଘଟଣା ଏହିପରି-ବିଦ୍ୟାଳୟ ସମୂହର ଡେପୁଟି ଇନ୍‌ସପେକ୍ଟର ବାବୁ ପାରୀମୋହନ ସେନ ନିମ୍ନ ଉଚ୍ଚ ପ୍ରାଇମେରୀ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରଗଣଙ୍କୁ ପାରିତୋଷିକ ଦେବା ପାଇଁ ସବୁ ପୁସ୍ତକ କ୍ରୟ କରନ୍ତି ଏବଂ ବାଳକମାନଙ୍କୁ ଉପହାର ଦିଅନ୍ତି, ସେହି ପୁସ୍ତକ ଭିତରେ ଘୁମୁସରର ସ୍ୱର୍ଗୀୟ ଅନ୍ୟତମ ରାଜକବି ଉପେନ୍ଦ୍ର ଭଞ୍ଜ ମହାଶୟଙ୍କର ରଚିତ ଆଦିରସଦୁଷ୍ଟ କବିତା ପୁସ୍ତକ ଥିଲା । ଘଟଣା ମାତ୍ର ଏତିକି । ଏହି କଥାକୁ ତଳେଇ ଦେଖିଲେ, ଅବଶ୍ୟ ହିଁ ପ୍ରଧାନଗଣ ବୁଝିପାରିଥାନ୍ତେ ଯେ, କାବ୍ୟ ଭାବରେ ସେହି ଗ୍ରନ୍ଥ ଯେତେ ଉତ୍ତମ ହେଉ ନା କାହିଁକି, ତାହା ସୁକୁମାରମତି ବାଳକଗଣଙ୍କୁ ଉପହାର ଦେବା ଭୁଲ୍ ହୋଇଅଛି ବୋଲି ଭବିଷ୍ୟତରେ ସାବଧାନ ହେବାର ପ୍ରସ୍ତାବ ପ୍ରଚାର କରିଥିଲେ ହେଁ ସଂଗତ ହୋଇଥାନ୍ତା; କିନ୍ତୁ ବେଳେ ବେଳେ ପରିଣତ ବୁଦ୍ଧିର ମଧ୍ୟ ଭ୍ରାନ୍ତି ଜନ୍ମିଥାଏ । ଏଠାରେ ମଧ୍ୟ ତାହାହିଁ ହେଲା । ପ୍ୟାରୀବାବୁଙ୍କର ଏହି କାର୍ଯ୍ୟର ପକ୍ଷ ନେଇ 'ଇନ୍ଦ୍ରଧନୁ' ନାମକ ଏକ ସମାଲୋଚନା ପତ୍ରରେ ଉତ୍କଳ ଦୀପିକାର ପକ୍ଷ ଏହି କାର୍ଯ୍ୟର ପ୍ରବଳ ସ୍ୱପକ୍ଷତା ଆରମ୍ଭ କଲେ । ସଂଗେ ସଂଗେ 'ବିଜୁଳି' ନାମକ ସମ୍ବଲପୁର ହିତୈଷିଣୀ ଦଳ ଏହିପରି କାର୍ଯ୍ୟର ପୋଷକତାର ପ୍ରତିବାଦ ପ୍ରକାଶ କଲେ । କ୍ରମେ ଓଡ଼ିଶାର କାବ୍ୟାକାଶ ସଂଗେ ସଂଗେ ସମଗ୍ର ସାହିତ୍ୟାକାଶ



Digitized by srujanika@gmail.com

ଘନଘଟାଛନ୍ନ ହୋଇ ପଡ଼ିଲା । ଦଳାଦଳିର ଆଲୋଡ଼ନରେ ଗରଳ ଉତ୍ପନ୍ନ ହେବାରେ ଲାଗିଲା । ସେହି ସମୟରେ ଓଡ଼ିଶାର ସାହିତ୍ୟ ସେବା କଳ୍ପେ ଅଳ୍ପ କେତେଜଣ ମାତ୍ର ଖ୍ୟାତନାମା ବ୍ୟକ୍ତି ଦୁଇଟି ଦଳରେ ବିଭକ୍ତ ହୋଇ ଈର୍ଷାର ଅନଳରେ ହିଂସାପୂର୍ଣ୍ଣ ବ୍ୟକ୍ତିଗତ ବିଦ୍ୱେଷର ଘୃତାହୁତି ଦାନ କରି କଳହକୁ ପ୍ରବଳତର କରି ତୋଳିଲେ ।

ଏହି ଐତିହାସିକ କଳହରେ କଟକର 'ଉତ୍କଳ ଦୀପିକା'ର ସଂପାଦକ ଗୌରୀଶଙ୍କର ରାୟ, ଦାମୋଦର ପଟ୍ଟନାୟକ, ସୁଦାମ ଚନ୍ଦ୍ର ନାୟକ, ଗୋପାଳ ବଲ୍ଲଭ ଦାସ ପ୍ରଭୃତି ମହୋଦୟଗଣ ତଦାନିନ୍ତନ ସ୍ଥାନୀୟ ରାଜକର୍ମଚାରୀ ଓ ରାଜପୁରୁଷଗଣ କର୍ତ୍ତୃକ ପୃଷ୍ଟପୋଷିତ, ସେହି ଶକ୍ତିରେ ପ୍ରବଳ ହୋଇ 'ଇନ୍ଦ୍ରଧନୁ' ନାମରେ ଏକ ସମାଲୋଚନା ପତ୍ରିକା ପ୍ରକାଶ କରନ୍ତି । ସମ୍ବଲପୁର ହିତୈଷିଣୀ ଦଳ ପ୍ରତିପକ୍ଷ ରୂପେ ଛିଡ଼ା ହୋଇ 'ବିଜୁଳି' ନାମରେ ଆତ୍ମ ପରିଚୟ ଦିଅନ୍ତି । ସେହି ଦଳରେ ରାଜପକ୍ଷରେ ରାମ ନାରାୟଣ ରାୟ, ସମ୍ବଲପୁର ହିତୈଷିଣୀର ପରବର୍ତ୍ତୀ ସଂପାଦକ ନୀଳମଣି ବିଦ୍ୟାରତ୍ନ, କଟକ ଟ୍ରେନିଂ ସ୍କୁଲ୍‌ର ହେଡ୍‌ମାଷ୍ଟର ଚନ୍ଦ୍ରମୋହନ ମହାରଣା, ଓଡ଼ିଶାର ସ୍କୁଲ୍ ସମୂହର ଇନ୍‌ସପେକ୍ଟର ରାଧାନାଥ ରାୟ ଓ ମଧୁସୂଦନ ରାଓ । ଏହି 'ବିଜୁଳି' ଦଳର ଶେଷୋକ୍ତ ଦୁଇ ମହାତ୍ମା ଉତ୍ତରକାଳରେ ଉତ୍କଳ ସାହିତ୍ୟ ସଂସାରରେ ଅସାମାନ୍ୟ ପ୍ରତିଷ୍ଠା ଓ କବି ସମ୍ମାନ ଅର୍ଜନ କରି ସ୍ୱର୍ଗାରୋହଣ କରିଛନ୍ତି । ବାଦ-ପ୍ରତିବାଦରେ ଜୟ ପରାଜୟ ଅନିବାର୍ଯ୍ୟ । ଏକ ପକ୍ଷରେ ଜୟ ଓ ଅପର ପକ୍ଷରେ ପରାଜୟ ତ ସ୍ୱୀକାର କରିବାକୁ ହେବ । ପ୍ରାଚୀନକାଳରେ ବଙ୍ଗ ଦେଶର ସାହିତ୍ୟ କ୍ଷେତ୍ରରେ ଗୌରୀଶଙ୍କର (ଗୁଡ଼୍‌ଗୁଡେ ଭଟ୍ଟାଚାର୍ଯ୍ୟ), ରାଜା ରାମମୋହନ ରାୟଙ୍କୁ ଶାସ୍ତ୍ର ବିଚାରରେ ଯୁକ୍ତିତର୍କରେ ଅତିକ୍ରମ କରି ନପାରି ନ୍ୟାୟପଥ ପରିହାର ପୂର୍ବକ ବ୍ୟକ୍ତିଗତ ଆକ୍ରମଣ ଓ ଅଯଥା ନିନ୍ଦାମୂଳକ ଲେଖନୀ ନିୟୋଗ କରିଥିଲେ । ଆଉ ଏକ ପ୍ରଚଳିତ କଥା ଅଛି, 'ହାରି ଯାଉଥିବା ବ୍ୟକ୍ତି ଅଧିକ ଗାଳି ଦେଇଥାଏ' କାରଣ ପରାଜୟର ପରାକ୍ରମ ଗାଳିଦେବାହିଁ ଭଲ ମାନେ ଏବଂ ସାଧାରଣ ଲୋକ ସେହି ପକ୍ଷର ପରାଜୟ ସ୍ୱୀକାର କରି ମଧ୍ୟ ଏହି ଗାଳିମନ୍ଦରେ ଆମୋଦ ଉପଭୋଗ କରିଥାନ୍ତି । ଏହି ସାହିତ୍ୟ ଯୁଦ୍ଧରେ ସେହି କାଳର ଓଡ଼ିଶାର ଜଏଣ୍ଟ ଇନିସ୍‌ପେକ୍ଟର ପରେ ଇନ୍‌ସପେକ୍ଟର ଓ ତତ୍-ପରବର୍ତ୍ତୀ କାଳରେ ବର୍ଦ୍ଧମାନ ବିଭାଗର ଇନିସ୍‌ପେକ୍ଟର ରାୟ ରାଧାନାଥ ରାୟ ବାହାଦୁର ରାଜପକ୍ଷେ ଥାଇ 'ବିଜୁଳି'ର ଶକ୍ତି ବୃଦ୍ଧି କଳ୍ପେ ପ୍ରାଣପଣ କରିଥିଲେ । ତେଣୁ ସେହି କଳହର ଶେଷ କେନ୍ଦ୍ରସ୍ଥଳ ହୋଇ ପଡ଼ିଲେ, ରାଧାନାଥ ରାୟ, ଅର୍ଥାତ୍ ତାଙ୍କର ପୂର୍ବବର୍ତ୍ତୀ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଏବଂ ରାଧାନାଥ ରାୟ ଏ ଦୁଇଙ୍କ ମଧ୍ୟରେ କବି ଭାବରେ କିଏ ଶ୍ରେଷ୍ଠ ? ଶେଷ ପର୍ଯ୍ୟନ୍ତ କଳହ ଏହା ଉପରେ ହିଁ ପ୍ରତିଷ୍ଠିତ ହୋଇଥିଲା । କବି ସକଳ ରସର ଅବତାରଣାରେ



Digitized by srujanika@gmail.com

ସକ୍ଷମ ହେବେ ଏବଂ କବିଙ୍କର କାବ୍ୟ ରଚନା ଆଦିରସର ଲେଶମାତ୍ର ସ୍ପର୍ଶ କରିବ ନାହିଁ, ଏହିପରି ନିର୍ଦ୍ଧାରଣ କୌଣସି ଦିନ ହୋଇନାହିଁ, ହୋଇପାରେ ନାହିଁ । ସେହିପରି ରଚିସଂପନ୍ନ ଦଳେ ବ୍ୟକ୍ତି ହୋଇପାରନ୍ତି କିନ୍ତୁ ସେହିପରି ଦଳେ କବି ହେବା ଅସଂଭବ । କବିଙ୍କର କାବ୍ୟ ରଚନାର ସ୍ୱାଧୀନତା ନଥିଲେ, ଜେଲ୍‌ଖାନାର କୟେଦୀମାନଙ୍କର ସମାଜ ସମାଲୋଚନା ପରି ହୋଇପଡ଼େ । ସୀମାନିର୍ଦ୍ଦିଷ୍ଟ ଗଣ୍ଡି ମଧ୍ୟରେ ଅବସ୍ଥିତ ଓ ଶାସିତ ବ୍ୟକ୍ତିଙ୍କର ସ୍ୱାଧୀନ ଚିନ୍ତାର ସ୍ଥାନ କେଉଁଠାରେ ? ସେହି ବ୍ୟକ୍ତିଙ୍କର ପ୍ରତିଭା ଥିଲେ ମଧ୍ୟ, ତାହାଙ୍କ ଖର୍ବତା ସାଧନ ହୁଏ । ତାହାଙ୍କର ଦ୍ୱାରା ଜନ ସମାଜର ସକଳ ଦିଗର ସକଳ ତତ୍ତ୍ୱର ଅନ୍ତର୍ନିହିତ ରସସଂଗ୍ରହର ସୁଯୋଗ ନ ଥିବାରୁ, ସେହି କବିଙ୍କ କାବ୍ୟ ରଚନା ଅଙ୍ଗହୀନ ହୋଇପଡ଼େ । ରଚନା ମଧ୍ୟରେ ପଦେ ପଦେ ଶାସନତନ୍ତ୍ରର ଦଣ୍ଡ-ଭୟର ପରିଚୟ ମିଳେ; କିନ୍ତୁ 'ଇନ୍ଦ୍ରଧନୁ' ପକ୍ଷ ରସର ବର୍ଣ୍ଣନାରେ ସ୍ୱେଚ୍ଛାଚାରର ପକ୍ଷପାତୀ ଏବଂ 'ବିଜୁଳି' ଦଳ ସ୍ୱେଚ୍ଛାଚାରିତାର ନିବାରଣରେ ଓ ସର୍ବବିଧ ରସତତ୍ତ୍ୱର ମର୍ଯ୍ୟାଦା ରକ୍ଷାରେ ବଦ୍ଧପରିକର ।

କଳହର ସୂତ୍ରପାତ ହୋଇଥିଲା ଛାତ୍ରମାନଙ୍କୁ ପାରିତୋଷିକ ବିତରଣ କରାଯାଇଥିବା ପୁସ୍ତକରେ ଆଦିରସାତ୍ମକ କାବ୍ୟ ସ୍ଥାନ ଲାଭ ହେତୁ । ସେହି ଛାତ୍ରମାନେ ପୁଣି ନିମ୍ନ ଓ ଉଚ୍ଚ ପ୍ରାଥମିକ ପରୀକ୍ଷା ଦେଇଥିବା ଛାତ୍ରଦଳ । ଏପରି ସ୍ଥଳେ ସର୍ବତ୍ର ହିଁ ତ ଏହା ନିଷିଦ୍ଧ କାର୍ଯ୍ୟ, ଏଥିରେ ଏଭଳି କଳହର ସୂତ୍ରପାତ ହେବା ଯଥେଷ୍ଟ କାରଣ ଦେଖାଯାଏ ନାହିଁ । ପୁଣି ସେହି ସମୟରେ ଡେପୁଟି ଇନ୍‌ସପେକ୍ଟର ପ୍ୟାରୀବାବୁ ଓଡ଼ିଶାର ଇନ୍‌ସପେକ୍ଟର ରାଧାନାଥ ବାବୁଙ୍କର ଅଧୀନ କର୍ମଚାରୀ; କିନ୍ତୁ ତାହା ହେଲେ କ'ଣ ହେବ, ଦଳକନ୍ଦଳର ପ୍ରଭାବରେ ସବୁକିଛି ସମ୍ଭବ ହୋଇପାରେ । ଓଡ଼ିଶାର ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଆଲୋଚନାରେ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟ ସବୁର ଶ୍ରେଷ୍ଠତ୍ୱ ପ୍ରତିପାଦନରେ ଦୀପିକାର ପକ୍ଷ ଯେପରି ପ୍ରବଳଭାବରେ ଆଲୋଚନା ଆରମ୍ଭ କଲେ, ଉପେନ୍ଦ୍ରଭଞ୍ଜଙ୍କର ଶିଷ୍ୟସ୍ଥାନୀୟ ସୁରୁଚି ଓ ବହୁ ଭାବସଂପଦ ସଂପନ୍ନ ରାଧାନାଥ ରାୟଙ୍କର ସ୍ୱପକ୍ଷତାରେ ହିତୈଷିଣୀ ଦଳ ବିଜୁଳିରେ ପୂର୍ଣ୍ଣ ଆଗ୍ରହରେ ଆଲୋଚନା ଆରମ୍ଭ କଲେ । ଏହି ବାଦ ପ୍ରତିବାଦରେ ରାଜପକ୍ଷ ସର୍ବଦାହିଁ ସୁଯୁକ୍ତି ଓ ସୁବିବେଚନାର ପରିଚୟ ଦାନରେ ଯତ୍ନତତ୍ପର ଥିଲେ । ଇନ୍ଦ୍ରଧନୁ ପକ୍ଷ ଯେପରି ଅଶାଳୀନ ଭାଷାରେ ବିଜୁଳି ପକ୍ଷଙ୍କୁ ଆକ୍ରମଣ କରୁଥିଲେ ବିଜୁଳି ପକ୍ଷ ପ୍ରତ୍ୟୁତ୍ତର ଦାନ କାଳରେ ସେହିପରି ଅଶାଳୀନ ଭାବରେ ଆଲୋଚନା କରୁନଥିଲେ; କିନ୍ତୁ ସେହିସବୁ ଅଶାଳୀନ ଆକ୍ରମଣର ଉତ୍ତରଦେବା କାଳରେ ବିଦ୍ରୁପର ସୁତୀକ୍ଷ୍ଣ ଶରଜାଲ ବିସ୍ତାର କରି ଅନେକ ସମୟରେ ପ୍ରତିପକ୍ଷକୁ ବିବ୍ରତ ଓ ବିପନ୍ନ କରି ତୋଳିବାରେ ସକ୍ଷମ ହୋଇଥିଲେ ।



Digitized by srujanika@gmail.com

ତେଣୁ କଳହର ଶେଷରେ ଉଭୟ ପକ୍ଷର ପାଠକମଣ୍ଡଳୀ ସମ୍ବଲପୁର ହିତୈଷିଣୀ ଦଳର ହିଁ ଯୁକ୍ତିର ସାରବତ୍ତା ଅନୁଭବ କରି ବିଜୁଳିର ଦଳକୁ ହିଁ ଜୟମାଲ୍ୟ ପ୍ରଦାନ କରିଥିଲେ ।

କଳହର ଉତ୍ତମ ଫଳ ଏହା ହେଲା ଯେ ଉତ୍କଳ ସାହିତ୍ୟ ଏହା ପୂର୍ବେ ଯେଉଁ ଅବସ୍ଥାରେ ଥିଲା, ଏହି କଳହର ଉତ୍ତେଜନା ହେତୁ, ସେହି ଭାଷା ପ୍ରତି ଦେଶର ଅଧିକାଂଶ ଲୋକଙ୍କର ଏକ ଆଗ୍ରହ ସୃଷ୍ଟି ହେବା ଫଳରେ, ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି ହୋଇଥିଲା । ସାଧାରଣ ଜନତା ଆଗ୍ରହ ସହକାରେ ମାତୃଭାଷାର ସେବାରେ ମନୋନିବେଶ କରିବାରେ ଅଭ୍ୟସ୍ତ ହୋଇଥିଲେ ଏହା ହିଁ ସେହି କଳହର ପରମ ଲାଭ ବୋଲି ସମସ୍ତେ ସ୍ୱୀକାର କରନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟ ଯେ, ଅଳ୍ପଦିନ ମଧ୍ୟରେ ନବ କଳେବର ଧାରଣ କରି ନୂତନ ଶକ୍ତି ସଂଚୟରେ ପାର୍ଶ୍ୱବର୍ତ୍ତୀ ପ୍ରଦେଶର କଥିତ ଓ ଲିଖିତ ଭାଷା ସହିତ ସମକକ୍ଷ ହୋଇପାରିଥିଲା ସକ୍ଷମ, ସେହି ସମୟର ସେହି ସାହିତ୍ୟିକ ଜାଗରଣ ତାହାର ପ୍ରଧାନ କାରଣ ଏବଂ ରାଜା ବାସୁଦେବଙ୍କର ପୃଷ୍ଟପୋଷିତ ଓ ପରିଚାଳିତ ସମ୍ବଲପୁର ହିତୈଷିଣୀ ସାହିତ୍ୟର ପୁଷ୍ଟି ସାଧନରେ ବିଶେଷ ସହାୟତା କରିଥିଲା ସେହି ହିତୈଷିଣୀ ଆଜି ମଧ୍ୟ ଜୀବିତ ଥାଇ ଓଡ଼ିଶାର ଜାତୀୟ ସାହିତ୍ୟ ଶ୍ରୀବୃଦ୍ଧି ସାଧନରେ ସମଭାବରେ ନିଯୁକ୍ତ ରହିଅଛି ।

ସଚରାଚର ଦେଖାଯାଏ, ରାଜ ପରିବାରର ପୁତ୍ର କନ୍ୟାମାନେ ଅଳି ଅର୍ଦ୍ଦଳିରେ ବଢ଼ିଥାନ୍ତି । ଅନେକ ସମୟରେ ଶ୍ରମିକର କାର୍ଯ୍ୟ ଓ ଗୁଣାବଳୀର ପରିଚୟଦାନ କ୍ଷେତ୍ରରେ ରାଜ ପରିବାର ସନ୍ତାନମାନଙ୍କୁ ଅନ୍ୟ ଉପରେ ନିର୍ଭର କରିବାକୁ ପଡ଼ିଥାଏ । ସେମାନେ ସାଧାରଣତଃ ଲମ୍ବଶାର୍ଟ ପଚ୍ଚାବୃତ୍ତ ସୁଶୋଭନ ଦୃଶ୍ୟ ଅକର୍ମଣ୍ୟ ଓ ପରମୁଖାପେକ୍ଷୀ ହୋଇ କାଳଯାପନ କରନ୍ତି । କିନ୍ତୁ ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜପରିବାର ଭିନ୍ନ ଉପାଦାନରେ ଗଠିତ ହୋଇଥିଲା, ତେଣୁ ତାଙ୍କ ରାଜଭବନର ସୂତିକାଗାରରେ ଜନ୍ମ ଗ୍ରହଣ କରି ତାଙ୍କର ପୁତ୍ରକନ୍ୟା ଗଣ ଯେପରି ଶିକ୍ଷା ସୌନ୍ଦର୍ଯ୍ୟରେ ସୁଶୋଭିତ ଏହି ସୂତିକାଗାରରେ ଜନ୍ମ ଗ୍ରହଣକରି ସମ୍ବଲପୁର ହିତୈଷିଣୀ ମଧ୍ୟ ଗେହ୍ଲି ଝିଅ କିମ୍ବା ଅନ୍ତଃସାରଶୂନ୍ୟ ରାଜକୁମାରୀ ପରି ଜନସମାଜରେ ଦିନକପାଇଁ ହେଲେ ବାଚାଳତାର ପରିଚୟ ଦେଇନାହିଁ । ସୁବିଦ୍ୱାନ, ସୁପଣ୍ଡିତ, ସାହିତ୍ୟିକ ରାଜପିତାଙ୍କ କନ୍ୟାପରି ସର୍ବଦା ହିଁ ବିନୟ ସୌଜନ୍ୟ ସହକାରେ ଉଚ୍ଚ ବିଷୟ ସବୁର ଆଲୋଚନାରେ ଆତ୍ମକଳେବର ସଜ୍ଜିତା ହୋଇ ସପ୍ତାହ ପରେ ସପ୍ତାହ ଜନସମାଜରେ ଦର୍ଶନ ଦେଇଅଛି ଏବଂ ଏହି ତିରିଶ ବର୍ଷକାଳ ଜନସାଧାରଣଙ୍କର ସେବାରେ ନିଯୁକ୍ତ ରହି ହିତୈଷିଣୀ ନିଜେ ଧନ୍ୟ ହେବା ସଂଗେ ସଂଗେ ରାଜପିତାଙ୍କର ସମ୍ମାନ ରକ୍ଷା ଓ ମର୍ଯ୍ୟାଦା ବୃଦ୍ଧି କରାଇବାରେ ନିୟତ ଯତ୍ନତତ୍ପର ।

ଆଉ ଏକ କଥା ଏହା ଯେ, ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର କର୍ମପଟୁତା ଗୁଣରେ ବାମଣ୍ଡାର ରାଜଧାନୀ ଦେବଗଡ଼ରେ ବିଦ୍ୟାର୍ଜନ ଓ ଜ୍ଞାନଚର୍ଚ୍ଚାର ଏଭଳି ଏକ



Digitized by srujanika@gmail.com

ପ୍ରବଳ ଆକାଂକ୍ଷାର ସୂଚନା ହୋଇଅଛି ଯେ, ରାଜ ପରିବାରର ପ୍ରତ୍ୟେକେ ହିଁ ଅତ୍ୟାଧିକ ବିଦ୍ୟାଚର୍ଚ୍ଚାପଟୁ ଏବଂ ରାଜ୍ୟ ବାହାରର ଚାରିଦିଗର ସଂବାଦ ସଂଗ୍ରହ ଦ୍ୱାରା ନିଜ ନିଜ ଜ୍ଞାନଭଣ୍ଡାର ପୂର୍ଣ୍ଣ କରିବାରେ ସମସ୍ତେ ହିଁ ବ୍ୟସ୍ତ । କେବଳ ରାଜକୁମାର ଓ ରାଜକୁମାରୀଗଣ ନୁହନ୍ତି, ସାଧାରଣ ଶିକ୍ଷିତ ଜନମଣ୍ଡଳୀ ଓ ପ୍ରଜା ସାଧାରଣ ମଧ୍ୟ ଅନ୍ୟାନ୍ୟ ସ୍ଥାନ ତୁଳନାରେ ଚିନ୍ତା ଓ ଭାବ-ବିଷୟରେ ଅପେକ୍ଷାକୃତ ଉନ୍ନତତର । ଏହିପରି ଅବସ୍ଥା ସଂଗଠନରେ ରାଜାଙ୍କର ଅନ୍ୟବିଧ ଅନୁଷ୍ଠାନ ସମୂହର ଶକ୍ତିମଧ୍ୟ କିୟତ୍ ପରିମାଣରେ କାର୍ଯ୍ୟକାରୀ ହୋଇଅଛି, ସେହି ସମସ୍ତ ବିଷୟ ଅନ୍ୟତ୍ର ଆଲୋଚ୍ୟ, ଏଠାରେ କେବଳ ଏହିକଥା କହିଲେ ଯଥେଷ୍ଟ ହେବ ଯେ, ରାଜକୁମାରୀଗଣ ମଧ୍ୟରୁ ଅନେକେ ହିଁ ସେମାନଙ୍କର ଅଗ୍ରଜ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କର ଅନୁକରଣରେ ସାହିତ୍ୟାନୁରାଗୀ ସମ୍ବଲପୁର ହିତୈଷିଣୀ ବର୍ତ୍ତମାନ ରାଜା ଓ ରାଜକୁମାର ଗଣଙ୍କର ପରିଚର୍ଯ୍ୟାରୁ ବଞ୍ଚିତ ନୁହେଁ । ସମ୍ବାଦପତ୍ରଟି ଆଜନ୍ମ ରାଜସେବାରେ ପରିବର୍ଦ୍ଧିତ ଓ ସମ୍ମାନିତ । ଆମ ଦେଶରେ ସାହିତ୍ୟର ଏହିପରି ସୌଭାଗ୍ୟ ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ । ଯଦିବା ଦେଖିବାକୁ ମିଳେ ତଥାପି ନିତ୍ୟାନ୍ତ ବିରଳ ।

ସମ୍ବଲପୁର ହିତୈଷିଣୀ ସମ୍ବନ୍ଧରେ ଆଉ ଏକ କଥା କହିବାର ଅଛି । ଯାହାଙ୍କର ଦୀର୍ଘକାଳ ବ୍ୟାପୀ ଅକ୍ଳାନ୍ତ ଶ୍ରମ ଫଳରେ ସମ୍ବଲପୁର ହିତୈଷିଣୀ ନାନାବିଧ ସମ୍ବାଦ ସଂଭାରରେ ସଜ୍ଜିତ ହୋଇ ସପ୍ତାହ ପରେ ସପ୍ତାହ ପାଠକମାନଙ୍କ ନିକଟରେ ପହଞ୍ଚିବା ଆରମ୍ଭ କରେ, ସେହିପରି ଅସାଧ୍ୟ ସାଧନରେ, ସେହି କାଳରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ହିଁ ନିଯୁକ୍ତ ଥିଲେ । ସେ ନିଜେ ସୁପଣ୍ଡିତ ଓ ଭାଷାଜ୍ଞ ବ୍ୟକ୍ତି ଥିଲେ । କାବ୍ୟରେ, ଅଳଙ୍କାରରେ, ସାହିତ୍ୟରେ ଓ ଇତିହାସରେ ତାଙ୍କର ଯଥେଷ୍ଟ ଅଧିକାର ଥିଲା । ତାଙ୍କର ଭାଷା ପ୍ରାଞ୍ଜଳ ଓ ମଧୁର ଥିଲା । ସେ ଯେଉଁ ବିଷୟରେ ହସ୍ତକ୍ଷେପ କରୁଥିଲେ, ତହିଁରେ ସହଜରେ କେହି ତାଙ୍କୁ ଖର୍ବ କରି ପାରୁନଥିଲେ । ରାଜନୀତି, ସମାଜ ଓ ସଂସ୍କାର ବିଷୟରେ ତାଙ୍କର ଗଭୀର ଅଭିଜ୍ଞତା ଥିଲା । ରାୟ ରାଧାନାଥ ରାୟ ବାହାଦୁର ରାୟ ମଧୁସୂଦନ ରାଓ ବାହାଦୁର, ବ୍ରାହ୍ମଧର୍ମ ପ୍ରଚାରକ ସ୍ୱର୍ଗତ ନନ୍ଦଲାଲ ବନ୍ଦୋପାଧ୍ୟାୟ, ଉତ୍କଳ ସାହିତ୍ୟର ସଂପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ପ୍ରଭୃତି ବହୁ ବ୍ୟକ୍ତି, ବହୁଥର ବାମଣ୍ଡାକୁ ଭ୍ରମଣ ଓ ଅବସ୍ଥିତି ସୂତ୍ରେ ଆସି ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କର ବିବିଧ ଗୁଣର ଓ ବିଦ୍ୟାବତ୍ତାର ଭୁରିଭୁରି ପ୍ରଶଂସା କରିଛନ୍ତି । ଆକ୍ଷେପର ବିଷୟ ଏତାଦୃଶ ଗୁଣବାନ ବ୍ୟକ୍ତି ସଂପ୍ରତି ସ୍ୱାସ୍ଥ୍ୟଭଙ୍ଗ ହେତୁ ଜୀବନ୍ମୃତ ଅବସ୍ଥାରେ ଗଞ୍ଜାମରେ ଶେଷଜୀବନ ଯାପନ କରୁଛନ୍ତି । ବର୍ତ୍ତମାନ ସେ ସଂପୂର୍ଣ୍ଣ ରୂପେ କର୍ମ କରିବାରେ ଅସମର୍ଥ । ରାଜାଙ୍କର ଉପଦେଶରେ ଓ ପରାମର୍ଶରେ ନୀଳମଣି ଏଭଳି ସୁନ୍ଦର ଭାବରେ



Digitized by srujanika@gmail.com

ଗଡ଼ିତୋଳିଥିଲେ ଯେ, ଅନେକ ସମୟରେ ରାଜା ସାର୍ ବାସୁଦେବ ବିଶେଷ ଦୃଷ୍ଟିପାତ ନକଲେ ମଧ୍ୟ ତାଙ୍କ ତତ୍ତ୍ୱାବଧାନ କାଳରେ ହିତୈଷିଣୀ ଖୁବ୍ ଭଲଭାବରେ ଚାଲିଥିଲା । ତାଙ୍କର ପତ୍ରିକା ସଂପାଦନା ସର୍ବଦା ହିଁ ରାଜାଙ୍କର ମନମୁତାବକ ହେଉଥିଲା ।

ଦେବଗଡ଼ରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠିତ ହେବାର ବହୁପୂର୍ବେ, ରାଜା ବାସୁଦେବ କଟକ ନଗରେ 'ସୁଢ଼ଳ' ନାମରେ ଏକ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରାଇଥିଲେ । ସେଠାରେ ସେହି ମୁଦ୍ରାଯନ୍ତ୍ର ଦ୍ୱାରା ରାଜାଙ୍କର ଗ୍ରନ୍ଥାଦି ମୁଦ୍ରିତ ହେଉଥିଲା । ଏହା ସହିତ ସେଠାରେ ଅନ୍ୟ ଲୋକଙ୍କର ପ୍ରୟୋଜନୀୟ ମୁଦ୍ରଣ କାର୍ଯ୍ୟ ସଂପାଦିତ ହେଉଥିଲା । ଏହି କାର୍ଯ୍ୟ ପର୍ଯ୍ୟବେକ୍ଷଣ ପାଇଁ ଯାହାଙ୍କୁ ପ୍ରଧାନ କର୍ମଚାରୀ ଭାବରେ ନିଯୁକ୍ତି କରା ହୋଇଥିଲା,ତାଙ୍କର ପର୍ଯ୍ୟବେକ୍ଷଣରେ କାର୍ଯ୍ୟର ନିତ୍ୟ ନୂତନ ଉନ୍ନତି ନ ହେବା ଫଳରେ, ରାଜା ବାହାଦୁର ସେହି କାର୍ଯ୍ୟ ରହିତ କରାଇ ଦିଅନ୍ତି ଏବଂ ମୁଦ୍ରାଯନ୍ତ୍ରଟିର ଏକାଂଶ ପ୍ରେସ୍ କାର୍ଯ୍ୟ ପରିଚାଳକ ସୀତାନାଥ ରାୟଙ୍କୁ ଦାନ କରନ୍ତି । ଅପରାଂଶ ବାମଣ୍ଡାର ରାଜଧାନୀ ଦେବଗଡ଼କୁ ଅଣାଇ ପୂର୍ବରୁ ପ୍ରତିଷ୍ଠିତ 'ଜଗନ୍ନାଥ ବଲ୍ଲଭ ପ୍ରେସ୍' ସହିତ ମିଶାଇ ଦିଅନ୍ତି । ବର୍ତ୍ତମାନ ଏଠାରେ ସୁବୃହତ୍ ମୁଦ୍ରାଯନ୍ତ୍ର କଳଦ୍ୱାରା ଚାଳିତ ହେଉଅଛି । ପ୍ରେସ୍‌ର କାର୍ଯ୍ୟ ଜେଲ୍‌ର କଏଦୀମାନଙ୍କ ଦ୍ୱାରା ସଂପନ୍ନ ହୁଏ । ଆମେ ସ୍ୱଚକ୍ଷୁରେ ଦେଖି ଆସିଅଛୁ କଏଦୀମାନଙ୍କ ଦ୍ୱାରା ପ୍ରେସ୍‌ର କାର୍ଯ୍ୟ ସୂଚାରୁରୂପେ ସଂପନ୍ନ ହେଉଅଛି । କଏଦୀମାନେ ପ୍ରେସ୍‌ର ସବୁପ୍ରକାର କାର୍ଯ୍ୟ କରିବା ଶିଖିଛନ୍ତି । ସମ୍ୱଲପୁର ହିତୈଷିଣୀର ବର୍ତ୍ତମାନ ସଂପାଦକ ଶ୍ରୀଯୁକ୍ତ ଦୀନବନ୍ଧୁ ଗଡ଼ନାୟକ । ଶ୍ରୀଯୁକ୍ତ ଗଡ଼ନାୟକ ବାମଣ୍ଡା ରାଜ୍ୟବାସୀ । ବିଦ୍ୟାଳୟର ଶିକ୍ଷାପ୍ରାପ୍ତ, ଜ୍ଞାନଲିପ୍ସୁ, କର୍ମତତ୍ପର ଓ ଉଦ୍ୟମଶୀଳ ସୁପୁରୁଷ । ହିତୈଷିଣୀର କାର୍ଯ୍ୟ କରି ପ୍ରେସର ଯେଉଁ ସମୟ ଥାଏ, ତହିଁରେ ରାଜାଙ୍କର ଓ ରାଜପରିବାରର ଅନେକଙ୍କର ମୁଦ୍ରଣ କାର୍ଯ୍ୟ ସଂପନ୍ନ ହୁଏ । ରାଜ୍ୟର ଶିକ୍ଷିତ ଭଦ୍ରଗଣଙ୍କ ରଚିତ ପୁସ୍ତକ ଓ ଅନ୍ୟାନ୍ୟ କାର୍ଯ୍ୟ ହିତୈଷିଣୀ ପ୍ରେସ୍‌ରେ ହିଁ ହୋଇଥାଏ । ମୁଦ୍ରାଯନ୍ତ୍ର ଓ ପତ୍ରିକା ଉଭୟର ଆତ୍ମପୋଷଣରେ ସକ୍ଷମ । ଏଥିରୁ କାହାରି ପାଇଁ ରାଜାଙ୍କୁ ସ୍ୱତନ୍ତ୍ର ବ୍ୟୟ ବହନ କରିବାକୁ ପଡ଼େ ନାହିଁ ।

କାବ୍ୟ ଓ ଅଳଂକାର ଶାସ୍ତ୍ରରେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ଅସାଧାରଣ ବ୍ୟୁତ୍ପତ୍ତି ଥିଲା । ସେ ନାନା କ୍ଷେତ୍ରରେ ସୁବିଦ୍ୱାନ ପଣ୍ଡିତମଣ୍ଡଳୀଙ୍କ ସମକ୍ଷରେ, ତାଙ୍କର ଅର୍ଜିତ ଜ୍ଞାନ ଓ ବିଦ୍ୟାର ସାକ୍ଷ୍ୟଦାନ କରି ସର୍ବଦା ହିଁ ସମବେତ ଜନମଣ୍ଡଳୀଙ୍କର ଶ୍ରଦ୍ଧା ଓ ସମ୍ମାନ ଅର୍ଜନ କରିଅଛନ୍ତି । ତାଙ୍କର ଏହି ସମ୍ମାନ ରାଜସମ୍ମାନ ନୁହେଁ, ଅଥବା ରାଜା ବୋଲି ସ୍ୱଳ୍ପ ବିଦ୍ୟା ବଳରେ ଅସଂଗତ ସମ୍ମାନ ଅର୍ଜନ କରି ନାହାନ୍ତି । ପଣ୍ଡିତମଣ୍ଡଳୀରେ ପଣ୍ଡିତବୋଲି ହିଁ ସେହିପରି ସମ୍ମାନ ଅର୍ଜନ ସମ୍ଭବ ହୋଇଥିଲା । ଅନ୍ୟ ଏକ କଥା ଏହା



Digitized by srujanika@gmail.com

ଯେ, ବାସୁଦେବ ସ୍ୱାଧୀନ ପ୍ରକୃତି ବିଶିଷ୍ଟ ମୁକ୍ତ ସ୍ୱଭାବର ବ୍ୟକ୍ତି ଥିଲେ । ତାଙ୍କର ନାତିଦୀର୍ଘ ଜୀବନ ଧାରଣ କାଳରେ, ତାଙ୍କର କି ବାଲ୍ୟରେ, କି ଯୌବନରେ, କି ପୌଢ଼ାବସ୍ଥାରେ କେବେହେଲେ କୌଣସି ଚାଟୁକାରଙ୍କ ଅନ୍ତଃସାରଶୂନ୍ୟ ଅଥଚ ମଧୁମିଷ୍ଟ ରସନା ସଂଚାଳନରେ କର୍ଣ୍ଣପାତ କରି ନାହାନ୍ତି । ସ୍ତାବକଙ୍କର ସ୍ତବ ବନ୍ଦନା ସର୍ବଦା ହିଁ ଅବଜ୍ଞା ସହକାରେ ଦୂରରେ ରଖିବା ଶିକ୍ଷା କରିଥିଲେ । କି ଆଧୁନିକ, କି ପ୍ରାଚୀନ ତନ୍ତ୍ରରେ ଶିକ୍ଷିତ ବ୍ୟକ୍ତିଗଣଙ୍କ ସହିତ ଆଳାପ ପରିଚୟର ସୂତ୍ରପାତ ହେବାମାତ୍ରେ କହିଦେଉଥିଲେ, 'ମୋ ସହିତ ପ୍ରତିପକ୍ଷତା କଲେ ମୁଁ ନୂତନ କରି ଶିକ୍ଷାଲାଭ କରିବାର ସୁଯୋଗ ପାଇବି, ମୋର ରାଜସମ୍ମାନ ସ୍ମରଣ କରି ଯେପରି ମୋର ମତକୁ ନିଜ ମତ ବୋଲି ଗ୍ରହଣ କରିବେ ନାହିଁ, ଆପଣଙ୍କ ସମକକ୍ଷ ବ୍ୟକ୍ତିଙ୍କ ସହିତ କଥାବାର୍ତ୍ତା କରୁଛନ୍ତି ବୋଲି ମନେ କରିବେ । ମୁଁ ଯାହା ଜାଣେ ସେଥିରେ ସମ୍ମତ ହେବା ସହଜ କାର୍ଯ୍ୟ, ମୋର ମୂର୍ଖ ପ୍ରଜା ମଧ୍ୟ ତାହା କରିପାରନ୍ତି, ଆପଣ ଆପଣଙ୍କର ପକ୍ଷ ସମର୍ଥନରେ ପଟୁତା ପ୍ରଦର୍ଶନ କଲେ ହିଁ, ମୁଁ ସୁଖୀ ହେବି ।'*(୧)* ଏଥିପାଇଁ କହୁଅଛି ଯେ, ସାର୍ ବାସୁଦେବ ପ୍ରାଚୀନ ସାହିତ୍ୟ ଓ ଶାସ୍ତ୍ର ବିଷୟରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିଲେ ଏବଂ ଦେଶ ବିଦେଶର ପଣ୍ଡିତମଣ୍ଡଳୀ ସେହି ବିଷୟରେ ତାହାଙ୍କ ସହିତ ଆଳାପରେ ଆପ୍ୟାୟିତ ହୋଇ ତାଙ୍କର ଅର୍ଜିତ ବିଦ୍ୟାର ଗଭୀରତା ଅନୁଭବ କରି ସର୍ବଦା ହିଁ ଆନନ୍ଦ ପ୍ରଦାନ କରୁଥିଲେ । ସେ ବିଦ୍ୱାନ ସମାଜରେ ରାଜ ସମ୍ମାନ ଅପେକ୍ଷା ପଣ୍ଡିତ ସମ୍ମାନରେ ଅଳଂକୃତ ଓ ସମାଦୃତ ହୋଇ ତୃପ୍ତିଲାଭ କରୁଥିଲେ । ଏଥିପାଇଁ ଓଡ଼ିଶାର ସୁଧୀ ସନ୍ତାନ ରାୟ ରାଧାନାଥ ରାୟ ବାହାଦୁର କହିଅଛନ୍ତି- 'ରାଜା ସୁଢ଼ଳଦେବଙ୍କ ଦ୍ୱାରା ରାଜ ସିଂହାସନ ସମ୍ମାନିତ ହୋଇଅଛି ।' ମଧ୍ୟପ୍ରଦେଶରେ ପ୍ରଧାନ ପ୍ରଧାନ ରାଜପୁରୁଷଗଣ ମଧ୍ୟ ପୁନଃ ପୁନଃ ଏହି ଉକ୍ତିର ସାରବର୍ତ୍ତା ଲିପିବଦ୍ଧ କରି ଆନନ୍ଦ ଅନୁଭବ କରିଅଛନ୍ତି, ସେସବୁ ଅନ୍ୟତ୍ର ଆଲୋଚିତ ।

ବର୍ତ୍ତମାନ ବକ୍ତବ୍ୟ ଏହି ଯେ, ତାଙ୍କର କାବ୍ୟ ଏବଂ ଅଳଂକାର ପ୍ରକାଶ ପାଇଅଛି ତାହା ନୁହେଁ କ୍ଷୁଦ୍ର କଳେବର । ଚିତ୍ରୋତ୍ପଳା କାବ୍ୟ ଶାସ୍ତ୍ରରେ ଗଭୀର ଜ୍ଞାନର ପରିଚୟ ଯେ କେବଳ ତାଙ୍କର ରଚିତ 'ଚିତ୍ରୋତ୍ପଳା' କାବ୍ୟରେ ଗ୍ରନ୍ଥାକାର ରାଜା ବାସୁଦେବ ଅସାଧାରଣ ରଚନା ନୈପୁଣ୍ୟର ପରିଚୟ ଦେଇଛନ୍ତି । ବର୍ତ୍ତମାନ ସମୟରେ ନବୀନ ଲେଖକଗଣଙ୍କ ରଚନାରେ ଅଳଙ୍କାର ବ୍ୟବହାର ଦେଖାଯାଏ; କିନ୍ତୁ ସେମାନେ ଅଧିକାଂଶ ହିଁ ଆଜିକାଲି ଶବ୍ଦଶାସ୍ତ୍ର ଓ ଅଳଙ୍କାରରେ ଅନଭିଜ୍ଞ, ତେଣୁ ସେମାନଙ୍କ ରଚନାର ଅଧିକାଂଶ ସ୍ଥଳରେ ଇତର ପ୍ରୟୋଗ ଦେଖିବାକୁ ମିଳିଥାଏ । କୌଣସି କୌଣସି ସ୍ୱେଚ୍ଛାଚାରିତାର ଚୂଡ଼ାନ୍ତ ସାକ୍ଷ୍ୟଦାନ କରିଥାଏ, ଅଜ୍ଞତା ହିଁ ଏହାର ଏକମାତ୍ର କାରଣ । ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ



Digitized by srujanika@gmail.com

ସୁପଣ୍ଡିତ ସାର୍ ସୁଡ଼ଳଦେବଙ୍କର ସର୍ବପ୍ରଥମ ଗ୍ରନ୍ଥ 'ଅଳଂକାର ଚନ୍ଦ୍ରିକା' । ଏହି ଗ୍ରନ୍ଥଟି ଏତେ ସୁନ୍ଦର ଯେ, ଦୀର୍ଘକାଳ ଧରି ଓଡ଼ିଶାର ଉଚ୍ଚଶ୍ରେଣୀର ବିଦ୍ୟାଳୟ ସମୂହରେ ପାଠ୍ୟ ନିର୍ଦ୍ଦିଷ୍ଟ ଥିଲା ।

ରାଜା ସାର୍ ବାସୁଦେବ ସୁଡ଼ଳଦେବ 'ଅଳଙ୍କାର ବୋଧୋଦୟ' ନାମକ ସଂସ୍କୃତ ଗ୍ରନ୍ଥର ଏକ ସଂସ୍କରଣ ନିଜ ବ୍ୟୟରେ ପ୍ରଚାର କରି ଓଡ଼ିଶାର ପଣ୍ଡିତ ସମାଜରେ ବିଶେଷ ସମାଦର ପ୍ରାପ୍ତ ହୋଇଥିଲେ । ଅନୁବାଦ ସହ ସଟୀକ ଚଣ୍ଡି ମୁଦ୍ରିତ ଓ ପ୍ରଚାରିତ କରାଇ ଦେଶୀୟ ପଣ୍ଡିତ ମଣ୍ଡଳୀଙ୍କର କୃତଜ୍ଞତା ଭାଜନ ହୋଇପାରିଥିଲେ । ଜଗନ୍ନାଥ ଅଷ୍ଟକର ଏକ କ୍ଷୁଦ୍ରସଂସ୍କରଣ ପ୍ରକାଶ ଓ ପ୍ରଚାର କରାଇ ବହୁ ଲୋକଙ୍କ ଉପକାର ସାଧନ କରିଥିଲେ । ବଙ୍ଗ ଦେଶରେ ରଘୁନନ୍ଦନଙ୍କର ଯେଉଁଭଳି ପ୍ରତିଷ୍ଠା ଓ ପ୍ରଭାବ ତାଙ୍କରି ପ୍ରଦତ୍ତ ବ୍ୟାଖ୍ୟା ଅନୁସାରେ ସ୍ମୃତିଶାସ୍ତ୍ର ବଙ୍ଗଦେଶର ଗ୍ରାର୍ହସ୍ଥ୍ୟ ଧର୍ମକର୍ମରେ ଯେପରି ଶ୍ରେଷ୍ଠସ୍ଥାନ ଅଧିକାର କରି ଆଜିସୁଦ୍ଧା ରହିଅଛି । ଓଡ଼ିଶାର ସେହିପରି ଗଦାଧର ମିଶ୍ର କୃତ ବ୍ୟାଖ୍ୟା ସହ ସ୍ମୃତିଶାସ୍ତ୍ର ପ୍ରଚଳିତ । ଏହି ଗ୍ରନ୍ଥ ଏକାନ୍ତ ଦୁଷ୍ପ୍ରାପ୍ୟ ଥିଲା । ରାଜା ବାସୁଦେବ ସୁଡ଼ଳଦେବଙ୍କ ଅର୍ଥ ଓ ସାମର୍ଥ୍ୟର ସାହାଯ୍ୟରେ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି କର୍ତ୍ତୃକ ଏହି ଗଦାଧର ସ୍ମୃତିଶାସ୍ତ୍ରର ସଟୀକ ସଂସ୍କରଣ ପ୍ରକାଶିତ ହୋଇଥିଲା ।

ତତ୍ପରେ ଦଶକର୍ମ ପଦ୍ଧତି, ମୁଣ୍ଡକ୍ୟୋପନିଷଦ୍, ସାହିତ୍ୟ ରତ୍ନାକର ପ୍ରଭୃତି ଗ୍ରନ୍ଥମାନ ମଧ୍ୟ ଟୀକାସହ ଓ ସାନୁବାଦ ପ୍ରକାଶ ଓ ପ୍ରଚାର କରାଇ ସ୍ୱରାଜ୍ୟର ଓ ଗଡ଼ଜାତର, ଅନ୍ୟାନ୍ୟ ରାଜ୍ୟର ଏବଂ ଓଡ଼ିଶାର ଜନସାଧାରଣଙ୍କର ପ୍ରଭୁତ ଉପକାର ସାଧନ କରି ଯାଇଛନ୍ତି । ଓଡ଼ିଆ ଭାଷାଭାଷୀ ସାଧାରଣ ଜନତା ଏଥିପାଇଁ ତାଙ୍କ ନିକଟରେ ଚିର ଋଣ ସୂତ୍ରରେ ଆବଦ୍ଧ ।

ରାଜା ସାର୍ ବାସୁଦେବ କିପରି ଉନ୍ନତମନା ବିଦ୍ୟାନୁରାଗୀ ଓ ପ୍ରଜାବତ୍ସଳ ରାଜା ଥିଲେ ତାଙ୍କର ୧୮୮୯ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୨୫ ତାରିଖ ରାଜାଦେଶ ଅତି ବିଶଦ୍‌ଭାବରେ ତାହା ପ୍ରତିପନ୍ନ କରୁଅଛି । କର୍ତ୍ତାର ଗୃହରେ ବିନା ନିମନ୍ତ୍ରଣରେ ଉପସ୍ଥିତ ହେବା ହୀନବୃତ୍ତି ପରାୟଣ ବ୍ରାହ୍ମଣର କୃତିର ବ୍ୟବସାୟରେ ପରିଣତ ହୋଇଅଛି । ଶାସ୍ତ୍ରଜ୍ଞାନହୀନ, ସଂସ୍କୃତ ବର୍ଣ୍ଣଜ୍ଞାନ ବିହୀନ ବ୍ରାହ୍ମଣରେ ଦେଶ ପୂର୍ଣ୍ଣ । ଏହି ହୀନବସ୍ଥା ଦୂର କରିବା ପାଇଁ ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ରେ ପରୀକ୍ଷାର ବ୍ୟବସ୍ଥା ଓ ବ୍ରାହ୍ମଣ ଯୋଗ୍ୟ ଆଚାର ଆଚରଣ ପ୍ରତିଷ୍ଠା ପାଇଁ ବ୍ରାହ୍ମଣଗଣଙ୍କ ପରୀକ୍ଷାଦାନ ଅବଶ୍ୟ କର୍ତ୍ତବ୍ୟ ବୋଲି ନିର୍ଦ୍ଦେଶ କରନ୍ତି ଏବଂ ଏହି ଅବସ୍ଥା ବିପର୍ଯ୍ୟୟ ନିବାରଣ ପାଇଁ ବିନା ନିମନ୍ତ୍ରଣରେ କର୍ତ୍ତାର ଗୃହରେ ଉପସ୍ଥିତ ବ୍ରାହ୍ମଣଗଣଙ୍କୁ ବ୍ରାହ୍ମଣ ସମ୍ମାନରୁ ବଞ୍ଚିତ କରିବାର ଏବେ ପ୍ରଣାମ ସୁଦ୍ଧା ଉଠାଇ ଦେବାର ଆଦେଶ



Digitized by srujanika@gmail.com

କରିଥିଲେ । ଏହା ଦ୍ୱାରା ଯେ କେବଳ ବାମଣ୍ଡାର ବ୍ରାହ୍ମଣ ସମାଜରେ ଏକ ଆଲୋଡ଼ନ ସୃଷ୍ଟି ହୋଇଥିଲା । ତାହା ନୁହେଁ, ସମଗ୍ର ଗଡ଼ଜାତ ରାଜନ୍ୟବର୍ଗଙ୍କର ରାଜ୍ୟ ମଧ୍ୟରେ ବ୍ରାହ୍ମଣ ମଣ୍ଡଳୀରେ ବିଷମଚିନ୍ତା ଓ ପରିବର୍ତ୍ତନ ସୂତ୍ରପାତ ହୋଇଥିଲା ଏବଂ ପରିବର୍ତ୍ତନ ତରଙ୍ଗ ଓଡ଼ିଶାର ସର୍ବତ୍ର ହିଁ ଅନୁଭୂତ ହୋଇଥିଲା । ବଂଶଗତ ମର୍ଯ୍ୟାଦା ବଳରେ ରାଜା ବାସୁଦେବ ତୀକ୍ଷ୍ଣଧାର କୁଠାରଘାତ କରି ଉନ୍ନତିର ଦ୍ୱାର ଉନ୍ମୁକ୍ତ କରିଥିଲେ । ରାଜା ସ୍ୱକର୍ତ୍ତବ୍ୟ ସାଧନରେ ଅଗ୍ରସର ହେଲେ, ଏହିପରି ହୋଇଥାଏ ।

ଅଶୁଦ୍ଧ ଉଚ୍ଚାରଣପଟୁ ଅନଭିଜ୍ଞ ପଣ୍ଡିତଗଣ ଯାଗଯଜ୍ଞ, କ୍ରିୟା କଳାପ, ବାରବ୍ରତ, ଶାନ୍ତ ସ୍ୱସ୍ତାୟନ, ପୂଜାପଦ୍ଧତିରେ ଅକ୍ଷମ ଓ ଅଯୋଗ୍ୟ ବୋଲି ରାଜା ସର୍ବଦାହିଁ କ୍ଲେଶ ଅନୁଭବ କରୁଥିଲେ ଏବଂ ଏହି ଅବସ୍ଥାର ସଂଶୋଧନ ପାଇଁ ରାଜା ବାସୁଦେବ ସୁଢ଼ଳଦେବ ଏକପକ୍ଷରେ ଶାସ୍ତ୍ର ଓ ଧର୍ମଗ୍ରନ୍ଥ ସବୁର ବିଶୁଦ୍ଧ ସଂସ୍କରଣ ପ୍ରଚାରରେ ବଦ୍ଧପରିକର, ଅପର ପକ୍ଷରେ ମୂର୍ଖ ଶାସ୍ତ୍ର ବ୍ୟବସାୟୀ ବ୍ରାହ୍ମଣଗଣଙ୍କୁ ସେସବୁ ଶିକ୍ଷା କରିବା ପାଇଁ ରାଜାଦେଶ ପ୍ରଚାର ଦ୍ୱାରା ବାଧ୍ୟ କରାଇଥିଲେ । ସେ ତାଙ୍କର ରାଜ୍ୟ ମଧ୍ୟରେ ଘୋଷଣା କରିଥିଲେ ଯେ, ବିଶୁଦ୍ଧ ଉଚ୍ଚାରଣ ସହ ଚଣ୍ଡୀପାଠ ଓ ମନ୍ତ୍ରପାଠରେ ଅକ୍ଷମ ବ୍ରାହ୍ମଣଗଣ ହିନ୍ଦୁଗୃହରେ କରି ପାରିବେ ନାହିଁ । ବାମଣ୍ଡାରେ ଯଜନଯାଜନ କାର୍ଯ୍ୟରେ ନିଯୁକ୍ତ ବ୍ରାହ୍ମଣଗଣ ବାଧ୍ୟ ହୋଇ ଆତ୍ମୋନ୍ନତ ସାଧନରେ ଅଗ୍ରସର ହୁଅନ୍ତି । ବାମଣ୍ଡାର ବ୍ରାହ୍ମଣ ପଣ୍ଡିତ ଓ ସାଧାରଣ ପ୍ରଜାମଣ୍ଡଳୀଙ୍କର ପୌରହିତ୍ୟ କାର୍ଯ୍ୟରେ ନିଯୁକ୍ତ ବ୍ରାହ୍ମଣଗଣଙ୍କର ଶାସ୍ତ୍ର ଜ୍ଞାନର ପରିମାର୍ଜନ ଓ ଉନ୍ନତି ସାଧନ ହେତୁ ରାଜା ସାର୍ ବାସୁଦେବ ବିଜ୍ଞାପନ ଦ୍ୱାରା ରାଜାଦେଶ ପ୍ରଚାର କରନ୍ତି ଯେ, ରାଜଗୁରୁ ଓ ରାଜପୁରୋହିତଙ୍କର ପର୍ଯ୍ୟବେକ୍ଷଣରେ ରାଜ୍ୟ ମଧ୍ୟରେ ପୌରହିତ୍ୟ କର୍ମରେ ନିଯୁକ୍ତ ୧୬.୫

ସହ 'କିଷ୍କିନ୍ଧ୍ୟା' ନାମକ ଗ୍ରନ୍ଥ ପ୍ରକାଶ ଓ ପ୍ରଚାର କରନ୍ତି ।

ବିଦ୍ୟାନୁରାଗପ୍ରବଣ ରାଜା ସାର୍ ବାସୁଦେବ ସୁଢ଼ଳଦେବ କେବଳ ଯେ ନିଜ ରାଜ୍ୟରେ ବିଦ୍ୟାଳୟ ପ୍ରତିଷ୍ଠା କରାଇ ଉଚ୍ଚ ଓ ନିମ୍ନ ପ୍ରାଥମିକ ବିଦ୍ୟାଳୟ, ମଧ୍ୟଛାତ୍ରବୃତ୍ତି ପରୀକ୍ଷା, ଦାନୋପଯୋଗୀ ବିଦ୍ୟାଳୟ ପ୍ରତିଷ୍ଠା କରାଇ ଏବଂ ରାଜଧାନୀ ଦେବଗଡ଼ର ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠାର ଗୁରୁଭାର ବହନ କରି ବିଦ୍ୟାଦାନ ଓ ସାହିତ୍ୟଚର୍ଚ୍ଚା, ସ୍ୱାଧୀନ ଚିନ୍ତାର ଉନ୍ମେଷ ଓ ଜ୍ଞାନବୃଦ୍ଧି ବିଷୟରେ ତାଙ୍କର ଚିନ୍ତା, ତାଙ୍କର ବୁଦ୍ଧି ବିବେଚନା, ତାଙ୍କର ସଂପଦ ଓ ସମ୍ମାନ ନିଜ ରାଜ୍ୟରେ ଆବଦ୍ଧ ହୋଇ ରହିନଥିଲା । ସେ ଲୋକଙ୍କର ସ୍ୱଭାବସୁଲଭ ସତ୍‌ଜ୍ଞାନ ପିପାସାର ପରମ ସୁହୃଦ ହୋଇ ସର୍ବଦାହିଁ ସ୍ୱରାଜ୍ୟରେ ଓ ପାର୍ଶ୍ୱବର୍ତ୍ତୀ ସମସ୍ତ ରାଜ୍ୟରେ ଏବଂ ସଂଗେ ସଂଗେ ଦେଶ ବିଦେଶରେ ବିଦ୍ୟାଦାନ ଓ ଜ୍ଞାନ



Digitized by srujanika@gmail.com

ପ୍ରଚାରର ପକ୍ଷପାତୀ ଥିଲେ । ସେ ଯେ କେବଳ ଛତିଶଗଡ଼ ଓ ଓଡ଼ିଶାର ଗଡ଼ଜାତ ରାଜଗଣଙ୍କର ଶକ୍ତି ସମବାୟରେ ଓଡ଼ିଆ ସାହିତ୍ୟସେବୀଙ୍କର ଉତ୍ସାହ ବର୍ଦ୍ଧନ କରି କ୍ଷାନ୍ତ ଥିଲେ ତାହା ନୁହେଁ, ଏହି ପ୍ରଦେଶବାସୀ ଜନସାଧାରଣଙ୍କ ମଧ୍ୟରେ ଉଚ୍ଚ ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରଗଣଙ୍କୁ ଚିକିତ୍ସାଶାସ୍ତ୍ର ଅଧ୍ୟୟନରେ ପ୍ରଲୁବ୍ଧ କରାଇବା ପାଇଁ ରାୟପୁରର ପୋଲଟିକାଲ୍ ଏଜେଣ୍ଟଙ୍କ ଅଫିସ୍‌ରେ ମିଳିତ ରାଜନ୍ୟବର୍ଗଙ୍କ ସଭାରେ ସାର୍ ଜନ୍ ଉଡ୍‌ବର୍ଣ୍ଣ ସାହେବଙ୍କ ମଧ୍ୟପ୍ରଦେଶରୁ ବିଦାୟ ନେବା କାଳରେ, ତାଙ୍କ ନାମରେ ଛାତ୍ରବୃତ୍ତି ପ୍ରତିଷ୍ଠା ପ୍ରସ୍ତାବ କରିବା ସହିତ ବୃତ୍ତିଦାନ ଦ୍ୱାରା କଲିକତା ମେଡ଼ିକାଲ କଲେଜରେ ଉଚ୍ଚ ଚିକିତ୍ସାବିଦ୍ୟା ଅଧ୍ୟୟନର ପ୍ରସ୍ତାବ କାର୍ଯ୍ୟରେ ପରିଣତ କରିବାପାଇଁ ପ୍ରାଣପଣେ ଚେଷ୍ଟା କରିଥିଲେ । କେବଳ ସେତିକି ନୁହେଁ, ପୁରୀରେ ସନାତନ ଧର୍ମରକ୍ଷିଣୀ ସଭା ପ୍ରତିଷ୍ଠା କରାଇ ସେହି ସଭାର ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରଗଣଙ୍କୁ ବର୍ଷ ପରେ ବର୍ଷ ମୁଦ୍ରିତ ପ୍ରଶଂସା ପତ୍ର ସହ ସ୍ୱର୍ଣ୍ଣ କୁଣ୍ଡଳ ପୁରସ୍କାର ଦେଇ ନିଶ୍ଚିନ୍ତ ଥିଲେ । ସ୍ୱରାଜ୍ୟ ବାହାରେ ଓଡ଼ିଶାର ନାନା ସ୍ଥାନରେ ବିପନ୍ନ ବାଳକ ବୃନ୍ଦଙ୍କ ଶିକ୍ଷାଲାଭରେ ସହାୟତା କରି କେବଳ କର୍ତ୍ତବ୍ୟ ଶେଷ କରିନାହାନ୍ତି, ସ୍ୱଦେଶ ଓ ବିଦେଶରେ ଜ୍ଞାନବୃଦ୍ଧି କଳ୍ପେ ଯେତେବେଳେ ଯେଉଁଠାରେ ପ୍ରୟୋଜନ ହୋଇଅଛି, ସେହିଠାରେ ସାହାଯ୍ୟଦାନ ତାଙ୍କର ସ୍ୱଭାବସିଦ୍ଧ ଗୁଣର ବିଶାଳତାର ସାକ୍ଷ୍ୟଦାନ କରୁଅଛି ।

ବିଦ୍ୟା ଓ ଜ୍ଞାନ ବିସ୍ତାର ବିଷୟରେ, ରାଜା ସାର୍ ବାସୁଦେବ ସୁଡ଼ଳଦେବ ଓ ତଦୀୟ ଯୋଗ୍ୟ ପୁତ୍ର ବର୍ତ୍ତମାନ ରାଜା ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତିଭୁବନଦେବ, ସେହିକାଳର ଯୁବରାଜ ରୂପେ, ଯେଉଁ ସକଳ ସଦୁପାୟ ଅବଲମ୍ବନ କରିଥିଲେ, ସେଗୁଡ଼ିକ ସୁନ୍ଦର ଏବଂ ଫଳପ୍ରଦ ହୋଇଥିଲା । ବାମଣ୍ଡା ରାଜ୍ୟ ବର୍ତ୍ତମାନ ସୁଦ୍ଧା ସେହି ଅନୁଷ୍ଠାନମାନଙ୍କ ଶୁଭଫଳ ଭୋଗ କରି କରି ଆସୁଅଛନ୍ତି । ରାଜା, ରାଜ୍ୟର ବିଦ୍ୟାଳୟ ସମୂହର ଶିକ୍ଷକଗଣଙ୍କର ଉଚ୍ଚ ପରୀକ୍ଷାଦାନର ବ୍ୟବସ୍ଥା ପ୍ରଚାର କରି କହି ଦେଇଥିଲେ ଯେ, ଯେଉଁ ଶିକ୍ଷକମାନେ ଉଚ୍ଚ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବେ, ସେମାନେ ଉଚ୍ଚତର ବେତନରେ, ଉଚ୍ଚତର ବିଦ୍ୟାଳୟରେ, ଶିକ୍ଷକ ପଦ ପ୍ରାପ୍ତ ହେବେ । ଯୁବରାଜ ମଧ୍ୟ ସଂଗେ ସଂଗେ ପ୍ରଚାର କରି ଦେଇଥିଲେ ଯେଉଁ ଛାତ୍ର ଏବଂ ଶିକ୍ଷକମାନେ ନିର୍ଦ୍ଦିଷ୍ଟ ବିଷୟରେ ଉତ୍କୃଷ୍ଟ ପ୍ରବନ୍ଧ ରଚନାକରିପାରିବେ, ସେମାନେ ପୁରସ୍କୃତ ହେବେ । ସେହିପରି ପରୀକ୍ଷାରେ ରାଜ ପରିବାରର କର୍ମଚାରୀବୃନ୍ଦ ସନ୍ତୋଷଜନକ ପ୍ରବନ୍ଧ ରଚନା କଲେ, ଯୁବରାଜ ସେହି କର୍ମଚାରୀଙ୍କୁ ବର୍ଷରାନ୍ତେ ସ୍ୱତନ୍ତ୍ର ଦଶଟଙ୍କା ପୁରସ୍କାର ଦେବେ । ଜ୍ଞାନ ବିସ୍ତାର ବିଷୟରେ ପିତାଙ୍କର ନାନାବିଧ ସଦ୍‌ଅନୁଷ୍ଠାନ ସଂଦର୍ଶନରେ, ଯୁବରାଜ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନଦେବ ମଧ୍ୟ ଓଡ଼ିଶାର ମହିଳା ମଣ୍ଡଳୀଙ୍କର ଜ୍ଞାନ ବୃଦ୍ଧି କଳ୍ପେ ପ୍ରତିଷ୍ଠିତ ଓ ପରିଚାଳିତ 'ଆଶା' ନାମ୍ନୀ ପତ୍ରିକାର ବ୍ୟୟଭାର



Digitized by srujanika@gmail.com

ବହନ କରି ତାହାକୁ ଦୀର୍ଘକାଳ ଜୀବିତ ରଖିଥିଲେ । ଏହି ସମସ୍ତ ଘଟଣାରୁ ଜଣାପଡ଼େ ଯେ ସବୁ ଅନୁଷ୍ଠାନର ପ୍ରବାହ ସଦ୍ ଅନୁଷ୍ଠାନର ଜନୟିତ୍ରୀ ଏବଂ ଥରେ ବଂଶଗତ ହେଲେ ତହିଁରୁ ଶତବିଧ ଅମୃତଫଳ ପ୍ରସବିତ ହୋଇ ପୁରୁଷାନୁକ୍ରମେ ଲୋକ ସମାଜର ଅଶେଷବିଧ କଲ୍ୟାଣ ସାଧନ କରିଥାଏ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଯେତେବେଳେ ଯେଉଁ ସ୍ଥାନକୁ ଯାଇଛନ୍ତି, ବିବିଧ କଲ୍ୟାଣ ସାଧନରେ, କି ବ୍ୟକ୍ତିଗତ କି ସମଷ୍ଟିଗତ ଆକାରରେ ସର୍ବଦାହିଁ ଅର୍ଥ ସାହାଯ୍ୟରେ ମୁକ୍ତହସ୍ତ ଥିଲେ । ଅର୍ଥାଭାବେ ଅସହାୟ ବ୍ୟକ୍ତି, ପୁତ୍ର ସନ୍ତାନଙ୍କର ବିଦ୍ୟାଶିକ୍ଷାର ବ୍ୟବସ୍ଥା କରି ନପାରି କ୍ଳେଶ ଅନୁଭବ କରୁଛନ୍ତି, ସେପରି ସ୍ଥଳେ, ସେହି ସମସ୍ତ ଅସହାୟ ବାଳକମାନଙ୍କର ବିଦ୍ୟାଳୟ ବେତନର ବ୍ୟବସ୍ଥା କରି ଦେଉଥିଲେ । କୌଣସି ସ୍ଥାନରେ କୌଣସି ବିଦ୍ୟାଳୟ ଅର୍ଥାଭାବର ହୀନଦଶାପ୍ରାପ୍ତ ହେଉଅଛି, ଜାଣିବା ମାତ୍ରେ, ତାହାର ଦୂରାବସ୍ଥା ଦୂରୀକରଣ ପାଇଁ ଅର୍ଥ ସାହାଯ୍ୟ କରି ତାହକୁ ରକ୍ଷା କରି ଅଛନ୍ତି । ବାମଣ୍ଡା ରାଜ ଜୀବନର ଏଭଳି ବହୁ ବହୁ ଘଟଣାର ଉଲ୍ଲେଖ କରିବାକୁ ଗଲେ, ପୋଥିର କଳେବର ବହୁ ବିସ୍ତୃତ ହେବ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ତାଙ୍କ ନିର୍ଦ୍ଦିଷ୍ଟ ବାର୍ଷିକ ଆୟର କିଛିକାଂଶ ସର୍ବଦାହିଁ ଏହିପରି ବିବିଧ ସଦନୁଷ୍ଠାନ ପାଇଁ ବ୍ୟୟିତ ହୋଇଅଛି, ଏହି ବିଷୟରେ ତାଙ୍କର ଦେଶକାଳ ପାତ୍ର ବିଚାର ନ ଥିଲା ।*(୨)*

ଗୁଣବାନ ଓ ଦରିଦ୍ର ସାହିତ୍ୟିକଗଣଙ୍କର ଉତ୍ସାହ ବର୍ଦ୍ଧନ ପାଇଁ ସେ ବିବିଧ ଚେଷ୍ଟା ମଧ୍ୟ କରିଥିଲେ । ଦେଶର ଚିନ୍ତା, ବୁଦ୍ଧି ଓ ମତିଗତି କେଉଁ ପଥରେ ଚାଳିତ ହେଉଅଛି, ଜାତୀୟ ସାହିତ୍ୟ ସମ୍ବାଦ ଦାନରେ ସକ୍ଷମ ରାଜା ସାର୍ ବାସୁଦେବ ସୁଢ଼ଳଦେବ ଓଡ଼ିଆ ସାହିତ୍ୟ ସମାଜର ଉତ୍କୃଷ୍ଟ ସାହିତ୍ୟ ସୁପ୍ରଚାର ସାଧନ ହେତୁ ଏକ ସାହିତ୍ୟ ସଭା ପ୍ରତିଷ୍ଠା ପ୍ରସ୍ତାବ ଦେଇଥିଲେ । ସ୍ଥିର ହୋଇଥିଲା ଯେ, କୌଣସି ଗ୍ରନ୍ଥ ଉତ୍ତମ ହେଲେ ଏବଂ ସଭାର ଅଭିଭାବକଗଣ ଅନୁରୋଧ କଲେ, ଗଡ଼ଜାତର ରାଜାମାନେ, ଜମିଦାରମାନେ ଓ ଅନ୍ୟାନ୍ୟ ଅବସ୍ଥାପନ୍ନ ଧନୀ ବ୍ୟକ୍ତିମାନେ ସେହି ଗ୍ରନ୍ଥର କେତେଖଣ୍ଡ ଲେଖାଁ ପ୍ରତ୍ୟେକ କ୍ରୟ କରିବେ । ତାଲିକା ଦେଖି ଜଣାପଡ଼େ, ଏହି ଉଦ୍ଦେଶ୍ୟ ସାଧନ ପାଇଁ, ଏକ ସଭା ପ୍ରତିଷ୍ଠାର ପ୍ରସ୍ତାବ ସହ ଏକ ଆବେଦନପତ୍ର ଓଡ଼ିଶାର ବହୁ ବହୁ ପଦସ୍ଥ ଜମିଦାର ଓ ରାଜନ୍ୟବର୍ଗଙ୍କ ନିକଟକୁ ପ୍ରେରିତ ହୋଇଥିଲା । ଏକ ତାଲିକାରେ ପ୍ରାୟ ତିରିଶ ଜଣ ସଂଭ୍ରାନ୍ତ ପଦସ୍ଥ ବ୍ୟକ୍ତିଙ୍କର ନାମ ଆମେ ଦେଖିବାକୁ ପାଇଅଛୁ । ଅନ୍ୟ ତାଲିକା ମଧ୍ୟ ଥିଲା ବୋଲି ମନେହୁଏ; କିନ୍ତୁ ମୟୂରଭଂଜ, ଡମପଡ଼ା, ବାଲେଶ୍ୱର ଜମିଦାର ରାଧାଚରଣ ଦାସ, କାଉପୁରର ମହାଶୟ, ପଦ୍ମପୁର ଚନ୍ଦ୍ରପୁରର ଜମିଦାର ସାହେବଗଣ, ପତ୍ର ପ୍ରାପ୍ତିର



Digitized by srujanika@gmail.com

ସ୍ୱୀକାର ଓ ଉତ୍କୃଷ୍ଟ ଗ୍ରନ୍ଥ ପ୍ରକାଶିତ ହେଲେ, ପ୍ରତ୍ୟେକ କେତେଖଣ୍ଡ ଲେଖା କ୍ରୟ କରି ଉତ୍ସାହଦାନର ଅଙ୍ଗୀକାରରେ ଆବଦ୍ଧ ହୋଇଥିଲେ । ଅନ୍ୟାନ୍ୟ ବହୁ ବହୁ ସ୍ଥାନରୁ ପ୍ରସ୍ତାବ ସ୍ୱପକ୍ଷ ବା ବିପକ୍ଷ ମତାମତ ସମ୍ବଳିତ କୌଣସି ଉତ୍ତର ମଧ୍ୟ ଆସିଲା ନାହିଁ ଦେଖି ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହି ସଂକଳ୍ପ ତ୍ୟାଗ କରି ନିଜେ ଯଥାସାଧ୍ୟ ସାହାଯ୍ୟଦାନ ପଥ ମୁକ୍ତ ରଖି କାର୍ଯ୍ୟ କରିବାରେ ଲାଗିଲେ । ତେଣୁ ମନେହୁଏ, ଉତ୍ତମ ଆଦର୍ଶ ପରିପୂରଣପାଇଁ ବହୁ ଲୋକଙ୍କ ସମବେତ ସହାୟତା ଲାଭ ଏହି ଦେଶ ଭାଗ୍ୟରେ ବର୍ତ୍ତମାନ ସୁଦ୍ଧା ସ୍ୱପ୍ନ ବୋଲି ମନେହୁଏ । ତେଣୁ ସାର୍ ବାସୁଦେବ ତାଙ୍କ ସମୟର ଓଡ଼ିଶା ଅନ୍ଧକାର ଆକାଶର ବୃହସ୍ପତି ।



---

ପାଦଟୀକା

(୧) ସ୍ୱର୍ଗତ ରାୟ ରାଧାନାଥ ରାୟ ବାହାଦୁରଙ୍କ କଥିତ ଆଲୋଚନା ଏବଂ ଷ୍ଟେଟର ପ୍ରଧାନ କର୍ମଚାରୀ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦାଶ ମହାଶୟଙ୍କ କଥିତ ପ୍ରସଂଗରୁ ଗୃହୀତ ।

(୨) କଟକ ଓ ପୁରୀର ଭଦ୍ର ସମାଜରେ ରାଜା ବାହାଦୁରଙ୍କର ଏହିପରି ବହୁ ବହୁ ଅନୁଷ୍ଠାନ ସ୍ୱୀକୃତ । ଏହି ସମ୍ବାଦ ସ୍ୱର୍ଗତ ମଧୁସୂଦନ ରାଓଙ୍କ ନିକଟରୁ ଆମେ ଶୁଣିଅଛୁ ।



Digitized by srujanika@gmail.com

## ନବମ ଅଧ୍ୟାୟ

# ବୋମ୍ବାଇ, ପୁନା ଓ ଦାକ୍ଷିଣାତ୍ୟ ଭ୍ରମଣ

### (କ) ବୋମ୍ବାଇ ଭ୍ରମଣ

ବିଦେଶ ଭ୍ରମଣ ଶିକ୍ଷାଲାଭର ଏକ ବିଶିଷ୍ଟ ଦ୍ୱାର । ଶାସ୍ତ୍ର ଓ ପୋଥିଗତ ବିଦ୍ୟା ସବୁବେଳେ କାର୍ଯ୍ୟକାରୀ ହୁଏନାହିଁ । ସଂସାରର ବିଭିନ୍ନ ତତ୍ତ୍ୱ, ନାନାଦେଶର ସମାଜ ସମ୍ବାଦ ଓ ବିବିଧ ଅନୁଷ୍ଠାନ ଓ ପ୍ରତିଷ୍ଠାନ ସମ୍ବାଦ, ଅଧୀତ ବିଦ୍ୟାର ପରିପୋଷଣରେ ଓ ପରିପକ୍ୱତା ଲାଭରେ ସହାୟତା କରିଥାଏ । ତେଣୁ ରାଜା ବାସୁଦେବ ସୁଯୋଗ ଓ ସୁବିଧା ମିଳିଲେ ଭାରତବର୍ଷର ନାନାସ୍ଥାନ ପରିଭ୍ରମଣ କରିଅଛନ୍ତି । ଅର୍ଜିତ ଜ୍ଞାନ ଓ ଦୃଷ୍ଟ ଘଟଣା ସମୂହ ଦ୍ୱାରା ନିଜ ରାଜ୍ୟର ଉନ୍ନତି ସାଧନରେ ପ୍ରାଣପଣେ ଯତ୍ନକରି ଅକ୍ଷୟକୀର୍ତ୍ତି ରଖିଯାଇଛନ୍ତି । ବିଦେଶ ଭ୍ରମଣ ଓ ତୀର୍ଥ ପର୍ଯ୍ୟଟନ ତାଙ୍କର ଏତେ ପ୍ରିୟ କାର୍ଯ୍ୟଥିଲା ଯେ, ବିବାହ ପୂର୍ବରୁ ପ୍ରତ୍ୟେକ ରାଜକୁମାରୀଙ୍କୁ ସେ ବିଦେଶର ନାନା ସ୍ଥାନ ଓ ତୀର୍ଥ ଭ୍ରମଣ କରାଇ ସେମାନଙ୍କର ଜ୍ଞାନ ଓ ବୁଦ୍ଧି ବୃତ୍ତିର ପ୍ରସାର କରାଇଛନ୍ତି । କନ୍ୟାଗଣଙ୍କ ପ୍ରତି ଏହା ତାଙ୍କର ଏକ କର୍ତ୍ତବ୍ୟ ବୋଲି ଅବଶ୍ୟ ପରିଗଣିତ ହୋଇଥାଏ । ।

ପ୍ରସଂଗକ୍ରମେ ପୂର୍ବରୁ କୁହାଯାଇଅଛି, ସେ ରାଜଧାନୀ ସୁଲଭ ନାନା ବିଷୟକ ଜ୍ଞାନାର୍ଜ୍ଜନ ପାଇଁ ପୁନଃ ପୁନଃ କଲିକତା ଆସି ଅବସ୍ଥାନ କରୁଥିଲେ । କଲିକତାରେ ସୌଖିନ୍ ଓ ସଂପନ୍ନ ଭଦ୍ରମଣ୍ଡଳୀଙ୍କ ସହିତ ମିଳିତ ହୋଇ ନିର୍ମଳ ଆନନ୍ଦ ସଂଭୋଗ କରିବା ପାଇଁ ବ୍ୟସ୍ତ ହେଉଥିଲେ । ବ୍ୟବସାୟ ବାଣିଜ୍ୟର ସହଜ ପନ୍ଥା ଉଦ୍‌ଭାବନ ପାଇଁ କଲିକତାର ବାଣିଜ୍ୟ କେନ୍ଦ୍ର ସବୁ ପରିଦର୍ଶନ କରୁଥିଲେ । ବାମଣ୍ଡାରେ ଧନ ସଂପଦ ବୃଦ୍ଧି ଉପଯୋଗୀ ଶିଳ୍ପାୟନ ପ୍ରତିଷ୍ଠା ପାଇଁ କଲିକତାସ୍ଥ ନାନା ସ୍ଥାନର ଶିଳ୍ପ କେନ୍ଦ୍ର ସବୁ ପରୀକ୍ଷା କରୁଥିଲେ । ରାଜକୁମାର, ରାଜକୁମାରୀ ଓ ଅନ୍ୟାନ୍ୟ ପୁରାଙ୍ଗନାଙ୍କର ହୃଦୟ ଓ ମନର ପ୍ରଶସ୍ତତା ପାଇଁ ଏକପକ୍ଷରେ ଯେପରି ଯାଦୁଘର, ପଶୁଶାଳା, ଶିବପୁରର ଉଦ୍ୟାନ ଦର୍ଶନର ବ୍ୟବସ୍ଥା କରୁଥିଲେ, ଅପରପକ୍ଷରେ ଇଂରେଜ ସଉଦାଗରଙ୍କର ବ୍ୟବସାୟର କେନ୍ଦ୍ରସ୍ଥଳ ମଧ୍ୟ ପର୍ଯ୍ୟବେକ୍ଷଣ କରିବା ପାଇଁ ବ୍ୟବସ୍ଥା କରି ଦେଉଥିଲେ । ଜ୍ଞାନାର୍ଜ୍ଜନ ଓ ତଦ୍‌ଦ୍ୱାରା ଜୀବନର



Digitized by srujanika@gmail.com

କର୍ମକ୍ଷେତ୍ରରେ ଉତ୍କର୍ଷ ସାଧନ ହିଁ ସାର୍ ବାସୁଦେବଙ୍କର ସକଳ କର୍ମର ମେରୁଦଣ୍ଡ ଥିଲା ଏବଂ କୌଣସି ସଦନୁଷ୍ଠାନ ଦେଖିବାମାତ୍ରେ ହିଁ, ତାହାର ଅନୁରୂପ ଅନୁଷ୍ଠାନ ଦ୍ୱାରା ସ୍ୱରାଜ୍ୟର ପ୍ରଜା ସାଧାରଣଙ୍କ ଏବଂ ରାଜଧାନୀର ଶ୍ରୀବୃଦ୍ଧି ସାଧନ ସଂକଳ୍ପ ଅଧିକାର କରୁଥିଲା, ଏହା ହିଁ ରାଜା ସାର୍ ବାସୁଦେବଙ୍କ ସ୍ୱାଭାବିକ ରାଜ ଧର୍ମରେ ପରିଣତ ହୋଇଥିଲା । ଏହି ଯେ ବାମଣ୍ଡାରାଜ୍ୟ ଓ ଦେବଗଡ଼ ରାଜଧାନୀ ପ୍ରତି ଅପରିସୀମ ସ୍ନେହ ମମତା ଓ ଏହାର ଶ୍ରୀସଂପଦ ବୃଦ୍ଧି କରିବା ପାଇଁ ନିୟତ ଯତ୍ନଚେଷ୍ଟା, ଏହାହିଁ ସେହି ରାଜପୁରୁଷଙ୍କର ପରମ ପ୍ରିୟ କାର୍ଯ୍ୟରେ ପରିଣତ ହୋଇଥିଲା । ତେଣୁ ତାଙ୍କୁ ଭାରତୀୟ ରାଜନ୍ୟବର୍ଗଙ୍କର ମଧ୍ୟରେ ଆଦର୍ଶ ରାଜା ବୋଲି ବର୍ଣ୍ଣନା କରିବାରେ ବିନ୍ଦୁମାତ୍ର କୁଣ୍ଠାବୋଧ ଦେଉନାହିଁ । ଆଉ ଇଂରେଜ ରାଜକର୍ମଚାରୀଗଣ ବର୍ଷପରେ ବର୍ଷ ବାର୍ଷିକ ଶାସନ ବିବରଣୀରେ ତାଙ୍କୁ ସେହିପରି ବିଶେଷ ବିଶିଷ୍ଟ ରାଜା ବୋଲି ସ୍ୱୀକାର କରିଯାଇଅଛନ୍ତି ।(୧)

ରାଜା ସାର୍ ବାସୁଦେବ ପ୍ରଥମ ବୟସରୁ ଆରମ୍ଭ କରି ବହୁଥର ଉତ୍ତର ପଶ୍ଚିମାଞ୍ଚଳ, ବିଶେଷ ଭାବରେ କାଶୀ ଯାଇ ବହୁ ବିଷୟରେ ତତ୍ତ୍ୱ ଅବଗତ ହୋଇଛନ୍ତି ଏବଂ ସେ ସବୁର ଅନୁକରଣରେ ନିଜ ରାଜ୍ୟରେ ବିବିଧ ସଦ୍‌ନୁଷ୍ଠାନର ସୂତ୍ରପାତ କରି ଯାଇଅଛନ୍ତି । ଏହି ବିଷୟରେ ଆଲୋଚନା ମଧ୍ୟ ପୂର୍ବେ କରାଯାଇଅଛି । ବର୍ତ୍ତମାନ ତାଙ୍କ ମଧ୍ୟପ୍ରଦେଶର ନାଗପୁର ହୋଇ ବୋମ୍ବାଇ ଯାତ୍ରା ବିଷୟରେ ଆଲୋଚନା କରୁଅଛି ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ, ଜ୍ୟେଷ୍ଠ ରାଜକୁମାର ଟିକାୟତ ସଚ୍ଚିଦାନନ୍ଦ ଦେବ, ଜଳନ୍ଧର ଦେବ, କେଶବଚନ୍ଦ୍ର ଦେବ, ରାମଭଦ୍ର ସାହଦେଓ ଏବଂ ରାଜ ଚିକିତ୍ସକ ଡାକ୍ତର ଲକ୍ଷ୍ମୀନାରାୟଣ ନାୟକ, ସମ୍ବଲପୁର ହିତୈଷିଣୀର ସଂପାଦକ ନୀଳମଣି ବିଦ୍ୟାରତ୍ନ, ବାବୁ ଈଶ୍ୱରଚନ୍ଦ୍ର ମିତ୍ର, ବାବୁ ରାମଚନ୍ଦ୍ର ପାଲ୍ ଓ ଭୃତ୍ୟବର୍ଗ ସମସ୍ତେ ବାମଣ୍ଡା ଷ୍ଟେସନ ଦେଇ ଯାତ୍ରା ଆରମ୍ଭ କରନ୍ତି । ପଥରେ ବିଳାସପୁର, ରାୟପୁର, ନାଗପୁର ଅବତରଣ ଓ ବିଶ୍ରାମ କରିଥିଲେ । ନାଗପୁରରେ ଅମ୍ବାଚାରୀ ଜଳାଶୟ, ତେରେଂଖାଡ଼ି ବଗିଚା, ସରକାରୀ ଉଦ୍ୟାନ ମହାରାଜ ବାଗ୍, କ୍ଷୁଦ୍ରାକାର ହେଲେ ମଧ୍ୟ ଯାଦୁଘର ଦେଖିବାର ଜିନିଷ । ରାଜା ବାସୁଦେବ ବିଶ୍ରାମାନ୍ତେ କ୍ରମେ କ୍ରମେ ଏହି ସବୁସ୍ଥାନ ଦର୍ଶନରେ ଅଗ୍ରସର ହୁଅନ୍ତି । ସହରର ପୂର୍ବୋତ୍ତର ଦିଗରେ ପ୍ରାୟ ଦେଢ଼ କ୍ରୋଶ ଦୂରରେ ଉଚ୍ଚ ମାଳଭୂମିର ମଧ୍ୟସ୍ଥଳରେ ଏକ ସୁବୃହତ୍ ଜଳାଶୟ । ଏହାର ତିନିପାଖରେ ଉଚ୍ଚ ମାଳଭୂମି ଦେଇ ସୁବିମଳ ବାରିକଣା ବିନ୍ଦୁ ବିନ୍ଦୁ କ୍ଷରିତ ହୋଇ ଏକ କ୍ଷୁଦ୍ର ନଦୀ ପ୍ରବାହିତ । ଏହି ଜଳ ସ୍ନାନ ଓ ପାନ ପାଇଁ ସଂପୂର୍ଣ୍ଣ ଉପଯୋଗୀ ବୋଲି ସ୍ଥିରୀକୃତ ହେବା ଫଳରେ, ଏହାର ଅନାବୃତ୍ତ ଦିଗରେ ବୃହଦାୟତନ ବିଶିଷ୍ଟ ଉଚ୍ଚ ପ୍ରାଚୀର ନିର୍ମାଣ କରାଇ ଏହି ଜଳରାଶି ସଂଚିତ କରାଯାଇଅଛି । ଯେଉଁ



Digitized by srujanika@gmail.com

ପରିମାଣ ଜଳ ସର୍ବଦା ସଂଚିତ ରଖିବା ଆବଶ୍ୟକ, ତାହାର ଅତିରିକ୍ତ ଜଳ ବାହାରି ଯିବାପାଇଁ ଏକ ପଥ ପ୍ରାଚୀରର ଶୀର୍ଷର ଏକ ପାର୍ଶ୍ୱରେ ଅବସ୍ଥିତ । ଏହି ବେଷ୍ଟନୀ ଭିତରୁ ସଂଚିତ ପ୍ରଚୁର ଜଳ ନାଗପୁର ସହରର ଅସଂଖ୍ୟ ଲୋକଙ୍କର ନିତ୍ୟ ପ୍ରୟୋଜନୀୟ ସମସ୍ତ କାର୍ଯ୍ୟର ସହାୟତା କରିଥାଏ । ସୁବ୍ୟବସ୍ଥା ଗୁଣରେ ସେହି ଜଳାଶୟ ଏକ କ୍ଷୁଦ୍ର ହ୍ରଦବୋଲି ଭ୍ରମ ଜନ୍ମାଇ ଥାଏ । ପ୍ରଦତ୍ତ ବନ୍ଧ ଏତେ ଉଚ୍ଚ ଯେ, ତାହା ଉପରେ ଆରୋହଣ କଲେ, ନାଗପୁର ସହରର ଅନେକାଂଶ ଓ ବୃହତ୍ ଅଟ୍ଟାଳିକାମାନ ଦୃଷ୍ଟିଗୋଚର ହୋଇଥାଏ । ଅପରାହ୍ନ ସମୟରେ ଏହି ସ୍ଥାନର ଦୃଶ୍ୟ ଅତୀବ ରମଣୀୟ । ବନ୍ଧର ଉଚ୍ଚାସ୍ଥାନର ଆରୋହଣ କରି ଦିନମଣିଙ୍କ ଅସ୍ତଗମନ ପରମ ରମଣୀୟ ମନେହୁଏ । କଂପାନୀ ଉଦ୍ୟାନରେ ମହାରାଣୀ ଭିକ୍‌ଟୋରିଆଙ୍କର ଏକ ସୁନ୍ଦର ମୂର୍ତ୍ତି ପ୍ରତିଷ୍ଠା ହୋଇଅଛି । ଏହି ଉଦ୍ୟାନ ନାନାବିଧ ପୁଷ୍ପ ଫଳରେ ସର୍ବଦା ହିଁ ପରିଶୋଭିତ । ସଂଗେ ସଂଗେ ଏହା ମଧ୍ୟରେ ନାନା ସ୍ଥାନରେ ଜୀବ ନିବାସ ମଧ୍ୟ ରହିଛି । ଉଦ୍ୟାନ ପ୍ରବେଶର ପ୍ରଧାନ ଦ୍ୱାରରେ ଏକ ସୁବୃହତ୍ ହସ୍ତୀ ମୂର୍ତ୍ତି ପ୍ରତିଷ୍ଠିତ । ଦେଖିଲେ ସହସା ଜୀବିତ ବୋଲି ଭ୍ରମ ଜନ୍ମେ । ଏହା ସହର ମଧ୍ୟରେ ଉତ୍ତମ ଭ୍ରମଣ ସ୍ଥାନ । ଭୋଁସଲା ରାଜାମାନଙ୍କର ରାଜଧାନୀ ପ୍ରାଚୀନ ସହର କେତେକ ପରିମାଣରେ ଅପରିଚ୍ଛନ୍ନ ହେଲେ ମଧ୍ୟ, ସହରର ଅପରାଂଶ ସୀତାବଲ୍ଡିର ପଥଘାଟ ପରିଚ୍ଛନ୍ନ । ଏଠାରେ ସୀତାବଲ୍ଡି ପର୍ବତ ଉପରେ ପ୍ରତିଷ୍ଠିତ ଦୁର୍ଗ ରହିଅଛି ।*(୨)* ଏଠାରେ ଦୁଇଟା ଲୁଗାକଳ ଅଛି, ମାନନୀୟ ଚିଟନବିଶ ପ୍ରମୁଖ ମହାରାଷ୍ଟ୍ରୀୟଗଣ ପରିଚାଳିତ ଲୁଗାକଳ 'ସ୍ୱଦେଶ ମିଲ୍' ନାମରେ ଅବିହିତ । ଏହାର ଅବସ୍ଥା ଆଶାନୁରୂପ ଉତ୍ତମ ନୁହେଁ, ତଥାପି ଏହାର କାର୍ଯ୍ୟ ବେଶ୍ ଚାଲୁଅଛି । ଅପରଟି ଧନ କୁବେର ଟାଟା ମହୋଦୟ ପ୍ରମୁଖ ପାର୍ଶୀ-ବଣିକଙ୍କର କର୍ତ୍ତୃକ ପରିଚାଳିତ । ଏହାର କାର୍ଯ୍ୟ ପରିଚାଳନା ଓ ପରିଦର୍ଶନଭାର ଅଭିଜ୍ଞ ପାର୍ଶୀ କର୍ମଚାରୀମାନଙ୍କର ଉପରେ ନ୍ୟସ୍ତ । ଏହି ବିରାଟ ମିଲ୍‌ରେ କୋଟ୍-ପ୍ୟାଣ୍ଟ ଇତ୍ୟାଦି ଉପଯୋଗୀ ମୋଟା ଛିଟ କନା, ଟାଓ୍ୱାଲ୍, ବିଛଣା ଚାଦର ପ୍ରଭୃତି ବିବିଧ ସୂତା ଦ୍ରବ୍ୟ ପ୍ରସ୍ତୁତ ହୋଇଥାଏ । ରାଜା ସାର୍ ବାସୁଦେବ ନାଗପୁରର ଏହି ସମସ୍ତ ସ୍ଥାନ ଦର୍ଶନ ଓ ଭ୍ରମଣ କରି ବୋମ୍ବାଇ ଅଭିମୁଖେ ଯାତ୍ରା କରନ୍ତି । ବାଟରେ ନାସିକ୍‌ଠାରେ ଅବତରଣ କରି ଗୋଦାବରୀ ସ୍ନାନ ଓ ପଞ୍ଚବଟୀ ଦର୍ଶନ କରନ୍ତି । ଏଠାକାର ନିର୍ଜନତା ହୃଦୟରେ ଏକ ଅପୂର୍ବ ଶାନ୍ତ ରସର ସଂଚାର କରିଦିଏ । ଅତି ପ୍ରାଚୀନ ବୃକ୍ଷମାନଙ୍କ ଛାୟା ଦଳ ଦେଇ ଗୋଦାବରୀ ଶିଳାଘାତ ସହ୍ୟକରି କ୍ରମେ ଅଗ୍ରସର ହୋଇଅଛି । ନଦୀତଟରେ ଦେବାଳୟମାନ ପ୍ରତିଷ୍ଠିତ । ଏଭଳି ରମଣୀୟ ଓ ତୃପ୍ତିପ୍ରଦ ସ୍ଥାନ ଦାକ୍ଷିଣାତ୍ୟରେ ବିରଳ, ଆର୍ଯ୍ୟାବର୍ତ୍ତର ଉତ୍ତରାଂଶରେ ମଧ୍ୟ ଯେ ଅଧିକ ରହିଛି ତାହା ମନେ ହୁଏ ନାହିଁ । ରାମ ବନବାସ



Digitized by srujanika@gmail.com

କାଳରେ ପଞ୍ଚବଟୀ (ନାସିକ) ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଏଠାରେ ବାଜୀ ରାଓ ପ୍ରତିଷ୍ଠିତ ରାମମନ୍ଦିର ଓ ଅତିଥିଶାଳା ରହିଅଛି । ଏଗାର ଗୋଟି ପାଣ୍ଡବଗୁହା ବହୁ ଅର୍ଥ ବ୍ୟୟରେ ପ୍ରସ୍ତୁତ ବୋଲି ମନେହୁଏ । ଅସଂଖ୍ୟ ବ୍ରାହ୍ମଣଙ୍କର ବାସ, ଯାତ୍ରୀଗଣଙ୍କର ପ୍ରତି ଏମାନଙ୍କର ଅତ୍ୟାଚାରର ସୀମା ନାହିଁ । ନିକଟରେ ତପୋବନ ନାମକ ଏକ ଉପବନ ରହିଛି । ରାମସୀତା ଏହି ଉପବନରେ ବାସ କରୁଥିଲେ ବୋଲି ବିଦିତ । ରାଜା ବାହାଦୁର ଦଳବଳ ସହ ଏହି ସବୁ ସ୍ଥାନ ଦର୍ଶନ କରି ବୋମ୍ବାଇ ଯାତ୍ରା କରନ୍ତି ।

ରାଜା ବାହାଦୁର, ଯୁବରାଜ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ବାହାଦୁର, ନୀଳମଣି ବିଦ୍ୟାରତ୍ନ, ଡାକ୍ତର ବାବୁ ପ୍ରଭୃତି ସମସ୍ତଙ୍କୁ ନେଇ ସମୁଦ୍ରପଥରେ ଏଲିଫ୍ୟାଣ୍ଟା ଦ୍ୱୀପକୁ ପର୍ବତ ଗୁହା ଦେଖିବାକୁ ଯାଇଥିଲେ । ଦର୍ଶନାନ୍ତେ ପ୍ରତ୍ୟାବର୍ତ୍ତନ କାଳରେ, କ୍ଷୁଦ୍ର ଷ୍ଟିମରଟି ସାଗର ତରଙ୍ଗରେ ଜଳମଗ୍ନ ହେବାର ଉପକ୍ରମ କରିଥିଲା । ସହଯାତ୍ରୀ ଦଳ, ରାଜା ଓ ରାଜକୁମାରଙ୍କ ବିପଦ ସମ୍ଭାବନାରେ ବିହ୍ୱଳ ହୋଇ, ବିପଦ ଆହୁରି ବୃଦ୍ଧି କରାଇ ଦେଇଥିଲେ; କିନ୍ତୁ ସେହି ବିପଦରୁ ଉଦ୍ଧାର ଲାଭ କରି ତୀରରେ ଉତ୍ତୀର୍ଣ୍ଣ ହୋଇଥିଲେ । ରାଜା ବାହାଦୁର ବୋମ୍ବାଇର ରାଜୋଦ୍ୟାନ, ଲାଟ୍‌ଭବନ, ବନ୍ଦର, ନାନାଦେଶୀୟ ବାଣିଜ୍ୟ ପୋତ ଓ ସେହି ସ୍ଥାନର କର୍ମ ଶୃଙ୍ଖଳା ପର୍ଯ୍ୟବେକ୍ଷଣ କରିବା ପାଇଁ ଅଗ୍ରସର ହୁଅନ୍ତି । ସଂଗେ ସଂଗେ ବୋମ୍ବାଇର 'ଭିକ୍‌ଟୋରିୟା ଟର୍‌ମିନସ୍' ରେଲଓ୍ୱେ ଷ୍ଟେସନର ଅପୂର୍ବ ନିର୍ମାଣ କୌଶଳ ଓ ତାହାର ଶୋଭା ସଂଦର୍ଶନରେ ଆନନ୍ଦ ଉପଭୋଗ କରିଥିଲେ । ଏଠାକାର ପୋଷ୍ଟ ଅଫିସ ଓ ପ୍ରଧାନ ବାଣିଜ୍ୟାଗାର ପରିଦର୍ଶନ କରି ପ୍ରଭୂତ ଅଭିଜ୍ଞତା ଅର୍ଜନ କରନ୍ତି । ହାଇକୋର୍ଟ, ପୋଷ୍ଟ ଅଫିସ୍ ପ୍ରଭୃତି ସରକାରୀ କାର୍ଯ୍ୟାଳୟମାନ ଦେଖିବାକୁ ଏବଂ ସଂଗେ ସଂଗେ ଜ୍ୟେଷ୍ଠ କୁମାରଙ୍କୁ ଏହିପରି ବିବିଧ ବିଷୟରେ ଅଭିଜ୍ଞତା ଅର୍ଜନ ସୁଯୋଗ ଦାନ କରିବାରେ ଲାଗିଲେ ।

ବୋମ୍ବାଇ ଅବସ୍ଥାନ କାଳରେ ସ୍ଥାନୀୟ ପ୍ରଧାନ ବ୍ୟକ୍ତିଗଣଙ୍କ ସହିତ ସାକ୍ଷାତ କରି ସେ ଦେଶ ଓ ସମାଜ ସମ୍ବନ୍ଧରେ କଥାବାର୍ତ୍ତା କରିଥିଲେ । ସେଠାରେ ପଣ୍ଡିତା ରମାବାଈ ପ୍ରତିଷ୍ଠିତ ସାରଦା-ସଦନ ଦର୍ଶନ କରିବାପାଇଁ ଏବଂ ସେଠାରେ ବୟସ୍କା ବାଳିକାମାନଙ୍କୁ କିପରି ପଦ୍ଧତି ଅନୁଯାୟୀ ଶିକ୍ଷାଦାନ କରାଯାଏ; ତାହା ମଧ୍ୟ ଦେଖିବାପାଇଁ, ଜାଣିବାପାଇଁ ଯାଇଥିଲେ । ପଣ୍ଡିତା ରମାବାଈଙ୍କ ସହିତ ଆଳାପ ପରିଚୟରେ ଆପ୍ୟାୟିତ ହୋଇ, ତାଙ୍କ ଆଶ୍ରମକୁ ରାଜା କିଛି ଅର୍ଥ ମଧ୍ୟ ସାହାଯ୍ୟ କରିଥିଲେ । ପଣ୍ଡିତା ରମାବାଈଙ୍କ ସହିତ ଯାହା କଥାବାର୍ତ୍ତା ହୋଇଥିଲା, ତାହା ସଂସ୍କୃତରେ ହିଁ ହୋଇଥିଲା । ପୂର୍ବରୁ କଥିତ ହୋଇଅଛି ଯେ, ରାଜା ବାହାଦୁର କେବଳ ଆଳଂକାରିକ ନଥିଲେ, ସଂସ୍କୃତ ସାହିତ୍ୟ ଓ ବ୍ୟାକରଣରେ ପୂର୍ଣ୍ଣ ପ୍ରବେଶ ଲାଭ ଓ ଅଭିଜ୍ଞତା ଅର୍ଜନ କରିଥିଲେ, ତେଣୁ ରାଜା ସାର୍ ବାସୁଦେବ



Digitized by srujanika@gmail.com

ସୁଢ଼ଳଦେବ ପଣ୍ଡିତା ମହୋଦୟାଙ୍କୁ ସଂସ୍କୃତରେ ନିମ୍ନଲିଖିତ ମୌଖିକ ଶ୍ଳୋକଦ୍ୱାରା ପ୍ରଶ୍ନ କରିଥିଲେ । ରାଜାଙ୍କର ପ୍ରଶ୍ନ-

'ଯୋ ବୈବିଶ୍ୱେଶ-ଲକ୍ଷ୍ମୀପତିମୁଖ ନଳିନା ନ୍ନିର୍ଗଳଦ୍ୱାକ୍ ସୁଧାବ୍ଧି-
ପ୍ରୋତ୍ତୁ ଙ୍ଗୋଲ୍ଲୋଳକାଳେ ତବ ପରମସୁଖଂ ପୁପ୍ଲୁବେ ହିନ୍ଦୁଧର୍ମଃ ।
ତସ୍ମାନ୍ନିର୍ବ୍ୟାଜ-ଧର୍ମାତ୍ ସୁବିମଳ କୁଳଜେ ! ନିଷ୍କଳଙ୍କାତ୍ କଥଂତେ
ପ୍ରତ୍ୟାବୃତାଃ ପବିତ୍ରାଃ ସୁଲଳିତ ମତଯୋରେମିରେବୈ ବିଧର୍ମେ ।'

ପଣ୍ଡିତା ରମାବାଈଙ୍କର ଉତ୍ତର-

'ନାସ୍ମାକଂ ବିଧର୍ମଃ ବସ୍ତୁତ ଈଶ୍ୱରେ ଜୀବସ୍ୟ ସମ୍ବନ୍ଧ ଏବଧର୍ମଃ,
ସତୁ ବେଦାଧ୍ୟୟନାଦ୍ ଭବିଷ୍ୟତି, କିନ୍ତ୍ୱସ୍ମାକଂ ବେଦାଧିକାରୋ ନାସ୍ତି,
ସ୍ତ୍ରୀ ଶୂଦ୍ରୌ ନାଧିୟେତା ମିତ୍ୟୁକ୍ତେଃ ଏବଂ ଚ ହିନ୍ଦୁମତେ
ସ୍ତ୍ରୀଣାଂହି ପତିଦେବତା ଇତ୍ୟୁକ୍ତଂ ମନୁଷ୍ୟପୂଜନଂ ସିଦ୍ଧଂ ତାବତା ପରମ
ପ୍ରାପ୍ତିନ୍ନ ଭବିଷ୍ୟତି ଶଙ୍କତାୟା ହିନ୍ଦୁଧର୍ମା ପରିତ୍ୟାଗୋ ବରୀୟାନିତ୍ୟାଦି ।' *(୩)*

ରାଜା, ପଣ୍ଡିତା ରମାବାଈଙ୍କର ସଦନୁଷ୍ଠାନ ସଂକଳ୍ପ ବିଷୟରେ ପ୍ରଶଂସାପୂର୍ଣ୍ଣ ଅଭିମତ ବ୍ୟକ୍ତ କରନ୍ତି ଓ ତାଙ୍କ କାର୍ଯ୍ୟରେ ଉତ୍ସାହ ପ୍ରଦାନ କରନ୍ତି । ପରେ ସେ ବହୁସ୍ଥାନରେ, ବହୁ ବ୍ୟକ୍ତି ଓ ବହୁ ବିଷୟ ପରିଦର୍ଶନ ପାଇଁ ଅଗ୍ରସର ହୋଇଥିଲେ । ରାଜା ବାହାଦୁର ଜ୍ୟେଷ୍ଠପୁତ୍ର ସଂଗେ ମିଳିତ ହୋଇ ସ୍ୱରାଜ୍ୟର ଭାବୀ ଉନ୍ନତିର ବିବିଧ ଉପକରଣ ସଂଗ୍ରହ କରିବାରେ ଲାଗିଲେ । ସେହି ସବୁର ସାହାଯ୍ୟରେ ରାଜ୍ୟ ପାଳନ ସମ୍ବନ୍ଧରେ ନିଜର ଆଦର୍ଶ ପରିସ୍ଫୁଟ କରି ନେବାରେ ଏବଂ ଯୁବରାଜ ସଚ୍ଚିଦାନନ୍ଦଙ୍କର ଭବିଷ୍ୟତ ଆଦର୍ଶ ଗଠନରେ ସହାୟତା କରିବାରେ ରୀତିମତ ବଦ୍ଧପରିକର ହୋଇଥିଲେ ।

ବୋମ୍ବାଇ ସହରର ନାନାସ୍ଥାନ ପର୍ଯ୍ୟଟନ ଓ ପରିଦର୍ଶନ ଶେଷ କରି ରାଜା ବାହାଦୁର ପୁତ୍ର, ଅନ୍ୟ ଆତ୍ମୀୟ ସ୍ୱଜନ ଓ କର୍ମଚାରୀଙ୍କ ସହିତ ଅହମ୍ମଦାବାଦ ଗମନ କରନ୍ତି । ସେଠାରେ ଦେଶୀ ମୂଳଧନରେ ଦେଶୀୟ ଜନସାଧାରଣଙ୍କ ପରିଚାଳନାରେ ସୁବୃହତ୍ ଲୁଗାକଳ ଚାଲୁଅଛି । ସେହି ସମୟରେ ଏହିପରି ଦେଶୀୟ ସୁବୃହତ୍ ଲୁଗାକଳ ଭାରତର ଅନ୍ୟ କେଉଁଠାରେ ନଥିଲା । ସେଠାକାର ସେହି ବିଶାଳକାୟ କାରଖାନା ପୁଙ୍ଖାନୁପୁଙ୍ଖ ପର୍ଯ୍ୟବେକ୍ଷଣ କରି ସ୍ୱଦେଶ ଓ ସ୍ୱରାଜ୍ୟ ଅନୁରାଗୀ ରାଜା ସାର୍ ବାସୁଦେବ ଅପରିମେୟ ଆନନ୍ଦ ସମ୍ଭୋଗ କରିବା ସଂଗେ ସଂଗେ ପ୍ରଭୂତ ଜ୍ଞାନୋପାର୍ଜନ କରିଥିଲେ । ଅହମ୍ମଦାବାଦର କଳକାରଖାନା



Digitized by srujanika@gmail.com

ବିଷୟରେ ଅଭିଜ୍ଞତା ଲାଭ କରି ରାଜା ପୁନରାୟ ବୋମ୍ବାଇ ଫେରି ଆସନ୍ତି ଏବଂ ବୋମ୍ବାଇରୁ ସ୍ୱରାଜ୍ୟାଭିମୁଖେ ଯାତ୍ରା କରନ୍ତି ।

## (ଖ) ପୁନା ଓ ଦାକ୍ଷିଣାତ୍ୟ ଭ୍ରମଣ

ରାଜା ବାସୁଦେବ ପୁଣି କିଛିଦିନ ବିଶ୍ରାମାନ୍ତେ ଆତ୍ମୀୟସ୍ୱଜନ ଓ କର୍ମଚାରୀ ପରିବେଷ୍ଟିତ ହୋଇ ଦାକ୍ଷିଣାତ୍ୟ ଭ୍ରମଣରେ ବହିର୍ଗତ ହୁଅନ୍ତି । ଏଥର ସର୍ବପ୍ରଥମେ ବୋମ୍ବାଇ ବାଟଦେଇ ପୁନା ଗମନ କରନ୍ତି । ଏଠାରେ ଦର୍ଶନୀୟ ବିଷୟ ଅନେକ । ପୁନା ମହାରାଷ୍ଟ୍ରୀୟ ବ୍ରାହ୍ମଣ ସମାଜର ପ୍ରଧାନ କେନ୍ଦ୍ର । ଶିବାଜୀ ମହାରାଜାଙ୍କର ସ୍ମୃତି ଜଡ଼ିତ ନାନା କୀର୍ତ୍ତିର ପରିଚୟ ଲାଭ କଲେ । ଏଠାରେ ମହାରାଷ୍ଟ୍ରୀୟ ବ୍ରାହ୍ମଣ ସମାଜର ରୀତିନୀତି, ଆଚାର ଆଚରଣ ପରିଜ୍ଞାତ ହେବାପାଇଁ ବିନ୍ଦୁମାତ୍ର ତ୍ରୁଟି କରିନାହାନ୍ତି । ଏଠାରେ ମୁସଲମାନ ରାଜଶକ୍ତିର ପ୍ରଭାବ ବର୍ଜ୍ଜିତ ଭାରତୀୟ ନାରୀ ସମାଜର ସ୍ୱାଧୀନ ବିଚରଣ ସ୍ୱଚକ୍ଷୁରେ ସଂଦର୍ଶନ କରି ବଙ୍ଗ ଓ ଓଡ଼ିଶାର ନାରୀ ଜାତିର କଠୋର ଅବରୋଧ ବ୍ୟବସ୍ଥାରେ କିୟତ୍ ପରିମାଣରେ ଆସ୍ଥାହୀନ ହୋଇଥିଲେ । ତେଣୁ ରାଜା ସାର୍ ବାସୁଦେବ ନିଜ ରାଜ ପୁରାଙ୍ଗନାଗଣଙ୍କୁ ନାନାବିଧ ଶିକ୍ଷା କେନ୍ଦ୍ରକୁ ନେଇ ଯିବାରେ କୁଣ୍ଠାବୋଧ କରୁନଥିଲେ; କିନ୍ତୁ ତାହା ବୋଲି ସେ କୌଣସି ଦିନ ପ୍ରାଚ୍ୟ-ପ୍ରାଚୀନ ସାମାଜିକ ରୀତି ନୀତିର ଉଚ୍ଚ ସମାଦରରେ ବିରତ ନ ଥିଲେ । ଭାରତୀୟ ପ୍ରାଚୀନ ରୀତି ପଦ୍ଧତି କଳେବରରେ ସମୟସ୍ରୋତ ଯେଉଁ ସମସ୍ତ ଆବର୍ଜ୍ଜନା ଆନୟନ କରି ସମାଜ ଦେହକୁ ଦୁର୍ବଳ ଓ ମଳିନ କରି ତୋଳିଅଛି, କେବଳ ସେହି ମଳୋଚ୍ଛେଦ ସେ ଚିର ଜୀବନ ପ୍ରାଣପଣେ ପ୍ରୟାସ କରିଯାଇଅଛନ୍ତି । ତାଙ୍କ ଜୀବନର ନାନା ଦେଶ ପର୍ଯ୍ୟଟନ ଫଳରେ ସେ ସବୁ ସାଧିତ ହୋଇଥିଲା । ହିନ୍ଦୁ ଧର୍ମ ଓ ସମାଜ ଜୀବନର ମୂଳ ରୀତି ନୀତି ଉପରେ, ଯେପରି ଏକ ଦିଗରେ ତାଙ୍କର ଗଭୀର ଆସ୍ଥା ଓ ଶ୍ରଦ୍ଧା ଥିଲା, ସେହିପରି ପୁଣି ଅନ୍ୟ ସବୁ ଧର୍ମ ଓ ଧର୍ମ ସମାଜ ପ୍ରତି ଅଭିଜ୍ଞ ଓ ନିଷ୍ଠାବାନ ହିନ୍ଦୁ ଜନୋଚିତ ଉଚ୍ଚ ଉଦାର ଭାବ ମଧ୍ୟ ପୋଷଣ କରୁଥିଲେ । ଏହା ତାଙ୍କର ଆବାଲ୍ୟ ଉଚ୍ଚ ଓ ଉତ୍ତମ ଶିକ୍ଷାର ଫଳ । ଏକଦା ଉତ୍କଳ ବ୍ରାହ୍ମସମାଜର ନେତୃସ୍ଥାନୀୟ ସ୍ୱର୍ଗୀୟ ମଧୁସୂଦନ ରାଓ, ପ୍ରଚାରକ ସ୍ୱର୍ଗୀୟ ନନ୍ଦଲାଲ ବନ୍ଦୋପାଧ୍ୟାୟ, ଶ୍ରୀଯୁକ୍ତ ବିଶ୍ୱନାଥ କର ପ୍ରଭୃତି ବ୍ୟକ୍ତିଗଣ ବାମଣ୍ଡା ଭ୍ରମଣରେ ଯାଇଥିଲେ । ସେଠାରେ ଧର୍ମ ପ୍ରସଙ୍ଗ, ବକ୍ତୃତା ଇତ୍ୟାଦି ମଧ୍ୟ ହୋଇଥିଲା । ରାଜାଦେଶରେ ରାଜଧାନୀରେ ଦିନେ ସାୟଂକାଳେ ବ୍ରହ୍ମୋପାସନାର ଆୟୋଜନ ହୋଇଥିଲା । ସେଠାରେ ପୂର୍ବରୁ ରାଜାଙ୍କ ଅଜ୍ଞାତସାରରେ ତାଙ୍କ ପାଇଁ ଏକ ଉଚ୍ଚ ଆସନ ନିର୍ଦ୍ଦିଷ୍ଟ ଥିଲା । ଉପାସନା ସମୟରେ ରାଜା ବାହାଦୁର ଯେତେବେଳେ ଏହି ଆସନ ଅତିକ୍ରମ କରି ଅପର ସମସ୍ତଙ୍କ ସହିତ



Digitized by srujanika@gmail.com

ସମାସନରେ ବସିବାପାଇଁ ଯାଉଥିଲେ ସେତେବେଳେ ସେହି ନିର୍ଦ୍ଦିଷ୍ଟ ଆସନକୁ ଦେଖାଇ ତାହାଙ୍କୁ ବସିବା ପାଇଁ କୁହାଯିବା ବେଳେ ସେ କହିଥିଲେ, 'ସେହି ଆସନରେ ନନ୍ଦବାବୁ ବସିବେ ।'(୪) ଅର୍ଥାତ୍ ତାହା ଆଚାର୍ଯ୍ୟଙ୍କର ଆସନ । ସେଦିନ ସେହି ରାଜାସନରେ ବସାଇ ନନ୍ଦବାବୁଙ୍କ ଦ୍ୱାରା ବ୍ରହ୍ମୋପାସନା ସଂପନ୍ନ କରାଇଥିଲେ । ଏହା ତାଙ୍କର ସରଳ ଓ ସ୍ୱାଭାବିକ ଶୀତଳ ଓ ଉଦାରତାର ପରିଚାୟକ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ ପୁନା ପରିଦର୍ଶନ କରି ଦକ୍ଷିଣାପଥେ ଅଗ୍ରସର ହୁଅନ୍ତି । ଦକ୍ଷିଣ ଭାରତବର୍ଷ ଦେଇ ଅଗ୍ରସର ହୁଅନ୍ତି । ସର୍ବାଗ୍ରେ ମହୀଶୂର ଅନ୍ତର୍ଗତ ବାଙ୍ଗାଲୋର ନଗରରେ ଉପସ୍ଥିତ ହୁଅନ୍ତି । ମର୍ତ୍ତ୍ୟ ସୃଷ୍ଟି ଭିତରେ କାଶ୍ମୀର ଭୂସ୍ୱର୍ଗ ବୋଲି ବିଦିତ ଏବଂ ରମ୍ୟ କାନନର ନାମ ନନ୍ଦନକାନନ ବାଙ୍ଗାଲୋର ନଗର ନିର୍ମାଣରେ ଭାରତର ଏକଛତ୍ର ସମ୍ରାଟ ଇଂରେଜଙ୍କର ସୌନ୍ଦର୍ଯ୍ୟ ଓ ସୌଷ୍ଠବ ଜ୍ଞାନର ପରାକାଷ୍ଠା ପ୍ରଦର୍ଶିତ ହୋଇଅଛି । ବାଙ୍ଗାଲୋରର ପ୍ରାକୃତିକ ଶୋଭା ଯେଭଳି ସୁନ୍ଦର, ରଚନା ପରିପାଟୀରେ ନଗର ଶୋଭା ଓ ଶୃଙ୍ଖଳା ତତୋଽଧିକ ରମଣୀୟତା ଲାଭ କରିଅଛି । ଏଠାକାର ରାଜପଥ ସବୁ ଉତ୍ତର-ଦକ୍ଷିଣ, ପୂର୍ବ-ପଶ୍ଚିମ ସଳଖ ରେଖା ପରି ପରସ୍ପରଙ୍କର ଦେହ କର୍ତ୍ତନ କରି ଚାଲିଯାଇଛନ୍ତି । ଦେଖିବା ମାତ୍ରେ ହିଁ ବୋଧହୁଏ ସ୍ଥପତି ବିଦ୍ୟା ବିଶାରଦ କୌଣସି ଜଣେ ବା ଦଶଜଣଙ୍କ ମିଳିତ ବୁଦ୍ଧି ଓ ଯତ୍ନ ଚେଷ୍ଟାଫଳରେ ଖଣ୍ଡେ ବୃହଦାକାୟ ଭୂମି ଏକ ଅପୂର୍ବ ଶୋଭନ ଦୃଶ୍ୟ ନଗରୀରେ ପରିଣତ ହୋଇଅଛି । ବାମଣ୍ଡା ରାଜଧାନୀ ଦେବଗଡ଼ର ରାଜପଥ ସବୁ ଯେପରି ସୌଷ୍ଠବ-ସଂପନ୍ନ ଓ ଶୋଭନଦୃଶ୍ୟ ତହିଁରୁ ବୋଧହୁଏ, ସାର୍ ବାସୁଦେବ ବାଙ୍ଗାଲୋର୍‌ର ଆଦର୍ଶରେ ନିଜ ରାଜଧାନୀର ପରବର୍ତ୍ତୀ ରାଜପଥ ସବୁ ରଚନାର ଚେଷ୍ଟା କରିଥିଲେ । ଦେବଗଡ଼ର ଅଧିକାଂଶ ରାଜପଥର କୌଣସି ଏକ ସ୍ଥାନରେ ଛିଡ଼ା ହେଲେ ଅନେକ ଦୂର ପର୍ଯ୍ୟନ୍ତ ସମାନ ଦୃଷ୍ଟି ଚାଲିଯାଏ । ଦେବଗଡ଼ ରାଜପଥ ସବୁ ସର୍ବଦା ବେଶ୍ ପରିଷ୍କାର ପରିଚ୍ଛନ୍ନ ଓ ଭ୍ରମଣ ସୁଖକର । ଆଉ ଏହି ସବୁ ରାଜପଥର ଉଭୟ ପାର୍ଶ୍ୱରେ ରାଜ ଅଟ୍ଟାଳିକା ଓ ସାଧାରଣଙ୍କର ବାସ-ଉପଯୋଗୀ ଗୃହ ସକଳ ଶ୍ରେଣୀବଦ୍ଧ ଓ ଶୋଭନଦୃଶ୍ୟ ।

ସାର୍ ବାସୁଦେବ ସୁଢ଼ଳଦେବଙ୍କ ସେବିତ ଦେବଗଡ଼ର ବିବିଧ ଉନ୍ନତି ଅଧିକତର ଶ୍ରୀବୃଦ୍ଧି ସାଧନରେ ସମର୍ପିତ ଚିତ୍ତ ବର୍ତ୍ତମାନ ରାଜା ବାହାଦୁର ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନଦେବ, ବହୁ ଅର୍ଥ ବ୍ୟୟରେ ବର୍ଷ ପରେ ବର୍ଷ, ନାନା ପ୍ରୟୋଜନ ସାଧନ ପାଇଁ, ନୂତନ ନୂତନ ରାଜ ଅଟ୍ଟାଳିକା ନିର୍ମାଣ କରାଇ, ରାଜପଥ ସବୁ ପରିଷ୍କାର ପରିଚ୍ଛନ୍ନ ରଖିବାର ବ୍ୟବସ୍ଥା ସହିତ, ନଗରର ସର୍ବତ୍ର ନ ହେଉ, ଅନେକ ସ୍ଥାନରେ ରାତ୍ରିର ଅନ୍ଧକାର ନିବାରଣ ପାଇଁ ବୈଦ୍ୟୁତିକ ଆଲୋକ ବ୍ୟବସ୍ଥା କରାଇ, ରାଜଧାନୀରେ ବସବାସର ସୁଖ



Digitized by srujanika@gmail.com

ସୁବିଧା ବୃଦ୍ଧି କରାଇଥିଲେ । ସାର୍ ବାସୁଦେବଙ୍କ ଲୋକାନ୍ତର ଗମନ ପରେ, ବର୍ତ୍ତମାନର ରାଜା ବାହାଦୁର ରାଜଧାନୀର ଉତ୍ତର ସୀମାରେ ପ୍ରଧାନପାଟ ଝରଣାର ଉଭୟ ପାର୍ଶ୍ୱରେ, ପର୍ବତ ଗାତ୍ରରେ ତିନିଗୋଟି ରାଜ ଅଟ୍ଟାଳିକା ନିର୍ମାଣ କରାଇଥିଲେ । ଏ ଗୁଡ଼ିକର ନାମ 'ବସନ୍ତ ନିବାସ' । ଏ ଗୁଡ଼ିକ ଦୂରରୁ ଦେଖିବା ପାଇଁ ଯେପରି ସୁନ୍ଦର ଓ ଚିତ୍ତହର, ବସବାସ ପାଇଁ ତଦପେକ୍ଷା ସୁଖକର । ଏଗୁଡ଼ିକ ସଜ୍ଜିତ ଗୃହ, ତଡ଼ିତାଲୋକେ ଆଲୋକିତ ଏବଂ ସଂଭ୍ରାନ୍ତ ଓ ପଦସ୍ଥ ଅତିଥିଗଣଙ୍କର ପରିଚର୍ଯ୍ୟାରେ ନିୟୋଜିତ । ପ୍ରଧାନପାଟର ପୂର୍ବଦିଗ ପର୍ବତନିବାସରେ ଆମ୍ଭେମାନେ କେତେଦିନ ବାସ କରିଅଛୁ । ସେହି ଗୃହର ପଶ୍ଚିମଦିଗ ବାରଣ୍ଡାରେ ବସି ସୂର୍ଯ୍ୟଙ୍କର ଅସ୍ତଗମନ ଶୋଭା ସଂଦର୍ଶନ ଅନ୍ତରରେ ମୁଦ୍ରିତ ହୋଇ ରହିଅଛି । ବର୍ତ୍ତମାନ ମଧ୍ୟ ସେହି ରମଣୀୟତା ସ୍ମରଣରେ ହୃଦୟରେ ଆନନ୍ଦ ସଂଚାର ହେଉଅଛି । ବର୍ତ୍ତମାନର ରାଜା ବାହାଦୁର କେବଳ ପିତୃକୀର୍ତ୍ତି ରକ୍ଷା କରି ସନ୍ତୁଷ୍ଟ ନୁହନ୍ତି, ସର୍ବଦାହିଁ ସେହି କୀର୍ତ୍ତିକଳାପର ଉଚ୍ଚତର ଉନ୍ନତି ସାଧନ ଓ ଶ୍ରୀ ସଂପାଦନରେ ନିଯୁକ୍ତ ।**(୫)** ଅଧିକ କ'ଣ ବା କହିବି, ସାର୍ ବାସୁଦେବ ଶିକ୍ଷାବିସ୍ତାର ଓ ଲୋକ ସେବାରେ ଆତ୍ମୋତ୍ସର୍ଗ କରି ଜୀବନ ଯାପନ କରି ଯାଇଛନ୍ତି, ତଦୀୟ ପୁତ୍ର ଓ ପ୍ରତିନିଧି ବର୍ତ୍ତମାନର ରାଜା ମଧ୍ୟ କର୍ମବୀର । ରାଜସଭା କରି, ଅମାତ୍ୟବର୍ଗଙ୍କୁ ସାଥୀରେ ନେଇ, ବାଜେ ଗଳ୍ପରେ ସମୟ ଅତିବାହିତ କରିବା ତାଙ୍କର ସ୍ୱଭାବ ବିରୁଦ୍ଧ । ପ୍ରାତଃକାଳ ଶଯ୍ୟାତ୍ୟାଗ ଓ ପ୍ରାତଃକୃତ୍ୟ ସମାପନ ପରେ ରାଜଧାନୀର ନାନା ସ୍ଥାନ ପରିଭ୍ରମଣ ଏବଂ ଆରବ୍‌ଧ କାର୍ଯ୍ୟ କେଉଁଠାରେ କେତେଦୂର ଅଗ୍ରସର ହେଲା, ତାହା ପରିଦର୍ଶନ କରିବା ବର୍ତ୍ତମାନ ରାଜାଙ୍କର ନିତ୍ୟ କର୍ମ । ଏହା ପରେ ସାଧାରଣ ରାଜକାର୍ଯ୍ୟ ପରିଦର୍ଶନ ଓ ପର୍ଯ୍ୟାଲୋଚନାରେ ଦିବା ଦ୍ୱିପହର ଅତିକ୍ରାନ୍ତ ହୁଏ । ଆହାରାନ୍ତେ ବିଶ୍ରାମ ପରେ, ଅପରାହ୍ନରେ ବହୁ ଲୋକଙ୍କର ବିବିଧ ପ୍ରୟୋଜନ ଶ୍ରବଣ, ସଂଧ୍ୟାପରେ ଅମାତ୍ୟ ପରିବେଷ୍ଟିତ ହୋଇ ବିବିଧ ହିତକର ବିଷୟର ଆଲୋଚନା କରନ୍ତି, ରାତ୍ରି ଅନେକ ହେବା ପରେ ଅର୍ଥାତ୍ ୧୧ଘଣ୍ଟା ପରେ ରାତ୍ରି ୧ ଘଣ୍ଟା ପର୍ଯ୍ୟନ୍ତ ଲେଖାପଢ଼ାର ଚର୍ଚ୍ଚା । ଏହିପରି ରାଜଜୀବନ ଯେ, ଦେଶର ଭାଗ୍ୟରେ ନିତ୍ୟାନ୍ତ ବିରଳ, ସେହି ବିଷୟରେ କୌଣସି ସନ୍ଦେହ ଅଛି କି ?

ରାଜା ସାର୍ ବାସୁଦେବ ବାଙ୍ଗାଲୋର୍ ପରିଦର୍ଶନାନ୍ତର ମହୀଶୂର୍ ଗମନ କରନ୍ତି । ସେଠାରେ ରାଜସଦନରେ ଆତ୍ମପରିଚୟ ନଦେଇ ଛଦ୍ମବେଶରେ ରାଜଭବନ, ବିଚାରାଳୟ ଓ ଅନ୍ୟାନ୍ୟ ରାଜ ଅଟ୍ଟାଳିକା ଦେଖିବାକୁ ଯାଆନ୍ତି । ସେଠାକାର ସାମାଜିକ ରୀତି ପଦ୍ଧତି, ଶିକ୍ଷା ଓ ଶିଳ୍ପ ବିଷୟକ ତତ୍ତ୍ୱ ସଂଗ୍ରହରେ ଅଗ୍ରସର ହୁଅନ୍ତି । ଏହି ଉଦ୍ଦେଶ୍ୟ ସାଧନ ପାଇଁ ଏହି ସମସ୍ତ ବିଷୟରେ ପ୍ରଧାନ ପ୍ରଧାନ କେନ୍ଦ୍ରକୁ ସାଗ୍ରହେ ଭ୍ରମଣ କରନ୍ତି, ସାଧାରଣ



Digitized by srujanika@gmail.com

ଭାବରେ ଶିକ୍ଷା, ଶିଳ୍ପ ଓ ସମାଜ ବିଷୟକ ଜ୍ଞାନୋପାର୍ଜ୍ଜନ କରି ପରେ ମହୀଶୂରର ସ୍ୱର୍ଣ୍ଣଖଣି ଦେଖିବା ପାଇଁ ଗମନ କରନ୍ତି, ଖଣିରୁ ସ୍ୱର୍ଣ୍ଣ ସଂଗ୍ରହର ଉପାୟ ପଦ୍ଧତି ସବୁ ତନ୍ନ ତନ୍ନ କରି ଜାଣିବା ପାଇଁ ପୁନଃ ଖଣି ଦର୍ଶନ ପାଇଁ ଯାଇଥିଲେ । ଆସ୍ଥାବାନ ହିନ୍ଦୁ ରାଜ ସଂସାର ମଧ୍ୟରେ ମହୀଶୂର ଏକ ଆଦର୍ଶ ରାଜ୍ୟ, ତେଣୁ ସେ ଏଠାକାର ପ୍ରଧାନ ରାଜକର୍ମଚାରୀମାନଙ୍କ ସହିତ ସାକ୍ଷାତ କରି ସେହି ସୁବୃହତ୍ ରାଜ୍ୟ ପାଳନର ନିୟମ ପଦ୍ଧତି ସବୁ ଉତ୍ତମରୂପେ ପରିଜ୍ଞାତ ହୋଇଥିଲେ । ଏହିପରି ଭାବରେ ସେଠାକାର ପ୍ରଧାନ ପ୍ରଧାନ ବିଭାଗର ଶୀର୍ଷସ୍ଥାନୀୟ ରାଜପୁରୁଷଗଣଙ୍କ ସହିତ ରାଜ୍ୟର ହିତାହିତ ବିଷୟକ ବିବିଧ ପନ୍ଥାର ଆଲୋଚନା ଦ୍ୱାରା ନିଜ ଜ୍ଞାନ ଭଣ୍ଡାର ପୂର୍ଣ୍ଣ କରି, ସେଠାକାର ଧର୍ମ, ସମାଜ ଓ ଶିକ୍ଷାଦାନ ପଦ୍ଧତିର ପର୍ଯ୍ୟାଲୋଚନା ଦ୍ୱାରା ଆପଣାର କର୍ମବୃଦ୍ଧିର ଉତ୍କର୍ଷ ସାଧନ କରି ଆନନ୍ଦ ଅନୁଭବ କରିଥିଲେ । ଅର୍ଥବ୍ୟୟ କରି ଭ୍ରମଣରେ ଯାଇ, କୌଣସି ଭ୍ରମଣ କୁତ୍ରାପି ତାଙ୍କ ସଉକ୍ ବା ବିଳାସର ଭ୍ରମଣ ନଥିବା, ଜ୍ଞାନୋପାର୍ଜ୍ଜନ ଓ ନାନାତତ୍ତ୍ୱ ସଂଗ୍ରହ କରିବା ରାଜା ସାର୍ ବାସୁଦେବଙ୍କର ଭ୍ରମଣର ସର୍ବପ୍ରଧାନ ଲକ୍ଷ୍ୟ ଥିଲା । ଏହି ସମଗ୍ର ଅଭିଜ୍ଞତାର ଅଳ୍ପ ପରିମାଣ ହିଁ ସେ କାର୍ଯ୍ୟରେ ପରିଣତ କରାଇ ପାରିଥିଲେ; କିନ୍ତୁ ତା' ବୋଲି ତାଙ୍କ ଲୋକାନ୍ତର ଗମନରେ ସେହି ଅଭିଜ୍ଞତା ଲୋପ ପାଇନାହିଁ । ବାମଣ୍ଡା ରାଜ୍ୟର ଭାବୀକଲ୍ୟାଣ ସାଧନରେ ସେସବୁ ଯେ ଭବିଷ୍ୟତରେ ଫଳପ୍ରସୂ ହେବ, ସେ ତାହାର ସୁବ୍ୟବସ୍ଥା କରି ଯାଇଛନ୍ତି । ସେ ମହୀଶୂର ଠାରୁ ତ୍ରିବାଙ୍କୋଡ୍ ଗମନ କରନ୍ତି । ସେଠାକାର ଜ୍ଞାତବ୍ୟ ବିଷୟରେ ଅବଗତ ହୋଇ ସେତୁବନ୍ଧ ରାମେଶ୍ୱର ଗମନ କରନ୍ତି । ଏଠାରେ ସୀତାଙ୍କର ଉଦ୍ଧାର ସାଧନ କଳ୍ପେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ଅବଲମ୍ବିତ ଉପାୟ ବୋଲି ବିଦିତ ଓ ବର୍ଣ୍ଣିତ ପ୍ରତିଷ୍ଠାନ ସବୁ ଦର୍ଶନ କରନ୍ତି ଏବଂ ଏଠାକାର ଧର୍ମାନୁଷ୍ଠାନ ମଧ୍ୟ ସଂପନ୍ନ କରନ୍ତି । ଫେରିବା ସମୟରେ ସେଠାରୁ ଉତ୍ତମ ଆମ୍ବ ଓ ଲେମ୍ବୁ ଚାରା ସାଙ୍ଗରେ ନେଇ ଆସିଥିଲେ । ବାଟରେ ତାଂଜୌର, କର୍ଣ୍ଣାଟ ଓ ତ୍ରିଚିନାପଲ୍ଲୀ ପରିଦର୍ଶନ କରନ୍ତି । ତ୍ରିଚିନାପଲ୍ଲୀ ନାନାବିଧ ବସ୍ତ୍ର ବୟନ ପାଇଁ ପ୍ରସିଦ୍ଧ । ଏଠାରେ ଉତ୍କୃଷ୍ଟ ସୂତା ବସ୍ତ୍ର, ଜରି କାମ ଏବଂ ରେଶମର ନାନା ପ୍ରକାର ବସ୍ତ୍ର ବୟନ ପଦ୍ଧତି ଦେଖିବାକୁ ଯାଇଥିଲେ । ବହୁମୂଲ୍ୟ ସୂତାର ଲୁଗା, ଜରି ଧଡ଼ିର ଲୁଗା ଓ ରେଶମୀ ଲୁଗା କ୍ରୟ କରିଥିଲେ ।

ଭାରତର ଦକ୍ଷିଣ ପ୍ରାନ୍ତ ଭ୍ରମଣ ଶେଷ କରି ରାଜାବାହାଦୁର ମାନ୍ଦ୍ରାଜରେ ଆସି ପହଞ୍ଚିଛନ୍ତି । ଏଠାକାର ସମୁଦ୍ର ତୀରବର୍ତ୍ତୀ ଷ୍ଟ୍ରାଣ୍ଡ ନାମକ ରାଜପଥ ଅତୀବ ସୁନ୍ଦର । ମାନ୍ଦ୍ରାଜରେ ଅବସ୍ଥାନ କାଳରେ ସେ ପୁନଃ ପୁନଃ ସମୁଦ୍ରତଟ ସନ୍ନିହିତ ପରମ ରମଣୀୟ ରାଜପଥରେ ଭ୍ରମଣ କରିବାକୁ ଯାଇଥିଲେ । ମାନ୍ଦ୍ରାଜ ବନ୍ଦର ଠିକ୍ ବନ୍ଦର ନାମର ଯୋଗ୍ୟ ନୁହେଁ । ଏଠାରେ ଜାହାଜମାନ



Digitized by srujanika@gmail.com

ସର୍ବଦା ନିର୍ବିଘ୍ନରେ ଅପେକ୍ଷା କରି ପାରେ ନାହିଁ । ତଟଭୂମିଠାରୁ ବହୁଦୂର ପର୍ଯ୍ୟନ୍ତ ସାଗର ସଲିଳ ଅଗଭୀର, ସୁତରାଂ ଜାହାଜମାନ ସହର ନିକଟକୁ ପହଞ୍ଚି ପାରେ ନାହିଁ । ସମୁଦ୍ରରେ ବହୁ ଦୂରରେ ଜାହାଜଗୁଡ଼ିକୁ ଲଂଗର ପକାଇ ଅପେକ୍ଷା କରିବା ପାଇଁ ଏବଂ ନିୟତ ଭାରତ ମହାସମୁଦ୍ରର ତରଙ୍ଗ ତୋଫାନରେ ବିପର୍ଯ୍ୟସ୍ତ ହେବାକୁ ପଡ଼ିଥାଏ । ପଣ୍ୟ ସଂଭାର ଏବଂ ଆରୋହୀ ନେଇ କ୍ଷୁଦ୍ର କ୍ଷୁଦ୍ର ନୌକା, ତଟରୁ ଜାହାଜକୁ ଏବଂ ଜାହାଜରୁ ସହର ନିକଟକୁ ଗମନାଗମନ କରନ୍ତି । ଏହି ଯାତାୟତ ଏକ ଅପୂର୍ବ ଦୃଶ୍ୟ । ରାଜା ବାସୁଦେବ ମାନ୍ଦ୍ରାଜ ପ୍ରବାସ କାଳରେ ଏହି ସୁନ୍ଦର ଦୃଶ୍ୟ ଦେଖିବା ପାଇଁ ମଧ୍ୟ ତଟ-ସମୀପବର୍ତ୍ତୀ ରାଜ ପଥରେ ସର୍ବଦା ଭ୍ରମଣ କରିବାକୁ ଯାଉଥିଲେ । ଦୂରରୁ ଦେଖିବା ମାତ୍ରେ ହିଁ ବୋଧହୁଏ, ମାଲ ଓ ଆରୋହୀ ପୂର୍ଣ୍ଣ ନୌକାଗୁଡ଼ିକ ମୁହୂର୍ତ୍ତେ ଅଛନ୍ତି ପୁଣି ମୁହୂର୍ତ୍ତେ ନାହାନ୍ତି । ଯେପରି ବୁଡ଼ି ଯାଉଛନ୍ତି ଏବଂ ପରକ୍ଷଣରେ ପୁଣି ଭାସି ଉଠୁଛନ୍ତି । ଧୀବରମାନେ ମାନ୍ଦ୍ରାଜର ସମୁଦ୍ରତୀରରେ ସାନ ବଡ଼ ନାନା ଜାତୀୟ ମତ୍ସ୍ୟ ଧରି ବିକ୍ରୟ କରୁଥାନ୍ତି । ସେହି ନିତ୍ୟ ତରଙ୍ଗସଙ୍କୁଳ ସମୁଦ୍ର ଜଳରେ ମାଛ ଧରିବା ଦେଖିବା ଭଳି ଜିନିଷ । ପର୍ବତବାସୀଙ୍କ ପକ୍ଷରେ ପାହାଡ଼ ଚଢ଼ିବା ଏବଂ ଓହ୍ଲାଇବା ଯେଭଳି ଅଭ୍ୟାସବଶତଃ ସହଜ, ସମୁଦ୍ର ତୀରବର୍ତ୍ତୀ ଲୋକମଣ୍ଡଳୀଙ୍କ ସାଗର ତରଙ୍ଗ ସହିତ କ୍ରୀଡ଼ା କୌତୁକ ସେହିପରି ଅଭ୍ୟାସବଶତଃ ସହଜ । ଧୀବର ଶିଶୁମାନେ ଦିନର ଅଧିକାଂଶ ସମୟରେ ସମୁଦ୍ର ଜଳରେ ପହଁରୁଥାନ୍ତି । ନିକ୍ଷିପ୍ତ ପଇସା, ସୁଉକି, ଦୋଅଣି, ପର୍ଯ୍ୟନ୍ତ ପାଣି ଭିତରୁ ଗୋଟାଇ ଆଣନ୍ତି । ତତ୍ପରତା ସହକାରେ ଜଳ ତଳରୁ ନିକ୍ଷିପ୍ତ ପଇସା ଗୋଟାଇ ଆଣିବା ଦୃଶ୍ୟ ଦେଖିବାପାଇଁ ରାଜା ବାହାଦୁର ସେଠାରେ ଅପେକ୍ଷା କରିଅଛନ୍ତି ଏବଂ ସେହି କ୍ଷୀପ୍ରକାରିତା ଦର୍ଶନରେ ଆନନ୍ଦ ଉପଭୋଗ କରିଅଛନ୍ତି । ଏଭଳି କେତେକ ବିଶୁଦ୍ଧ ଆମୋଦ ଜନକ କୌତୁକ ଦେଖିବାରେ ସାର୍ ବାସୁଦେବଙ୍କ ମାନ୍ଦ୍ରାଜ ପ୍ରବାସ କେବଳ ପର୍ଯ୍ୟବସିତ ହୋଇନାହିଁ ।

ମାନ୍ଦ୍ରାଜର ପଶୁଶାଳା, ଯାଦୁଘର ଓ ସରକାରୀ ଉଦ୍ୟାନ ପରିଦର୍ଶନ କରିବାପାଇଁ ଯାଇଥିଲେ । ଏହି ସମସ୍ତ ସ୍ଥାନରେ ବିବିଧ ବିଧାନରେ ବ୍ୟବସ୍ଥାପିତ ପ୍ରାଚୀନ ଓ ନୂତନ ସ୍ଥାବର ଜଙ୍ଗମ ତତ୍ତ୍ୱ ଅବଗତ ହୋଇ ଅପରିମେୟ ଆନନ୍ଦ ଉପଭୋଗ କରିଥିଲେ । ଭାରତବର୍ଷରେ ଇଂରେଜ ପ୍ରତିଷ୍ଠିତ ପ୍ରାଚୀନତମ ଦୁର୍ଗ ମାନ୍ଦ୍ରାଜଠାରେ ଅବସ୍ଥିତ । ଫୋର୍ଟ ସେଣ୍ଟ ଜର୍ଜର ନିର୍ମାଣ କୌଶଳ, ସୈନ୍ୟବାସ ଏବଂ ଯୁଦ୍ଧୋପକରଣ ସବୁ ଦେଖିବାକୁ ଯାଇଥିଲେ । ଏ ସମସ୍ତ ଦର୍ଶନାନ୍ତରେ, ମାନ୍ଦ୍ରାଜର ସରକାରୀ ଓ ସଉଦାଗରୀ କାର୍ଯ୍ୟାଳୟମାନ ଓ ବାଣିଜ୍ୟ କେନ୍ଦ୍ରମାନ ଦେଖିବା ପାଇଁ ଯାଆନ୍ତି । ମାନ୍ଦ୍ରାଜ ପ୍ରଦେଶର ନାନା ସ୍ଥାନରୁ ଉତ୍ପନ୍ନ ଓ ପ୍ରସ୍ତୁତ ଦ୍ରବ୍ୟମାନଙ୍କ ସମ୍ବାଦ ସଂଗ୍ରହ ଦ୍ୱାରା ନିଜ ଜ୍ଞାନ ଭଣ୍ଡାର ପୂର୍ଣ୍ଣ ଓ ଆବଶ୍ୟକୀୟ ଦ୍ରବ୍ୟ ସବୁର ନିଦର୍ଶନ ସ୍ୱରୂପ କିଛିକିଛି କ୍ରୟ ମଧ୍ୟ କରିଥିଲେ ।



Digitized by srujanika@gmail.com

ପ୍ରାଚୀନ କାଳରେ ଦାକ୍ଷିଣାତ୍ୟର ଏକାଂଶ କିଷ୍କିନ୍ଧାରାଜ୍ୟ ବୋଲି ବିଦିତ ଥିଲା । ରାଜା ସାର୍ ବାସୁଦେବ ରାମାୟଣୋକ୍ତ ବାଳିରାଜାଙ୍କର ରାଜ୍ୟ ଓ ରାଜଧାନୀ ଦେଖିବାପାଇଁ ଯାଇଥିଲେ । ଏଠାରେ ବର୍ତ୍ତମାନ ଜଣେ କ୍ଷତ୍ରିୟ ରାଜା ରାଜତ୍ୱ କରୁଅଛନ୍ତି । ଏହାର ଅନତି ଦୂରରେ ପମ୍ପା ସରୋବର ଚିହ୍ନମାତ୍ର ରହିଅଛି ବୋଲି ଅନୁଭୂତ ହୁଏ । ବାଳି ରାଜାଙ୍କର ସମାଧି କ୍ଷେତ୍ର ବୋଲି ଚିହ୍ନିତ ଏକ ସ୍ଥାନ ତାଙ୍କୁ ଦେଖାଇ ଦିଆଯାଇଥିଲା । ଏଠାରେ ମାଲ୍ୟବନ୍ତ ପର୍ବତଗାତ୍ରରେ ଦୁଇଗୋଟି ସ୍ୱାଭାବିକ୍ ଗୁହା ରହିଛି । ସୀତାଙ୍କର ହରଣ ପରେ, ଏଠାରେ ରାମ-ଲକ୍ଷ୍ମଣ ବାସ କରୁଥିଲେ ବୋଲି ସ୍ଥାନୀୟ ଜନସାଧାରଣଙ୍କର ବିଶ୍ୱାସ । ବାଳିରାଜାଙ୍କର ଭଣ୍ଡାର ବୋଲି ଏକ ସୁବୃହତ୍ ପର୍ବତଗୁହା ପ୍ରଦର୍ଶିତ ହୋଇଥିଲା । ଏହି ସମସ୍ତ ସ୍ଥାନ ପରିଦର୍ଶନ କାଳରେ ରାମାୟଣର ବିବିଧ ବିବରଣୀ ହୃଦୟ ମନ ଅଧିକାର କରିବା ଫଳରେ ରାଜା ସାର୍ ବାସୁଦେବ 'କିଷ୍କିନ୍ଧା ବିବରଣୀ' ନାମକ ଏକ କାବ୍ୟଗ୍ରନ୍ଥ ରଚନା କରିଥିଲେ । ଏଠାରେ ଋଷ୍ୟମୁଖ ପର୍ବତ ଓ ତୁଙ୍ଗଭଦ୍ରା ନଦୀ ମଧ୍ୟ ପରିଦର୍ଶନ କରିଥିଲେ । ଏଠାରୁ କାଞ୍ଚିନଗର ଦର୍ଶନ କରିବାପାଇଁ ଯାଇଥିଲେ । ଭ୍ରମଣ କାଳରେ ତ୍ରିଚିନାପଲ୍ଲୀର ଶ୍ରୀରଙ୍ଗସ୍ୱାମୀଙ୍କ ମନ୍ଦିର, ମଦୁରାଇର ଭାରତ ବିଖ୍ୟାତ ମୀନାକ୍ଷୀ ଦେବୀଙ୍କ ମନ୍ଦିର ଓ ରାଜଭବନ ଦର୍ଶନ କରି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ଏହି ଦେବ ମନ୍ଦିର ଓ ରାଜଭବନର ଅପୂର୍ବ ନିର୍ମାଣ କୌଶଳ ଓ ଶିଳ୍ପ ସୌନ୍ଦର୍ଯ୍ୟ ସଚରାଚର ଦେଖିବାକୁ ମିଳେ ନାହିଁ । ଏହି ରାଜଭବନ ଓ ଦେବମନ୍ଦିର ସ୍ଥପତିବିଦ୍ୟା ଓ ଶିଳ୍ପକଳାର ଉଚ୍ଚ ପରିଣତିର ସାକ୍ଷ୍ୟ ଦାନ କରୁଅଛି । କଥିତ ଅଛି ଖ୍ରୀଷ୍ଟାବ୍ଦ ପଞ୍ଚମ ଶତାବ୍ଦୀରେ ପାଣ୍ଡ୍ୟରାଜଗଣ କର୍ତ୍ତୃକ ଏହି ରାଜଭବନ ଓ ଦେବାଳୟ ନିର୍ମିତ ହୋଇଥିଲା । ସେହି ସମୟରେ, ଯାହାଙ୍କର ଦ୍ୱାରା ଏସବୁ ନିର୍ମିତ ହେଉନା କାହିଁକି, ଏହା ଯେ ପ୍ରାଚୀନ ହିନ୍ଦୁ ରାଜାଗଣଙ୍କର ଅତୁଳ କୀର୍ତ୍ତି ସେ ବିଷୟରେ ସନ୍ଦେହ ନାହିଁ । ଅସାଧାରଣ ଶିଳ୍ପ ନିପୁଣ ଭାସ୍କରଙ୍କର ଅଙ୍ଗୁଳି ସଂଚାଳନର ଜୀବନ୍ତ ସାକ୍ଷ୍ୟ ପ୍ରଦାନ କରୁଅଛି । ଦେଖି ମଧ୍ୟ ଦେଖିବାର ଲାଳସା ମେଣ୍ଟେ ନାହିଁ ଏବଂ ଦୀର୍ଘ ନିଃଶ୍ୱାସ ଭରେ କହିବାକୁ ହୁଏ "ହାୟ, ଆମ୍ଭେମାନେ ଆମ୍ଭର କି ଅମୂଲ୍ୟ ସଂପଦ ନ ହରାଇଛୁ ।" ରାଜା ସାର୍ ବାସୁଦେବଙ୍କ ମନରେ ମଧ୍ୟ ଏହି ଭାବର ସଂଚାର ହୋଇନାହିଁ, ଏହା ସାହସ କରି କୁହାଯାଇ ନ ପାରେ । ଏହି ସମସ୍ତ ଭ୍ରମଣ ଓ ପରିଦର୍ଶନପରେ ରାଜା ବାସୁଦେବ ରାଜମହେନ୍ଦ୍ରୀ ଯାତ୍ରା କରନ୍ତି । ରାଜ ମହେନ୍ଦ୍ରୀ ମାଦ୍ରାଜ ପ୍ରଦେଶର ସମାଜ ସଂସ୍କାରର ପ୍ରଧାନ କେନ୍ଦ୍ର ଏବଂ ଗୋଦାବରୀ ନଦୀ ପ୍ରବାହିତ ବୋଲି ତୀର୍ଥ ସ୍ଥାନ ଭାବରେ ମଧ୍ୟ ପ୍ରସିଦ୍ଧ । ଏଠାକାର ନାନା ସଂବାଦ ସଂଗ୍ରହ କରି ପରେ ଗୋଦାବରୀ ସ୍ନାନ ଓ ଧର୍ମାନୁଷ୍ଠାନ ସଂପନ୍ନ କରି ଓ୍ୱାଲଟିୟରରେ ଉପସ୍ଥିତ ହୁଅନ୍ତି । ଏହା ଏକ ସ୍ୱାସ୍ଥ୍ୟ ନିବାସ ।



Digitized by srujanika@gmail.com

ସମୁଦ୍ରର ଉପକୂଳରେ ନାତିଉଚ୍ଚ ପର୍ବତମାଳା ଉପରେ ୱାଲ୍‌ଟିୟରର ସ୍ୱାସ୍ଥ୍ୟ କୁଟୀରମାଳା ପ୍ରତିଷ୍ଠିତ, ସେଗୁଡ଼ିକ ୱାଲ୍‌ଟିୟର ସହରଠାରୁ କିଂଚିତ୍ ଦୂରରେ ଅବସ୍ଥିତ । ଏଠାରେ ଅନେକ ଦିନ ବିଶ୍ରାମ କରି, ରାଜା ବାସୁଦେବ ଏହାର ନିକଟବର୍ତ୍ତୀ ସୀମାଚଳ ତୀର୍ଥକୁ ଗମନ କରନ୍ତି । ସୀମାଚଳରେ ଉତ୍କଳ ସମ୍ରାଟ ପୁରୁଷୋତ୍ତମ ଦେବଙ୍କର ଅମର କୀର୍ତ୍ତି ପ୍ରତିଷ୍ଠିତ । ପାହାଡ଼ ଉପରେ ପାହାଡ଼, ଏଭଳି ଅନେକ ସାନବଡ଼ ପାହାଡ଼ ଅତିକ୍ରମ କରି ସୀମାଚଳ ମନ୍ଦିରରେ ଉପସ୍ଥିତ ହେବାକୁ ପଡ଼ିଥାଏ । ସମ୍ରାଟ ପୁରୁଷୋତ୍ତମଦେବ କାଞ୍ଚି ଜୟକରି ଫେରିବା ସମୟରେ ପଥରେ ଯେଉଁ ସ୍ଥାନରେ ବିଶ୍ରାମ କରିଥିଲେ, ସେହି ସ୍ଥାନରେ କାଞ୍ଚି ଜୟର **ବିବରଣୀ ସହ** ସ୍ମାରକ ପ୍ରସ୍ତର ଫଳକ ପ୍ରତିଷ୍ଠିତ କରାଇ ଆସିଥିଲେ । ପ୍ରତ୍ୟାଗମନ କାଳରେ ସମ୍ରାଟ, ପଥରେ କେଉଁଠାରେ କୂପ, କେଉଁଠାରେ ପୁଷ୍କରଣୀ, କେଉଁଠାରେ ଦେବ ମନ୍ଦିର ଇତ୍ୟାଦି ନାନାବିଧ ଅନୁଷ୍ଠାନ ଦ୍ୱାରା ତାଙ୍କର ବିଶ୍ରାମ ସ୍ଥାନ ଚିହ୍ନିତ କରାଇ ରଖିଥିଲେ । ସୀମାଚଳ ତୀର୍ଥସ୍ଥାନ ହେଲେ ମଧ୍ୟ, ସେହି କୀର୍ତ୍ତି କାହାଣୀ ଅନ୍ତର୍ଭୁକ୍ତ ଏବଂ ସେଠାରେ ସମ୍ରାଟଙ୍କ ପ୍ରତିଷ୍ଠିତ ଗୋକର୍ଣ୍ଣେଶ୍ୱର ଶିବମନ୍ଦିର ଅଦ୍ୟାପି ବିଦ୍ୟମାନ ଥାଇ ରାଜକୀର୍ତ୍ତିର ସାକ୍ଷ୍ୟ ଦାନ କରୁଅଛି ।

ରାଜା ବାସୁଦେବ, ସୀମାଚଳରେ ଦେବପୂଜା ସମାପନ ଓ ୱାଲ୍‌ଟିୟରରେ ବିଶ୍ରାମ କରି ବିଜୟନଗରର ପ୍ରାଚୀନ କୀର୍ତ୍ତି ସବୁ ଦେଖିବା ପାଇଁ ଯାଆନ୍ତି । ଛଦ୍ମବେଶରେ ରାଜଧାନୀ ଓ ରାଜଧାନୀର ନାନା ସ୍ଥାନ ପରିଦର୍ଶନ କରିଥିଲେ । ବିଜୟନଗରର ଆମ୍ବ ଭାରତ ବିଖ୍ୟାତ । ଏହିପରି ସୁସ୍ୱାଦୁଯୁକ୍ତ ରସାଳ ଆମ୍ବ ଭାରତରେ ଆଉ କେଉଁଠାରେ ମିଳେ କି ନାହିଁ ସନ୍ଦେହ । ରାଜା ବାହାଦୁର ବହୁ ଅର୍ଥ ବ୍ୟୟରେ ସେହି ସବୁ ଆମ୍ବର କଲମୀ ଓ ଚାରା ନିଜ ରାଜଧାନୀକୁ ପ୍ରେରଣ କରନ୍ତି । ବର୍ତ୍ତମାନ ସେହି ସବୁ ବୃକ୍ଷର ଆମ୍ବ ଦେବଗଡ଼ ରାଜା ପରିବାର ଏବଂ ନାଗରିକଗଣଙ୍କ ରସନାର ତୃପ୍ତି ବିଧାନରେ ନିଯୁକ୍ତ । ଏଠାରୁ ରାଜା ସାର୍ ବାସୁଦେବ ପୁନରାୟ ବେଜୱାଡ଼ା ଫେରି ଯାଆନ୍ତି । ବେଜୱାଡ଼ା ମାନ୍ଦ୍ରାଜ୍ ରେଲୱେର ଏକ ସନ୍ଧିସ୍ଥଳ । ଏହିଠାରୁ ରାଜା ବାହାଦୁର ନିଜାମ ରାଜ୍ୟର ରାଜଧାନୀ ହାଇଦ୍ରାବାଦ ଗମନ କରନ୍ତି । ଭାରତୀୟ କରଦ ଓ ମିତ୍ରରାଜ୍ୟ ଗୁଡ଼ିକର ସର୍ବପ୍ରଧାନ ଓ ଶୀର୍ଷ ସ୍ଥାନୀୟ ନିଜାମ ରାଜ୍ୟ । ଏଠାକାର ସୁଖ ସଂପଦ ଐଶ୍ୱର୍ଯ୍ୟ ସମ୍ମାନ ଓ ରାଜକାର୍ଯ୍ୟ ପରିଚାଳନା ପ୍ରଭୃତି ବିଷୟକ ତତ୍ତ୍ୱ ଅବଗତ ହୋଇ ନିକଟବର୍ତ୍ତୀ ଗୋଲକୁଣ୍ଡାର ହୀରକଖଣି ଦେଖିବାକୁ ଯାଇଥିଲେ । ଏଠାକାର ହୀରକ ସଂଗ୍ରହ କରିବା ଉପାୟ ଓ ପଦ୍ଧତି ପର୍ଯ୍ୟବେକ୍ଷଣ କରି ଭୁସୱାଲ ପଥ ଦେଇ ଜବଲପୁର ଯାତ୍ରା କରନ୍ତି । ସେହିଠାରେ ଅବସ୍ଥାନ କାଳରେ ସ୍ଥାନୀୟ ରାଜକୁମାର କଲେଜ ପରିଦର୍ଶନ କରନ୍ତି । ନିଜ ରାଜଧାନୀରେ ପ୍ରତିଷ୍ଠିତ ରାଜକୁମାର ବିଦ୍ୟାଳୟର ଉନ୍ନତି ସାଧନୋପଯୋଗୀ ନାନା



Digitized by srujanika@gmail.com

ସଂବାଦ ସଂଗ୍ରହ କରିବାରେ ବିଶେଷ ମନଯୋଗ ଦେଇଥିଲେ । ଜବଲପୁର ଅବସ୍ଥାନ କାଳରେ ମାର୍ବଲ୍ ପାହାଡ଼ ଓ ନର୍ମଦା ଜଳପ୍ରପାତ ଦେଖିବାକୁ ଯାଇଥିଲେ । ସେହି ଜଳପ୍ରପାତ ଅତି ମନୋହର ଦୃଶ୍ୟ । ବିନ୍ଧ୍ୟାଚଳ ପର୍ବତର ଏକାଂଶ ଅତିକ୍ରମ କରି ନର୍ମଦା ନଦୀ ଜଳରାଶି ଭୀଷଣ ବେଗରେ ନିମ୍ନ ଭୂମିରେ ପତିତ ହୋଇ ପ୍ରବଳବେଗରେ ପ୍ରବାହିତ ହେଉଅଛି । ଜଳରାଶିର ସେହି ଉଚ୍ଚରୁ ନୀଚକୁ ପତନ ଶବ୍ଦ ଏବଂ ସେଥିପାଇଁ ଶୁଭ୍ର ସୁନ୍ଦର ଫେଣ ପୁଞ୍ଜି ଅତୀବ ରମଣୀୟ । ସେହି ଦୃଶ୍ୟ ଦେଖି ନୟନ ତଥାପି ଦେଖିବା ପାଇଁ ବ୍ୟାକୁଳ ହୋଇଥାଏ । ତା'ପରେ ସହରଠାରୁ କେତେକ ମାଇଲ୍ ଦୂରରେ ଅବସ୍ଥିତ ମାର୍ବଲ ପଥର ପାହାଡ଼ । ତାହା ମଧ୍ୟ ଏକ ସୁନ୍ଦର ଦୃଶ୍ୟ । ସେଠାରୁ ପ୍ରସ୍ତର ସଂଗ୍ରହ କରି ନାନାବିଧ ବ୍ୟବହାର୍ଯ୍ୟ ଦ୍ରବ୍ୟ ଶିଳ୍ପୀଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇ ଜବଲପୁର ବଜାରରେ ବିକ୍ରୟାର୍ଥେ ସଜ୍ଜିତ ହୋଇ ରହିଥାଏ । ରାଜା ବାସୁଦେବ ମାର୍ବଲ ପାହାଡ଼ ଦର୍ଶନାନ୍ତରେ ମର୍ମର ପ୍ରସ୍ତରର ନାନାବିଧ ଦ୍ରବ୍ୟ କ୍ରୟ କରିଥିଲେ । ରାଜା ବାସୁଦେବ ଜବଲପୁର ଠାରୁ କଟନି ରେଳପଥରେ ବିଳାସପୁର ବାଟ ଦେଇ ନିରାପଦରେ ଓ ସୁସ୍ଥ ଶରୀରରେ ସ୍ୱରାଜ୍ୟକୁ ପ୍ରତ୍ୟାବୃତ୍ତ ହୁଅନ୍ତି ।



---

**ପାଦଟୀକା**

(୧) The Chief of Bamra Raja Sudhal Deo C.I.E., continues to set a good example to his neighbours (other chiefs) by his personal interest in and attention to the business of his state in every department. (Extract taken from the resolution of the local Govt.) Sd. F.C. Anderson Chief Secretary to the Chief Commissioner C.P.

(୨) ନାଗପୁର ଏବଂ ଏହାର ପାର୍ଶ୍ୱବର୍ତ୍ତୀ ସ୍ଥାନର ଜନତାଙ୍କର ବିଶ୍ୱାସ ଯେ, ଅରଣ୍ୟ ଯାତ୍ରା ବେଳେ ପଞ୍ଚବଟୀ ଯିବା ବାଟରେ ସୀତାଦେବୀ ଏହି ପର୍ବତରେ ବିଶ୍ରାମ କରିଥିଲେ । ତାଙ୍କର ବିଶ୍ରାମ ସ୍ଥାନ ବୋଲି ପର୍ବତର ନାମ ସୀତାବଲ୍ଡି ହୋଇଅଛି । ଏହି ପର୍ବତର ଉତ୍ତର ପୂର୍ବ କେତେ କ୍ରୋଶ ଦୂରରେ 'ରାମଟେକ' ନାମକ ପର୍ବତ ମଧ୍ୟ ଅଛି । ସୀତାବଲ୍ଡି ରେ ସୀତା ଦେବୀଙ୍କର ବିଶ୍ରାମ ସମୟରେ ଶ୍ରୀରାମଚନ୍ଦ୍ର 'ରାମଟେକ' ପର୍ବତରେ ଆଶ୍ରୟ ନେଇଥିଲେ । ତେଣୁ 'ରାମଟେକ' ତୀର୍ଥସ୍ଥାନ । ଏତେ ଦୂରରେ ପରସ୍ପର ବିଶ୍ରାମ ଗ୍ରହଣ କରିଥିଲେ କି ନାହିଁ, ତାହା ଆଧୁନିକ ପ୍ରତ୍ନତତ୍ତ୍ୱବିତ୍‌ଗଣଙ୍କର ଅନୁସନ୍ଧାନ ସାପେକ୍ଷ ।



Digitized by srujanika@gmail.com

(୩) କଲିକତା ସଂସ୍କୃତ କଲେଜର ଅଧ୍ୟାପକ ମହାମହୋପାଧ୍ୟାୟ ଶ୍ରୀଯୁକ୍ତ ପ୍ରମଥନାଥ ତର୍କଭୂଷଣ ମହାଶୟଙ୍କ ପ୍ରଦତ୍ତ ବ୍ୟାଖ୍ୟା-

ପ୍ରଶ୍ନ- ଯେଉଁ ହିନ୍ଦୁଧର୍ମ ବିଶ୍ୱେଶ୍ୱର ଓ ନାରାୟଣଙ୍କ ମୁଖପଦ୍ମରୁ ବିଗଳିତ ବାକ୍ୟରୂପ ସୁଧାସମୁଦ୍ରର ଉତ୍ତାଳ ଓ ଚଞ୍ଚଳ ତରଙ୍ଗମାଳା ଉପରେ ଭାସିଥିଲେ ଏବଂ ଯାହା ଆପଣଙ୍କର ସୁଖର କାରଣ ଥିଲା, ହେ ବିମଳକୁଳୋଦ୍‌ଭବେ ! ସେହି ନିଷ୍କଳଙ୍କ ଓ ଅକପଟ ଧର୍ମରୁ ଆପଣଙ୍କର ପବିତ୍ର ସୁଲଳିତ ମତି କାହିଁକି ପ୍ରତ୍ୟାବୃତ ହେଲା ? ଏବଂ କେଉଁ କାରଣରୁ ତାହା ଭିନ୍ନ ଧର୍ମରେ ଆସକ୍ତ ହେଲା ?

ଉତ୍ତର-ମୁଁ ଯେଉଁ ଧର୍ମକୁ ଆଶ୍ରୟ କରିଅଛି, ତାହା ବିଧର୍ମ ନୁହେଁ, ଈଶ୍ୱର-ଜୀବର ସମ୍ବନ୍ଧ ବସ୍ତୁତଃ ଧର୍ମ । ସେହି ସମ୍ବନ୍ଧ ବେଦାଧ୍ୟୟନ ଫଳରେ ହୋଇଥାଏ; କିନ୍ତୁ ଆମ୍ଭମାନଙ୍କର ବେଦାଧିକାର ନାହିଁ, କାରଣ ଶାସ୍ତ୍ରରେ ଉକ୍ତ ହୋଇଅଛି, ସ୍ତ୍ରୀ ଏବଂ ଶୂଦ୍ର ବେଦାଧ୍ୟୟନ କରିବେ ନାହିଁ । ଏହି ଭାବରେ ସ୍ତ୍ରୀଗଣଙ୍କ ପକ୍ଷରେ ପତି ହିଁ ଦେବତା, ଏହା ଶାସ୍ତ୍ରରେ ଉକ୍ତ ହୋଇଅଛି । ସୁତରାଂ ଆମ୍ଭମାନଙ୍କ ପକ୍ଷେ ମନୁଷ୍ୟ ପୂଜନ ଦ୍ୱାରା ପରମପଦ ପ୍ରାପ୍ତି ହୋଇପାରେ ନାହିଁ । ଏହି ଶଙ୍କା ଫଳରେ ଆମ୍ଭର ହିନ୍ଦୁଧର୍ମ ପରିତ୍ୟାଗ ଶ୍ରେୟସ୍କର ହୋଇଅଛି ।

(୪) ଶ୍ରୀଯୁକ୍ତ ବିଶ୍ୱନାଥ କର ମହାଶୟଙ୍କ ପ୍ରଦତ୍ତ ବିବରଣରୁ ସଂଗୃହୀତ ।

(୫) ବାମଣ୍ଡା ରାଜ୍ୟ ପରିଦର୍ଶନରେ ଯାତ୍ରା କରିବା ପୂର୍ବେ, ରାଜା ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଭୂତପୂର୍ବ ଶିକ୍ଷକ ଶ୍ରୀଯୁକ୍ତ ରେବତୀ ମୋହନ ଦାଶ ଏମ୍.ଏ. ମହାଶୟଙ୍କ ସହିତ ସାକ୍ଷାତ୍‌କାର କାଳରେ, ରେବତୀବାବୁ ସ୍ୱର୍ଗୀୟ ରାଜା ଓ ବର୍ତ୍ତମାନ ରାଜାଙ୍କର ବିବିଧ ପ୍ରଶଂସାଳାପ କହିବା ପରେ ମୋତେ କହିଥିଲେ, 'ଆପଣ ମୋ' ନାଁ କହି, ରାଜା ବାହାଦୁରଙ୍କୁ କହିବେ, ସେ ଯେପରି ଦେବଗଡ଼ର ରାଜପଥ ମାନ ପରିଷ୍କାର ପରିଚ୍ଛନ୍ନ ରଖିବାପାଇଁ କିଂଚିତ ମ୍ୟୁନିସିପାଲ ଅନୁଷ୍ଠାନ ଉପରେ ମନଯୋଗ ଦିଅନ୍ତି ।' ଦେବଗଡ଼ ପରିଦର୍ଶନାନ୍ତେ ରାଜା ବାହାଦୁରଙ୍କୁ ଏହି ବିଷୟରେ ତାଙ୍କର ଗୁରୁଙ୍କ ନାମରେ ଅନୁରୋଧ କରିବାର ଅବସର ଘଟିଲା ନାହିଁ । କାରଣ ଦେବଗଡ଼ର ରାସ୍ତାଘାଟ ଇତ୍ୟାଦି ସମସ୍ତ ହିଁ ସୁନ୍ଦର ଓ ପ୍ରୀତିପଦ ବୋଲି ଅନୁଭବ କରିଥିଲି । (ଗ୍ରନ୍ଥକାର)



Digitized by srujanika@gmail.com

দশম অধ্যায

# ରାଜ୍ୟର ଆଭ୍ୟନ୍ତରୀଣ ଉନ୍ନତି ଓ ସୌଷ୍ଠବସାଧନ

## (କ) କମଳା ଚାଷ

ବଙ୍ଗ ଦେଶରେ ଯେଉଁ କଦଳୀ ଚାଷ ଫଳରେ ପ୍ରଚୁର ଅର୍ଥାଗମ ହୋଇଥାଏ, ଆସାମର ଅରଣ୍ୟ ମଧ୍ୟରେ ସେହି କଦଳୀ ପ୍ରଚୁର ପରିମାଣରେ ଆପଣା ଛାଏଁ ହୋଇଥାଏ । ସେଠାରେ ସେହି ଉତ୍ତମ ଫଳ ମାନବ ସେବା ସଂଗେ ସଂଗେ ଅତ୍ୟଧିକ ପରିମାଣରେ ଅନ୍ୟାନ୍ୟ ଜୀବଙ୍କ ରସନା ତୃପ୍ତି ବିଧାନରେ ନିୟୋଜିତ ହୋଇଥାଏ । ଆସାମର ଅରଣ୍ୟ ପ୍ରଦେଶରେ ଅନ୍ୟାନ୍ୟ ଅରଣ୍ୟ ସଂପଦ ଯେପରି ପ୍ରଚୁର, କଦଳୀ  ବଣ ମଧ୍ୟ ସେହିପରି ଦୀର୍ଘଦୂର ବ୍ୟାପି ଏବଂ ସେସବୁ ପ୍ରତି ଉପଯୁକ୍ତ ବ୍ୟବହାର କରିବାର ପାତ୍ରାଭାବ ମଧ୍ୟ ହୁଏନାହିଁ । ବଣରେ ହସ୍ତୀ ଏବଂ ହନୁମାନମାନଙ୍କର ଅଭାବ ନାହିଁ । ପବନନନ୍ଦନ କୁଳର ସ୍ୱଗୋତ୍ର ନହେଲେ ମଧ୍ୟ ବାନର ବଂଶଙ୍କର ବିଚରଣ ମଧ୍ୟ ଏକାନ୍ତ ବିରଳ ନୁହେଁ । ପ୍ରବାଦ ଶ୍ରୀହଟ୍ଟରେ କମଳା ଲେମ୍ବୁର ଆବାଦ ରହିଛି; କିନ୍ତୁ ଆସାମର ଖାସିୟା, ଜୟନ୍ତିୟା, ଗାରୋ ପର୍ବତରେ ଓ ଦାର୍ଜିଲିଂର ଅନେକ ସ୍ଥାନରେ କମଳା ମଧ୍ୟ ଆସାମର କଦଳୀ ପରି, ଅଯତ୍ନ ସଂଭୂତ ବଣ୍ୟଫଳ ।

ରାଜା ସାର୍ ବାସୁଦେବ ସର୍ବପ୍ରଥମ ବିବାହାନୁଷ୍ଠାନ ସୂତ୍ରରେ ଶ୍ୱଶୁରାଳୟ ଗମନ କାଳରେ କଳାହାଣ୍ଡି ଅରଣ୍ୟ ମଧ୍ୟରେ ପ୍ରଚୁର ପରିମାଣ ଅରଣ୍ୟଜାତ କମଳା ବଣ ଦେଖିଥିଲେ ।*(୧)* ଏଠାରେ ଏହି ବଣ୍ୟଫଳର ନାମ ସାନ୍ତାରା । ତାହାପରେ ନାଗପୁର ଭ୍ରମଣ କାଳରେ ଏହି ସାନ୍ତରା ଆବାଦ ଦେଖି ଏବଂ ପ୍ରଚୁର ପରିମାଣରେ ଏହି ଫଳର କାଟତି ଦେଖି ଆସିଥିଲେ । ଦେଶ ଭ୍ରମଣାନ୍ତରେ ସ୍ୱରାଜ୍ୟରେ ସ୍ଥିର ହୋଇବସି, ନୂତନ କାର୍ଯ୍ୟମାନଙ୍କର ଅନୁଷ୍ଠାନରେ ମନଯୋଗ ଦେବା ସମୟରେ, ନିଜ ରାଜ୍ୟର ନାନା ସ୍ଥାନରେ ଭୂମିଗୁଣ ପରୀକ୍ଷା କରାଇ କମଳା ଉତ୍ପାଦନ ଉପଯୋଗୀ ଭୂମି ନିର୍ବାଚନ କରନ୍ତି ଏବଂ



Digitized by srujanika@gmail.com

ବିଭିନ୍ନ ସ୍ଥାନରୁ କମଳା ନମୂନା ଅଣାଇ ପରେ କମଳା ଚାଷ ଆରମ୍ଭ କରାନ୍ତି; ମାତ୍ର କେଇବର୍ଷ ମଧ୍ୟରେ ହିଁ, ତାଙ୍କ ଆଶାନୁରୂପ ନାନା ଜାତିର କମଳା ଦେବଗଡ଼ ନିକଟବର୍ତ୍ତୀ ଉଦ୍ୟାନମାନଙ୍କରୁ ପ୍ରଚୁର ପରିମାଣରେ ଉତ୍ପାଦିତ ହେବାରେ ଲାଗିଲା । ବାମଣ୍ଡାରେ ଉତ୍ପାଦିତ କମଳା ଦ୍ୱାରା ରାଜ୍ୟର ଅଭାବ ପୂର୍ଣ୍ଣ ହୋଇଥାଏ ଏବଂ ବର୍ତ୍ତମାନ ତାହା ବାମଣ୍ଡା ଷ୍ଟେସନରୁ ମଧ୍ୟ ବାହ୍ୟସ୍ଥାନକୁ ବିକ୍ରୟାର୍ଥେ ପହଞ୍ଚିଥାଏ । ବାମଣ୍ଡା ଉତ୍ପନ୍ନ କମଳା ସହିତ ଆସାମ ପ୍ରଭୃତି ସ୍ଥାନରୁ ଉତ୍ପାଦିତ କମଳା ପ୍ରାୟ ଏକା ଜାତିର; କିନ୍ତୁ ନାଗପୁର କମଳା ଭିନ୍ନ ପ୍ରଜାତିର । କଳାହାଣ୍ଡି ଓ ବାମଣ୍ଡାରେ ଶୀତକାଳରେ ପ୍ରଚୁର କମଳା ଉତ୍ପନ୍ନ ହୁଏ; କିନ୍ତୁ ନାଗପୁରରେ ଗ୍ରୀଷ୍ମର ସଂଚାର ଓ କ୍ରମେ ଉତ୍ତାପ ବୃଦ୍ଧି ହେବା ସଂଗେ ସଂଗେ କମଳା ରସମାଧୁରୀ ତୀବ୍ରତର ହୋଇଥାଏ । ନାଗପୁରର ଉତ୍କୃଷ୍ଟ କମଳା ଆୟତନରେ ବୃହତ୍ତର, ଉପର ଚୋପା ସାମାନ୍ୟ ମୋଟା, ଅଥଚ ପ୍ରଚୁର ରସପୂର୍ଣ୍ଣ । ଶ୍ରେଷ୍ଠ ଜାତୀୟ କମଳା ସବୁ ଆମ ଦେଶ ଛୋଟ ଛୋଟ ଟଭା ଫଳ ପରି । ଏହି କମଳା ବଗିଚାରେ ଯେତେବେଳେ କମଳା ପାଚି ଉଠେ, ସେତେବେଳେ ସାମାନ୍ୟ ଦୂରରେ ସାମାନ୍ୟ ଉଚ୍ଚଭୂମିରେ ଛିଡ଼ାହୋଇ କମଳା ଉଦ୍ୟାନର ଶୋଭା ଏତେ ରମଣୀୟ ମନେହୁଏ ଯେ, ଯେପରି ଖଣ୍ଡେ କ୍ଷୁଦ୍ର ଆକାଶରେ ଅସଂଖ୍ୟ ନକ୍ଷତ୍ର ଫୁଟି ରହିଛନ୍ତି ବୋଲି ମନେହୁଏ । ଦେବଗଡ଼ ଉଦ୍ୟାନରୁ ଉତ୍ପନ୍ନ କମଳା ଦେଖିବାକୁ ଯେଭଳି ସୁନ୍ଦର, ଆସ୍ୱାଦନରେ ମଧ୍ୟ ସେଭଳି ସୁମିଷ୍ଟ ଓ ରସପୂର୍ଣ୍ଣ । ରାଜ୍ ସାର୍ ବାସୁଦେବ ସୁଢ଼ଳଦେବଙ୍କ ଏହି ଏକ କୀର୍ତ୍ତି ବର୍ତ୍ତମାନ ବାମଣ୍ଡାରେ ଦିନୁ ଦିନ ଶ୍ରୀବୃଦ୍ଧି ଲାଭ କରୁଅଛି । ଏହି କମଳାର ବିସ୍ତୃତ ଉଦ୍ୟାନ ଦେବଗଡ଼ଠାରୁ ଚାରିମାଇଲ୍ ଦୂରରେ ଏକ ପାହାଡ଼ର ନିମ୍ନ ଦେଶରେ ଅବସ୍ଥିତ ।

## (ଖ) ଆଦର୍ଶ କୃଷିକ୍ଷେତ୍ର

ଧାନ ଚାଷ ବାମଣ୍ଡା ପ୍ରଜାମାନଙ୍କ ପ୍ରଧାନ କୃଷିକାର୍ଯ୍ୟ । ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଯତ୍ନ ଚେଷ୍ଟା ଓ ଅଧ୍ୟବସାୟ ଫଳରେ ବାମଣ୍ଡା ରାଜ୍ୟରେ ଶସ୍ୟ-ଉତ୍ପାଦନ-ଉପଯୋଗୀ ଭୂମି ଅଧିକାଂଶ ଆବାଦରେ ପରିଣତ ହୋଇଅଛି । ଅଧିକ ଜମି ପତିତ ନୁହେଁ । ପ୍ରଜାମାନଙ୍କୁ ଚାଷ ଓ ଅମଳ କାର୍ଯ୍ୟରେ ଶିକ୍ଷା ଓ ଉତ୍ସାହ ଦେବାପାଇଁ ଦେବଗଡ଼ ଠାରୁ ଦଶବାର ମାଇଲ୍ ଦୂର ପୂର୍ବଦିଗରେ ବଳମ୍ ନାମକ ରାଜକୀୟ ଆଦର୍ଶ କୃଷିକ୍ଷେତ୍ର ପ୍ରସ୍ତୁତ ହୋଇଅଛି । ବର୍ଷର ଯେଉଁ ଯେଉଁ ସମୟରେ ଯେଉଁ ଯେଉଁ ଫସଲ ହୁଏ, ଏଠାରେ ସେଗୁଡ଼ିକର ଉତ୍ତମ ପରୀକ୍ଷା ହୋଇଅଛି । 'ମାଲ୍', ଓ 'ବାହାଲ୍' ଧାନ, ରବି ଫସଲ ଗହମ, ଯଅ, ଚଣା, ମୁଗ, ମଟର, ସୋରିଷ, ରାଶି ପ୍ରଭୃତି ସମସ୍ତ ପ୍ରକାର ଫସଲ ଉତ୍ପନ୍ନ ହୋଇଥାଏ । ଜମିର ଉର୍ବରତା ଓ ଉତ୍ପନ୍ନ ଶସ୍ୟର ଉତ୍କୃଷ୍ଟତା ପ୍ରଦର୍ଶନ ପାଇଁ ଏଠାରେ



Digitized by srujanika@gmail.com

କୃଷିକର୍ମଚାରୀ ନିଯୁକ୍ତ ଅଛନ୍ତି । ସ୍ୱର୍ଗୀୟ ରାଜା ବାସୁଦେବ ଏଠାରେ ନାନାକାର୍ଯ୍ୟରେ ନିଯୁକ୍ତ କର୍ମଚାରୀଙ୍କ ଅଭିଜ୍ଞତା ବୃଦ୍ଧି ପାଇଁ ସ୍ୱୟଂ ସର୍ବଦା ଏହି ବଳମ କୃଷିକ୍ଷେତ୍ର ପରିଦର୍ଶନ କରୁଥିଲେ ଏବଂ ପ୍ରୟୋଜନ ହେଲେ ଅନେକ ସମୟରେ ଏଠାରେ ସେ ଅବସ୍ଥାନ କରୁଥିଲେ । ବର୍ତ୍ତମାନର ରାଜାବାହାଦୁର ମଧ୍ୟ ପିତୃ ପଦଚିହ୍ନ ଅନୁସରଣ ପୂର୍ବକ ପ୍ରତିଷ୍ଠିତ କୃଷିକ୍ଷେତ୍ରର ନିତ୍ୟନୂତନ ଉନ୍ନତ ସାଧନରେ ପ୍ରାଣପଣେ ଯତ୍ନ କରିଥାନ୍ତି ।

ପାର୍ବତ୍ୟ ପ୍ରଦେଶର ଆବାଦୀ ଜମି ଗୁଣାଗୁଣ ନିର୍ଦ୍ଧାରଣ ଏବଂ ଉପଯୁକ୍ତ କ୍ଷେତ୍ରରେ ଉପଯୋଗୀ ଶସ୍ୟର ଚାଷ ଯେପରି କଠିଣ, ପୁଣି ବର୍ଷା ଜଳାଭାବ ହେତୁ ସେଗୁଡ଼ିକର ରକ୍ଷା ଓ ପୋଷଣ ତଦ୍‌ପେକ୍ଷା ଶତଗୁଣ କଠିଣ । ଆମେ ବର୍ଷ ପରେ ବର୍ଷ ବଙ୍ଗ ଦେଶ ଓ ଭାରତର ଭିନ୍ନ ଭିନ୍ନ ରାଜ୍ୟ ବାର୍ଷିକ ସରକାରୀ ବିବରଣୀରେ ଦେଖିବାକୁ ପାଇଥାଉ, ବର୍ଷା ଜଳାଭାବ ହେତୁ ଯଥେଷ୍ଟ ଶସ୍ୟ ଉତ୍ପନ୍ନ ହୁଏ ନାହିଁ । ସରକାରଙ୍କ ସାହାଯ୍ୟରେ ଜଳ ସରବରାହର ବ୍ୟବସ୍ଥା ସତ୍ତ୍ୱେ ମଧ୍ୟ ବର୍ଷା ଅଭାବରେ ଅନେକ ସ୍ଥଳରେ ଶସ୍ୟ ହାନି ହୋଇଥାଏ । ସୁତରାଂ ଏହି ବିପଦ ସମତଳ କ୍ଷେତ୍ର ଅପେକ୍ଷା ପାର୍ବତ୍ୟ ପ୍ରଦେଶରେ ଯେ ଅନେକ ଅଧିକ, ତାହା ବୁଝାଇବାର ପ୍ରୟୋଜନ ନାହିଁ । ଏହା ସହଜରେ ଅନୁମେୟ । ଏହିପରି ବିବିଧ ବିଘ୍ନ ନିବନ୍ଧନ ବାମଣ୍ଡାର ପାର୍ଶ୍ୱବର୍ତ୍ତୀ ରାଜ୍ୟ ଗୁଡ଼ିକରେ ଯେଉଁ ପରିମାଣରେ ଅଜନ୍ମ ଓ ତନ୍ନିବନ୍ଧନ ଅଭାବର ନିଆଁ ଜଳିଥାଏ, ବାମଣ୍ଡାରେ ସେହିପରି ଅଭାବ, ଅନଟନ ସଂଘଟନ ଅପେକ୍ଷାକୃତ କମ୍, କାରଣ ଏଠାକାର ପ୍ରଜାମାନେ ବର୍ଷାଜଳ ଧରି ରଖିବା ଏବଂ ନଦୀ ପ୍ରବାହ ଆବଦ୍ଧ କରି ରଖିବା ଉପାୟ, ପଦ୍ଧତିମାନ ରାଜାନୁଗ୍ରହରୁ ସହଜରେ ଶିକ୍ଷା କରିଛନ୍ତି । ଏଥିପାଇଁ ଶସ୍ୟହାନି ନିବାରଣ ଯେତେପ୍ରକାର ଉପାୟ ଅବଲମ୍ବନ ସଂଭବ, ବାମଣ୍ଡାର ସ୍ୱର୍ଗୀୟ ରାଜା ଓ ବର୍ତ୍ତମାନ ରାଜା ସେହି ବିଷୟରେ ସଂପୂର୍ଣ୍ଣ ଅଭିଜ୍ଞ ଦୀର୍ଘକାଳ ଧରି ସେହି ସବୁ ସଦୁପାୟର ଅବଲମ୍ବନରେ ପ୍ରାଣପଣେ ଯତ୍ନ କରି ଆସୁଅଛନ୍ତି । ଫଳତଃ ଅନ୍ୟାନ୍ୟ ପ୍ରଦେଶ ତୁଳନାରେ, ବାମଣ୍ଡାରେ ଖାଦ୍ୟ ଶସ୍ୟର ଅଭାବ କେବେହେଲେ ଏତେ ତୀବ୍ର ହୋଇନାହିଁ । ଆଉ ଏକ କାରଣ ଏହି ଯେ, ଅଭାବ କାଳରେ, ଏଠାରେ ରାଜାଦେଶ ବ୍ୟତୀତ ରାଜ୍ୟର ଉତ୍ପନ୍ନ ଦ୍ରବ୍ୟ ରାଜ୍ୟ ବାହାରକୁ ଯିବାର ବ୍ୟବସ୍ଥା ନାହିଁ ।*(୨)* ଏଥିପାଇଁ ମୋଟାମୋଟି ଭାବରେ ରାଜ୍ୟର ପ୍ରଜାମଣ୍ଡଳୀ ଅନ୍ୟାନ୍ୟ ସ୍ଥାନ ତୁଳନାରେ ସୁଖୀ । ଏଠାରେ ଖାଇବା ପାଇଁ ମୋଟାଭାତ ଏବଂ ପିନ୍ଧିବା ପାଇଁ ମୋଟା ଲୁଗାର ଅଭାବ ହୁଏ ନାହିଁ । ଏହି ମୋଟା ଭାତ ଓ ମୋଟା ଲୁଗା ଅଭାବ ହୁଏ ନାହିଁ ବୋଲି ବାମଣ୍ଡା ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କରୁ ଅଭାବ ସମୟରେ, ବହୁ ବହୁ ନରନାରୀ ପୁତ୍ରକନ୍ୟା ସହ ପ୍ରାଣରକ୍ଷା ପାଇଁ, କର୍ମସୂତ୍ରେ ବାମଣ୍ଡାରେ ଆଶ୍ରୟ ଗ୍ରହଣ



Digitized by srujanika@gmail.com

କରିଥାନ୍ତି । ସଂଗେ ସଂଗେ ବାମଣ୍ଡାର ପ୍ରଜାସଂଖ୍ୟା ମଧ୍ୟ ସେହି ହେତୁ କ୍ରମଶଃ ବୃଦ୍ଧିପ୍ରାପ୍ତ ହେଉନାହିଁ, ଏପରି ନୁହେଁ, ଯେଉଁମାନେ ଆସିଛନ୍ତି, ସେମାନଙ୍କର ମଧ୍ୟରୁ ଅନେକେ ରହି ଯାଇଛନ୍ତି ଏବଂ ସେଭଳି ପ୍ରୟୋଜନ ହେଲେ ବର୍ତ୍ତମାନ ମଧ୍ୟ ରହିଯାଉଛନ୍ତି ।

## (ଗ) ଜଳାଭାବ ନିବାରଣ

ଦେବଗଡ଼ ରାଜଧାନୀର ଅତି ନିକଟରେ ଉତ୍ତର ଦିଗରେ ପାହାଡ଼ । ଦୁଇଗୋଟି ସୁଦୀର୍ଘ ପାହାଡ଼ ଅଗ୍ରସର ହେଉହେଉ ରାଜଧାନୀର ଠିକ୍ ପୂର୍ବୋତ୍ତର ଦିଗରେ ପରସ୍ପର ମିଳିତ ହୋଇ ଦଣ୍ଡାୟମାନ । ଦେଖିଲେ ମନେହୁଏ ଯେଉଳି, ଦେବରାଜଙ୍କର ଐରାବତ ଓ ବିଶ୍ୱେଶ୍ୱରଙ୍କର ବୃଷଭ ପରସ୍ପର ମିଳିତ ହୋଇ ପରସ୍ପର ଆଲିଙ୍ଗନ ପାଶରେ ଆବଦ୍ଧ ହୋଇଛନ୍ତି । ଏହି ପର୍ବତ ଦ୍ୱୟର ସନ୍ଧିସ୍ଥଳରେ ଏକ ମିଳନ ରେଖା ମଧ୍ୟ ଠିକ୍ ଜଣାଯାଏ । ଉଚ୍ଚ ପର୍ବତ ଗାତ୍ରରେ, ଏହି ସନ୍ଧିସ୍ଥଳରେ ନାନା ସ୍ଥାନରୁ ଜଳକଣାମାନ ବିନ୍ଦୁ ଆକାରରେ ବାହାର ହୋଇ ଏବଂ କ୍ରମେ ମିଳିତ ହୋଇ, ଏକ ଏକ କ୍ଷୀଣ ଆକାର ଧାରାରେ ପରିଣତ ହୋଇ ଅଗ୍ରସର ହେଉଅଛି । କ୍ରମେ ଏହିପରି ବହୁ ସହସ୍ରଧାର ମିଳିତ ହେଉ ହେଉ ଏକ ପ୍ରକାଣ୍ଡ ଜଳ ପ୍ରପାତରେ ପରିଣତ ହୋଇଅଛି ଓ ଭୂଧର ଗାତ୍ର ଅତିକ୍ରମ କରି ଧରଣୀ ପୃଷ୍ଠ ସ୍ପର୍ଶ କରିଅଛି । ବହୁ ଉଚ୍ଚରୁ ଏହି ଜଳ ପ୍ରବାହ ବୃହଦାୟତନରେ ପ୍ରବଳ ବେଗରେ ପତିତ ହେଉଅଛି । ଏହି ଜଳ ପ୍ରବାହର ନାମ 'ପ୍ରଧାନପାଟ' । ଏହି ପ୍ରଧାନପାଟ ଏକ ଅପୂର୍ବ ଦୃଶ୍ୟ । ରଜନୀର ନିସ୍ତବ୍ଧତା ମଝିରେ ବହୁ ଦୂରରୁ ସେହି ସଲିଳ ରାଶି ପତନ ଶବ୍ଦ ଶୁଣିବାକୁ ମିଳେ । ବାମଣ୍ଡା ଭ୍ରମଣକାରୀଙ୍କ ନିକଟରେ  ପର୍ଯ୍ୟଟନ ପଥ କ୍ଲେଶ ଓ କ୍ଲାନ୍ତି ନିବାରଣ ପାଇଁ ପ୍ରଧାନପାଟ ଧନ୍ୱନ୍ତରୀ ବିଶେଷ । ସେହି ପ୍ରପାତ ନିକଟରେ ମଧ୍ୟ ଏକ ଅପୂର୍ବ ଶାନ୍ତି ଓ ତୃପ୍ତି ସଂଚାର କରିଥାଏ । ସୂର୍ଯ୍ୟ କିରଣ ଧୌତ ସେହି ରଜତ ପ୍ରବାହରେ ଅସଂଖ୍ୟ ଇନ୍ଦ୍ରଧନୁ ଉଦୟ ସନ୍ଦର୍ଶନ ପ୍ରାଣରେ ଅପୂର୍ବ ଆନନ୍ଦର ସଂଚାର ହୁଏ । ଏଠାରେ 'ଉଷ୍ମ ସକଳ ଉତ୍ସାରିତ ମରୁଭୂମି ପ୍ରସ୍ତରେ' ଭକ୍ତର ଏହି ଭକ୍ତିପୂର୍ଣ୍ଣ ସଫଳତା ଲାଭ କରିଅଛି । ସେହି ଗ୍ରୀଷ୍ମର ଉତ୍ତପ୍ତ ଭୂଧର ଗାତ୍ରରେ ଦେବଲୀଳାର  ଅଭିନୟ ଦର୍ଶନ କରି ବିଧାତାଙ୍କୁ ଭକ୍ତିଭରେ ବାରମ୍ବାର ପ୍ରଣାମ କରିଥିଲି ।

ଏହି ପ୍ରଧାନପାଟର ଜଳରାଶି ରାଜଧାନୀର ପ୍ରାନ୍ତ ଦେଶ ଦେଇ ଏକ କ୍ଷୁଦ୍ର ନଦୀର ଆକାରରେ, ଆପଣା ଦିଗେ ଆପଣାର ପଥରେ ଚାଲିଅଛି । ରାଜା ସାର୍ ବାସୁଦେବ ଏହି ପବିତ୍ର ସୁନ୍ଦର ଜଳରାଶିର ସଦ୍‌ବ୍ୟବହାରର ବ୍ୟବସ୍ଥା କରିଥିଲେ । ଏହି ଜଳ ପ୍ରବାହକୁ ମାନବ ସେବାରେ ନିଯୁକ୍ତି କରିବା ପୂର୍ବରୁ ବାମଣ୍ଡାର ରାଜଧାନୀରେ ସ୍ନାନ ଓ ପାନୀୟ ଜଳର ଏକାନ୍ତ ଅଭାବ ଥିଲା । ରାଜା ବାହାଦୁର ବ୍ରଜସୁନ୍ଦର ଦେବଙ୍କ ସମୟରୁ ରାଜା ସାର୍



Digitized by srujanika@gmail.com

ବାସୁଦେବଙ୍କର ରାଜତ୍ୱର ପ୍ରାଥମିକ ଦୀର୍ଘ କିୟଦଂଶ ପର୍ଯ୍ୟନ୍ତ ଦେବଗଡ଼ର ଅନେକଗୁଡ଼ିଏ ପୁଷ୍କରିଣୀ ଖନନ କରାଯିବା ସତ୍ତ୍ୱେ ମଧ୍ୟ ଉତ୍ତମ ପାନୀୟ ଏକାନ୍ତ ଅଭାବ ଥିଲା । ଉତ୍ତର ପଶ୍ଚିମ ଅଞ୍ଚଳ ପରି ଏଠାରେ ମଧ୍ୟ ଅନେକ କୂପ ଓ ଜଳାଶୟ ଥିଲେ ମଧ୍ୟ, ତହିଁରେ ଜଳାଭାବ ନିବାରିତ ହେଉନଥିଲା । ତଦାନୀନ୍ତନ କାଳରେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ରେବତୀ ମୋହନ ଦାଶ ଏମ୍.ଏ ମହାଶୟ ଦିନେ ସନ୍ଧ୍ୟା ସମୟରେ ରାଜା ବାହାଦୁରଙ୍କୁ ଜଣାଇଲେ ଯେ, ଜଳାଭାବରେ ବହୁତ କ୍ଳେଶ ଭୋଗ କରିବାକୁ ପଡୁଅଛି । ପରଦିନ ଅତି ପ୍ରତ୍ୟୁଷରୁ ଭାର ଭାର ଜଳ ଆସି ରେବତୀବାବୁଙ୍କ ଦ୍ୱାରରେ ଉପସ୍ଥିତ ହେଲା । ବିଡ଼ାଏ ମୋଟା ବାଡ଼ି ହାତରେ ଧରି ରାଜା ବାହାଦୁର ସ୍ୱୟଂ ଭାରୁଆମାନଙ୍କ ସହିତ ଶିକ୍ଷକ ମହାଶୟଙ୍କ ଦ୍ୱାରରେ ଉପସ୍ଥିତ ହୋଇ ଡାକି କହିଲେ- 'ମାଷ୍ଟର ବାବୁ, ଆପଣଙ୍କର ଜଳ ଆସିଅଛି ।' ରେବତୀ ବାବୁ, ଏହି ଅପ୍ରତ୍ୟାଶିତ ଅନୁଗ୍ରହ ପ୍ରଦର୍ଶନରେ କୁଣ୍ଠିତ ଓ ମୁଗ୍ଧ ମନରେ ରାଜାଙ୍କ ସମୀପରେ କୃତଜ୍ଞତା ଜଣାଇ କହିଲେ- 'ମହାରାଜ ! ମୋ ଉପରେ ଅନୁଗ୍ରହର ଏପରି ଅତ୍ୟାଚାର, ମୋ ପକ୍ଷରେ ନିତ୍ୟାନ୍ତ ଲଜ୍ଜାର ବିଷୟ ।' ରାଜା ସାର୍ ବାସୁଦେବ ସେହି ଦିନ ହିଁ ସେହି ବସାଘରର ଜଳାଶୟରୁ  ପଙ୍କୋଦ୍ଧାର କରାଇ ପ୍ରଚୁର ଜଳ ପ୍ରାପ୍ତିର ବ୍ୟବସ୍ଥା କରାଇ ଦେଇଥିଲେ ।*(୩)* ରାଜା ସାର୍ ବାସୁଦେବ ସୁଢ଼ଳଦେବ କୌଣସି କାର୍ଯ୍ୟ ବିଳମ୍ବରେ ହେବ ବୋଲି ଅପେକ୍ଷା କରିବା ଜାଣିନଥିଲେ । ଏହିପରି ନିତ୍ୟ ଜଳାଭାବ ଦୂର କରିବା ପାଇଁ ସାର୍ ବାସୁଦେବ ଏହି ପ୍ରଧାନପାଟର ଜଳ ପରୀକ୍ଷା କରାଇ ଜାଣିଲେ ଯେ, ଏହା ବ୍ୟବହାର ଯୋଗ୍ୟ ଏବଂ ସ୍ୱାସ୍ଥ୍ୟକର । ସେତେବେଳେ ଏହି ପ୍ରଧାନପାଟର ମୂଳଦେଶରୁ ଏକ ଇଷ୍ଟକ ନିର୍ମିତ ଅନାଚ୍ଛାଦିତ ସ୍ୱତନ୍ତ୍ର ପ୍ରଣାଳୀ ପ୍ରସ୍ତୁତ କରାଇ ଏହି ଜଳ ପ୍ରବାହକୁ ସହରର ସେବାରେ ନିଯୁକ୍ତ କରିଥିଲେ । ସେହି ସମୟରୁ ପ୍ରଧାନପାଟର ଜଳ, ଦେବଗଡ଼ବାସୀଙ୍କର ସ୍ନାନ, ପାନ ଓ ରନ୍ଧନ କାର୍ଯ୍ୟରେ ନିୟୋଜିତ ହେଉଅଛି ।*(୪)* ବର୍ତ୍ତମାନ ରାଜା ଏହି ଜଳ ପ୍ରବାହକୁ ସହରକୁ ପ୍ରବାହିତ କରାଇବା ପାଇଁ ଇଷ୍ଟକାଚ୍ଛାଦିତ ସ୍ୱତନ୍ତ୍ର ପ୍ରଣାଳୀ ପ୍ରସ୍ତୁତ କରାଇ ଦେଇଛନ୍ତି । ରାଜପଥର ନାନା ସ୍ଥାନରେ ସାଧାରଣଙ୍କ ବ୍ୟବହାର ପାଇଁ କଲିକତା ଅନୁରୂପ କଳ ବସାଇ ଦିଆଯାଇଛି ।

ଆଶ୍ଚର୍ଯ୍ୟ ଏହି ଯେ, ସହରରେ ଏତେ ଜଳ ସରବରାହ କରି ମଧ୍ୟ ପ୍ରଧାନପାଟର ଜଳ ସ୍ରୋତ ପୂର୍ବବତ୍ ସେହି ସ୍ୱଭାବିକ ଜଳ ପ୍ରଣାଳୀ ପଥରେ ଧୀର ବେଗରେ ପ୍ରବାହିତ ହେଉଅଛି । ସ୍ଥାନୀୟ ବହୁ ଲୋକଙ୍କର ଧାରଣା ଯେ, ପ୍ରଧାନପାଟର ପ୍ରବାହ ବେଗ କିଞ୍ଚିତ୍ ମନ୍ଦିଭୂତ ହୋଇଅଛି । ଏହାର ବୈଜ୍ଞାନିକ କାରଣ ବିଶେଷ କିଛି ଜଣାଯାଇ ନାହିଁ । ତେବେ ଅନେକେ ଏଭଳି ଅନୁମାନ କରନ୍ତି ଯେ, ପ୍ରଧାନପାଟ ନିକଟବର୍ତ୍ତୀ ବହୁ ଦୂରବ୍ୟାପୀ



Digitized by srujanika@gmail.com

ଯେଉଁ ଅରଣ୍ୟ ଥିଲା, ତାହା କ୍ରମେ କ୍ରମେ ଧ୍ୱଂସ ହେବା ଫଳରେ ଜଳର ଗତି ପୂର୍ବାପେକ୍ଷା କିଞ୍ଚିତ୍ ହ୍ରାସ ପାଇଅଛି । ପ୍ରଧାନପାଟ ବାମଣ୍ଡାର ରାଜଧାନୀ ଦେବଗଡ଼ର ଏକ ମାଇଲ୍ ଉତ୍ତର ପୂର୍ବଦିଗରେ ପର୍ବତ ଗାତ୍ରରେ ବିରାଜ କରିଅଛି ।

ପ୍ରଧାନପାଟ ସମ୍ବନ୍ଧରେ ରାୟ ରାଧାନାଥ ରାୟ ବାହାଦୁର ତାଙ୍କର ଭ୍ରମଣ ବିବରଣୀର ଏକ ସ୍ଥାନରେ ଲେଖିଅଛନ୍ତି-

'ଗୋଦାବରୀ ଓ ନର୍ମଦାର ଜଳପ୍ରପାତ ଅପେକ୍ଷା ଏହା ଶତଗୁଣରେ ସୁନ୍ଦର । ଏହା ସହିତ ସେଗୁଡ଼ିକ ଆଦୌ ତୁଳନୀୟ ହେବେ ନାହିଁ । ଏହା ନ ଦେଖିଲେ ଚକ୍ଷୁର ସାର୍ଥକତା ଜାଣି ହୁଏ ନାହିଁ ।' ସେ ଆଉ ଏକ ସ୍ଥାନରେ ଲେଖିଅଛନ୍ତି, 'ପ୍ରଧାନପାଟ ପ୍ରପାତ ମୁଁ ତିନିଥର ଦେଖିଅଛି ।

'କ୍ଷଣେ କ୍ଷଣେ ଯନ୍ନବତାମ ଉପୟିତ
ତଦେବରୂପଂ ରମଣୀୟତାୟାଃ ।'

ମାଘ କବିଙ୍କର ଏହି ପଙ୍କ୍ତି ଦ୍ୱୟ ସ୍ମୃତି ପଥରେ ଉଦିତ ହୋଇଥିଲା । ଫଳତଃ ଏହିପରି ବିଚିତ୍ର ଦୃଶ୍ୟ ଭାରତରେ ବିରଳ ବୋଲି, କହିଲେ ବୋଧହୁଏ ଅତ୍ୟୁକ୍ତି ହେବ ନାହିଁ ।'

ଆମ୍ଭମାନଙ୍କ ଆଉ ଜଣେ ବନ୍ଧୁ ଏକଦା କେତେଜଣ ବନ୍ଧୁଙ୍କ ସହିତ ମିଶି ବାମଣ୍ଡା ଭ୍ରମଣରେ ଯାଇଥିଲେ । ସେ ତାଙ୍କ ଭ୍ରମଣର ଦୀର୍ଘ ବିବରଣୀ ଲିପିବଦ୍ଧ କରି ଅଛନ୍ତି । ତହିଁରୁ ପ୍ରଧାନପାଟ ବିଷୟକ ଧାରଣା ଉଦ୍ଧୃତ କରାଗଲା-

'ପ୍ରଧାନପାଟ ପ୍ରପାତ ନିକଟରେ ଉପସ୍ଥିତ ହୋଇ ଅଭୂତପୂର୍ବ ଭାବରେ ନିମଗ୍ନ ହେଲି । ସେହି ଦୃଶ୍ୟଠାରୁ ଚକ୍ଷୁ ବିଚଳିତ ହେଲା ନାହିଁ । ସ୍ଫଟିକ ତୁଲ୍ୟ ଜଳଧାରା ମହାବେଗରେ ପ୍ରାୟ ୨୦୦ଶତ ଫୁଟ ଉପରରୁ ବେଗରେ ନିପତିତ ହେଉଅଛି । ଜଳ ପତନର ନିନାଦରେ ଶ୍ରବଣ ବଧିର ହୋଇଯାଏ । ନିମ୍ନ ଦେଶର ଚାରିପାଞ୍ଚ ହସ୍ତ ଜଳରାଶି ଭେଦ କରି ଜଳମୟ ଭୂମି ଦୃଷ୍ଟ ହେଉଅଛି । ଆମ୍ଭେମାନେ ସୂର୍ଯ୍ୟତାପରେ ଶ୍ରାନ୍ତ କ୍ଲାନ୍ତ ହୋଇ ପ୍ରପାତ ନିକଟରେ ଉପସ୍ଥିତ ହୋଇଥିଲୁ । ଅଳ୍ପକ୍ଷଣ ପରେ ଶୀତ ଅନୁଭୂତ ହୋଇଥିଲା । ପ୍ରପାତ ଜଳରେ ସ୍ନାନ କରିବା ପାଇଁ ଅନେକେ ନିଷେଧ କରିଥିଲେ; କିନ୍ତୁ ଏହିପରି ସୁଖମୟ ଧାରା, ସ୍ନାନର ଲୋଭକୁ ସମ୍ବରଣ କରିପାରି ନାହିଁ । ଉର୍ଦ୍ଧ୍ୱରୁ ନିପତିତ ସୁଶୀତଳ ବାରିଧାରା ତଳେ ମସ୍ତକ ରଖି କି ଯେ ଆରାମ ଓ ଶାନ୍ତି ଅନୁଭବ କଲି, ତାହା ବ୍ୟକ୍ତ କରିବା ଅସମ୍ଭବ । ସ୍ନାନାନ୍ତେ ଉପାସନାରେ ପ୍ରବୃତ୍ତ ହେଲି, ଆଜି ଆଉ ଉଦ୍‌ବୋଧନର



Digitized by srujanika@gmail.com

ପ୍ରୟୋଜନ ହେଲା ନାହିଁ । ବିଭୁକୃପା ପ୍ରେମର ପ୍ରତ୍ୟକ୍ଷ ନିଦର୍ଶନ ସମ୍ମୁଖରେ ଦେଖି ପ୍ରାଣ ସ୍ୱତଃ ଉଦ୍‌ବୁଦ୍ଧ ହୋଇ ଉଠିଲା । ସେହି ଉପାସନାର ମଧୁରତା ଓ ଭାବର ଗଭୀରତା ବର୍ଣ୍ଣନା କରିବା ମନୁଷ୍ୟର ଭାଷାରେ ଅସମ୍ଭବ । ହୃଦୟର ଦ୍ୱାର ସଂପୂର୍ଣ୍ଣ ଖୋଲିଗଲା । ଭିତର ବାହାର ଭେଦ ରହିଲା ନାହିଁ । କବି ଏବଂ ଭାବୁକ ଗଣ ଏହି ଦୃଶ୍ୟର ମୂଲ୍ୟ ବୁଝିପାରନ୍ତି । ସେ ସବୁ ଅନୁଭବନୀୟ, ବର୍ଣ୍ଣନୀୟ ନୁହେଁ ।'*(୫)* ଏହି ଜଳରାଶି ବର୍ତ୍ତମାନ ବାମଣ୍ଡାର ରାଜଧାନୀ ଦେବଗଡ଼ର ଜନସାଧାରଣଙ୍କର ଜଳାଭାବ ନିବାରଣରେ ନିଯୁକ୍ତ । ଏହି ଜଳ ପ୍ରବାହକୁ ଲୋକ ସେବାରେ ନିୟୋଜିତ କରିବାର ଏକ ସାମାନ୍ୟ ଇତିହାସ ରହିଛି । ସେହି ଇତିହାସ ଏହିପରି- 'ମହାରାଜ ଇଂରାଜୀ ଜାଣନ୍ତି ନାହିଁ; କିନ୍ତୁ ବିଜ୍ଞାନ ଦ୍ୱାରା ସଭ୍ୟ ଜାତିର କି ଉନ୍ନତି ହୋଇଅଛି, ତାହା ସେ ସବିଶେଷ ଅବଗତ ଅଛନ୍ତି । ବର୍ତ୍ତମାନ ମଧ୍ୟ ତାହାଙ୍କର ବିଜ୍ଞାନ ମନ୍ଦିରର ଉପକାରିତା ବୁଝି ପାରିବାର ସମୟ ହୋଇନାହିଁ, ତଥାପି ଏକ ସାମାନ୍ୟ ଫଳର ଉଲ୍ଲେଖ ନକରି ରହିପାରୁ ନାହିଁ । ରାଜପ୍ରାସାଦର ଅନତିଦୂରରେ ଏକ ଜଳପ୍ରପାତ ଅଛି । ଅଳ୍ପଦିନ ହେଲା ମହାରାଜା ପାଣିକୁଣ୍ଡ ଓ କଳ ଦ୍ୱାରା ଦେବଗଡ଼ରେ ନିର୍ମିତ ଜଳ ପ୍ରାପ୍ତିର ବ୍ୟବସ୍ଥା କରିଅଛନ୍ତି । ଆଉ ଏକ ଅଭିନବ ବ୍ୟାପାର ଏହି ଯେ, ବ୍ରାହ୍ମଣ ଏବଂ କୋହ୍ଲ ପ୍ରଭୃତି ଅନ୍ତଜ୍ୟ ଜାତିଙ୍କ ନିମିତ୍ତ ପୃଥକ ଜଳର ବ୍ୟବସ୍ଥା ରହିଛି । ହିନ୍ଦୁ ରାଜ୍ୟରେ ଏହିପରି ବ୍ୟବସ୍ଥା ନ ରହିଲେ, ଆଶ୍ଚର୍ଯ୍ୟର ବିଷୟ ହୋଇଥାନ୍ତା; କିନ୍ତୁ ଏଭଳି ବ୍ୟବସ୍ଥା ହୋଇପାରେ । ତାହା ଆମ୍ଭମାନଙ୍କର ମନେ ହୋଇନାହିଁ । ଜଳ କଳର ଉତ୍ପତ୍ତି ବିଜ୍ଞାନ ମନ୍ଦିରରେ ହୋଇଅଛି । ଦିନେ ରାଜକୁମାରଗଣ ସେଠାକାର ଉଚ୍ଛସ୍ଥିତ ଜଳ, ନଳ ଦ୍ୱାରା, ଦୂରକୁ ନେଇ ତାହାର ଉତ୍‌କ୍ଷେପ ଦେଖୁଥିଲେ । ଶୁଣିଅଛି ଏହା ଦେଖି ମହାରାଜ ଜଳ ପ୍ରପାତର ଜଳ ସହରକୁ ଚାଳିତ କରାଇବାର ସଂକଳ୍ପ କରିଥିଲେ ।*(୬)*

ପାର୍ବତ୍ୟ ପ୍ରଦେଶ ପ୍ରଜାମାନଙ୍କର ସର୍ବବିଧ କାର୍ଯ୍ୟର ସୁବିଧା ପାଇଁ ଜଳାଭାବ ଦୂର କରିବାପାଇଁ ଯେଉଁସବୁ ଉପାୟ ଅବଲମ୍ବନ ସଂଭବ ରାଜା ବାହାଦୁର ସେହି ସମସ୍ତ ଗ୍ରହଣ କରିଥିଲେ । ଯେଉଁ ଯେଉଁ ସ୍ଥାନରେ ପାର୍ବତ୍ୟ ନଦୀଗୁଡ଼ିକର ପ୍ରବାହର କିୟଦଂଶ ପଲ୍ଲୀ ସମୂହ ନିକଟବର୍ତ୍ତୀ ସେହି ସ୍ଥାନଗୁଡ଼ିକରେ ବନ୍ଧବାନ୍ଧି ଜଳ ଆବଦ୍ଧ ରଖିବାପାଇଁ ଏବଂ ତଦ୍ୱାରା ଜଳାଭାବ ଦୂର କରିବାପାଇଁ ସର୍ବଦା ହିଁ ପ୍ରସ୍ତୁତ ରହୁଥିଲେ । ଏହି ଅଧ୍ୟାୟର ପ୍ରାରମ୍ଭରେ ଯେଉଁ ବଳମ୍ କୃଷି କ୍ଷେତ୍ରର ଉଲ୍ଲେଖ କରାଯାଇଅଛି, ସେହି କୃଷିକ୍ଷେତ୍ର ବାମଣ୍ଡାର ରାଜକୀୟ ଆଦର୍ଶ କୃଷିକ୍ଷେତ୍ର । କୃଷି କ୍ଷେତ୍ରରେ ବାରମାସ ପ୍ରଚୁର ଜଳ ସରବରାହ କରିବା ପାଇଁ ଯେଉଁ ଅତ୍ୟାଶ୍ଚର୍ଯ୍ୟ ଉପାୟ ଅବଲମ୍ବିତ ହୋଇଅଛି, ସେହିପରି ପନ୍ଥା, ଇଂରେଜ ସରକାରଙ୍କର ବୁଦ୍ଧିମାନ ଓ କର୍ମପଟୁ ସ୍ଥପତିବିଦ୍ୟା ବିଶାରଦ ଇଂଜିନିୟରଙ୍କ କର୍ତ୍ତୃକ ଭାରତର



Digitized by srujanika@gmail.com

ସ୍ଥାନେ ସ୍ଥାନେ ଅବଲମ୍ବିତ ହୋଇଥିଲେ ମଧ୍ୟ, ସେଗୁଡ଼ିକ କର୍ମ କୁଶଳ ସୁନିପୁଣ ବ୍ୟକ୍ତିଗଣଙ୍କ ବୁଦ୍ଧି ପ୍ରସୂତ । ସେଗୁଡ଼ିକର ନିର୍ମାଣ ପାଇଁ ସେହି ସମସ୍ତ ରାଜକର୍ମଚାରୀମାନେ ବିଶେଷ ଭାବରେ ପ୍ରଶଂସିତ ଓ ବହୁ ସମ୍ମାନଜନକ ଉପାଧିରେ ଅଳଂକୃତ । ଏଠାରେ ରାଜା ସାର୍ ବାସୁଦେବ ସୁଢ଼ଳଦେବ ସେହିପରି ଅସାଧାରଣ ବୁଦ୍ଧିସଂପନ୍ନ କୌଣସି ଇଂରେଜ ବା ଦେଶୀୟ ଇଂଜିନିୟରଙ୍କ ସହାୟତା ନ ନେଇ, ନିଜ ବୁଦ୍ଧି ବଳରେ ଯେଉଁ ଅପୂର୍ବ କୀର୍ତ୍ତି କରିଯାଇ ଅଛନ୍ତି, ତାହା ସ୍ୱଚକ୍ଷୁରେ ସନ୍ଦର୍ଶନ ନ କଲେ, ତାହାଙ୍କର ଅସାଧାରଣ କର୍ମ ପ୍ରତିଭାର ଗୁରୁତ୍ୱ ହୃଦୟଙ୍ଗମ କରି ହେବନାହିଁ ।

ବଳମ ଆଦର୍ଶ କୃଷିକ୍ଷେତ୍ରର କ୍ଷେତ୍ର ନିର୍ବାଚନରେ ମଧ୍ୟ ବିଶେଷ ଅଭିଜ୍ଞତାର ପରିଚୟ ମିଳିଥାଏ । କଳାଜିରା ନାମକ ଏକ ପାର୍ବତ୍ୟ ନଦୀ ତୀରରେ, ଏପରି ଏକ ସ୍ଥାନରେ କ୍ଷେତ୍ର ନିର୍ବାଚିତ ହୋଇଥିଲା ଯେ, କାଳକ୍ରମେ ସେହି ପ୍ରବାହିତ ଅଂଶକୁ ଏକ ସୁବୃହତ ଜଳାଶୟରେ ପରିଣତ କରାଯାଇପାରେ । ସେହି କ୍ଷୁଦ୍ର ନଦୀର ନିମ୍ନାବତରଣ ଏକ ସୁବିଧା ଜନକ ସ୍ଥାନରେ ଜଳସ୍ରୋତ ରୋଧ କରିବାର ଉପଯୋଗୀ ଏକ ବନ୍ଧ ନିର୍ମାଣ କରାଇଲେ । ବନ୍ଧର ଉଚ୍ଚତା ପ୍ରାୟ ସର୍ବତ୍ର ତିରିଶ ଫୁଟ ହେବ । ଏହି ବନ୍ଧର ଜଳଭାଗ ବା ଭିତ୍ତିମୂଳ ଏଭଳି ବିସ୍ତୃତ ଯେ, ସଂଚିତ ଜଳରାଶି ଚାପରେ ବନ୍ଧର କୌଣସି କ୍ଷତି ସାଧନର ସଂଭାବନା ସୁଦ୍ଧା ନାହିଁ । ଏଭଳି କ୍ଷୁଦ୍ର ପାର୍ବତ୍ୟ ନଦୀର ଜଳସ୍ରୋତ ରୋଧ କଲେ ମଧ୍ୟ ତାହାର ନିତ୍ୟନିୟତ କ୍ଷରଣ ପାଇଁ ଯେଉଁ ପ୍ରବାହ ରହିଅଛି, ତାହାର ବେଗ କିଏ ଧାରଣ କରିବ ? ଏହି କୃତ୍ରିମ ବେଷ୍ଟନୀ ମଧ୍ୟରେ ବର୍ଷା ସମୟରେ ଯେତେ ପରିମାଣରେ ଜଳ ଧାରଣ କରିବା ସମ୍ଭବ ଏବଂ ଯେତେଟା ଧାରଣ କରାଯାଇ ପାରେ, ବନ୍ଧ ସେହି ପରିମାଣରେ ଉଚ୍ଚକରି ତାହା ଉପରେ ଚାରିଗୋଟି ସ୍ଥାନରେ ଅତିରିକ୍ତ ଜଳ ବାହାରିଯାଇ ପାରିବାର ବ୍ୟବସ୍ଥା କରାଯାଇଅଛି । ବନ୍ଧ ଉପରେ ଏତେ ପରିମାଣରେ ଗୁଳ୍ମଲତା ଜନ୍ମିଅଛି ଯେ, ଦୂରରୁ ତାହା ପ୍ରଚ୍ଛନ୍ନ ପାହାଡ଼ ବୋଲି ଭ୍ରମ ଜନ୍ମିଥାଏ ।

ନାଗପୁର ସହରର ସର୍ବତ୍ର ପାନୀୟ ଜଳ ଯୋଗାଇବା ପାଇଁ ବହୁଦୂରେ 'ଅମ୍ବାଚାରି' ନାମକ ଏକ କୃତ୍ରିମ ହ୍ରଦ ଏହି ପ୍ରଣାଳୀରେ ପ୍ରସ୍ତୁତ ହୋଇଅଛି । ରାଜା ସାର୍ ବାସୁଦେବ ଭ୍ରମଣରେ ଯାଇ ନାଗପୁର ଅବସ୍ଥାନ କାଳରେ ଏଭଳି ବ୍ୟବସ୍ଥା ସ୍ୱଚକ୍ଷୁରେ ଦର୍ଶନ କରି ଆସିଥିଲେ । ସେହିଠାରେ ସେହି ବନ୍ଧ ନିର୍ମାଣ କରିବାରେ ଓ ତାହାକୁ ରକ୍ଷା କରିବା ପାଇଁ ଯେଉଁସବୁ ବ୍ୟବସ୍ଥା ପ୍ରୟୋଜନ, ସେଥିପାଇଁ ଅଜ୍ଞ ଇଂଜିନିୟର ନିଯୁକ୍ତ ହୋଇ ରହିଥିଲେ ଏବଂ ବର୍ତ୍ତମାନ ସୁଦ୍ଧା ରହିଅଛନ୍ତି । ରାଜା ସାର୍ ବାସୁଦେବ ସୁଢ଼ଳଦେବ ସ୍ଥାୟୀ ବା ଅସ୍ଥାୟୀ ଭାବରେ ଇଂରେଜ ବା ଦେଶୀୟ ସ୍ଥପତିଙ୍କର ସାହାଯ୍ୟ ଗ୍ରହଣ କରି ନାହାନ୍ତି ।



Digitized by srujanika@gmail.com

ନିଜେ ହିଁ ନିଜର ପ୍ଲାନ ଏବଂ ତାହାକୁ କାର୍ଯ୍ୟରେ ପରିଣତ କରିବା ପଦ୍ଧତି ଉଦ୍‌ଭାବିତ କରି·ନେଇଥିଲେ । ଏଭଳି ଜଳାଶୟ ନିର୍ମାଣ କରାଇ ରାଜ୍ୟ କୃଷି କାର୍ଯ୍ୟର ଉନ୍ନତି ସାଧନ ଚେଷ୍ଟା ଯେତେ ପରିମାଣରେ ପ୍ରଶଂସାର ବିଷୟ, ତାଙ୍କପରି କର୍ତ୍ତବ୍ୟପରାୟଣ ଲୋକପାଳଙ୍କ ପକ୍ଷରେ ସେତକ ପ୍ରଶଂସା ପ୍ରାପ୍ୟ, ସେହି ବିଷୟରେ ସନ୍ଦେହ ନାହିଁ । ଏଠାରେ ରାଜା ବାହାଦୁର କେବଳ ସେତକ ପ୍ରଶଂସା ପାଇଲେ ଯଥେଷ୍ଟ ହେବ ନାହିଁ । ଅଭିଜ୍ଞ ସ୍ଥପତିଙ୍କର ସାହାଯ୍ୟ ଗ୍ରହଣ ନକରି, ଅସଂଗତ ଶ୍ରମ ସ୍ୱୀକାର ପୂର୍ବକ ନିଜ ବୁଦ୍ଧି ବଳରେ, ଏଭଳି ଏକ ବାରିବେଷ୍ଟନୀ (ବନ୍ଧ)ନିର୍ମାଣ କରାଇବାର ଯେଉଁ କାୟିକ ଓ ମାନସିକ ଶ୍ରମର ପ୍ରୟୋଜନ,ଏଠାରେ ତାହାର ହିଁ ଗୁରୁତ୍ୱ ସ୍ମରଣ ଯୋଗ୍ୟ । ରାଜା ହୋଇ ପ୍ରଜାମାନଙ୍କ ସାଙ୍ଗରେ ଏବଂ ମଜୁରିଆମାନଙ୍କ ସାଙ୍ଗରେ ମିଳିମିଶି ସ୍ୱୟଂ ଏହି ସମସ୍ତ କାର୍ଯ୍ୟ ସଂପାଦନରେ ଯେଉଁ ଗଭୀର ଆନନ୍ଦ ସଂଭୋଗ ସଂଭବ, ରାଜା ସାର୍ ବାସୁଦେବ ସେହି ଆନନ୍ଦ ସଂଭୋଗ କରିପାରିବା ଜାଣିଥିଲେ । ଏହା ହିଁ ତାହାଙ୍କର ବିଶେଷତ୍ୱ ।

ବଳମ୍ କୃଷିକ୍ଷେତ୍ର ନିକଟରେ ଗିରି ନଦୀ ବକ୍ଷରେ ବନ୍ଧ ଦ୍ୱାରା କୃଷିକାର୍ଯ୍ୟ - ଉପଯୋଗୀ ଜଳ ମିଳିବା ମଧ୍ୟ କଠିଣ ଥିଲା । ମାଘ ଶେଷ ଠାରୁ ଜ୍ୟେଷ୍ଠ ମାସ ଶେଷ ପର୍ଯ୍ୟନ୍ତ ଏହି ଜଳାଶୟରୁ ପ୍ରଚୁର ଜଳ ମିଳେନାହିଁ । ତେଣୁ ଜଳାଭାବ ନିବାରଣ ପାଇଁ ଦୂରରେ ଅବସ୍ଥିତ ମତୁଆଳି ନାମକ ଏକ ପାର୍ବତ୍ୟ ନଦୀର କ୍ଷର ସ୍ରୋତରେ ଆନିକଟ ତିଆରି କରାଇ ଆଂଶିକ ଜଳସ୍ରୋତ ରୋଧ ଓ ନୂତନ ପ୍ରଣାଳୀ ପଥରେ ସେହି ଜଳ ଚାଳିତ କରାଇବାରେ ବ୍ୟବସ୍ଥା କରାଇଲେ । ସେହି ଜଳକୁ କୃଷିକ୍ଷେତ୍ରକୁ ଅଣାଇବା ପାଇଁ, ସେହି ଉଚ୍ଚ ଭୂମି ଉପରେ ବହୁ ଗଭୀର ଏକ ଜଳ ପ୍ରଣାଳୀ ପ୍ରସ୍ତୁତ କରାଇ, ସେହି ପ୍ରଣାଳୀ ପଥରେ ଜଳ ଚାଳିତ ହେଲା । ସର୍ବପ୍ରଥମେ ଏହି ଦୀର୍ଘ ଦୂର ବ୍ୟାପି ଜଳ ପ୍ରଣାଳୀ ପ୍ରସ୍ତୁତ କରାଇବା ସମୟରେ ଶ୍ରମଜୀବିମାନଙ୍କ ମଧ୍ୟରୁ ନଅଜଣ ପ୍ରଣାଳୀର ପାର୍ଶ୍ୱ ଦେଶରୁ ମାଟି ଅତଡ଼ା ଖସି ଯିବା ଫଳରେ ଚାପି ହୋଇ ପ୍ରାଣ ହରାନ୍ତି । ଏହି ସଂବାଦରେ ରାଜା ବାସୁଦେବ ତ୍ୱରିତ ସେଠାରେ ଉପସ୍ଥିତ ହୁଅନ୍ତି । ସେହି ଭଗ୍ନ ମୃତ୍ତିକା ସ୍ତୂପ ମଧ୍ୟରୁ ମୃତବ୍ୟକ୍ତିଗଣଙ୍କ ଶବ ଉଦ୍ଧାର କରିବା ପାଇଁ ଭୟବଶତଃ କେହି ସମ୍ମତ ହେଲେ ନାହିଁ । ରାଜା ସ୍ୱୟଂ ସେହି ମୃତ୍ତିକା ସ୍ତୂପ ମଧ୍ୟରୁ ମୃତଦେହ ଉଦ୍ଧାର କରିବା ପାଇଁ ଅଗ୍ରସର ହେଲେ । ତତ୍ପରେ ସମସ୍ତେ ଅଗ୍ରସର ହୋଇଥିଲେ । ନଅ ଜଣଙ୍କ ମଧ୍ୟରେ ଜଣେ ସ୍ତ୍ରୀ ଲୋକ ମାଟିସ୍ତୂପ ଭିତରେ ଚାପିହୋଇ ରହି ମଧ୍ୟ ଜୀବିତ ଥିଲେ । ଜନତାଙ୍କ ମଧ୍ୟରେ ସେ ପ୍ରେତାଶ୍ରିତ ବୋଲି ପ୍ରଚାରିତ ହୋଇଗଲେ । ବହୁ କଷ୍ଟରେ ତାଙ୍କର ପ୍ରାଣରକ୍ଷା କରାଯାଏ; କିନ୍ତୁ ସେ ଏକାବେଳକେ ବଧିର ହୋଇଯାଇଛନ୍ତି । ରାଜା ତାଙ୍କର ଜୀବିକା ନିର୍ବାହ



Digitized by srujanika@gmail.com

ବ୍ୟବସ୍ଥା କରାଇ ଦେଇଥିଲେ । ଏହି ଦୁର୍ଘଟଣା ପାଇଁ ପ୍ରଜାଙ୍କ ମଧ୍ୟରେ ବିଜ୍ଞତମ କେହି କେହି କହିଥିଲେ- 'ଏ ସବୁ କାର୍ଯ୍ୟ କ'ଣ କରିବି ବୋଲି ଚିନ୍ତା କରିବା ମାତ୍ରେ କରାଯାଇପାରେ ?' ପ୍ରଥମ ଉଦ୍ୟମରେ ଲୋକକ୍ଷୟ, ବହୁ ଅର୍ଥ ବ୍ୟୟ ଓ ଶ୍ରମ ସ୍ୱୀକାର ବ୍ୟର୍ଥ ହେବା ଫଳରେ ଅନ୍ୟ ବ୍ୟକ୍ତି ଯେପରି ନିରାଶ ହୋଇଯାଆନ୍ତି, ରାଜା ସାର୍ ବାସୁଦେବ ସେପରି ନିରାଶ ହେବାର ବ୍ୟକ୍ତି ନଥିଲେ । ପରବର୍ତ୍ତୀ ବର୍ଷ ଉପଯୁକ୍ତ ସମୟରେ ଦ୍ୱିଗୁଣ ଉଦ୍ୟମ ଓ ଉତ୍ସାହ ସହକାରେ ବହୁଅର୍ଥ ବ୍ୟୟରେ ସେହି କାର୍ଯ୍ୟକୁ ସମସ୍ତଙ୍କ ସମକ୍ଷରେ ସୁସଂପନ୍ନ କରାଇ କୃଷିକ୍ଷେତ୍ରର ଜଳାଭାବ ଚିରଦିନ ପାଇଁ ନିବାରଣ କରିବାକୁ ସକ୍ଷମ ହୋଇଥିଲେ । ଏହି କାର୍ଯ୍ୟ ସଂପନ୍ନ କରାଇବା ପାଇଁ ତାଙ୍କୁ ଯେପରି ଅସୀମ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା, ତଦନୁରୂପ ଅର୍ଥବ୍ୟୟ ମଧ୍ୟ କରିବାକୁ ପଡ଼ିଥିଲା ।

ବଳମ୍ କୃଷିକ୍ଷେତ୍ର ଜମିର ପରିମାଣ ଦୁଇହଜାର ଏକର । ଏଠାରେ ଧାନ ଏବଂ ଅନ୍ୟ ନାନାବିଧ ରବିଶସ୍ୟ ଚାଷ ହୋଇଥାଏ । ଆଖୁ ଏକ ପ୍ରଧାନ ଚାଷ । ସେ କେବଳ ଆଖୁ ଚାଷ କରାଇ କ୍ଷାନ୍ତ ହୋଇନାହାନ୍ତି । ଦେଶୀୟ ପ୍ରଥା ଅନୁଯାୟୀ ଆଖୁରୁ ଗୁଡ଼ ପ୍ରସ୍ତୁତ କରାଇବାର ବ୍ୟବସ୍ଥା ମଧ୍ୟ କରାଇଛନ୍ତି । ଏ ବିଷୟ ପରେ ଉଲ୍ଲିଖିତ ହେବ । ବଳମ୍ କୃଷିକ୍ଷେତ୍ରରେ ଆଳୁ ଏବଂ କୋବି ଏବଂ ଅନ୍ୟାନ୍ୟ ପନିପରିବା ମଧ୍ୟ ପ୍ରଚୁର ପରିମାଣରେ ଉତ୍ପନ୍ନ ହୋଇଥାଏ । ଏଠାରେ ଏକ ଆଦର୍ଶ ଉଦ୍ୟାନ ପ୍ରସ୍ତୁତ ହୋଇଅଛି । ସେଠାରେ ନାନାଦେଶୀୟ ଫଳ ଚାରା ଏବଂ କଲମୀ ଚାରା ଅଣାଇ ରୋପଣ କରା ଯାଇଅଛି । ଆମ୍ବ, ଜାମୁ, ଗୋଲାପଜାମୁ, ପଣସ, କଦଳୀ, ନାନା ଜାତିର ଲେମ୍ବୁ ଓ ଅନ୍ୟ ବିବିଧ ଫଳଗଛରେ ପରିପୂର୍ଣ୍ଣ ଏକ ଆଦର୍ଶ ଉଦ୍ୟାନ ପ୍ରସ୍ତୁତ ହୋଇଅଛି । ବାମଣ୍ଡା ରେଳଷ୍ଟେସନ ନିକଟରେ ଗୋବିନ୍ଦପୁର (ପୂର୍ବେ ଥାନା ଓ କୁଚିଣ୍ଡା ହେଡ୍ ତହସିଲ ଅନ୍ତର୍ଗତ କ୍ଷୁଦ୍ର ତହସିଲ ଥିଲା) ବର୍ତ୍ତମାନର ରାଜା ବାହାଦୁର ଏକ ସବ୍‌ଡ଼ିଭିଜନ ଅର୍ଥାତ୍ କୁଚିଣ୍ଡା ଭଳି ଏକ ଉପବିଭାଗ ପ୍ରତିଷ୍ଠା କରାଇ ଏଠାରେ ଦେବାଳୟ, ବିଦ୍ୟାଳୟ, ଚିକିତ୍ସାଳୟ, ଅଦାଲତ ଓ ଅତିଥିଙ୍କର ପାଇଁ ବାସଭବନ (ଡାକବଙ୍ଗଳା) ଇତ୍ୟାଦି ପ୍ରତିଷ୍ଠା କରାଇଛନ୍ତି । ଏହିଠାରୁ ଆରମ୍ଭ କରି ରାଜଧାନୀ ଦେବଗଡ଼ ଯିବାପାଇଁ ପଥ (୫୮ ମାଇଲ୍) ର ଦୁଇ ପାର୍ଶ୍ୱରେ ଏତେ ଆମ୍ରବୃକ୍ଷ ଯେ, ତାହା କଳନା କରିବା ଅସମ୍ଭବ । ସୁତରାଂ ଆମ୍ବର ପ୍ରାଚୁର୍ଯ୍ୟ ବାମଣ୍ଡାରେ ସ୍ୱତନ୍ତ୍ର ଭାବରେ କାହିଁକି ହେଲା, ବିଦେଶୀ ଭ୍ରମଣକାରୀଙ୍କ ପକ୍ଷରେ ଏହି ପ୍ରଶ୍ନ ସହଜରେ ଉଦୟ ହୋଇପାରେ । ଆମ୍ବ ଏହି ଦେଶର ଏକ ପ୍ରଧାନ ଫଳ ଏବଂ ପ୍ରଚୁର ପରିମାଣରେ ଉତ୍ପନ୍ନ ହୋଇଥାଏ । ଦେବଗଡ଼ ରାଜଧାନୀରେ ମଧ୍ୟ ଅସଂଖ୍ୟ ପୁରୁଣା ଓ ନୂତନ ଆମ୍ବଗଛ ସର୍ବତ୍ର ପଥରେ ଛାୟାଦାନ କରୁଅଛି । ରାଜଧାନୀଠାରୁ ବଳମ କୃଷିକ୍ଷେତ୍ରକୁ ଯିବାପାଇଁ ପଥ



Digitized by srujanika@gmail.com

ପାର୍ଶ୍ୱରେ ମଧ୍ୟ ପ୍ରଚୁର ଆମ୍ବଗଛ ଦେଖିବାକୁ ମିଳେ । ପାର୍ବତ୍ୟପ୍ରଦେଶ ମାତ୍ରେ ହିଁ ଆମ୍ରବଣ ସୁଲଭ ସନ୍ଦେହ ନାହିଁ; କିନ୍ତୁ ବାମଣ୍ଡାରେ ତାହା ଅପର୍ଯ୍ୟାପ୍ତ ବୋଲି ମନେହୁଏ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଅତିଶୟ ଆମ୍ରପ୍ରିୟ ଥିଲେ । ନିଜ ହାତରେ ଆମ୍ବ କାଟି ଅତିଥି ବନ୍ଧୁ ଏବଂ ଆତ୍ମୀୟସ୍ୱଜନଙ୍କୁ ଖୁଆଇବା ପାଇଁ ଭଲ ପାଉଥିଲେ । ଏହି ଭଲପାଇବା ଭିତରେ ଭିତରେ ଦ୍ୱିବିଧ ସ୍ୱାର୍ଥ ଅଲକ୍ଷିତଭାବେ ବିଦ୍ୟମାନ ଥିଲା । ଅନ୍ୟଙ୍କୁ ଖୁଆଇବା ସୁଖ ସଂଭୋଗ ଏବଂ ଉନ୍ନତ ଆମ୍ବ ଟାକୁଆ ଗୁଡ଼ିକ ଯାହା ଫଳରେ ଉଚ୍ଛିଷ୍ଟ ନ ହୁଏ, ସେହି ଦିଗ ପ୍ରତି ତାଙ୍କର ବିଶେଷ ଦୃଷ୍ଟି ଥିଲା । ଯେଉଁ ଆମ୍ବ ବୀଜରୁ ନୂତନ ବୃକ୍ଷ ପ୍ରସ୍ତୁତ କରିବା ମାନସ କରୁଥିଲେ, ସେଗୁଡ଼ିକୁ ସର୍ବଦାହିଁ  ସ୍ୱହସ୍ତରେ କାଟି ଅନ୍ୟମାନଙ୍କୁ ଖୁଆଉଥିଲେ ଏବଂ ଯତ୍ନପୂର୍ବକ ଟାକୁଆ ସଂଗ୍ରହ କରୁଥିଲେ । ତେଣୁ ବାମଣ୍ଡାରାଜ୍ୟ ଏହିପରି ଆମ୍ରସୁଲଭ ଦେଶ ହେଲେ ମଧ୍ୟ ଆମ୍ବଭକ୍ତ ରାଜା ସାର ବାସୁଦେବ ସୁଢ଼ଳଦେବ ମୋମ୍ବାଇରୁ ବୋମ୍ବାଇ ଆମ୍ବ, କାଶୀରୁ ଲେଂଗଡ଼ା ଆମ୍ବ ପାଟଣାର ବାଁକିପୁର ଠାରୁ ମାଲଦା ଆମ୍ବର କଲମୀ ଅଣାଇ କୃଷିକ୍ଷେତ୍ର ରାଜୋଦ୍ୟାନରେ ରୋପଣ କରାଇଥିଲେ । ମାନ୍ଦ୍ରାଜର ଭିଜିୟାନା ଗ୍ରାମରୁ ଆରମ୍ଭ କରି ରାମେଶ୍ୱର ତୀର୍ଥ ପର୍ଯ୍ୟନ୍ତ ଯେଉଁ ଯେଉଁ ସ୍ଥାନରେ ଉତ୍ତମ ଆମ୍ବର ସଂବାଦ ପାଇଛନ୍ତି, ଭ୍ରମଣକାଳରେ ସେହି ସେହି ସ୍ଥାନରୁ ସେସବୁ ସଂଗ୍ରହକରି ରାଜଧାନୀ ଦେବଗଡ଼କୁ ପ୍ରେରଣ କରାଇଛନ୍ତି । ନିଜର ରାଜଧାନୀ, ନିଜର କୃଷିକ୍ଷେତ୍ର, ନିଜର ଉଦ୍ୟାନ ସବୁକୁ ସର୍ବୋତୋଭାବେ ସୁନ୍ଦର କରିବା ପାଇଁ ତାଙ୍କ ଏକ ଗଭୀର ଆଗ୍ରହ ତାଙ୍କରେ ପ୍ରତିଷ୍ଠାନଗୁଡ଼ିକ ମଧ୍ୟରେ ଫୁଟି ଉଠୁଅଛି । ଭିନ୍ନ  ଭିନ୍ନ ଦେଶ ଭ୍ରମଣ ଫଳରେ ରାଜା ବାହାଦୁର ଯେଉଁଠାରେ ଯେତେବେଳେ, ଯାହା ସ୍ୱରାଜ୍ୟର କଲ୍ୟାଣ ବିଧାୟକ ବୋଲି ଅନୁଭବ କରି ଅଛନ୍ତି, ସେସବୁ ଅଣାଇ ସ୍ୱୀୟ ରାଜ୍ୟର ଓ ରାଜଧାନୀର ଶ୍ରୀବୃଦ୍ଧି ସାଧନରେ ନିଯୋଗ କରାଇଛନ୍ତି ।*(୭)*

ଯେଉଁ ସ୍ଥାନରେ ଏହି ବଳମ୍ କୃଷିକ୍ଷେତ୍ର ନିର୍ମିତ ହୋଇଅଛି, ପୂର୍ବେ ସେହି ସ୍ଥାନ ପର୍ବତବେଷ୍ଟିତ ଏକ ସୁବୃହତ ପ୍ରାନ୍ତର ଥିଲା । ଏଠାରେ ଲୋକାଳୟ ନ ଥିଲା । ରାଜା ବାହାଦୁର ଏହିଠାରେ ଗ୍ରାମ ବସାନ୍ତି । ହାଟ ବସାଇ, ଲୋକମାନଙ୍କର ସମସ୍ତ ପ୍ରକାର ଦ୍ରବ୍ୟାଦି ପାଇବା ସୁବ୍ୟବସ୍ଥା କରାଇ ଦେଇଛନ୍ତି । ଏହିଠାରେ ବର୍ତ୍ତମାନ ବହୁ ଲୋକ ବାସ କରୁଅଛନ୍ତି ଏବଂ କ୍ରମଶଃ ବସତି ସଂଖ୍ୟା ବୃଦ୍ଧି ପାଉଅଛି । କ୍ଷେତ୍ରର ଉତ୍ପନ୍ନ ଶସ୍ୟ ଓ ଅନ୍ୟାନ୍ୟ ଦ୍ରବ୍ୟାଦି ରଖିବା ପାଇଁ  ବହୁଦୂରବ୍ୟାପୀ ଖମାର ଘର ଏବଂ ଗୋଦାମ ଘର ପ୍ରସ୍ତୁତ ହୋଇଅଛି ।  ରାଜା ଏବଂ ରାଜକୀୟ କର୍ମଚାରୀମାନଙ୍କ ପାଇଁ ପକ୍କାଘର ମଧ୍ୟ ନିର୍ମିତ ହୋଇଅଛି । ସ୍ଥାନୀୟ ଜନସାଧାରଣଙ୍କ ଧର୍ମ କର୍ମର ସୁବିଧା ହେତୁ ଦେବାଳୟ



Digitized by srujanika@gmail.com

ମଧ୍ୟ ପ୍ରତିଷ୍ଠିତ୍ ହୋଇଅଛି । ଏଠାରେ ତିନିଶହ ଫୁଟ ଉଚ୍ଚ ଏକ ପାହାଡ଼ ଉପରେ ରାଜା ଏବଂ ରାଜକୁମାରଗଣଙ୍କ ବିଶ୍ରାମ ଭବନ ଓ ଦରବାର ଗୃହ ପ୍ରତିଷ୍ଠିତ । ସେହିସ୍ଥାନକୁ ଚଢ଼ିବା ପାଇଁ ପ୍ରସ୍ତର ନିର୍ମିତ ଉତ୍ତମ ସୋପାନାବଳୀ ଶୋଭା ପାଉଅଛି । ଦୂରରୁ ଦେଖିବାମାତ୍ରେ ହିଁ, ସେହିସ୍ଥାନକୁ ଯାଇ ବିଶ୍ରାମକରିବା ଓ ଚତୁର୍ଦ୍ଦିଗ ଶୋଭା ସଂଦର୍ଶନ ଲୋଭ ସଂବରଣ କରିହୁଏ ନାହିଁ । ଶୁଣିବାକୁ ପାଇଲି, ବସନ୍ତକାଳର ଜ୍ୟୋସ୍ନାମୟୀ ଯାମିନୀରେ ବଳମ୍‌ର ବିଶ୍ରାମଭବନ କୁଆଡ଼େ ଅପୂର୍ବ ରମଣୀୟ ସ୍ଥାନ । ଆକ୍ଷେପର ବିଷୟ ଆମ୍ଭମାନଙ୍କର ଭାଗ୍ୟରେ ସେହି ସୁଖ ସଂଭୋଗ ସୁଯୋଗ ଘଟି ନାହିଁ ।

ଏହିଠାରେ କଳ କରତରେ ଅନେକ ବଡ଼ ବଡ଼ ଗଛ ଚିରା ହୁଏ । ଏହି ସବୁ କାଠ ଓ ପଟା ସାହାଯ୍ୟରେ ଗୃହର କବାଟ, ଝରକା ଏବଂ କଡ଼ିର କାର୍ଯ୍ୟ ସାଧିତ ହୋଇଥାଏ । ଏହା ପୂର୍ବରୁ କି ପ୍ରୟୋଜନହେତୁ ବିଲାତରୁ ଏହି କଳ ଓ କରତ ଅଣାଯାଇଥିଲା ଏବଂ ସେହି ସଂପଦ ବାମଣ୍ଡା ରାଜ୍ୟର ଐଶ୍ୱର୍ଯ୍ୟ ବୃଦ୍ଧି କଳ୍ପେ କେତେଦୂର ସହାୟତା କରିଅଛି, ସେହି ସମସ୍ତ ବିଷୟ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହେବ ।

ରାଜା ସାର୍ ବାସୁଦେବଙ୍କ କର୍ମବୁଦ୍ଧି ତଥା କର୍ମପଟୁତା ତଦୀୟ ପୁତ୍ର ତଥା ବର୍ତ୍ତମାନର ରାଜାଙ୍କ ଜୀବନରେ କିଭଳି ସ୍ଫୁର୍ତ୍ତିଲାଭ କରିଅଛି, ଅରଣ୍ୟ ପରିବେଷ୍ଟିତ 'ରମ୍ଭାଇ' ନାମକ ସ୍ଥାନରେ ନୂତନ ଗ୍ରାମ ବସାଇ ସେହି ସ୍ଥାନରେ ପ୍ରତିଷ୍ଠିତ କଳକାରଖାନା ନ ଦେଖିଲେ କିଛି ମଧ୍ୟ ହୃଦୟଙ୍ଗମ ହେବ ନାହିଁ । ରାଜା ସାର୍ ବାସୁଦେବଙ୍କ ରାଜ ଜୀବନର ପ୍ରାରମ୍ଭ କାଳରେ ସେ ଶ୍ରୀରାମପୁରରେ ଫ୍ଲାଇଂସଟଲ୍ ତନ୍ତ ଦେଖି ଆସିଥିଲେ । ସେହି କାର୍ଯ୍ୟରେ ହସ୍ତକ୍ଷେପ କରିବାର ସମୟ ଓ ସୁଯୋଗ ତାଙ୍କର ଘଟିନାହିଁ । ବର୍ତ୍ତମାନର ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବ । ରମ୍ଭାଇରେ କଳ ତନ୍ତ ବସାଇ ଲୁଗା ପ୍ରସ୍ତୁତ କରାଉଛନ୍ତି । ଏହି ସମସ୍ତ ଲୁଗା ସ୍ଥାନୀୟ ଜନସାଧାରଣଙ୍କର ସଂପୂର୍ଣ୍ଣ ବ୍ୟବହାର-ଉପଯୋଗୀ । ଯେଉଁ ଇଞ୍ଜିନ୍ ଦ୍ୱାରା ଏହି ସବୁ ତନ୍ତ ଚଳୁଅଛି, ସେହି ଇଞ୍ଜିନ୍ ସାହାଯ୍ୟରେ ସେହି ଏକ ସ୍ଥାନରେ ବର୍ତ୍ତମାନ ଆଖୁରୁ ଗୁଡ଼ ଏବଂ ଗୁଡ଼ରୁ ଚିନି ପ୍ରସ୍ତୁତ ହେଉଅଛି । ଆଶ୍ଚର୍ଯ୍ୟ ବ୍ୟାପାର ! ଏକ ସମୟରେ ଆଖୁରୁ ରସ, ରସରୁ ଗୁଡ଼, ଗୁଡ଼ରୁ ଚିନି ଅତି ଅଳ୍ପ ସମୟ ମଧ୍ୟରେ ପ୍ରସ୍ତୁତ ହୋଇ ଯାଉଅଛି । ଗୁଡ଼ରୁ ଚିନି ଏତେ ଅଳ୍ପ ସମୟରେ ପ୍ରସ୍ତୁତ ହେଲା ଯେ, ଦେଖି ଅବାକ୍ ହେବାକୁ ପଡ଼ିଲା । ବର୍ତ୍ତମାନର ରାଜା ବାହାଦୁର ସ୍ୱୟଂ ଏଲ୍‌ହାବାଦର ହାଦି ସାହେବଙ୍କ ସହିତ ପତ୍ରାଳାପ କରି, ପରେ କଲିକତାର ପ୍ରଦର୍ଶନୀରେ ଉପସ୍ଥିତ ହୋଇ ହାଦି ସାହେବଙ୍କ ଗୁଡ଼ ଓ ଚିନି ପ୍ରସ୍ତୁତ କରିବା ଉପଯୋଗୀ କଳ କାରଖାନା ଦେଖି ଆସନ୍ତି । ପରେ, ପ୍ରାରମ୍ଭିକ ଅନୁଷ୍ଠାନ ଶେଷ କରି, ଚିନିକଳ ଅଣାଇ କାର୍ଯ୍ୟାରମ୍ଭ କରିଅଛନ୍ତି ।(୮) ଏହି କର୍ମକ୍ଷେତ୍ରରେ ଅନେକ



Digitized by srujanika@gmail.com

ଲୋକ ନିଯୁକ୍ତ ହୋଇଛନ୍ତି । ପିତୃପଦାଙ୍କାନୁସରଣ ପ୍ରିୟ ବର୍ତ୍ତମାନ ରାଜାଙ୍କର ଏହି ଅତୁଳ କୀର୍ତ୍ତି ଦେଶୀୟ ରାଜନ୍ୟବର୍ଗଙ୍କର ସଂପୂର୍ଣ୍ଣ ଅନୁକରଣଯୋଗ୍ୟ ଏବଂ ଏହି କାର୍ଯ୍ୟରେ ସଫଳତା ଲାଭପାଇଁ ସେ ଦେଶୀୟ ରାଜନ୍ୟ ସମାଜରେ ବରଣୀୟ ପୁରୁଷ, ଏହା ନିଃସଂକୋଚରେ କୁହାଯାଇ ପାରେ । ଦେଶର ଜନତା ଏଭଳି ଜଣେ କୃତକର୍ମା ପୁରୁଷଙ୍କର ଉପଦେଶ ଓ ପରାମର୍ଶ ଗ୍ରହଣ କରନ୍ତି ନାହିଁ, ଏହା ଭୀଷଣ ଆଶ୍ଚର୍ଯ୍ୟର ବିଷୟ ।*(୯)* ରମ୍ଭାଇରେ ମଧ୍ୟ ଏକ ବହୁ ବିସ୍ତୃତ କୃଷିକ୍ଷେତ୍ର ପ୍ରସ୍ତୁତ ହେଉଅଛି । ଏହିଠାରେ ଆପାତତଃ କେବଳ ଧାନ ଏବଂ ଆଖୁ ଅମଲ୍ଲ ହେଉଅଛି । ଅନ୍ୟାନ୍ୟ କୃଷିଜାତ ଦ୍ରବ୍ୟ ଅମଳ ସୂଚନା ଦେଉଅଛି ମାତ୍ର ।

## (ଘ) ରାଜଧାନୀରେ ରାଜୋଦ୍ୟାନ

ବାମଣ୍ଡା ରାଜଧାନୀ ଦେବଗଡ଼ରେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ପ୍ରତିଷ୍ଠିତ ଉଦ୍ୟାନ ଏକ ଅପୂର୍ବ ଦୃଶ୍ୟ । ଏହି ଉଦ୍ୟାନ ପ୍ରଧାନତଃ ସୌଖୀନ ଜିନିଷ, ସନ୍ଦେହ ନାହିଁ; କିନ୍ତୁ ଏହି ଉଦ୍ୟାନ ତିଆରି କରାଇବା ପାଇଁ ଯେଉଁ ଅର୍ଥ ବ୍ୟୟ ହୋଇଅଛି, ଯେଉଁ ପରିମାଣରେ ଶିଳ୍ପଜ୍ଞାନ, ଚିନ୍ତା ଏବଂ କାର୍ଯ୍ୟକାରୀ ବୁଦ୍ଧିର ପରିଚୟ ପ୍ରଦାନ କରାଯାଇଅଛି, ତାହା ସଚରାଚର ରାଜବୁଦ୍ଧିରେ ସର୍ବଦା ସର୍ବତ୍ର ଦେଖାଯାଏ ନାହିଁ । କୃଷି ଓ ଉଦ୍ଭିଦ ତତ୍ତ୍ୱ ବିଷୟରେ ଉତ୍ତମ ଜ୍ଞାନ ନଥିଲେ ଏଭଳି ସୁନ୍ଦରଉଦ୍ୟାନ ପ୍ରସ୍ତୁତ ସମ୍ଭବ ନୁହେଁ । ଯେଉଁ ଗୋଟାଏ ଦୁଇଟି ସ୍ଥାନରେ ରାଜକୀର୍ତ୍ତି ଭାବରେ ଏଭଳି ଚିତ୍ତବିନୋଦନ, ଭ୍ରମଣ ଓ ସଂଗେ ସଂଗେ ଶିକ୍ଷାଲାଭର ଉପଯୋଗୀ ଉଦ୍ୟାନ ଏହା ପୂର୍ବେ ଦେଖିଅଛି ବାମଣ୍ଡାର ରାଜୋଦ୍ୟାନ ସେଗୁଡ଼ିକର ତୁଳନାରେ କୌଣସି ଦୃଷ୍ଟିରୁ ହୀନ ନୁହେଁ ।*(୧୦)* ରାଜବାଟୀ ଅନତି ଦୂରରେ ଏହି ଉଦ୍ୟାନ ଅବସ୍ଥିତ । ରାଜବାଟୀ ଠାରୁ ବା ସମାଗତ ଅତିଥିଗଣଙ୍କ ବାସସ୍ଥାନ ଠାରୁ ଉଦ୍ୟାନ ବହୁ ଦୂରରେ ନୁହେଁ । ଯେ କୌଣସି ସମୟରେ ଇଚ୍ଛା ହେବାମାତ୍ରେ ଯିବା ସଂଭବ ହୋଇଥାଏ ।

ଉଦ୍ୟାନ ମଧ୍ୟସ୍ଥ ପ୍ରଧାନ ଦୁଇ ଦ୍ୱାରର ଏକ ଦ୍ୱାରରେ ଉଭୟ ପାର୍ଶ୍ୱସ୍ଥ ଉଚ୍ଚ ବେଦୀ ଉପରେ ସଗୌରବରେ ସପରିବାର ଏକ ପଶୁରାଜ ଆଗନ୍ତୁକଙ୍କର ଅଭ୍ୟର୍ଥନା ପାଇଁ ଅପେକ୍ଷା କରି ରହିଅଛି । ସନ୍ଧ୍ୟାପରେ ଅନ୍ଧକାରରେ ବା ଚନ୍ଦ୍ରାଲୋକରେ ନବାଗତ ବ୍ୟକ୍ତିଙ୍କ ପକ୍ଷରେ ଭୀଷଣ ଭୟ ଉଦ୍ରେକ କରିଥାଏ । ଦିନର ଆଲୋକରେ ମଧ୍ୟ ସେହି ଭୀଷଣକାୟ ସିଂହମୂର୍ତ୍ତି ଭୟୋତ୍ତେଜକ । ସେହି କେଶରୀର କେଶରର ସ୍ୱାଭାବିକତା, ସ୍ଥିର ଦୃଷ୍ଟିରେ ଗଭୀରତା ଓ ତୀକ୍ଷ୍ଣତା, ନିର୍ମାଣକାରୀଙ୍କର ଶିଳ୍ପ ଚାତୁରୀର ଅସାମାନ୍ୟ ନିପୁଣତାର ପରିଚୟ ପ୍ରଦାନ କରୁଅଛି । ଏହି ଦ୍ୱାରର ଅପର ପାର୍ଶ୍ୱରେ ଉଚ୍ଚ ବେଦୀ ଉପରେ ପଶୁରାଜ ମହିଷୀ 'ବାହାଲ୍



Digitized by srujanika@gmail.com

ତବିୟତ'ରେ ସ୍ୱଚ୍ଛନ୍ଦଚିତ୍ତରେ ଅର୍ଦ୍ଧଶୟନ ଅବସ୍ଥାରେ ନିରୁଦ୍‌ବେଗରେ ଅପେକ୍ଷା କରିଅଛି ଏବଂ ଏକ ସିଂହ ଶିଶୁ ମାତୃପୃଷ୍ଠ ଅତିକ୍ରମ କରି, ଅପର ଦିଗକୁ ଯିବାର ଚେଷ୍ଟା କରୁଅଛି । ଦେଖିବାମାତ୍ରେ ବୋଧହୁଏ ଯେପରି ଶିଶୁଟି ମାଆ ସହିତ ଖେଳୁଅଛି, ଅଥବା ଜନସମାଗମ ହେତୁ ମାଆର ପଶ୍ଚାତ୍‌କୁ ଚାଲି ଯାଉଅଛି । ଉଦ୍ୟାନ ମଧ୍ୟକୁ ପ୍ରବେଶାର୍ଥୀଙ୍କ ପାଇଁ ଏକ ପ୍ରବେଶ ଦ୍ୱାରରେ ଏହି ଦୃଶ୍ୟ ଅପର ଦ୍ୱାରରେ ଏଭଳି ଉଭୟ ପାର୍ଶ୍ୱର ଉଚ୍ଚ ବେଦୀ ଉପରେ ଏକ ବିଶାଳକାୟ ବ୍ୟାଘ୍ରଦମ୍ପତି ସହସା ଲୋକ ସମାଗମ ସଂଭାବନା ହେତୁ ଯେପରି ଚକିତ ଚିତ୍ତରେ ଗାତ୍ରୋତ୍ଥାନ ଓ ଲମ୍ଫ ପ୍ରଦାନ ପୂର୍ବକ ନିରାପଦ ସ୍ଥାନକୁ ଯିବା ପାଇଁ ଉପକ୍ରମ କରୁଅଛନ୍ତି । ଲମ୍ଫପ୍ରଦାନ କରିବା ପାଇଁ ଉଦ୍ୟତ, ଠିକ୍ ଯେପରି ସେମାନେ ମୁହୂର୍ତ୍ତକ ମଧ୍ୟରେ ଚାଲିଯିବେ । ଏଭଳି ଅବସ୍ଥାରେ ଦଣ୍ଡାୟମାନ । ରାଜୋଦ୍ୟାନର ଉଭୟ ଦ୍ୱାର ପ୍ରବେଶାର୍ଥୀଙ୍କ ମନରେ ଯେଉଁ କୌତୂହଳ ଉଦ୍ରେକ କରେ, ଉଦ୍ୟାନ ମଧ୍ୟସ୍ଥ ପ୍ରତ୍ୟେକ ଦ୍ରବ୍ୟ-ବିଷୟ ସେହିପରି ଚିତ୍ତାକର୍ଷକ ଓ ଅମୋଦପ୍ରଦ ।

ଏହି ଉଦ୍ୟାନର ନାନା ସ୍ଥାନେ ମନ୍ଦାର ବୃକ୍ଷଦ୍ୱାରା ହସ୍ତୀ, ଅଶ୍ୱ, ବ୍ୟାଘ୍ର, ହରିଣ ପ୍ରଭୃତି ନାନା ଜୀବ ମୂର୍ତ୍ତି ନିର୍ମିତ ହୋଇ ସୁନ୍ଦର ଭାବରେ ଦଣ୍ଡାୟମାନ, ଦେଖିବା ମାତ୍ରେ ସେହିପରି ଭାବରେ ପ୍ରସ୍ତୁତ କରିବାକୁ ବୁଦ୍ଧି ଚାତୁରୀ ପ୍ରଚୁର ପ୍ରଶଂସା କରିବାକୁ ହୋଇଥାଏ । ଏଗୁଡ଼ିକ ଏବଂ ଏଭଳି ଭାବରେ ନିର୍ମିତ ହୋଇଥିବା ଗାଡ଼ି, ଚୌକୀ ପ୍ରଭୃତି ବସିବା ପାଇଁ ନାନା ଆୟୋଜନ ବର୍ତ୍ତମାନ ଆଉ ଠିକ୍ ସେହି ପୂର୍ବାବସ୍ଥାରେ ନାହିଁ । ସେଗୁଡ଼ିକ ମଧ୍ୟରୁ ଅନେକ ଧ୍ୱଂସ ହୋଇଯାଇଅଛି ଓ ଯାଉଅଛି ।

ତାହା ପରେ, ଉଦ୍ୟାନ ମଧ୍ୟସ୍ଥ ଚୂନ ଓ ବାଲି ନିର୍ମିତ ନାନା ଜାତିର ନରନାରୀ ମୂର୍ତ୍ତି ନାନା ଜାତିର ନରନାରୀ ମୂର୍ତ୍ତି ନାନା ଅବସ୍ଥାରେ-ନାନା କାର୍ଯ୍ୟରେ ନିଯୁକ୍ତ ସୁନ୍ଦର ଦୃଶ୍ୟ, ପ୍ରଚୁର କୌତୂହଳୋଦ୍ଦୀପକ । ଦୁଇଗୋଟି ବିଭିନ୍ନ କ୍ଷୁଦ୍ର ଚତ୍ୱରରେ ଠିଆହେଲେ, ବୃତ୍ତାକାରରେ ଦଣ୍ଡାୟମାନ ଓ ବହୁଭାବ ବ୍ୟଞ୍ଜକ ବହୁ ଜାତୀୟ ନାରୀ ମୂର୍ତ୍ତିଙ୍କ ନୃତ୍ୟ ବିଶେଷ ଭାବରେ ଦୃଷ୍ଟି ଆକର୍ଷଣ କରେ । ଏହି ସବୁ ମୂର୍ତ୍ତି ଗଠନ ପରିପାଟୀରେ ଯେପରି ସେମାନଙ୍କର ଅନ୍ତରର ଭାବଭଙ୍ଗୀ ତାହାଙ୍କ ଦୃଷ୍ଟିରେ ଫୁଟାଇ ତୋଳିଅଛି । ଏଥିରେ ଶିଳ୍ପୀଙ୍କର ନିର୍ମାଣ କୌଶଳ ସଫଳତା ଲାଭ କରିଅଛି । ଏ ସବୁ ମନଯୋଗ ସହକାରେ ଦେଖିବା ବସ୍ତୁ; କିନ୍ତୁ ଏଗୁଡ଼ିକ ବୋଧହୁଏ ବହୁବର୍ଷ ଶୀତତାପ ସହ୍ୟ କରି ଶୀର୍ଣ୍ଣ ହୋଇ ଯାଇଅଛି । ଉଦ୍ୟାନର ନାନାସ୍ଥାନେ ନାନା ମୂର୍ତ୍ତି ଏଭଳି ଭାବରେ ବ୍ୟବସ୍ଥାପିତ । ଦେଖିବାମାତ୍ରେ ହିଁ ମନେହୁଏ ଯେପରି କେହି ମନଯୋଗ ସହକାରେ କୌଣସି ବିଶେଷ କାର୍ଯ୍ୟରେ ନିଯୁକ୍ତ । ଉଦ୍ୟାନର ଏକାଂଶରେ ମାଦକସେବୀ ମୂର୍ତ୍ତିମାନଙ୍କର ଅପୂର୍ବ ମଜଲିସ । ସେହି ମଜଲିସ୍



Digitized by srujanika@gmail.com

ନିର୍ମାଣର ଉଦ୍ଦେଶ୍ୟ ବୋଧହୁଏ ବାମଣ୍ଡାର ପ୍ରଜାମଣ୍ଡଳୀଙ୍କ ଅନ୍ତରରେ ମାଦକ ସେବନ ପ୍ରତି ଘୃଣାର ଉଦ୍ରେକ କରିବା, ତାହା ନ ହେଲେ ଏଭଳି ବହୁ ବିସ୍ତୃତ ଉଦ୍ୟାନର ବିବିଧ ଦ୍ରଷ୍ଟବ୍ୟ ମଧ୍ୟରେ ଏକ ପାର୍ଶ୍ୱରେ ଏଗୁଡ଼ିକର ସ୍ଥାନ ଲାଭ ସଂଭବ ହୋଇନଥାନ୍ତା । ଏହି ମଜଲିସର ମାନବ ମୂର୍ତ୍ତି ଗୁଡ଼ିକର ଆକାର ପ୍ରକାର, ଭାବଭଙ୍ଗୀ ଓ କାର୍ଯ୍ୟ ତତ୍ପରତା ପର୍ଯ୍ୟବେକ୍ଷଣ କଲେ ଆମୋଦ ଉପଭୋଗ ହୁଏ ନିଶ୍ଚୟ; କିନ୍ତୁ ସଂଗେ ସଂଗେ ସେମାନଙ୍କ ଛିନ୍ନ ବସ୍ତ୍ର, ଶୀର୍ଣ୍ଣ ଦେହ ଓ ହୀନଭାବ ସହଜରେ ଅନୁକମ୍ପା ଉଦ୍ରେକ କରିଥାଏ । ତେଣୁ ମନେହୁଏ, ଦର୍ଶକଙ୍କ ମନରେ ଏହିପରି କାର୍ଯ୍ୟ ଉପରେ, ଘୃଣା ଉଦ୍ରେକ କରିବା ହିଁ ବୋଧହୁଏ ରାଜା ବାହାଦୁରଙ୍କର ଅଭିପ୍ରେତ ଥିଲା । କାରଣ ତାହାଙ୍କର ରାଜ୍ୟପାଳନ ପଦ୍ଧତି ମଧ୍ୟରେ ଅବକାରୀ ବୋଲି କୌଣସି ଆୟ, ଅର୍ଥାଗମନର କୌଣସି ସ୍ୱତନ୍ତ୍ର ପଥ ଉନ୍ମୁକ୍ତ ନଥିଲା ।

ଏହି ଉଦ୍ୟାନର ଆଉ ଏକ ଅଂଶରେ ବଶିଷ୍ଟ ମନୁଷ୍ୟ ମୂର୍ତ୍ତିମାନଙ୍କ ମଧ୍ୟରେ ଝାନ୍‌ସୀର ମନସ୍ୱିନୀ ରାଣୀ ଲକ୍ଷ୍ମୀବାଈଙ୍କ ଏକ ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛି । ଏହାର ଅପରାଂଶରେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ଏକ ପ୍ରତିମୂର୍ତ୍ତି ବର୍ତ୍ତମାନର ରାଜା ବାହାଦୁର କର୍ତ୍ତୃକ ପ୍ରତିଷ୍ଠିତ ହୋଇଅଛି । ଉଦ୍ୟାନର ଏହି ଅଞ୍ଚଳର ନାନା ସ୍ଥାନେ ଲତାମଣ୍ଡପ ଓ କୃତ୍ରିମ କ୍ଷୁଦ୍ର କ୍ଷୁଦ୍ର ଜଳାଶୟ । ତହିଁରେ ନାନା ଜାତୀୟ ପକ୍ଷୀମୂର୍ତ୍ତି । ସେଗୁଡ଼ିକ ଦେଖିବାମାତ୍ରେ ହିଁ ବୋଧହୁଏ ଯେମନ୍ତ ଜୀବନ୍ତ ପକ୍ଷୀମାନେ ବିଚରଣ କରୁଅଛନ୍ତି । ଅପରପାର୍ଶ୍ୱରେ ଏକ ବିଶାଳକାୟ ଶାର୍ଦ୍ଦ ଶିକାରୋଦ୍ୟତ ଅବସ୍ଥାରେ ଅତି ସାବଧାନରେ ଅପେକ୍ଷା କରିଅଛି । ଦେଖିଲେ ପ୍ରଚୁର ଆନନ୍ଦ ଉଦୟ ହୁଏ ଏବଂ ରାଜଧାନୀର ବିଭିନ୍ନ କାର୍ଯ୍ୟାଳୟମାନଙ୍କ ବିବିଧ ଭାବ-ବ୍ୟଞ୍ଜକ ପ୍ରତିମୂର୍ତ୍ତି, କେଉଁଠାରେ କେଉଁକାର୍ଯ୍ୟ ତାହାର ସୂଚନା ପ୍ରଦାନ କରୁଅଛି, ତାହା ମଧ୍ୟ କୌତୁକ ପ୍ରଦ ହୋଇଅଛି ସନ୍ଦେହ ନାହିଁ ।

ଉଦ୍ୟାନର ସମଗ୍ର ଅଂଶ ନାନା ଜାତି ପୁଷ୍ପ, ଲତା ଓ ଗୁଳ୍ମଦ୍ୱାରା ପରିଶୋଭିତ । ବିବିଧ ପୁଷ୍ପ ପର୍ଯ୍ୟାପ୍ତ ପରିମାଣରେ ସର୍ବଦା ହିଁ ଦେଖିବାକୁ ମିଳିଥାଏ । ଉଦ୍ୟାନର ଅପର ଅଂଶରେ ନାନା ଦେଶରୁ ଆନୀତ ନାନାବିଧ ବୃକ୍ଷ ବୃଦ୍ଧି ପ୍ରାପ୍ତ ହେଉଅଛି । ଉଦ୍ୟାନରେ ଆମ୍ବ, ଜାମୁ, ଲେମ୍ବୁ, କମଳା ପ୍ରଭୃତି ବାର ମାସର ସବୁ ପ୍ରକାର ଫଳ ବୃକ୍ଷ । ନାନା ଜାତୀୟ ଆମ୍ବ, ସବୁ ପ୍ରକାର ଜାମୁକୋଳି, କମଳା ଯେ କେତେ ପ୍ରକାର ମିଳେ ତାହାର ସଂଖ୍ୟା ଅଗଣନୀୟ । ବହୁ ଯତ୍ନରେ ବହୁବିଧ ବୃକ୍ଷଲତାର ପରିରକ୍ଷଣ ମଧ୍ୟରେ କେତେଗୁଡ଼ିଏ ନାରିକେଳ ବୃକ୍ଷ ପ୍ରଚୁର ଫଳ ଧାରଣ କରି ସମୁଦ୍ରଠାରୁ ବହୁ ଦୂରବର୍ତ୍ତୀ ଏହି ପାର୍ବତ୍ୟ ପ୍ରଦେଶର ରାଜୋଦ୍ୟାନର ଶୋଭା ବର୍ଦ୍ଧନ କରୁଅଛନ୍ତି, ତାହାହିଁ ଅତ୍ୟଧିକ ଆଶ୍ଚର୍ଯ୍ୟର ବିଷୟ ।



Digitized by srujanika@gmail.com

ଉଦ୍ୟାନର ଆଉ ଏକ ଅଂଶରେ କୃଷିଜାତ ନାନାବିଧ ପନିପରିବା ବଗିଚା । ଏହିଠାରେ ମଧ୍ୟ ନାନା ପ୍ରକାର ପନିପରିବା ଉତ୍ପାଦିତ ହୁଏ । ଏହା ଫଳରେ ନିତ୍ୟ ରାଜପରିବାର ଏବଂ ଅନ୍ୟ ବହୁ ଲୋକଙ୍କ ନିତ୍ୟ ପ୍ରୟୋଜନ ସାଧିତ ହୋଇଥାଏ । ଏହି ରାଜ୍ୟୋଦ୍ୟାନ ଏଭଳି ସୁନ୍ଦର ଓ ସୌଷ୍ଠବ ସଂପନ୍ନ ଯେ ବାମଣ୍ଡା ଯାତ୍ରୀଙ୍କ ପକ୍ଷରେ ଏହା ବିଶେଷ ଭାବରେ ଦେଖିବା ଜିନିଷ ।*(୧୧)* ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଏହି ଉଦ୍ୟାନ ତାଙ୍କ ସଉକ୍‌ର ଅଂଶ ବିଶେଷ ହେଲେ ମଧ୍ୟ, ଏହା ତାଙ୍କର କୃଷି ଓ ଉଦ୍ଭିଦତତ୍ତ୍ୱ ବିଷୟକ ପ୍ରଭୂତ ଜ୍ଞାନ ଏବଂ ସେହି ବିଷୟରେ ଅନୁରାଗର ପରିଚୟ ପ୍ରଦାନ କରିଥାଏ ।*(୧୨)* ତାଙ୍କର ସମସ୍ତ କାର୍ଯ୍ୟ ହିଁ ଯେ ଉଦ୍ଦେଶ୍ୟମୂଳକ କର୍ମଗତ ଜୀବନଯାପନର ସାକ୍ଷ୍ୟ ଦାନ କରେ ସେହି ବିଷୟରେ ସନ୍ଦେହ ନାହିଁ ।

## (ଢ) ରାଜଧାନୀର କ୍ରମୋନ୍ନତି

କଲିକତା ରାଜଧାନୀଠାରୁ ବାମଣ୍ଡାର ରାଜଧାନୀ ଦେବଗଡ଼ ସୂର୍ଯ୍ୟୋଦୟ ହିସାବରେ ପନ୍ଦର ମିନିଟ ଦୂରରେ ପଶ୍ଚିମ ଦିଗରେ । ଅର୍ଥାତ୍ ପ୍ରାତଃକାଳରେ ଯେଉଁ ସମୟରେ, କଲିକତାରେ ୬ ଘଣ୍ଟା ସମୟରେ ସୂର୍ଯ୍ୟୋଦୟ ହୁଏ, ସେତିକିବେଳେ ସମୟ ହିସାବରେ ଦେବଗଡ଼ଠାରେ ୬ଘଣ୍ଟା ୧୫ ମିନିଟ୍ ସମୟରେ ସୂର୍ଯ୍ୟୋଦୟ ହୋଇଥାଏ ।*(୧୩)* ସ୍ଥାନର ଦୂରତ୍ୱ ହିସାବରେ କଲିକତାଠାରୁ ପଶ୍ଚିମ ଦକ୍ଷିଣ ଦିଗରେ ଦେବଗଡ଼ ୩୫୫ ମାଇଲ୍ । ଦୂର ନିତ୍ୟାନ୍ତ ଅଳ୍ପ ନୁହେଁ ।

ରେଲୱେ ପ୍ରତିଷ୍ଠିତ ହେବା ପୂର୍ବେ, କଟକରୁ ମହାନଦୀ ପଥରେ ଏବଂ ସିଂହଭୂମିରୁ ସରକାରୀ ରାଜପଥରେ ସମ୍ବଲପୁର ଯିବା ବ୍ୟବସ୍ଥା ଥିଲା । ଦେବଗଡ଼ରୁ ବାହାରକୁ ଯିବାକୁହେଲେ, ସମ୍ବଲପୁର ପଥ ଭିନ୍ନ ଯାତାୟତ ପାଇଁ ଅନ୍ୟ କୌଣସି ସୁବିଧାଜନକ ପଥ ନ ଥିଲା । ଦେଶୀୟ ରାଜ୍ୟଗୁଡ଼ିକ ମଧ୍ୟ ଦେଇ କଟକ ବାଟରେ ବାମଣ୍ଡା ଯିବାପାଇଁ ଯେଉଁ ପଥ ଥିଲା, ତାହା ବର୍ତ୍ତମାନ ସୁଦ୍ଧା ରହିଅଛି । ତାହା ଅରଣ୍ୟପଥ, ଯେଉଁପଥ ଦେଇ କୁମାରଗଣଙ୍କର ସର୍ବପ୍ରଥମ ବିଦେଶୀ ବଙ୍ଗାଳୀ ଶିକ୍ଷକ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ମହାଶୟ ବାମଣ୍ଡା ଯାଇଥିଲେ । ଆଜିକାଲି ସେହିସବୁ ପଥ ଦେଇ ଲୋକଙ୍କର ଯାତାୟତ ଅଳ୍ପ ହେଲେ ମଧ୍ୟ, ସେମାନଙ୍କୁ ଆଉ ସେତେଟା କ୍ଲେଶ ଭୋଗ କରିବାକୁ ପଡ଼େ ନାହିଁ । ସମ୍ବଲପୁରଠାରୁ ଦେବଗଡ଼ ୫୬ ମାଇଲ୍ ବାଟ ହସ୍ତୀପୃଷ୍ଠରେ, ପାଲିଙ୍କିରେ ବା ବଳଦଗାଡ଼ିରେ ଯାତାୟତ କରିବାକୁ ପଡୁଥିଲା । ବର୍ତ୍ତମାନ ସୁଦ୍ଧା ସେହି ପଥ ଏବଂ ସେହି ସବୁ ଯାନ ଲୋପ ପାଇନାହିଁ ।



Digitized by srujanika@gmail.com

ବର୍ତ୍ତମାନ ବେଙ୍ଗଲ୍ ନାଗପୁର ରେଲୱେ ବାମଣ୍ଡା ରାଜ୍ୟର ପଶ୍ଚିମୋତ୍ତର ସୀମାନ୍ତ ମଧ୍ୟଦେଇ ଯିବା ଫଳରେ, ବାମଣ୍ଡା ଷ୍ଟେସନ ଠାରୁ ରାଜଧାନୀ ଦେବଗଡ଼ ଯିବାପାଇଁ ୫୮ ମାଇଲ୍ ଏକ ସୁବୃହତ ସୁନ୍ଦର ରାଜପଥ ପ୍ରସ୍ତୁତ ହୋଇଅଛି । ଆମ୍ଭେ ଏହି ପଥଦେଇ, ତିନି ଚାରିଦିନ ବ୍ୟାପୀ କ୍ଲେଶ ଭୋଗ ପରିବର୍ତ୍ତେ, ପ୍ରାତଃକାଳରେ ୯ଘଣ୍ଟା ସମୟରେ ଯାତ୍ରା ଆରମ୍ଭ କରି ଅପରାହ୍ନ ୫ଘଣ୍ଟା ସମୟରେ ଦେବଗଡ଼ ପହଞ୍ଚିଥିଲୁଁ । ବର୍ତ୍ତମାନ ରାଜା ବାହାଦୁରଙ୍କ ସୁବ୍ୟବସ୍ଥା ଫଳରେ, ଆମ୍ଭମାନଙ୍କୁ କୌଣସି କ୍ଲେଶ ଭୋଗ କରିବାକୁ ପଡ଼ିନାହିଁ ।

ପୂର୍ବେ ପ୍ରସଙ୍ଗକ୍ରମେ ବାମଣ୍ଡାର ରାଜପଥ ଗୁଡ଼ିକର ଉଲ୍ଲେଖ କରାଯାଇଅଛି । ସେହି ପଥ ଗୁଡ଼ିକ ସଂଖ୍ୟା ମଧ୍ୟ ଅଳ୍ପ ନୁହେଁ । ବାମଣ୍ଡା ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କୁ ଗମନାଗମନ ଉପଯୋଗୀ ରାଜପଥ ଯେତେବେଳେ ରାଜା ସାର୍ ବାସୁଦେବ ସୁଢ଼ଳଦେବ ନିର୍ମାଣ କରାଇଥିଲେ, ସେହି ସମୟରେ ଅନୁଗତ ପ୍ରଜାମାନଙ୍କ ମଧ୍ୟରେ ଏହି ଆଲୋଚନା ହେଉଥିଲା ଯେ, "ରାଜା ନିତ୍ୟାନ୍ତ ନିର୍ବୋଧ, ରାଜ୍ୟ ମଧ୍ୟକୁ ଶତ୍ରୁ ପ୍ରବେଶର ସହଜ ପଥ ତିଆରି କରି ଦେଉଛନ୍ତି । ଏଥର ସେମାନେ ଆସି ଜୋର୍‌ଜବରଦସ୍ତ ନଚେତ୍ ଯୁଦ୍ଧ କରି ରାଜ୍ୟଟା ଛଡ଼ାଇ ନେବେ ।" *(୧୪)* ସ୍ପଷ୍ଟବାଦୀ ପ୍ରଜାମଣ୍ଡଳୀ ତାହାଙ୍କୁ ଏକଥା କହିବା ପାଇଁ କୁଣ୍ଠିତ ହେଉ ନ ଥିଲେ ।

ଆମ୍ଭେମାନେ ବାମଣ୍ଡା ଷ୍ଟେସନରେ ପହଞ୍ଚିବା ମାତ୍ରେ ଗୋବିନ୍ଦପୁର ତହସିଲ୍‌ର ପ୍ରଧାନ କର୍ମଚାରୀ ଶ୍ରୀଯୁକ୍ତ ରଘୁନାଥ ଶର୍ମା ଓ ଅନ୍ୟାନ୍ୟ କର୍ମଚାରୀ ସାଦର ସଂଭାଷଣ ସହ ଆମ୍ଭମାନଙ୍କୁ ସ୍ଥାନୀୟ ରାଜବାଟୀକୁ ନେଇ ଗଲେ । ସେଠାରେ ଉପସ୍ଥିତ ହେବାମାତ୍ରେ ରାଜା ବାହାଦୁର ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟ ୫୮ ମାଇଲ୍ ଦୂରରେ ରାଜଧାନୀରେ ଥାଇ ଆମ୍ଭମାନଙ୍କର ଶାରୀରିକ କୁଶଳ ସମ୍ବାଦ ଓ ପଥ କ୍ଲେଶ ବିଷୟରେ ସଂବାଦ ଜିଜ୍ଞାସା କଲେ ଏବଂ ଆମ୍ଭମାନଙ୍କ ମଧ୍ୟରେ ନମସ୍କାର ବିନିମୟ ହେଲା । ସେଠାରେ ବିଶ୍ରାମ, ପ୍ରାତଃକୃତ୍ୟ ସମାପନ ଓ ପରେ କିଞ୍ଚିତ୍ ଜଳଯୋଗ କରି ମୋଟରଯାନରେ ଆରୋହଣ କଲୁ । ସେତେବେଳେ ସକାଳ ୯ଘଣ୍ଟା । ପାର୍ବତ୍ୟ ପ୍ରଦେଶ ଭୂମି ଉପର ଦେଇ ଗଠିତ ରାଜପଥରେ ମୋଟର କ୍ରମଶଃ ଅଗ୍ରସର ହେବାରେ ଲାଗିଲା । ସେହି ନତୋନ୍ନତ ପଥରେ ଚଢ଼ି ଓହ୍ଲାଇ ମୋଟର କ୍ରମଶଃ ଉଭୟ ପାର୍ଶ୍ୱ ବୃକ୍ଷଲତା ପୂର୍ଣ୍ଣ ବନଭୂମି ଅତିକ୍ରମ କରି ଅଗ୍ରସର ହେଲା । ଏହି ବନଭୂମି ମଧ୍ୟରେ ସ୍ଥାନେ ସ୍ଥାନେ ଶସ୍ୟ କ୍ଷେତ୍ର ଓ ଲୋକାଳୟ ନୟନଗୋଚର ହେବାରେ ଲାଗିଲା । ଦୂରେ ଦୂରେ ଚାରିଆଡ଼ ଅସଂଖ୍ୟ ପାହାଡ଼ । କେଇକୋଶ ପଥ ଅଗ୍ରସର ହୋଇ ମୋଟର ପାଇଁ ଜଳ ପ୍ରୟୋଜନ ହେବା ଫଳରେ, ଏକ ଗ୍ରାମର ମଧ୍ୟ ସ୍ଥଳରେ ମୋଟର ଅପେକ୍ଷା କଲା । ଗ୍ରାମର ଅସଂଖ୍ୟ ବାଳକ ବାଳିକା,



Digitized by srujanika@gmail.com

ଯୁବକ ଯୁବତୀ ଓ ବୃଦ୍ଧାମାନେ ଆସି ମୋଟରର ଚାରିପାଖରେ ଘେରି ଛିଡ଼ା ହେଲେ । ରାଜଧାନୀ ସୁଲଭ ସଭ୍ୟଭବ୍ୟ ଜୀବନ ଯାପନ ପକ୍ଷରେ ସେହି ସୁଦୂର ପଲ୍ଲୀଚିତ୍ର ଯେ ବିଚିତ୍ର ହେବ, ସେଥିରେ ବା କି ସନ୍ଦେହ । ବାଳକ ବାଳିକାଙ୍କ ମଧ୍ୟରୁ ଅଧିକାଂଶ ଉଲଗ୍ନ, ଅପେକ୍ଷାକୃତ ଅଧିକ ବୟସ୍କମାନଙ୍କର ଲଜ୍ଜା ନିବାରଣ ପାଇଁ ସାମାନ୍ୟ ଖଣ୍ଡେ ଲୁଗା । ସମଗ୍ର ଦେହ ଅନାବୃତ୍ତ, ପାର୍ବତ୍ୟ ପ୍ରଦେଶର ଶୀତତାପ ଓ ବର୍ଷାର ବାରିଧାରା ସେମାନଙ୍କର ଏହି ଅନାବୃତ୍ତ ଦେହ ଉପର ଦେଇ ବର୍ଷ ପରେ ବର୍ଷ ଚାଲିଯାଉଅଛି । ସେମାନେ ବେଶ୍ ସୁସ୍ଥ ଓ ସବଳ ଦେହରେ ବୃଦ୍ଧିପ୍ରାପ୍ତି ହେଉଛନ୍ତି । ବିବାହିତା ଓ ଅବିବାହିତା ବୟସ୍କା ବାଳିକାଗଣଙ୍କ ମଧ୍ୟରେ ଅନେକଙ୍କର ବକ୍ଷାବରଣ ବସ୍ତ୍ରଖଣ୍ଡ ନାହିଁ । ଯେଉଁ କାରଣରେ ବକ୍ଷାବରଣ ପ୍ରୟୋଜନ, ବିଶେଷ ଭାବରେ ସେହି ଲଜ୍ଜା ଜିନିଷଟି ସହିତ ଏମାନଙ୍କର ଅଧିକ ପରିଚୟ ହୋଇଅଛି ବୋଲି ମନେହୁଏ ନାହିଁ ।

ଏହିପରି ଅନେକ ଲୋକ ଜମାହୋଇ ମୋଟରର କଳାକୌଶଳ, ସେଥିରେ ଜଳ ଭରିବା, ତାହା ପରେ ତାହାର ପୁନରାୟ ଦ୍ରୁତଗତିରେ ଅଗ୍ରସର ହେବାର ନିୟମ ପ୍ରଭୃତି ଦେଖିବାରେ ଲାଗିଲେ । ଏମାନଙ୍କ ମଧ୍ୟରେ ଏକ ବିଶେଷତ୍ୱ ଦେଖାଗଲା, ତାହା ଏମାନଙ୍କର ସୌନ୍ଦର୍ଯ୍ୟପ୍ରିୟତା ଏବଂ ଅଳଙ୍କାରରେ ଅନୁରାଗ । ଅଧିକାଂଶ ପୁଅଝିଅ ପରିଷ୍କାର ପରିଚ୍ଛନ୍ନ ଏବଂ ଅଙ୍ଗରେ କୌଣସି ନା କୌଣସି ଅଳଙ୍କାର ପରିଧାନ କରିଅଛନ୍ତି । ମସ୍ତକର କେଶ ବିନ୍ୟାସରେ ସେମାନଙ୍କର ସୌନ୍ଦର୍ଯ୍ୟପ୍ରିୟତା ଓ ପରିଚ୍ଛନ୍ନତା ସାକ୍ଷ୍ୟ ଦାନ କରୁଅଛି । ବାଳିକା ମାତ୍ରେ ହିଁ ମୁଣ୍ଡରେ ପାନିଆ ଅଛି ନଚେତ୍ ଫୁଲ ଅଛି, ବହୁ ଜଣଙ୍କର କବରୀ ଉପରେ ବହୁବିଧ ପୁଷ୍ପ ଶୋଭା ପାଉଅଛି । ବଣ-ସୁଲଭ ବିବିଧ ପୁଷ୍ପରେ ଏମାନଙ୍କର ଅନୁରାଗର ସୀମାନାହିଁ ।

ବାମଣ୍ଡାର ପ୍ରଜାମଣ୍ଡଳୀଙ୍କ ମଧ୍ୟରେ ସମସ୍ତେ ମସୀବର୍ଣ୍ଣ କୋହ୍ଲ, ଖଡ଼ିଆ, କନ୍ଧ ଓ ଗଣ୍ଡ ନୁହନ୍ତି । ପ୍ରଜାମଣ୍ଡଳୀଙ୍କ ମଧ୍ୟରେ ବ୍ରାହ୍ମଣ ଓ କ୍ଷତ୍ରିୟ ମଧ୍ୟ ଅଛନ୍ତି । ଅନ୍ୟାନ୍ୟ ଜାତିର କୃଷିଜୀବୀ ମଧ୍ୟ ଅଛନ୍ତି । କୋହ୍ଲ, କନ୍ଧ ଓ ଗଣ୍ଡ ମଧ୍ୟ ଅଛନ୍ତି । ଆମ୍ଭେମାନେ ଗ୍ରାମର ମଧ୍ୟସ୍ଥଳରେ ଅପେକ୍ଷା କରିଥିଲୁଁ, ଏହି ଗ୍ରାମର ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଅଘୋରପନ୍ଥୀ ଏବଂ ଅପେକ୍ଷାକୃତ ଗୌରବର୍ଣ୍ଣ ଏବଂ ଦେଖିବାରେ ସୁନ୍ଦର । ଏହିପରି ମଝିରେ ମଝିରେ, ନିକଟରେ ଓ ଦୂରରେ ପାହାଡ଼ ଓ ବଣ, ପୁଣି ମଝିରେ ମଝିରେ ଲୋକବସତି ଅତିକ୍ରମ କରି ଆମ୍ଭେମାନେ ପ୍ରାୟ ଅର୍ଦ୍ଧେକ ପଥ ଅଗ୍ରସର ହେଲୁଁ । ମଧ୍ୟାହ୍ନ ପ୍ରାୟ ୧ ଘଣ୍ଟା ସମୟରେ ଆମ୍ଭେମାନେ ବାମଣ୍ଡା ରାଜ୍ୟର କୁଚିଣ୍ଡା ମହକୁମାରେ ଉପସ୍ଥିତ ହେଲୁ । ମହାରାଜାଙ୍କର ଆଦେଶ ମୁତାବକ, ପୂର୍ବରୁ ଆମ୍ଭମାନଙ୍କର ସ୍ନାନ, ଆହାରର



Digitized by srujanika@gmail.com

ଆୟୋଜନ ହୋଇ ରହିଥିଛି, ମୋଟରଯାନର ଏତେ ଧକ୍କା ଖାଇ, ପଥରେ ଅନେକ ଉଚ୍ଚକୁ ଉଠି ପୁଣି ତଳକୁ ଓହ୍ଲାଇ ମଧ୍ୟ, ମୋର ଜଠରେ ପ୍ରାତଃକାଳ ଆହାରରେ ପରିପୂର୍ଣ୍ଣ ହୋଇଥିଲା, ତେଣୁ ଯଥେଷ୍ଟ କ୍ଷୁଧା ହୋଇନାହିଁ । ସାଙ୍ଗରେ ଯେଉଁମାନେ ଥିଲେ, ସେମାନେ ଆୟୋଜନ ପ୍ରତି ଯଥେଷ୍ଟ ସଦ୍‌ବ୍ୟବହାର କଲେ । ପରେ କ୍ଷଣକାଳ ବିଶ୍ରାମାନ୍ତେ ପୁନରାୟ ମୋଟର ଆରୋହଣ କଲୁଁ । ମୋଟର ମଧ୍ୟେ ଦ୍ରୁତ ବେଗରେ ଅଗ୍ରସର ହେଲା ।

କୁଚିଣ୍ଡା ମହକୁମା ଏକ ପ୍ରଧାନ ସ୍ଥାନ । ଅନେକ ଲୋକଙ୍କର ବାସ । ପଶ୍ଚିମାଞ୍ଚଳର ଶୋଭନଦୃଶ୍ୟସମ୍ପନ୍ନ ଗାଁ । ଏଠାରେ କାରାଗାର ଓ ଅଦାଲତ ମଧ୍ୟ ଅଛି । କଲେକ୍ଟରୀଏଟ୍ ଅଛି । ବିଦ୍ୟାଳୟ ଓ ଚିକିତ୍ସାଳୟ ଅଛି । ଗୃହସ୍ଥମାନଙ୍କ ମଧ୍ୟ ସୁନ୍ଦର ସୁନ୍ଦର ଘର ଅଛି । ଦେବାଳୟ ଇତ୍ୟାଦିର ମଧ୍ୟ ଅଭାବ ନାହିଁ । ଏହି ସମସ୍ତ ହିଁ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଉନ୍ନତ ରାଜ୍ୟପାଳନ ପଦ୍ଧତିର ଫଳ, କ୍ରମଶଃ ଏପରି ସୁନ୍ଦର ଶ୍ରୀଧାରଣ କରିଅଛି । ଏହିଠାରୁ କିଛି ଦୂର ଅଗ୍ରସର ହୋଇ ଏକ ନଦୀ ଉପରେ ସୁବୃହତ୍ ସେତୁ ମରାମତି ହେଉଅଛି । ତେଣୁ ମୋଟର ଯାନରୁ ଅବତରଣ କରି ପଦବ୍ରଜରେ ଏହି ସେତୁ ଉପରଦେଇ ନଦୀର ଆରପାରିକୁ ଯିବାକୁ ପଡ଼ିଥିଲା । ବର୍ତ୍ତମାନର ରାଜା ବାହାଦୁର ବହୁ ଅର୍ଥ ବ୍ୟୟରେ ବାର୍ଣ୍ଣ କଂପାନୀ ଦ୍ୱାରା ଏହି ସୁବୃହତ୍ ସେତୁ ନିର୍ମାଣ କରାଇଥିଲେ । ଏହି ରାଜପଥ ନିର୍ମାଣ କାଳରେ ନାନାସ୍ଥାନେ ଡାୟନାମାଇଟ ଦ୍ୱାରା ପାହାଡ଼ ଭାଙ୍ଗି, ହୁଏତ ହସ୍ତୀ ବା ଶଗଡ଼ ଯିବାର ଉପଯୋଗୀ ଏହି ସୁଦୀର୍ଘ ରାଜପଥ ନିର୍ମାଣ କରାଇବାରେ ସ୍ୱର୍ଗୀୟ ରାଜାଙ୍କ ଯେଉଁ ଅର୍ଥ ବ୍ୟୟ ଓ କ୍ଳେଶ ସ୍ୱୀକାର କରିବାକୁ ପଡ଼ିଥିଲା ତାହାର ତୁଳନା ନାହିଁ । ଏହି ପଥ ନିର୍ମାଣ କାଳରେ ସେ ବେଳେବେଳେ ଅନାହାରରେ ଏବଂ ସାମାନ୍ୟ ଫଳମୂଳ ଆହାରରେ ମଜଦୁରମାନଙ୍କ ସାଂଗରେ ରହି କାର୍ଯ୍ୟ କରାଇଥିଲେ ।*(୧୫)* ସେହି କର୍ମବୀରଙ୍କ କାର୍ଯ୍ୟକଳାପ ଅନୁରୂପ ଅନୁଷ୍ଠାନ ଏହି ଦେଶ ଏବଂ ବିଦେଶର ରାଜାମାନଙ୍କ ଜୀବନରେ ଏକାନ୍ତ ବିରଳ ।

ଏହାପରେ ଆହୁରି ଦୁଇତିନି ଗୋଟି ଆଡ୍ଡା ଅତିକ୍ରମ କରି ଆମ୍ଭମାନଙ୍କ ମୋଟର କ୍ରମଶଃ ଏକ ସ୍ଥାନରେ ଆସି ଉପସ୍ଥିତ ହେଲା, ଯେଉଁଠାରେ ଏପରି କିଛି ଦେଖାଗଲା, ଯାହା ଇତିପୂର୍ବେ ପାର୍ବତ୍ୟ ପ୍ରଦେଶର ଅନ୍ୟ କେଉଁଠାରେ ମଧ୍ୟ ଦେଖିନାହିଁ । ରାଜପଥର ଉଭୟ ପାର୍ଶ୍ୱରେ ବହୁଦୂର ବ୍ୟାପୀ ଆମ୍ବ ବଗିଚା । ଦୂରରୁ ଏକ ବୃହତ୍ ଜନତା-ସଙ୍ଗେ ସଙ୍ଗେ ବହୁ ଜନଙ୍କର ମିଳିତ କଣ୍ଠସ୍ୱର ଆମ୍ଭମାନଙ୍କର ଚକ୍ଷୁକର୍ଣ୍ଣ ଆକୃଷ୍ଟ କଲା । ନିକଟସ୍ଥ ହେଉଣୁ ଅସଂଖ୍ୟ ନରନାରୀ ଏବଂ ବାଳକ ବାଳିକା ଆମ୍ଭମାନଙ୍କର ମୋଟର ଚାରିପାଖରେ ଘେରିଗଲେ, ଯେତେଦୂର ଦୃଷ୍ଟି ପହଞ୍ଚେ, ସେତେଦୂର ହିଁ ଜନତା ଅନୁସଂଧାନରେ



Digitized by srujanika@gmail.com

ଜଣାଗଲାଯେ, ଏହି ସ୍ଥାନରେ ସପ୍ତାହରେ ଥରେ ହାଟ ବସିଥାଏ । ଏହି ଦିନଟି ହାଟବାର । ସ୍ଥାନଟିର ନାମ ରେଙ୍ଗାଲ୍‌ବେଡ଼ା । ବହୁ ଦୂର ଦୂରାନ୍ତର ନରନାରୀ ହାଟକୁ କ୍ରୟ ବିକ୍ରୟ ପାଇଁ ଆସିଛନ୍ତି । ବହୁ ବୃଦ୍ଧ-ବୃଦ୍ଧା, ଯୁବକ ଯୁବତୀ, ବାଳକ ବାଳିକା ହାଟକୁ ଆସି ଅଛନ୍ତି । କେତେ କେତେ ସ୍ତ୍ରୀଲୋକ, ଦୁଗ୍ଧପୋଷ୍ୟ ଶିଶୁ ବକ୍ଷରେ ଧାରଣ କରି, ହାଟ ମଧ୍ୟରେ ବିଚରଣ କରୁଅଛନ୍ତି । ଆମ୍ଭମାନଙ୍କ ଦେଶରେ ପଲ୍ଲୀଗ୍ରାମରେ ରଥରେ ଦୋଳରେ ଚଡ଼କରେ ଯେଉଁଳି ଲୋକଙ୍କର ସମାରୋହ ଦେଖିବାକୁ ମିଳିଥାଏ, ତଦ୍‌ଅପେକ୍ଷା ବହୁ ଗୁଣରେ ଅଧିକ ଜନତା । ପାର୍ବତ୍ୟ ପ୍ରଦେଶର ସାପ୍ତାହିକ ହାଟ ଇତିପୂର୍ବେ ମଧ୍ୟ ଆମ୍ଭେମାନେ ଦେଖିଅଛୁଁ । ପାଲାମୌ ଜିଲ୍ଲା ଅନ୍ତର୍ଗତ ଗାଡୋୟା ହାଟ ଖୁବ୍ ବିଖ୍ୟାତ । ସପ୍ତାହରେ ଥରେ ହାଟ ବସେ; କିନ୍ତୁ ପୂର୍ବଦିନର ଅପରାହ୍ଣରୁ ହାଟରେ ଦ୍ରବ୍ୟାଦିର ଆମଦାନି ହେବା ଦେଖାଯାଇଅଛି । ଅଶ୍ୱ ଏବଂ ବଳଦ ପିଠିରେ ବିକ୍ରୟ ଦ୍ରବ୍ୟାଦି ବୋଝେଇ କରି ସମସ୍ତ ରାତି ଘଣ୍ଟାର ଶବ୍ଦରେ ନାନା ପଥ ମୁଖରିତ କରି ବ୍ୟାଘ୍ର ଭୟରେ ଭୀତ ନରନାରୀ ହାଟକୁ ଆସିଥାନ୍ତି । ଗାଡ଼ୋୟା ହାଟରେ ସେହି ଜନତା ଦେଖିଅଛି; କିନ୍ତୁ ଏଠାରେ ଆଲୋଚ୍ୟ ହାଟର ଲୋକସଂଖ୍ୟା ତଦ୍ ଅପେକ୍ଷା ଅନେକ ଅଧିକ ବୋଲି ମନେ ହେଲା । ଏଠାରେ ସପ୍ତାହ ପାଇଁ ପ୍ରୟୋଜନୀୟ ସମସ୍ତ ଦ୍ରବ୍ୟ ପ୍ରଚୁର ପରିମାଣରେ ଆମଦାନୀ ହୋଇଥାଏ । ଅନୁସଂଧାନରୁ ଜଣାଗଲା, ବାମଣ୍ଡା ରେଲଷ୍ଟେସନ ନିକଟବର୍ତ୍ତୀ ଗୋବିନ୍ଦପୁର ହାଟରେ ଏବଂ ଆହୁରି ଅନ୍ୟ ଦୁଇତିନିଗୋଟି ହାଟରେ ଏହାଠାରୁ ଅଧିକ ଜନତାଙ୍କର ସମାଗମ ହୋଇଥାଏ ।

ସ୍ତ୍ରୀ-ପୁରୁଷମାନଙ୍କ ମଧ୍ୟରେ ଅଧିକାଂଶ ହିଁ ନିମ୍ନଶ୍ରେଣୀର ଲୋକ । ଲେଖାପଢ଼ା ଜାଣିଥିବା ଭଦ୍ରଲୋକଙ୍କ ସଂଖ୍ୟା ନିତ୍ୟାନ୍ତ ଅଳ୍ପ । ହାଟରେ ସ୍ତ୍ରୀ ଲୋକଙ୍କ ସଂଖ୍ୟା ପୁରୁଷଙ୍କ ସହିତ ସମାନ ହେବ । ସ୍ତନ୍ୟ ତ୍ୟାଗ କରିଅଛି, ଏଭଳି ବାଳିକାଠାରୁ ଆରମ୍ଭ କରି ପ୍ରବୀଣାଙ୍କ ପର୍ଯ୍ୟନ୍ତ କେଶ ସୌଷ୍ଠବ ସଂପନ୍ନ । ଏହି ଦେଶରେ କେଶର କାଇଦା ଓ କଦର ସ୍ତ୍ରୀ-ପୁରୁଷ ଉଭୟ ସଂପ୍ରଦାୟଙ୍କ ମଧ୍ୟରେ ଦେଖାଗଲା । ଅସଂଖ୍ୟ ପୁରୁଷଙ୍କର କୁଞ୍ଚିତ ବାବରିବାଳ ଏବଂ କୁଣ୍ଡାଯାଇଥିବା ଚୂଳରେ ଗୋଟାଏ ପାନିଆ ଲାଗି ରହିଅଛି । ସବୁ ବୟସର ସ୍ତ୍ରୀଲୋକଙ୍କର କେଶ ବିନ୍ୟାସ ଓ ତଦୁପରି ସାମାନ୍ୟ ମୂଲ୍ୟର ବିବିଧ ଅଳଂକାର ଶୋଭା ପାଉଅଛି । ଆମ୍ଭେମାନେ ଯେଉଁ ସମୟରେ ବାମଣ୍ଡା ଯାଇଥିଲୁଁ, ତାହା ଫାଲଗୁନ ଶେଷ ଓ ଚୈତ୍ରର ପ୍ରାରମ୍ଭ । ନାନାବିଧ ପତ୍ରପୁଷ୍ପରେ ନାରୀ ଜାତିର ଶିରୋଶୋଭା ବର୍ଦ୍ଧିତ କରିଅଛି । ଦେଖିଥିଲି ମୁକୁଳାମଞ୍ଜରୀ ମଧ୍ୟ ବାଦ ପଡିନାହିଁ । ସାମାନ୍ୟ ଅର୍ଥବ୍ୟୟରେ ଏମାନେ ଏତେ ସାଜସଜା କରନ୍ତି, ଯେ ସେହି ସବୁର ପୂର୍ଣ୍ଣାଙ୍ଗ ବିବରଣୀ କୌତୂହଳୋଦ୍ଦୀପକ ହେଲେ



Digitized by srujanika@gmail.com

ମଧ୍ୟ ଅପ୍ରାସଙ୍ଗିକ ବୋଧହେତୁ ଏଠାରେ ତାହାର ଆଲୋଚନାର ଲୋଭ ସଂବରଣ କରିବାକୁ ହେଲା, କେବଳ ଆଉ ଗୋଟିଏ ମାତ୍ର କଥା କହିବା ଆବଶ୍ୟକ । ସ୍ତ୍ରୀ-ପୁରୁଷ ପ୍ରାୟ ସମସ୍ତେ ସୁସ୍ଥ ଓ ସବଳଦେହ ବୋଲି ମନେ ହେଲା ଏବଂ ଜୀବନ ଧାରଣ ପାଇଁ ସର୍ବବିଧ ପ୍ରୟୋଜନୀୟ କର୍ମ ସଂପାଦନରେ ସକ୍ଷମ । ହାଟ ମଧ୍ୟରେ ଏଡ଼େ ବିରାଟ ଏକ ମୋଟରକାର୍‌ର ଚାରିପାଖରେ ଏତେ ବାଳକ ବାଳିକା, ଯୁବକ ଯୁବତୀ, ବୃଦ୍ଧ ବୃଦ୍ଧା ଆସି ରୁଣ୍ଡ ହୋଇଛନ୍ତି; କିନ୍ତୁ କାହିଁ, ଜଣେ ହେଲେକେହି ପଇସାଟିଏ ମଧ୍ୟ ମାଗିଲାନାହିଁ । ଏତେ ଲୋକଙ୍କ ମଧ୍ୟରେ ଜଣେ ସୁଦ୍ଧା କେହି ଅଭାବର ସଂବାଦ ଜଣାଇଲା ନାହିଁ ଦେଖି, ମୋର କୌତୂହଳାକ୍ରାନ୍ତ ମନ ଆହୁରି ଟିକେ ବ୍ୟସ୍ତ ହୋଇ ପଡ଼ିଲା । ଅସୁସ୍ଥତା ସତ୍ତ୍ୱେ ମୁଁ ମୋଟର ଭିତରୁ ବାହାରି ଭିଖାରିର ଅନୁସଂଧାନ କଲି, କେହି ଜଣେ ହେଲେ କାହା ପାଖରୁ କିଛି ଭିକ୍ଷା ମାଗୁଛି କି ନାହିଁ ତାହା ଦେଖିବା ଓ ଜାଣିବା ପାଇଁ ଚେଷ୍ଟା କଲି; କିନ୍ତୁ ଏତେ ଲୋକଙ୍କ ଭିତରେ କୌଣସିଠାରେ ଏହିପରି ଜଣେ ପ୍ରାଣୀକୁ ନପାଇ, ଆଶ୍ଚର୍ଯ୍ୟାନ୍ୱିତ ହୋଇ ମନେ ମନେ ଭାବୁଅଛି, 'ଏହା କିପରି ସଂଭବ ହେଲା ?' ଠିକ୍ ଏତିକିବେଳେ ମୋର ସ୍ମରଣ ହେଲା, ଏହା ଯେ 'ରାମରାଜତ୍ୱ', ଏହା ଯେ ସାର୍ ବାସୁଦେବ ସେବିତ ବାମଣ୍ଡା ରାଜ୍ୟ ତଦୀୟ ଗୁଣବାନ୍ ପୁତ୍ର ରାଜା ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଯେ ବର୍ତ୍ତମାନ ପିତୃଦେବଙ୍କର ଆଦର୍ଶ ବକ୍ଷରେ ଧାରଣ କରି ପ୍ରଜାପାଳନ କରୁଅଛନ୍ତି, ଏଠାରେ ଭିଖାରି ମିଳିବେ ନାହିଁ ।*(୧୬)* ଏହାପରେ ବହୁ ସମୟ ମୁଁ ନିରବରେ ଆତ୍ମସ୍ଥ ହୋଇ ଜନ ସମାଜର ସୁଖ-ସଂଭୋଗ ଲାଳସା ଓ ବିଳାସ ବାସନା ଚରିତାର୍ଥ କରିବା ବ୍ୟୟ ବହନ ଓ ତାହା ଫଳରେ ବହୁ ଲୋକଙ୍କ ଅଭାବ ଓ ଅନଟନ ହେତୁ କ୍ଲେଶ ବିଷୟରେ ଚିନ୍ତା କରୁଥିଲି । ଏହି ସମୟରେ ସହସା ମୋର ଦିବାସ୍ୱପ୍ନ ଭଙ୍ଗ ହେଲା ।

ରାଜପଥ ସମ୍ମୁଖରେ ଏକ ବିଶାଳକାୟ ପର୍ବତ । ପୁଣି ଏହି ପର୍ବତ ଉପର ଦେଇ ଆମ୍ଭମାନଙ୍କ ମୋଟର ଅଗ୍ରସର ହେବ । ସର୍ବନାଶ, ମୋଟର ଯାନ ଧୀରେ ଧୀରେ ପର୍ବତ ଉପରକୁ ଉଠିବାରେ ଲାଗିଲା । ଚଢୁ ଚଢୁ ଏପରି ଏକ ସ୍ଥାନରେ ଆସି ଉପସ୍ଥିତ ହେଲା, ଯେଉଁଠାରେ ପର୍ବତଗାତ୍ରରେ ଦକ୍ଷିଣ ଦିଗରେ ଶତହସ୍ତ ବା ତତୋଽଧିକ ନିମ୍ନ ଖାଲ, ସେଠାରେ ପତନ ଓ ମୃତ୍ୟୁ, ଏକ ସଂଗେ ମିଳିତ ହୋଇ ରହିଛି । ବାମପାର୍ଶ୍ୱରେ ଶତ କି ଦୁଇଶତ କିମ୍ବା ତିନିଶତ ହସ୍ତ ତାହା ଠିକ୍ କହିପାରିବି ନାହିଁ, ଉଚ୍ଚ ପର୍ବତ ଶିଖର । ମୋଟର କ୍ରମେ ଏହି ଗିରି ସଂକଟ ପାରି ହୋଇ ପ୍ରବଳ ବେଗରେ ପର୍ବତ ଗାତ୍ରରେ ଦୌଡ଼ିବାରେ ଲାଗିଲା । ମୁଁ ସେତେବେଳେ ମୋଟର ଅତ୍ୟାଚାର ଫଳରେ ନିତ୍ୟାନ୍ତ ଅବସନ୍ନ ହୋଇ ପଡ଼ିଅଛି, ଏପରିକି ସାମାନ୍ୟ ସ୍ୱଳ୍ପ ବେଗରେ ଚଳାଇବା ପାଇଁ କହିବା ଶକ୍ତି ମଧ୍ୟ ନଥିଲା । ଏହାପରେ



Digitized by srujanika@gmail.com

ଆହୁରି କେତେଥର ଏପରି ପାହାଡ଼ ଉପର ଦେଇ ଅପେକ୍ଷାକୃତ ଅଳ୍ପ ବିପଦଜନକ ପଥରେ ମୋଟର ଅଗ୍ରସର ହେଉ ହେଉ, ସମ୍ବଲପୁର ଠାରୁ ଆଗତ ରାଜପଥ ସହିତ ମିଳିତ ହେଲା । ସେହି ସ୍ଥାନରୁ ଦେବଗଡ଼ ରାଜଧାନୀ ୯/୧୦ମାଇଲ୍ ଦୂର । ଏହି ସ୍ଥାନରୁ ପଥ କ୍ରମଶଃ ସୁଗମ ଓ ସହଜ ବୋଲି ବୋଧ ହେବାରେ ଲାଗିଲା । ନିକଟରେ ଏବଂ ଦୂରରେ ପଲ୍ଲୀଗ୍ରାମ ଅତିକ୍ରମ କରି ଆମ୍ଭର ମୋଟର ଯେତେ ଅଗ୍ରସର ହେବାରେ ଲାଗିଲା ସେତେ ସେତେ ପାର୍ଶ୍ୱବର୍ତ୍ତୀ ଗ୍ରାମ ସମୂହର ସୌଷ୍ଠବ ଓ ଶିଷ୍ଟଭାବ ରାଜଧାନୀର ନିକଟବର୍ତ୍ତୀତାର ଆଭାସ ପ୍ରଦାନ କରିବାରେ ଲାଗିଲା । କ୍ରମେ ଆମ୍ଭେମାନେ ଦେବଗଡ଼ରେ ଆସି ଉପସ୍ଥିତ ହେଲୁ । ଅପରାହ୍ନ ସମୟରେ ମହାରାଜ ଗୁରୁ ପୁରୋହିତ ସମଭିବ୍ୟାହାରେ ଆମ୍ଭମାନଙ୍କୁ ଅପେକ୍ଷା କରୁଅଛନ୍ତି । ଅବସନ୍ନ ଦେହରେ ମୋଟରରୁ ଅବତରଣ, ଅଭିବାଦନ ଓ ଉପସ୍ଥିତ ଭଦ୍ରଲୋକଙ୍କ ସହିତ ପରିଚୟ ଇତ୍ୟାଦି ପରେ, ରାଜା ବାହାଦୁରଙ୍କ ଅନୁରୋଧରେ ତଦୀୟ ପିତୃଦେବଙ୍କ ଏକ ପୂର୍ଣ୍ଣାବୟବ ପ୍ରସ୍ତର ମୂର୍ତ୍ତି ଦେଖିବାପାଇଁ ଅଗ୍ରସର ହେଲୁଁ । ସ୍ୱର୍ଗୀୟ ରାଜାଙ୍କ ମର୍ମର ମୂର୍ତ୍ତି ବୀରତ୍ୱ ବ୍ୟଞ୍ଜକ ଓ ସୁନ୍ଦର ବୋଲି ଅନୁଭବ କଲି ।

ତତ୍ପରେ ଆମ୍ଭେମାନେ ସ୍ୱତନ୍ତ୍ର ଶକଟରେ, ତ୍ୱରିତ ଆମ୍ଭମାନଙ୍କପାଇଁ ନିର୍ଦ୍ଦିଷ୍ଟ ବାସସ୍ଥାନରେ ପହଞ୍ଚିଲୁ । ବିଶ୍ରାମ ପାଇଁ ଲାଳାୟିତ ଦେହଯଷ୍ଟି ତ୍ୱରିତ ହସ୍ତପଦ ପ୍ରକ୍ଷାଳନାନ୍ତେ ଶଯ୍ୟା ଗ୍ରହଣ କଲା । କିନ୍ତୁ ଭାଗ୍ୟରେ ବିଶ୍ରାମ ନାହିଁ । ଶୟନ କରୁ ନ କରୁଣୁ ଶୁଣିଲି, ମହାରାଜା ସ୍ୱୟଂ ଅତିଥି ସଂଭାଷଣ ପାଇଁ ଆସିଛନ୍ତି । ସେ ଆସି ଆମ୍ଭମାନଙ୍କ ଆହାରାଦି ଏବଂ ଶୟନ ବ୍ୟବସ୍ଥାଦିର ସମ୍ବାଦ ନେଇ 'ପାହାଡ଼ ଉପରର ବାସସ୍ଥାନରେ କୌଣସି ଭୟନାହିଁ' ବୋଲି ଅଭୟ ଦେଇ ଏବଂ ରାତିରେ ଚୌକିଦାର କରିବା ପାଇଁ ପୋଲିସ୍ ମୁତୟନର ଆଦେଶ ଦେଇ ଚାଲିଗଲେ । ଆମ୍ଭେମାନେ ମଧ୍ୟ ଦୀର୍ଘଶ୍ୱାସ ଛାଡ଼ି ବିଶ୍ରାମ ନେଲୁ ।

ମୋ' ସାଥୀରେ ଥିଲେ ଜଣେ ପ୍ରାଚୀନ ବ୍ୟକ୍ତି । ସେ ସଂସ୍କୃତଜ୍ଞ ପଣ୍ଡିତ ବୋଲି ପରିଚିତ ଏବଂ ତାଙ୍କ ବିଦ୍ୟାର ଦାବୀ ମଧ୍ୟ ସଂଗତ ବୋଲି ବୋଧହୁଏ । ସେ ମୋର ବହୁ କାଳର ପରିଚିତ । ଏହି ପଣ୍ଡିତ ମହାଶୟ ତ୍ୱରିତ ଶୟନକକ୍ଷ ଦୁଇଟା ମଧ୍ୟରୁ ସମ୍ମୁଖଟି ଉତ୍ତମ ବୋଲି ଏବଂ କକ୍ଷର ଖଟଟି ଅପେକ୍ଷାକୃତ ସୁଖକର ବୋଧରୁ ସମ୍ମୁଖ ବଡ଼ କକ୍ଷଟି ଏକାକୀ ଦଖଲ କରି ଶୟନ ବ୍ୟବସ୍ଥାକରି ମୋତେ ସଙ୍ଗୀ ରାଜକର୍ମଚାରୀଙ୍କ ସହ ଭିତର ପାଖ କକ୍ଷଟି ନେବାପାଇଁ କହିଲେ । ମୁଁ ଅସୁସ୍ଥ, ତାଙ୍କ ନିର୍ବାଚନକୁ ସମ୍ମତି ଜଣାଇ ଭିତର କକ୍ଷଟିରେ ଥିବା ଖଟରେ ମୋର ଶଯ୍ୟାଦି ରଚନା କରିସାରି ବିଶ୍ରାମ କରୁଅଛି, ଏତିକିବେଳେ ଆମ୍ଭମାନଙ୍କ ଆହାର ପ୍ରସ୍ତୁତ ହେଲା, ଆମ୍ଭେମାନେ ଆହାର କଲୁ । ଏଥର ଶୟନ କରିବୁ,



Digitized by srujanika@gmail.com

ଏତିକି ବେଳେ ଜଣାଗଲା ଯେ, ସମ୍ମୁଖ କକ୍ଷଟିରେ ଭିତରପଟୁ ଦ୍ୱାର ବନ୍ଦକରିବାର ଉପାୟ ନାହିଁ। ଯାହା ଥିଲା ଭାଙ୍ଗିଯାଇଅଛି । ଅସୀମ ଭାବନାର ଭାରରେ ବୃଦ୍ଧ ବନ୍ଧୁ ସାଥୀ ମହାଶୟ ଅବସନ୍ନ ହୋଇ ପଡ଼ିଲେ । ବିଶେଷତଃ ଶୁଣାଗଲା ଯେ, ନିକଟସ୍ଥ ପ୍ରଧାନପାଟର ଜଳ ପ୍ରବାହକୁ ରାତିରେ ବାଘମାନେ ଜଳପାନ କରିବାକୁ ଆସନ୍ତି । ଆମ୍ଭମାନଙ୍କର ପର୍ବତ ବାସର ଚାରିପାଖରେ ଭଲ୍ଲୁକ ମଧ୍ୟରାତ୍ରିରେ ବିଚରଣ କରନ୍ତି । ଅସଂଗତ ଭାବନାର ଭାରରେ ଓ ଭୟରେ ବିପନ୍ନ ହୋଇ ମଧ୍ୟ ନିରବ ନିରୂପାୟ, ସେତେବେଳେ ଆଉ ମୋ' ସାଥୀରେ କକ୍ଷ ପରିବର୍ତ୍ତନ ପ୍ରସ୍ତାବ ସଂଗତ ହେବ ନାହିଁ ଏବଂ ମୋ' ପାଖରେ ସେତେବେଳେ ସେହି ପ୍ରସ୍ତାବ ଗ୍ରାହ୍ୟ ମଧ୍ୟ ନ ହୋଇପାରେ । ଏକ ଭୀଷଣ ମୁସ୍କିଲ୍ ବ୍ୟାପାର ହୋଇ ପଡ଼ିଲା । ମୁଁ ଏବଂ ଆମ୍ଭମାନଙ୍କର ପରିଚର୍ଯ୍ୟାର୍ଥେ ନିଯୁକ୍ତ ରାଜକର୍ମଚାରୀ ଶ୍ରୀଯୁକ୍ତ ବିପିନ ବିହାରୀ ଗୁପ୍ତ ଉଭୟେ ଭିତର କକ୍ଷରେ ଶୟନ କରିଅଛୁ । ବୃଦ୍ଧ ବନ୍ଧୁଙ୍କର କକ୍ଷ ନିର୍ବାଚନ ଉପଯୋଗିତା ଓ ସମସ୍ତ ସୁବିଧା ମୁହୂର୍ତ୍ତକ ମଧ୍ୟରେ ଲୋପପାଇଗଲା । ତାଙ୍କର ସେହି ସମୟର ମାନସିକ ଅବସ୍ଥା ଓ ଉତ୍କଣ୍ଠାର ବ୍ୟାକୁଳ ବର୍ଣ୍ଣନା ଅପେକ୍ଷା ଅଧିକ ଅନୁଭବନୀୟ । ମୁଁ ଚିରଦିନ କିଛିଟା ନିର୍ଭୀକ । ତା' ବୋଲି ଯେ ବାଘଭଲ୍ଲୁକକୁ ଭୟ କରେନାହିଁ । ଏଭଳି ନୁହେଁ, ତଥାପି ଥରେ କକ୍ଷ ପରିବର୍ତ୍ତନର ପ୍ରସ୍ତାବ ରଖିଲି; କିନ୍ତୁ ସେତେବେଳେ ତହିଁରେ ସମ୍ମତ ହେବା ଏବଂ ଆମ୍ଭମାନଙ୍କୁ ବାଘ ମୁହଁରେ ଛାଡ଼ିଦେବା ଏକା କଥା ସେଭଳି ଭୀରୁତା ପରାକାଷ୍ଠା ପ୍ରଦର୍ଶନ ପାଇଁ ସେ ମଧ୍ୟ ସାହସ କଲେ ନାହିଁ । ସେତେବେଳେ ମୁଁ କହିଲି- 'ତେବେ ଆଜି 'ପଦ୍ମନାଭଙ୍କ' ପରିବର୍ତ୍ତେ 'ବିପଦରେ ମଧୁସୂଦନଙ୍କୁ' ସ୍ମରଣ କରନ୍ତୁ । କାଲି ସକାଳେ ଦେଖାଯିବ ।' ସେତେବେଳେ ବନ୍ଧୁ, ସେହି ରାତିରେ ଦରଜା ମରାମତି କରୁଛନ୍ତି ଦେଖି, ଆମ୍ଭମାନେ ଉଭୟେ ଏତେବେଳଯାଏ ଯେଉଁ ଆମୋଦ ସଂଭୋଗ କରୁଥିଲୁ, ବର୍ତ୍ତମାନ ଆଉ ହାସ୍ୟ ସଂବରଣ କରି ପାରିଲୁ ନାହିଁ । ଆମ୍ଭମାନଙ୍କ ହସରେ ତାଙ୍କ ଅନ୍ତରରେ ବୋଧହୁଏ ସାମାନ୍ୟ ବେଦନା ଲାଗିଥିଲା । ଶେଷରେ ମୁଁ ଯାଇ, ଗୋଟିଏ ଚୌକି ଲଗାଇ ଦରଜା ଏଭଳି ପ୍ରଭାବେ ବନ୍ଦ କରିଦେଲି ଯେ, ଅଳ୍ପ ଚେଷ୍ଟାରେ ସେହି ଦ୍ୱାର ଖୋଲାଯାଇ ପାରିବ ନାହିଁ । ସେତେବେଳେ ବନ୍ଧୁ କିଞ୍ଚିତ୍ ଶାନ୍ତ ଭାବରେ ଶୟନ କଲେ; କିନ୍ତୁ ପୀଡ଼ାହେତୁ ରାତିରେ ମୋର ନିଦ ହୁଏ ନାହିଁ, ଯେତେବେଳେ ତାଙ୍କୁ ଡାକିଅଛି, ଉତ୍ତର ପାଇଅଛି । ତେଣୁ ବୋଧ ହୋଇଥିଲା, ସମସ୍ତ ଦିନର ଶ୍ରମ ପରେ ମଧ୍ୟ ତାଙ୍କର ସେଦିନ ରାତିରେ ନିଦ ହୋଇନାହିଁ ।

ବାମଣ୍ଡାରୁ ପ୍ରତ୍ୟାବର୍ତ୍ତନ କାଳରେ ରେଲୱେ ଷ୍ଟେସନକୁ ଯାତାୟତ ପାଇଁ ରାଜପଥ ଅନଧିକ ସାତଗୋଟି ସ୍ଥାନରେ ବର୍ତ୍ତମାନର ରାଜା ରାଜପଥ ପରିବର୍ତ୍ତନ କରାଇଛନ୍ତି ।



Digitized by srujanika@gmail.com

ସ୍ୱର୍ଗୀୟ ରାଜାଙ୍କ ନିର୍ମିତ ପଥ ସମସ୍ତ ଗିରିସଂକଟରେ ବଳଦଗାଡ଼ି, ପାଲିଙ୍କି, ହାତୀ ଓ ଘୋଡ଼ା ଯାଇପାରୁଥିଲେ । ସେହି ଗିରିସଂକଟ ପଥ ଦେଇ ମୋଟର ଚାଳିବା ସମ୍ଭବ ନଥିଲା, ତେଣୁ ମୋଟର ଯାତାୟତର ସୁବିଧାପାଇଁ ବର୍ତ୍ତମାନର ରାଜା ବାହାଦୁର ପର୍ବତ ଗାତ୍ରରେ ବହୁ ଅର୍ଥ ବ୍ୟୟରେ ନୂତନ ପଥ (Diversions)ନିର୍ମାଣ କରାଇ ପଥ କିଛିଟା ସହଜ ଓ ସୁଗମ କରାଇଛନ୍ତି ।

## (ଚ) ରାଜଭବନ

ରାଜଧାନୀର ନାନାବିଧ ପରିର୍ତ୍ତନ ଓ ଉନ୍ନତି ସାଧିତ ହୋଇଥିଲେ ମଧ୍ୟ, ଅତି ପୁରାତନ ରାଜଭବନର କୌଣସି ପରିବର୍ତ୍ତନ ସାଧିତ ହୋଇନାହିଁ । କେବଳ ବର୍ତ୍ତମାନ ଯୁବରାଜ ଶ୍ରୀଯୁକ୍ତ ଦିବ୍ୟଶଙ୍କର ଦେବ ବାହାଦୁରଙ୍କ ପାଇଁ ଭିତରେ ନୂତନ ଧରଣର ଏକ ଶୋଭନ ଦୃଶ୍ୟ ରାଜ ଅଟ୍ଟାଳିକା ନିର୍ମିତ ହୋଇଅଛି । ବାକି ସବୁକିଛି ପୂର୍ବବତ୍ ରହିଅଛି । ଏହା ଆପାତତଃ-ଆଶ୍ଚର୍ଯ୍ୟର ବିଷୟ ହେଲେ ମଧ୍ୟ, ଏହା ଏକାବେଳକେ ତାତ୍ପର୍ଯ୍ୟ ଶୂନ୍ୟ ନୁହେଁ । ଦୂରରୁ ରାଜଭବନ ସମ୍ମୁଖଭାଗରେ ତ୍ରିତଳ ଅଟ୍ଟାଳିକା ଶିଖରରେ ପ୍ରତିଷ୍ଠିତ ଯୁଗଳ ବ୍ୟାଘ୍ରମୂର୍ତ୍ତି ସର୍ବପ୍ରଥମେ ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରିବ । ରାଜାଙ୍କ ଖାସ୍ ଦପ୍ତରକୁ ଯିବାପାଇଁ ହେଲେ ରାଜଭବନର ସଦର ଚତ୍ୱର ଅତିକ୍ରମ କରି ଦ୍ୱିତୀୟ ସଦର ଚତ୍ୱର ମଧ୍ୟରେ ଦକ୍ଷିଣ ଦିଗରେ ବିଭିନ୍ନ ପଥ ଭିନ୍ନ ଭିନ୍ନ ଅନ୍ଦରମହଲକୁ ପ୍ରବେଶ ଦ୍ୱାର । ବାମପାର୍ଶ୍ୱରେ ଯୁବରାଜଙ୍କ ଦ୍ୱିତଳ ବୈଠକଖାନାକୁ ଯିବାପାଇଁ ପଥ ଏବଂ ପଶ୍ଚିମ ଦିଗର ବାମ ଭାଗେ ପୂଜା କୋଠରୀ । ରାଜଭବନ ଏକାବେଳକେ ସେହି ପ୍ରାଚୀନ ପଦ୍ଧତି ଅନୁଯାୟୀ ନିର୍ମିତ ମାମୁଲି ରକମରେ ହିଁ ବର୍ତ୍ତମାନ । ତେବେ ଏହି ରାଜଭବନ ବହୁଦୂର ବ୍ୟାପୀ ଓ ବହୁ ବିଭାଗରେ ବିଭକ୍ତ ଏବଂ ଅସଂଖ୍ୟ ପ୍ରକୋଷ୍ଠରେ ପୂର୍ଣ୍ଣ ହୋଇ ରାଜ ପରିବାର ଓ ରାଜ ଆତ୍ମୀୟଗଣଙ୍କ ସ୍ଥାନାଭାବ ଦୂର କରିବା ପାଇଁ ନିତ୍ୟ ନିଯୁକ୍ତ ରହିଅଛି ।

ଭାରତୀୟ ସାମନ୍ତ ନୃପତିଗଣଙ୍କ ରାଜ୍ୟାଭିଷେକ ସମୟରେ ନୂତନ ରାଜା ରାଜ ସିଂହାସନରେ ଆରୋହଣ କରନ୍ତି । ରାଜଗୁରୁ ଓ ପୁରୋହିତ ଯଥାବିଧି ତାହାଙ୍କୁ ଆଶୀର୍ବାଦ ସହ ରାଜପୂଜା ଅର୍ପଣ କରିବା ପରେ, ରାଜ୍ୟର ପ୍ରଧାନଗଣ ତାହାଙ୍କୁ ରାଜସମ୍ମାନର ସମ୍ବର୍ଦ୍ଧନା କରିଥାନ୍ତି । ରାଜା ଆପଣାର କର୍ତ୍ତବ୍ୟ ପାଳନ ଅଙ୍ଗୀକାର ସହ ପ୍ରଜାସାଧାରଣଙ୍କ ସୁଖ ସଂବୃଦ୍ଧି ସାଧନ ଉପାୟ ପଦ୍ଧତି ଗୁଡ଼ିକର ଇଙ୍ଗିତ କରିଥାନ୍ତି । ସିଂହାସନ କେବଳ ସେହି ସମୟରେ ଏବଂ ଅନ୍ୟାନ୍ୟ ଅନୁଷ୍ଠାନ କାଳରେ ବ୍ୟବହୃତ ହୋଇଥାଏ । ଭାରତୀୟ ଅନ୍ୟାନ୍ୟ ସାମନ୍ତ ନୃପତିଗଣ ଅନ୍ୟସବୁ ସମୟରେ ଅମାତ୍ୟ ପରିବେଷ୍ଟିତ ହୋଇ କିପରି ଆସନରେ ଉପବେଶନ କରନ୍ତି, ତାହା କହି ପାରିବି ନାହିଁ । ବୋଧହୁଏ ଅନେକ ସ୍ଥଳରେ



Digitized by srujanika@gmail.com

ବର୍ତ୍ତମାନ ଇଂରେଜ ରାଜାଙ୍କ ଅନୁକରଣରେ ପ୍ରଚଳିତ ହୋଇଥିବେ; କିନ୍ତୁ ବାମଣ୍ଡାରେ ଆଜି ପର୍ଯ୍ୟନ୍ତ ସେଭଳି କୌଣସି ପରିବର୍ତ୍ତନ ଘଟିନାହିଁ ।

ବାମଣ୍ଡାରେ ନିତ୍ୟ ରାଜସଭାରେ ବ୍ରାହ୍ମଣ ପଣ୍ଡିତଗଣଙ୍କ ବସିବା ପାଇଁ ରାଜା ବାହାଦୁରଙ୍କ ଦକ୍ଷିଣ ପାର୍ଶ୍ୱରେ ସ୍ୱତନ୍ତ୍ର ଏକ ବୃହତ୍ ସ୍ଥାନ ନିର୍ଦ୍ଦିଷ୍ଟ ହୋଇ ରହିଅଛି । ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ବ୍ରାହ୍ମଣଗଣ ଉପବେଶନ କରନ୍ତି । ରାଜା ବାହାଦୁରଙ୍କ ଆସନର ପଶ୍ଚାଦ୍‌ଭାଗରେ ଏକ ବିସ୍ତୃତ କକ୍ଷରେ ରାଜକୀୟ ପୁସ୍ତକାଗାର, ଏହିଠାରେ ପ୍ରଚୁର ପରିମାଣରେ ସଂସ୍କୃତ ସାହିତ୍ୟ ଓ କାବ୍ୟଗ୍ରନ୍ଥ, ଧର୍ମ ଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର ଓ ଦର୍ଶନାଦି ଅନ୍ୟ ବିବିଧ ବିଷୟକ ବହୁ ଗ୍ରନ୍ଥ ସାର୍ ବାସୁଦେବ ସୁଢ଼ଳଦେବଙ୍କ ସମୟରୁ ସଂଗୃହୀତ ହୋଇ ସଞ୍ଚିତ ହୋଇ ରହିଅଛି । ବର୍ତ୍ତମାନର ରାଜା ବାହାଦୁର ସେହି ସମସ୍ତ ଗ୍ରନ୍ଥ ଏବଂ ଗ୍ରନ୍ଥଗତ ବିଷୟ ସହିତ ସୁପରିଚିତ । ସେ ଅଧିକ ମାତ୍ରାରେ ଇଂରାଜୀ ସାହିତ୍ୟରେ ଉତ୍ତମରୂପେ ବ୍ୟୁତ୍ପନ୍ନ ବୋଲି ବହୁ ବହୁ ଇଂରାଜୀ ଗ୍ରନ୍ଥ କ୍ରୟ ଓ ପାଠକରି ପୁସ୍ତକାଗାରରେ ସେ ସଞ୍ଚିତ କରାଇଅଛନ୍ତି । ବିଶେଷ ଭାବରେ ପାଶ୍ଚାତ୍ୟ ବିଜ୍ଞାନ ବିଷୟକ ଗ୍ରନ୍ଥ । ରାଜା ବାହାଦୁରଙ୍କ ସମ୍ମୁଖସ୍ଥ ଏକ ପ୍ରକୋଷ୍ଠରେ ରାଜା ବାହାଦୁରଙ୍କ ପ୍ରଧାନ କର୍ମଚାରୀ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦାଶ ମହାଶୟଙ୍କ କର୍ମମଣ୍ଡପ । ସେ ସେଠାରେ ତାଙ୍କର ସହକାରୀ କୃଷ୍ଣଚନ୍ଦ୍ରଙ୍କ ସାଥୀରେ ସର୍ବଦା ରାଜାଦେଶ ପାଳନରେ ବ୍ୟସ୍ତଥାନ୍ତି ।*(୧୬)*

ଏହି ଆଡ଼ମ୍ବର ଶୂନ୍ୟ ସହଜ ସ୍ଥାନରେ ସହଜ ଭାବରେ ବର୍ତ୍ତମାନର ରାଜାବାହାଦୁର ଉପବେଶନ ପୂର୍ବକ ସାଧାରଣ ରାଜକାର୍ଯ୍ୟ ସଂପନ୍ନ କରିଥାନ୍ତି । ତଦୀୟ ପିତୃଦେବ ପ୍ରଥିତଯଶା ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏଭଳି ଭାବରେ ଜୀବନବ୍ୟାପୀ ରାଜସଭା କରିଯାଇଅଛନ୍ତି । ସ୍ୱର୍ଗୀୟ ରାଜା ଅମଳରେ, ଅନେକ ସମୟରେ ଆଗନ୍ତୁକ ରାଜଯୋଗ୍ୟ ଗୁଣମଣ୍ଡିତ ରାଜାଙ୍କ ସମ୍ମୁଖରେ ରହିଥିଲେ ମଧ୍ୟ, ରାଜାନୁସନ୍ଧାନରେ ବ୍ୟସ୍ତ ହେଉଥିଲେ । ଏହି ସାଦାସିଧା ଭାବରେ ଅନ୍ତରାଳରେ କ'ଣ କିଛି ବିଶେଷତ୍ୱ ଲୁକ୍କାୟିତ ହୋଇନାହିଁ ? ସେକାଳର ଏହି ଏକ ପ୍ରାଚୀନ ଢଙ୍ଗର ଇମାରତ୍‌ର ଏକାଂଶରେ ଗୃହତଳେ ବସି ରାଜଦରବାର କ'ଣ ସଭ୍ୟପଦ ସମାଜର ଅନୁମୋଦିତ ହେବ ? ଏକଦା କଟକରୁ ସମାଗତ କେତେଜଣ ପଦସ୍ଥ ବ୍ୟକ୍ତିଙ୍କ ମଧ୍ୟରୁ ଜଣେ ଏଭଳି ରାଜଦରବାରରେ ଆସୀନ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ଦେଖି କହିଥିଲେ, 'କାହିଁ, ରାଜାଙ୍କୁ ତ ଦେଖିପାରୁ ନାହିଁ ।' ଉତ୍ତରରେ ରାଜା ବାହାଦୁର ତତ୍‌କ୍ଷଣାତ୍ କହିଥିଲେ- 'ଯା'ଠାରୁ ଅଧିକ ହେଲେ ତ ମହାରାଜ ହୋଇଯାଇଥାନ୍ତି ।' ଦେବଗଡ଼ ରାଜଧାନୀରେ ନୂତନ ଧରଣର ଅନେକ ଗୁଡ଼ିଏ ଅଟ୍ଟାଳିକା ନିର୍ମିତ ହୋଇଥିବା ସତ୍ତ୍ୱେ ମଧ୍ୟ, ରାଜଭବନର ପ୍ରାଚୀନତ୍ୱ ସୁରକ୍ଷିତ



Digitized by srujanika@gmail.com

ଏବଂ ରାଜସଭାର ପରଂପରାରେ କିଛି ବିଗିଡ଼ିଯାଇ ନାହିଁ । ଏହାର ଯେଉଁ ସୂକ୍ଷ୍ମ କାରଣ ସବୁ ରହିଅଛି, ତାହାର ପୁଙ୍ଖାନୁପୁଙ୍ଖ ଆଲୋଚନା ନିଷ୍ପ୍ରୟୋଜନ ।(୧୮) ମୋଟକଥା ରାଜା ସାର୍ ବାସୁଦେବ ସୁଢ଼ଳଦେବ ଅନେକ ଚିନ୍ତା କରି ପୁରାତନ ଚଳଣି ବଜାୟ ରଖି ସ୍ୱର୍ଗାରୋହଣ କରିଅଛନ୍ତି । ବର୍ତ୍ତମାନର ରାଜାବାହାଦୁର ମଧ୍ୟ ସେହି ପୈତୃକ ରାଜନୀତି ରକ୍ଷା କରିବାରେ ଦୃଢ଼ବ୍ରତ । ରାଜଭବନର ଅନେକାଂଶ ହିଁ ଦ୍ୱିତଳ । କୌଣସି କୌଣସି ଅଂଶ ତ୍ରିତଳ । ସଦର ଅଟ୍ଟାଳିକାର ତ୍ରିତଳ ଗୃହରେ ଦରବାରୀ ବିଚାର ହୁଏ । ଦରବାର କାଉନ୍‌ସେଲ୍‌ର ଅଧିବେଶନ ହୁଏ । ପୂର୍ବେ ସାମୟିକ ସାମାଜିକ ବୃହତ୍ତର ମଜଲିସ ମଧ୍ୟ ହେଉଥିଲା । ବର୍ତ୍ତମାନ ରାଜକୀୟ ବୃହତ୍ତର ଦରବାର ପାଇଁ ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଦିଷ୍ଟ ହୋଇଅଛି । ବହୁ ଦୂର ବ୍ୟାପୀ ରାଜଭବନର ସମ୍ମୁଖଭାଗରେ ପୁରାତନ ପଦ୍ଧତି ଅନୁସାରେ ସୌଷ୍ଠବ ଓ ଜାକଜମକ ସଂପନ୍ନ । ସମ୍ମୁଖ ଭାଗରେ ନାତିଦୀର୍ଘ ପ୍ରାନ୍ତରର ପ୍ରାନ୍ତଭାଗରୁ ସମୁଖକୁ, ଦକ୍ଷିଣକୁ ଏବଂ ବାମକୁ ପ୍ରଶସ୍ତ ରାଜପଥ । ଏହି ରାଜପଥରୁ ଅନ୍ୟାନ୍ୟ ରାଜପଥ ସବୁ ନଗରର ଚାରିଆଡ଼କୁ ଚାଲି ଯାଇଛନ୍ତି । ବର୍ତ୍ତମାନ ରାଜବାଟୀ ଓ ତତ୍‌ସନ୍ନିହିତ ରାଜ ଅଟ୍ଟାଳିକା ଏବଂ ସମସ୍ତ ସ୍ଥାନ ରଜନୀରେ ବିଦ୍ୟୁତାଲୋକେ ଆଲୋକିତ ହୋଇଥାଏ ।

ସମୁଖ ଦୁଇ ରାଜପଥର ମଧ୍ୟବର୍ତ୍ତୀ ସ୍ଥାନରେ ନାତିନିମ୍ନ କୃତ୍ରିମ ଜଳାଶୟ । ଏହି ଜଳାଶୟର ଉଭୟ ପାର୍ଶ୍ୱରେ ରାଜପଥ ପାର୍ଶ୍ୱରେ ଧାଡ଼ି ଧାଡ଼ି ରାଜ ଅଟ୍ଟାଳିକା । ବାମପାର୍ଶ୍ୱ ପଥର ଉଭୟ ପାର୍ଶ୍ୱରେ ଚିକିତ୍ସାଳୟ, ରାଜକୁମାର ବିଦ୍ୟାଳୟ, ବିଦ୍ୟୁତ୍‌ଚାଳିତ ମୁଦ୍ରାଯନ୍ତ୍ର ଓ ସମ୍ବଲପୁର ହିତୈଷିଣୀ କାର୍ଯ୍ୟାଳୟ, ସାଧାରଣ ପୁସ୍ତକାଳୟ ଏବଂ ସଭାସମିତି ପାଇଁ ସ୍ୱତନ୍ତ୍ର ସାଧାରଣ ଗୃହ । ଏହି ସମସ୍ତ ଏବଂ ଅନ୍ୟାନ୍ୟ ଅଟ୍ଟାଳିକା ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସମୟରେ ନିର୍ମିତ ହୋଇଅଛି ।(୧୯) ତତ୍‌ପୂର୍ବେ ଏସବୁ କିଛି ନଥିଲା । ଚିକିତ୍ସାଳୟ ଗୃହ ଠିକ୍ ଆଧୁନିକ ଧରଣ ନ ହେଲେ ମଧ୍ୟ, ଏଥିରେ କାମ ଚଳି ଯାଉଅଛି; କିନ୍ତୁ ଏହାର କିଞ୍ଚିତ୍ ପରିବର୍ତ୍ତନ ହେଲେ ଭଲ ହେବ । ରାଜକୁମାର ବିଦ୍ୟାଳୟ ଦ୍ୱିତଳ ସୁନ୍ଦର ଅଟ୍ଟାଳିକା; କିନ୍ତୁ ଶିକ୍ଷାବିଭାଗ କର୍ତ୍ତୃପକ୍ଷଙ୍କ ମନ ମୁତାବକ ନୁହେଁ ବୋଲି ବର୍ତ୍ତମାନର ରାଜା ବାହାଦୁର ଏହି ରାଜପଥ ପାର୍ଶ୍ୱରେ କିଞ୍ଚିତ୍ ଦୂରରେ ଏକ ନୂତନ ବିଦ୍ୟାଳୟ ଭବନ ନିର୍ମାଣ କରାଉଅଛନ୍ତି । ଏହି ଗୃହଟି ବର୍ତ୍ତମାନ ଲାହୋରର 'ଇସ୍‌ଲାମିୟା କଲେଜ୍' ଗୃହର ଆଦର୍ଶରେ ପ୍ରସ୍ତୁତ ହେଉଅଛି ।

ଯେଉଁ ଗୃହରେ ଏତେଦିନ ରାଜକୁମାର ବିଦ୍ୟାଳୟର କାର୍ଯ୍ୟ ଚଳି ଆସୁଅଛି ଅର୍ଥାତ୍ ସ୍ୱର୍ଗୀୟ ରାଜାଙ୍କ ଦ୍ୱାରା ନିର୍ମିତ ବିଦ୍ୟାଭବନ, ବଙ୍ଗଦେଶର ଅନେକ ଅନେକ ଉତ୍କୃଷ୍ଟ ବିଦ୍ୟାଳୟ ଭବନ ସହିତ ସମକକ୍ଷତା କରିପାରେ । ବର୍ତ୍ତମାନର ରାଜାବାହାଦୁର ତତ୍



Digitized by srujanika@gmail.com

ପରିବର୍ତ୍ତେ ଯେଉଁ  ଭବନ ନିର୍ମାଣ କରାଉଅଛନ୍ତି, ସେହିପରି ଅଟ୍ଟାଳିକା ଦେବଗଡ଼ରେ କାହିଁକି, ବଙ୍ଗର ବୃହତ୍ତର ଜିଲ୍ଲା ସମୂହର ସରକାରୀ ବିଦ୍ୟାଳୟ ବା କଲେଜ ଅଟ୍ଟାଳିକାଠାରୁ କୌଣସି ଗୁଣରେ ହୀନ ନୁହେଁ । ଏହି ଗୃହର ନିର୍ମାଣ କାର୍ଯ୍ୟ ପ୍ରାୟ ଶେଷ ହୋଇ ଆସିଲାଣି । ଏହି ବିଦ୍ୟାଳୟ ଗୃହ ଦେବଗଡ଼ର ଅନ୍ୟାନ୍ୟ ସମସ୍ତ ଅଟ୍ଟଳିକା ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିବ । ରାଜପଥର ଉଭୟ ପାର୍ଶ୍ୱରେ ପ୍ରଧାନ ପ୍ରଧାନ ରାଜକର୍ମଚାରୀମାନଙ୍କ ବାସକରିବା ପାଇଁ ବର୍ତ୍ତମାନର ରାଜା ବାହାଦୁର ଅନେକ ଗୁଡ଼ିଏ ନୂତନ ଗୃହ ନିର୍ମାଣ କରାଇଅଛନ୍ତି ଏବଂ ବର୍ତ୍ତମାନ ମଧ୍ୟ ନିର୍ମାଣ କାର୍ଯ୍ୟ ଚାଲିଅଛି । ପ୍ରାନ୍ତରର ଦକ୍ଷିଣ ଦିଗ ରାଜପଥ ପାର୍ଶ୍ୱରେ ପୁରାତନ କାରାଗୃହ । ଏହି ଗୃହଟି ବର୍ତ୍ତମାନ ରାଜ ଭଣ୍ଡାରରେ ପରିଣତ ହୋଇଅଛି । ଅର୍ଥାତ୍ ରାଜ ସଂସାରର ଓ ଅତିଥି ଅଭ୍ୟାଗତ ପରିଚର୍ଯ୍ୟା ପାଇଁ ସର୍ବବିଧ ଖାଦ୍ୟଦ୍ରବ୍ୟର ଭଣ୍ଡାର, ତତ୍ପରେ ଆୟୁର୍ବେଦୀୟ ଚିକିତ୍ସାଳୟ, ପୋଷ୍ଟ ଅଫିସ୍ ଇତ୍ୟାଦି ଧାଡ଼ିରେ ଛିଡ଼ା ହୋଇଛନ୍ତି ।

## (ଛ) ବାମଣ୍ଡାର କାରାଗୃହ

ଆମ୍ଭେମାନେ ପ୍ରାତଃକାଳରେ ରାଜଦର୍ଶନରେ ଯାଇ ଶୁଣିବାକୁ ପାଇଲୁଁ, ରାଜା ବାହାଦୁର ଭ୍ରମଣରେ ବାହାରି ଯାଇଛନ୍ତି । ଭ୍ରମଣାର୍ଥେ ନାନା ସ୍ଥାନରେ ପୂର୍ବ ଦିନରୁ ଆରବ୍ଧ ସଂବାଦ ଦିଆ ହୋଇଅଛି । ଭ୍ରମଣାକ୍ଷଣକାଳ ଅପେକ୍ଷା ନ କରୁଣୁ, ତାହାଙ୍କ ସହିତ ସାକ୍ଷାତ ହେଲା । ରାଜା ବାହାଦୁର ଆମ୍ଭମାନଙ୍କୁ ଜେଲ୍‌ଖାନା ଦେଖାଇବା ପାଇଁ ନେଇଗଲେ । କାରାଗାର ସର୍ବତ୍ର  ଯେଉଁପରି, ଏଠାରେ ମଧ୍ୟ ସେହିପରି । କାରାଦ୍ୱାରରେ ଉପସ୍ଥିତ ହେବା ମାତ୍ରେ ବାହ୍ୟ ଲୌହଦ୍ୱାର ଉନ୍ମୋଚିତ ହେଲା । ତତ୍ପରେ କାରା ଅଟ୍ଟାଳିକାର ପ୍ରବେଶ ଦ୍ୱାର ବାହାରେ, ଦକ୍ଷିଣରେ ଏବଂ ବାମରେ ଦୁଇଗୋଟି ମଧ୍ୟମ ଆକାରର ପ୍ରକୋଷ୍ଠ । ଦକ୍ଷିଣଦିଗ ପ୍ରକୋଷ୍ଠରେ କାରାଧ୍ୟକ୍ଷଙ୍କ ଦପ୍ତର । ବାମପାଖର କକ୍ଷ କାରା-ଉତ୍ପନ୍ନ ଦ୍ରବ୍ୟ ସମ୍ଭାର ପ୍ରଦର୍ଶନୀ ଗୃହ । କାରାଗାରର କର୍ମଶାଳା କାରାଗାର ମଧ୍ୟରେ ନୁହେଁ । ଜେଲ୍‌ଖାନା ସମ୍ମୁଖ ରାଜପଥର ଅପର ପାର୍ଶ୍ୱରେ ଏକ ସ୍ୱତନ୍ତ୍ର ଗୃହରେ ପ୍ରତିଷ୍ଠିତ । ସେଠାରେ କୟେଦୀମାନେ ନାନା କାର୍ଯ୍ୟରେ ନିଯୁକ୍ତ ।

ଦେବଗଡ଼ କାରାଗୃହ ଦ୍ୱାରଦେଶରେ ବାମଣ୍ଡାଧିପତି ଉପସ୍ଥିତ ହେବାମାତ୍ରେ କାରାଗାର ଲୌହକପାଟ ମୁକ୍ତ ହେଲା ।  ସେ ଆମ୍ଭମାନଙ୍କୁ କକ୍ଷରୁ କକ୍ଷାନ୍ତରେ ନେଇ ସ୍ୱୟଂ ସବୁକିଛି ଦେଖାଇବାରେ ଏବଂ ବୁଝାଇବାରେ ଲାଗିଲେ । ଏଠାରେ କୟେଦୀମାନଙ୍କ ଶୟନ ପାଇଁ ଦଉଡ଼ିଆ ଖଟ କିମ୍ବା ପଟାଖଟ ବ୍ୟବହୃତ ହୁଏନାହିଁ । ଇଷ୍ଟକ ନିର୍ମିତ, ଚୂନ ଓ ବାଲିର ଆଚ୍ଛାଦନରେ ଆବୃତ, ଉଚ୍ଚ ବେଦୀ ଉପରେ ଶଯ୍ୟା ରଚନା କରି କୟେଦୀମାନେ ଶୟନ କରନ୍ତି । ଏଭଳି ଭାବରେ ପ୍ରସ୍ତୁତ ଯେ, ଶୈତ୍ୟର ସଂଭାବନା ନାହିଁ । ବ୍ୟବସ୍ଥା ମନ୍ଦ



Digitized by srujanika@gmail.com

ବୋଲି ମନେ ହେଲା ନାହିଁ । ଏହାଫଳରେ କୟେଦୀମାନଙ୍କର ଆବଶ୍ୟକମତେ ଆରାମର ଅଭାବ ହୁଏ ନାହିଁ, ଅନ୍ୟପକ୍ଷରେ ବ୍ୟୟର ପରିମାଣ ମଧ୍ୟ ଅଳ୍ପ ଏବଂ ସଦାସର୍ବଦା ମରାମତିର ମଧ୍ୟ ପ୍ରୟୋଜନ ହୁଏ ନାହିଁ । ଦୀର୍ଘ ଓ ସ୍ୱଳ୍ପକାଳୀନ ଦଣ୍ଡପ୍ରାପ୍ତ ଅପରାଧୀମାନେ ଗୃହରେ କେତେକ ପୃଥକ ପୃଥକ ଭାବରେ ବାସ କରନ୍ତି । ଏମାନଙ୍କ ରୋଗର ଚିକିତ୍ସା ପାଇଁ ଏବଂ କ୍ଷୁଧାନିବାରଣ ପାଇଁ ପର୍ଯ୍ୟାପ୍ତ ଆହାରର ବ୍ୟବସ୍ଥା ରହିଅଛି ।(୨୦) ଜଣେ କୟେଦୀ କ୍ଷିପ୍ତ ବୋଲି ଶୁଣିବାକୁ ପାଇଲୁ, ତାହାର ଅନ୍ୟ ଦୌରାତ୍ମ୍ୟର କଥା କିନ୍ତୁ କିଛି ଶୁଣିଲୁ ନାହିଁ । ସେ ରାଜା ବାହାଦୁରଙ୍କୁ ଅନେକ କଥା ବୁଝାଇବାକୁ ଚେଷ୍ଟା କରିବାରେ ଲାଗିଲା । ତା' ହାତରେ ହାତକଡ଼ି ଅଛି, କିନ୍ତୁ ପାଦରେ ବେଡ଼ି ନାହିଁ, ସେ କାରାପ୍ରାଙ୍ଗଣ ମଧ୍ୟରେ ମୁକ୍ତଭାବରେ ବୁଲାବୁଲି କରୁଅଛି । ରାଜାବାହାଦୁର ତାହା ସହିତ ଏବଂ ଅନ୍ୟ ଦୁଇଚାରିଜଣ କଏଦୀଙ୍କ ସହିତ କିଛି କଥାବାର୍ତ୍ତା କଲେ । ପରେ ଆମ୍ଭମାନଙ୍କୁ ସାଙ୍ଗରେ ନେଇ ସେ କାରାପ୍ରାଙ୍ଗଣର ଏକ ସ୍ୱତନ୍ତ୍ର ଅଂଶରେ ଉପସ୍ଥିତ ହେବାମାତ୍ରେ, କାରକର୍ମଚାରୀ ଆସି ଦ୍ୱାର ଖୋଲିଦେଲେ । ଏହି ଅଂଶରେ ସ୍ତ୍ରୀ-ଲୋକମାନଙ୍କ କାରାଗାର । ଏଠାରେ କେବଳ ଜଣେ ମାତ୍ର ସ୍ତ୍ରୀ-ଅପରାଧୀ ଆବଦ୍ଧ ହୋଇଥିବା ଦେଖିଲୁ । ଏହାର ଅପରାଧ ଗୁରୁତର । ଶିଶୁହତ୍ୟା ଅପରାଧରେ ସେ ଯାବଜ୍ଜୀବନ କାରାବାସ ଆଦେଶ ପାଇଅଛି । ଶୁଣିବା ମାତ୍ରେ ହୃଦୟ ମନ ଅବସନ୍ନ ହୋଇ ପଡ଼ିଲା, ତା' ଉପରେ, ସେହି ସ୍ତ୍ରୀ-ଲୋକଟିର ଅଜସ୍ର ଅଶ୍ରୁପାତ ମନକୁ ଆହୁରି ଅଧିର କଲା, ସେତେବେଳେ ଲୋକପାଳକ ବାମଣ୍ଡାରାଜାଙ୍କ ମୁଖକୁ ଚାହିଁଲୁ । ଦେଖିଲୁ, ସ୍ଥିର, ଶାନ୍ତ ଓ ଗଭୀର ଭାବ ତାହାଙ୍କ ମନ ପୂର୍ଣ୍ଣ କରି ମୁଖମଣ୍ଡଳରେ ପରିସ୍ଫୁଟ ହୋଇଅଛି । ନ୍ୟାୟପରାୟଣ ରାଜ ହୃଦୟରେ ଯେପରି ଦୟାର ଲେଶମାତ୍ର ନାହିଁ । ବାହାରକୁ ଆସି ଦ୍ୱାର ବନ୍ଦ କରିବାର ଆଦେଶ ଦେଇ ମୋତେ କହିଲେ, "ଏହାର ଅପରାଧ ତୁଳନାରେ ଲଘୁଦଣ୍ଡ ମିଳିଅଛି । ସ୍ତ୍ରୀ-ଲୋକ ବୋଲି ଦୟାର ପାତ୍ରୀ ହୋଇଅଛି, ଯଦି ଦୈବାତ୍ ପରିବର୍ତ୍ତନ ଦେଖାଯାଏ, ହୁଏତ ଅବ୍ୟାହତ ପାଇପାରେ, ଏହି ସଂଭାବନା ହେତୁ ଏହାର ପ୍ରାଣଦଣ୍ଡ ଆଦେଶ ହୋଇନାହିଁ ।"

ଅପରାଧର ଗୁରୁତ୍ୱ ହିସାବରେ ବାମଣ୍ଡା ରାଜାଙ୍କ ଅପରାଧୀକୁ ପ୍ରାଣଦଣ୍ଡ ଦେବା ଅଧିକାର ଅଛି । ସେହି କ୍ଷମତା ଉପରେ ଆଉ ଅପିଲ୍ ନାହିଁ । ରାଜା ବାହାଦୁର କହିଲେ- 'ଶେଷ ହୋଇଗଲେ ଏହି ସଂସାରରେ ମନୁଷ୍ୟ ଆଉ ପରିବର୍ତ୍ତନର ସୁଯୋଗ ପାଏ ନାହିଁ । ତେଣୁ ସ୍ୱର୍ଗୀୟ ବାମଣ୍ଡା ରାଜା ଅନେକ ସ୍ଥଳରେ ଦୀର୍ଘ ଅବରୋଧର ଅଧିକ ପକ୍ଷପାତି ଥିଲେ ।' ସାର୍ ବାସୁଦେବ ସୁଢ଼ଳଦେବଙ୍କ ସମୟରେ ଏବଂ ବର୍ତ୍ତମାନର ରାଜା ବାହାଦୁରଙ୍କ ସମୟର । ଏହି ଧରଣର ଅପରାଧ, ପରବର୍ତ୍ତୀ ଚରିତ୍ର ଓ ଆଚରଣ ଗୁଣରେ, ସେହିପରି



Digitized by srujanika@gmail.com

ଅବ୍ୟାହତି ପାଇ ଭଦ୍ରଭାବରେ ଚଳୁଅଛନ୍ତି । ସେ ସେହିପରି ଦୁଇଚାରିଜଣ ଲୋକଙ୍କୁ ଦେଖାଇଲେ ଏବଂ ଦଣ୍ଡପ୍ରାପ୍ତ ବ୍ୟକ୍ତିଙ୍କୁ ସଂଶୋଧନର ସୁଯୋଗ ଦେଇ ଏବଂ ସେମାନଙ୍କୁ ବିଶ୍ୱାସ କରି ଉତ୍ତମ ଫଳ ପାଇଅଛନ୍ତି, ତାହାର ମଧ୍ୟ ଦୃଷ୍ଟାନ୍ତ, କାରାମୁକ୍ତ ଓ କର୍ମରେ ନିଯୁକ୍ତ ଲୋକ ଦେଖାଇ କହିଲେ- 'ଏମାନେ ଦଣ୍ଡପ୍ରାପ୍ତ ଅପରାଧୀ ।' ଏଭଳି ଜଣେ ବ୍ୟକ୍ତି ପ୍ରତି ମୋର ସହାନୁଭୂତି ସଞ୍ଚାର ହେବା ଫଳରେ, ତାହାର ଅଙ୍ଗ ସ୍ପର୍ଶ କରି ସମାଦର ପ୍ରକାଶ କରିବାରୁ, ସେହି ବ୍ୟକ୍ତି ଆନନ୍ଦ ଅନୁଭବ କଲେ ।'

କାରାଶିଳ୍ପ ପ୍ରଦର୍ଶନୀ ଗୃହରେ କାରାବାସୀଙ୍କ ଦ୍ୱାରା ପ୍ରସ୍ତୁତ ବହୁବିଧ ଦ୍ରବ୍ୟ ବିବିଧ ବିଧାନେ ସଜ୍ଜିତ ରହିଅଛି, ଦେଖିବା ମାତ୍ରେ ଚକ୍ଷୁ ପରିପୂର୍ଣ୍ଣ ହୋଇଯାଏ, ହୃଦୟରେ ଆନନ୍ଦର ସଂଚାର ହୁଏ । ମନେ ହେଲା, ଏହି ସମସ୍ତ ଦ୍ରବ୍ୟ ଯେଉଁମାନେ ପ୍ରସ୍ତୁତ କରିବା ଶିଖିଅଛନ୍ତି, ସ୍ୱଭାବଗୁଣରେ ସେମାନେ କାରାବାସରୁ ମୁକ୍ତିଲାଭ କରି କାରା ଶିଳ୍ପାଳୟରେ ବା ଅନ୍ୟତ୍ର ଶ୍ରମ କରି ଅବାଧରେ ଜୀବିକା ନିର୍ବାହ କରି ପାରନ୍ତି । ପୂଜା, ଆହ୍ନିକ ଓ ଆହାରାଦିରେ ବସିବାର ଆସନ ଦେଖିଲି । ସେଗୁଡ଼ିକ ନିର୍ମାଣ ପରିପାଟୀ ସେଗୁଡ଼ିକୁ ସହଜରେ ହିଁ ଲୋଭନୀୟ ଦ୍ରବ୍ୟରେ ପରିଣତ କରିଅଛି । 'ପର ଦ୍ରବ୍ୟରେ ଲୋଭ କରିବା ଅନୁଚିତ' ତେଣୁ ଆମ୍ଭେମାନେ ଲୋଭ ସଂବରଣ ସାଧନାରେ ତତ୍ପର ହେଲୁ । ବିବିଧ ବର୍ଣ୍ଣର ସୂତାରେ ପ୍ରସ୍ତୁତ କ୍ଷୁଦ୍ର-ବୃହତ୍ ସତରଞ୍ଜି ଦେଖିଲେ ଆଖି ଖୋସି ହୋଇଯାଏ । ଏହିପରି ନାନା ବର୍ଣ୍ଣର ବୃହତ୍ ସତରଞ୍ଜି ଖଣ୍ଡର ମୂଲ୍ୟ ପଞ୍ଚଅଣାରୁ କମ୍ ହେବ ନାହିଁ । ଏହି ସମସ୍ତ ଦ୍ରବ୍ୟ ପ୍ରସ୍ତୁତ ହୁଏ; କିନ୍ତୁ କୟେଦୀଙ୍କର ସଂଖ୍ୟା ହିସାବରେ ଏତେ ଲୋକ ଏହି କାର୍ଯ୍ୟରେ ନିଯୁକ୍ତ ହୋଇନାହାନ୍ତି ଯେ, ସରକାରଙ୍କ ଅଭାବ ପୂର୍ଣ୍ଣ କରି ରାଜ୍ୟ ବାହାରେ ବିକ୍ରୟ କରାଯାଇପାରେ । କାରାଗାରରେ ଆବଦ୍ଧ ଅପରାଧୀଙ୍କର ସଂଖ୍ୟା ଅଳ୍ପ, ତେଣୁ ଏହିପରି କାର୍ଯ୍ୟରେ ବହୁ ଲୋକ ନିଯୁକ୍ତି ହୋଇ ପାରନ୍ତି ନାହିଁ ।*(୨୧)*

ଏହିପରି ବିବିଧ ଦ୍ରବ୍ୟ ବାମଣ୍ଡାର ରାଜକୀୟ କାରାଗାରରେ ପ୍ରସ୍ତୁତ ହେଉଅଛି । ରେଶମର କାମ- ଟସର, ଗରଦ ଓ ଅନ୍ୟାନ୍ୟ ନାନାବିଧ ପାଟବସ୍ତ୍ର ପ୍ରସ୍ତୁତ ହେଉଅଛି । ବନ୍ଦୀମାନଙ୍କ ଦ୍ୱାରା ଏହି ସମସ୍ତ ଦ୍ରବ୍ୟ ପ୍ରସ୍ତୁତ କରାଇବାର ସୂଚନା କାଳରେ, ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ବହୁ ଅର୍ଥ ବ୍ୟୟରେ କଏଦୀମାନଙ୍କୁ ଶିକ୍ଷା ଦେବାପାଇଁ କାରିଗର ନିଯୁକ୍ତ କରିବାକୁ ପଡିଥିଲା । ପୂର୍ବରୁ କୁହାଯାଇଅଛି, ସେ ଯେତେବେଳେ ରାଜ୍ୟଭାର ଗ୍ରହଣ କରନ୍ତି, ସେତେବେଳେ ଏବଂ ତତ୍ପରେ ଅନେକ ଦିନ ପର୍ଯ୍ୟନ୍ତ ରାଜକୋଷରେ ପ୍ରଚୁର ଅର୍ଥ ମହଜୁଦ୍ ନଥିବାରୁ, ମୃତ୍ତିକାରେ ପ୍ରାଚୀର ବେଷ୍ଟିତ ମୃତ୍ତିକା ନିର୍ମିତ ଗୃହରେ କୟେଦୀମାନେ ଆବଦ୍ଧ ରହୁଥିଲେ । ତତ୍ପରେ ଯେଉଁ ଇଷ୍ଟକ ନିର୍ମିତ କାରାଗୃହ ନିର୍ମିତ ହୋଇଥିଲା, ତାହା ମଧ୍ୟ ସର୍ବତୋଭାବେ ଉପଯୋଗୀ ନ ହେବା ଫଳରେ ତାହା କ୍ରମେ ପରିତ୍ୟକ୍ତ ହୁଏ ।*(୨୨)* ପରେ ବହୁ ଅର୍ଥ ବ୍ୟୟରେ ଏହି ନୂତନ ଗୃହ ନିର୍ମିତ ହୋଇଅଛି । ବର୍ତ୍ତମାନର କାରାଗୃହ



Digitized by srujanika@gmail.com

ମଧ୍ୟ ନିର୍ମାଣ କରାଇଥିଲେ ।(୨୩) ବହୁ ଅର୍ଥ ବ୍ୟୟ କରି ଏହି ସର୍ବଜନ ପରିତ୍ୟକ୍ତ ଓ ଚିରନିନ୍ଦିତ ବ୍ୟକ୍ତିମାନଙ୍କୁ ନାନାବିଧ ଅର୍ଥକରୀ ଶିଳ୍ପଶିକ୍ଷା ଦାନର ବ୍ୟବସ୍ଥା ସେ କରାଇଥିଲେ । ସମ୍ବଲପୁର ହିତୈଷିଣୀର ମୁଦ୍ରଣ କାର୍ଯ୍ୟରେ ବନ୍ଦୀନିଯୋଗ ସେ କରାଇଥିଲେ । ତାହାଙ୍କ ଠାରୁ ଆରମ୍ଭ ହୋଇ ବର୍ତ୍ତମାନର ରାଜା ବାହାଦୁରଙ୍କ ଦ୍ୱାଦଶ ବର୍ଷ ବ୍ୟାପୀ ରାଜ୍ୟପାଳନ ମଧ୍ୟରେ କେତେ ଅପରାଧୀ ବ୍ୟକ୍ତି କର୍ମକ୍ଷମ ହୋଇ ସ୍ୱଭାବଗୁଣରେ ଅବ୍ୟାହତି ଲାଭ କରି ଆତ୍ମପୋଷଣରେ ସକ୍ଷମ ହୋଇଅଛନ୍ତି । ରାଜା ସାର୍ ବାସୁଦେବ ସୁଢ଼ଳଦେବ କର୍ତ୍ତୃକ ସୂଚୀତ କାରାଶାସନ ପଦ୍ଧତିର ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନା କଲେ । କବିଙ୍କ ଭାଷାରେ କହିବାକୁ ପଡ଼େ –

ବାମଣ୍ଡାର ଦିବାକର        ଗୁଣମୟ ଦଣ୍ଡଧର
ନ୍ୟାୟର ବିଚାରେ ଦୟାର ସାଗର
ତୁଳନା ନାହିଁ ତ ତବ        ଗଡ଼ଜାତେ କି କହିବି
ଅତୁଳିତ ତୁମ୍ଭେ ଦେଶ ଦେଶାନ୍ତରେ ।
ନିଜ ଆଚରଣ ଗୁଣେ        ଚିରଜୟୀ ସର୍ବଜନେ
ଘୋଷେ କୀର୍ତ୍ତି ତବ, ଓଡ଼ିଶା ଭୁବନେ
ମରଣେ ଜୀବନ ଦାନ,        କାର୍ଯ୍ୟ ତବ ସୁମହାନ,
ରଟେ ଯଶ ତବ ଭାରତ ନନ୍ଦନେ ।

କାରାଗରରୁ ନିଷ୍କ୍ରାନ୍ତ ହୋଇ ରାଜା ବାହାଦୁର ଆମ୍ଭମାନଙ୍କୁ ରାଜପଥର ଅପରପାର୍ଶ୍ୱରେ ବନ୍ଦୀମାନଙ୍କ କାର୍ଯ୍ୟାଳୟକୁ ନେଇଗଲେ । ସେହି ସ୍ଥାନରେ ଉପସ୍ଥିତ ହୋଇ, ସେ ଗୋଟି ଗୋଟି କରି ପ୍ରତ୍ୟେକ କାମ ଆମ୍ଭମାନଙ୍କୁ ଦେଖାଇବା ଓ ବୁଝାଇବାରେ ଲାଗିଲେ । ଏଠି ହସ୍ତତନ୍ତ୍ରରେ ରେଶମ ଓ ସୂତାର ନାନାବିଧ କାର୍ଯ୍ୟ ହେଉଅଛି । ସତରଞ୍ଜି, ଆସନ ପ୍ରଭୃତିରେ ଯେପରି ନିପୂଣ ଶିଳ୍ପୀର ବୟନ ବିଦ୍ୟାର ପରିଚୟ ବିଦ୍ୟମାନ, ଏହି ସମସ୍ତ ଦ୍ରବ୍ୟ ଗଢ଼ଣର ବ୍ୟବସ୍ଥା ଦେଖି ବେଶ୍ ବୁଝାପଡ଼ିଲା ଯେ, ଅସାମାନ୍ୟ ଧୈର୍ଯ୍ୟ ଭିନ୍ନ ଏ ସମସ୍ତ କାର୍ଯ୍ୟ ସର୍ବାଙ୍ଗ ସୁନ୍ଦର କରି ତୋଳାଯାଇ ନପାରେ । ଅପରାଧୀର ଚିତ୍ତରେ ଉତ୍କଣ୍ଠା ଅଶାନ୍ତି ଥିଲେ କାର୍ଯ୍ୟରେ ନାନା ଦୋଷ ଘଟିବାର ସଂଭାବନା । ଏଠାକାର ଶାସନ ପଦ୍ଧତି ଫଳରେ,ସେହି ଦୋଷ ସଂଘଟନ ନିବାରିତ ହୋଇଅଛି । ଏହାହିଁ ମନେ ହେଲା । ରେଶମ ନିର୍ମିତ ନାନାବିଧ କାର୍ଯ୍ୟ ମଧ୍ୟ ଏଠାରେ ସୁନ୍ଦର ଭାବରେ ସଂପନ୍ନ ହେଉଅଛି । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହି କାର୍ଯ୍ୟର ମଧ୍ୟ ଆରମ୍ଭ କରି ଯାଇଛନ୍ତି ।



Digitized by srujanika@gmail.com

ବର୍ତ୍ତମାନର ରାଜା ବାହାଦୁରଙ୍କ ଯତ୍ନ ଓ ଚେଷ୍ଟା ଫଳରେ କେଓଲିନ୍ ଜାତୀୟ ମୃତ୍ତିକା*(୨୪)* ନିର୍ମିତ ନାନବିଧ ଦ୍ରବ୍ୟ (pottery works) ପ୍ରସ୍ତୁତ ହେଉଅଛି । ଏହି ସମସ୍ତ ଦ୍ରବ୍ୟ ମଧ୍ୟରେ ସ୍ୱର୍ଗୀୟ ରାଜାଙ୍କର ଅର୍ଦ୍ଧାବୟନ ମୂର୍ତ୍ତି ଓ ରବି ବର୍ମାକୃତ ମେନକା, ଶକୁନ୍ତଳା ଚିତ୍ରର ପୂର୍ଣ୍ଣାବୟବ ନାତିବୃହତ୍ ମୂର୍ତ୍ତି ପ୍ରସ୍ତୁତ ହେଉଅଛି । ନାନା ଆକାରର ପ୍ଲେଟ ଓ ଗିନା ଏଠାରେ ପ୍ରସ୍ତୁତ ହୁଏ । ଚା'କପ୍ ଓ ପ୍ଲେଟ ମଧ୍ୟ ବାଦ୍ ପଡ଼ିନାହିଁ, ଯଦିଓ ରାଜଭବନରେ ଚା' ପାନର ବିଶେଷ ପ୍ରଚଳନ ନାହିଁ । ଏହି ବିଷୟରେ ବାମଣ୍ଡା ନିହାତି ପଶ୍ଚାଦପଦ । ଏହା ନିନ୍ଦା ନା ପ୍ରଶଂସା ପାଠକେ ବିଚାର କରିବେ । ଏହି ସମସ୍ତ ଦ୍ରବ୍ୟଗୁଡ଼ିକ ଗଢ଼ଣପାଇଁ ଯେଉଁ ଆଦର୍ଶ ଅନୁଯାୟୀ ଛାଞ୍ଚର ପ୍ରୟୋଜନ ସେଗୁଡ଼ିକ ମଧ୍ୟ ଏହି କାରାକର୍ମଶାଳାରେ ପ୍ରସ୍ତୁତ ହୋଇଅଛି । ସମସ୍ତ ମୂର୍ତ୍ତି ଗଢ଼ିବା, ପୋଡ଼ିବା ପରେ ଏଗୁଡ଼ିକ ଯଥାଯଥ ବର୍ଣ୍ଣବିନ୍ୟାସ ଓ ସମସ୍ତ କାର୍ଯ୍ୟ ହିଁ ଏହିଠାରେ ସଂପନ୍ନ ହେଉଅଛି । ଏହି କାର୍ଯ୍ୟରେ ବର୍ତ୍ତମାନର ରାଜାଙ୍କର ଅନୁରାଗ ଅତ୍ୟନ୍ତ ଅଧିକ, କାରଣ୍ ପୂର୍ବରୁ କୁହାଯାଇଅଛି ଯେ, ସେ ଚିତ୍ର ବିଦ୍ୟାର ଜଣେ ନିପୁଣ ଶିଳ୍ପୀ । ସମ୍ବଲପୁର ହିତୈଷିଣୀ ମୁଦ୍ରାଯନ୍ତରେ ମଧ୍ୟ ଏହି କାରା-ବିଶ୍ୱକର୍ମାଳୟରେ ଯେଉଁ ସମସ୍ତ ବନ୍ଦୀ ନିଯୁକ୍ତ, ସେମାନଙ୍କ ଭାବଭଙ୍ଗୀ ଏବଂ ବ୍ୟବହାରରେ ଶାନ୍ତ ଭାବର ପରିଚୟ ମିଳିଥିଲା । ରାଜାବାହାଦୁର ମନେ କରନ୍ତି ଯେ, ଏମାନେ ଦିନେ ସ୍ୱଭାବ ଗୁଣରେ ହୁଏତ କାରାଗରରୁ ଅବ୍ୟାହତି ଲାଭ କରିବେ ।

## (ଜ) ରାଜା ଅମାତ୍ୟ ଓ କର୍ମଚାରୀ

ରାଜା ବାହାଦୁର ବ୍ରଜସୁନ୍ଦର ଦେବଙ୍କ ସମୟରେ ନିଯୁକ୍ତ ଶ୍ରୀନିବାସ ମୁନ୍‌ସୀ ନାମକ ଜନୈକ କର୍ମଚାରୀ ବାମଣ୍ଡା ରାଜ୍ୟରେ ଅତ୍ୟଧିକ ବିଶ୍ୱାସଭାଜନ ଥିଲେ । ସେ ନିଜ ସ୍ୱଭାବଗୁଣ ହେତୁ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ନିତ୍ୟାନ୍ତ ପ୍ରିୟପାତ୍ର ହୋଇଥିଲେ । ସିଂହାସନ ଆରୋହଣ କିଛି କାଳ ପରେ, ଏକଦା କେତେଜଣ ବ୍ୟକ୍ତି ଚକ୍ରାନ୍ତ କରି ରାଜା ବାହାଦୁର ସାର୍ ବାସୁଦେବ ସୁଢ଼ଳଦେବଙ୍କ ପ୍ରାଣସଂହାର ଚେଷ୍ଟାରେ ଥିଲେ । ସେହି ସମୟରେ, ଏହି ବିଶ୍ୱାସୀ କର୍ମଚାରୀ ଶ୍ରୀନିବାସ ମୁନ୍‌ସୀଙ୍କ ଯତ୍ନ ଚେଷ୍ଟା ଓ ସହାୟତା ଫଳରେ ଚକ୍ରାନ୍ତକାରୀମାନଙ୍କ ଗୁପ୍ତ ଆକ୍ରମଣରୁ ରାଜା ସାର୍ ବାସୁଦେବ ରକ୍ଷା ପାଇଥିଲେ । ରାଜା ସାର୍ ବାସୁଦେବଙ୍କ ରାଜକାର୍ଯ୍ୟ ପରିଚାଳନା ଆରମ୍ଭରୁ ଏହି ରାଜ କର୍ମଚାରୀ ଶ୍ରୀନିବାସ ମୁନ୍‌ସୀ ଦୀର୍ଘକାଳ ନାନା କାର୍ଯ୍ୟରେ ସହାୟତା କରିଥିଲେ । ସେ ଶେଷବେଳକୁ ବାମଣ୍ଡାର ପ୍ରଥମ ଶ୍ରେଣୀ ମାଜିଷ୍ଟେଟ୍ ହୋଇଥିଲେ । ସେହି କାର୍ଯ୍ୟରେ ବର୍ତ୍ତମାନ ରାଜାଙ୍କ ଆବାଲ୍ୟ ସହଚର ତାହାଙ୍କ ସତୀର୍ଥ, ଗୁଣବାନ, ବିଦ୍ୟାନୁରାଗୀ ଓ ମାତୃଭାଷା ସେବକ ଶ୍ରୀଯୁକ୍ତ ଜଳନ୍ଧର ଦେବ, ରାଜଧାନୀ ଦେବଗଡ଼ ସଦରରେ ମାଜିଷ୍ଟ୍ରେଟ ।



Digitized by srujanika@gmail.com

ରାଜସ୍ୱ ଆଦାୟର ଭାର ବର୍ତ୍ତମାନ ରାଜାବାହାଦୁର ନିଜ ହସ୍ତରେ ରଖିଅଛନ୍ତି । ଆଉ ସାଧାରଣ ଭାବରେ ଦେଓ୍ୱାନୀ ଓ ଫୌଜଦାରୀବିଚାର ବିଭାଗ ଶ୍ରୀଯୁକ୍ତ ଜଳନ୍ଧର ଦେବଙ୍କ ଉପରେ ନ୍ୟସ୍ତ ହୋଇଅଛି; କିନ୍ତୁ ସଦର ଓ ମଫସଲର ମହକୁମା ଗୁଡ଼ିକର ଭାରପ୍ରାପ୍ତ ବିଚାରକଗଣଙ୍କ ହସ୍ତରେ ଚୂଡ଼ାନ୍ତ ନିଷ୍ପତ୍ତିର ଭାର ନାହିଁ । ସେମାନଙ୍କ ବିଚାର ଫଳ ଯଦି ପ୍ରଜାସାଧାରଣଙ୍କ ନ୍ୟାଯ୍ୟ ସତ୍ତ୍ୱର ବିରୁଦ୍ଧରେ ଯାଉଅଛି ବୋଲି ପ୍ରଜାମାନେ ଅନୁଭବ କରନ୍ତି, ତାହାହେଲେ ସେମାନଙ୍କ ଅପିଲ୍ ଶୁଣିବାପାଇଁ ଉଚ୍ଚ ଅଦାଲତ ମଧ୍ୟ ପ୍ରତିଷ୍ଠିତ ହୋଇଅଛି । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଜୀବଦ୍ଦଶାରେ ରାଜକାର୍ଯ୍ୟର ଅନେକାଂଶ ପରିଚାଳନା ଭାର ତଦାନିନ୍ତନ ଯୁବରାଜ (ବର୍ତ୍ତମାନର ରାଜା) ଶ୍ରୀଯୁକ୍ତ ସଚ୍ଚିଦାନନ୍ଦଙ୍କ ହସ୍ତରେ ଅର୍ପଣ କରି ନିଜେ ଅପିଲ୍‌ର ବିଚାର କରୁଥିଲେ ଏବଂ ଅଦାଲତରେ ଜଜ୍‌ଙ୍କର କାର୍ଯ୍ୟ କରୁଥିଲେ ।*(୨୫)* ବର୍ତ୍ତମାନ ସେହି କାର୍ଯ୍ୟ ବର୍ତ୍ତମାନର ରାଜା ବାହାଦୁର ସ୍ୱୟଂ ସଂପନ୍ନ କରୁଅଛନ୍ତି ।

ଏହି ସ୍ଥଳରେ ଏକ ପ୍ରସଙ୍ଗର ଉତ୍ଥାପନ ଏବଂ ସେ ସମ୍ବନ୍ଧରେ ଆଲୋଚନା ଆବଶ୍ୟକ । ପ୍ରାୟ ପଚିଶ ବର୍ଷ ତଳେ ଶ୍ରୀଯୁକ୍ତ ରେବତୀ ମୋହନ ଦାଶ ଏମ୍.ଏ. ମହାଶୟ କଲିକତା ସଂସ୍କୃତ କଲେଜର ତଦାନିନ୍ତନ ଅଧ୍ୟକ୍ଷ ସ୍ୱର୍ଗୀୟ ମହେଶଚନ୍ଦ୍ର ନ୍ୟାୟରତ୍ନ ମହାଶୟଙ୍କ ନିର୍ବାଚନ ଦ୍ୱାରା 'ବାମଣ୍ଡା' ବିଦ୍ୟାଳୟର ପ୍ରଧାନ ଶିକ୍ଷକ ପଦପ୍ରାପ୍ତ ହୋଇ ବାମଣ୍ଡା ଯାଇଥିଲେ । ତାଙ୍କ ସମୟରେ ଏହି ବିଦ୍ୟାଳୟ ଦ୍ୱିତୀୟ ଶିକ୍ଷକ ପଦଟି ଶୂନ୍ୟ ହେଲା, ବି.ଏ. ପରୀକ୍ଷା ଦେଇ ପରୀକ୍ଷାର ଫଳାଫଳ ଜାଣିବା ପାଇଁ ଉଦ୍‌ଗ୍ରୀବ ତାଙ୍କର ଜଣେ ଆତ୍ମୀୟ ତାଙ୍କ ପ୍ରରୋଚନାରେ ବାମଣ୍ଡା ବିଦ୍ୟାଳୟର ଦ୍ୱିତୀୟ ଶିକ୍ଷକ ପଦଭାର ଗ୍ରହଣ କରି ବାମଣ୍ଡା ଯାତ୍ରା କରନ୍ତି । ସେ ଆମ୍ଭମାନଙ୍କର ତଥା ବହୁ ଜନଙ୍କର ପରିଚିତ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦାଶ ।

ରେବତୀ ବାବୁ ବିଦ୍ୟାଳୟ ପ୍ରଧାନ ଶିକ୍ଷକ ଏବଂ ରାଜାଙ୍କର ପ୍ରାଇଭେଟ ସେକ୍ରେଟେରୀ । ରାଜା ବାହାଦୁର ତାଙ୍କର ପରିଚାଳିତ ସେସନ୍ ଅଦାଲତର ବିଚାରରେ ରେବତୀ ବାବୁଙ୍କୁ ଆଇନ୍‌ର ବିଭିନ୍ନ ଟିକିନିଖି ବିଷୟରେ ସାହାଯ୍ୟ କରିବାପାଇଁ ଅନୁରୋଧ କରନ୍ତି । ରେବତୀ ବାବୁ ସଜ୍ଜନ ଓ ବିଦ୍ୱାନ, କିଛି ବେଶୀ ମାତ୍ରାରେ ନିରୀହ ପ୍ରକୃତିର ବ୍ୟକ୍ତି, ତେଣୁ ସେ କୌଣସିମତେ ଏହି କାର୍ଯ୍ୟ ଭାର ଗ୍ରହଣ କରିବା ପାଇଁ ବା ସହାୟତା କରିବାପାଇଁ ସମ୍ମତ ହେଲେ ନାହିଁ, କହିଲେ- 'ମହାରାଜ୍ ! ଏଠାରେ ଯଦି ଏହି କାମ କରିବାକୁ ହେବ, ତେବେ ଓକିଲ ହୋଇଥିଲେ ଭଲ ହୋଇଥାନ୍ତା ।' ସେ ଏହି କାର୍ଯ୍ୟ ଭାର ଗ୍ରହଣ କରିବା ପାଇଁ ଅନିଚ୍ଛୁକ ହୋଇ ନବାଗତ ଆତ୍ମୀୟ ଯୋଗେଶ ବାବୁଙ୍କୁ ଏହି



Digitized by srujanika@gmail.com

କାର୍ଯ୍ୟ ଭାର ଦେବାପାଇଁ ଇଙ୍ଗିତ ଦେଲେ । ଯୋଗେଶ ବାବୁ ମଧ୍ୟ ସଜ୍ଜନ, ସରଳ, ଶାନ୍ତ, ବୁଦ୍ଧିମାନ ଓ କର୍ମ-ପଟୁ, ସଂଗେ ସଂଗେ ସେହି ଅଳ୍ପ ବୟସରେ ମଧ୍ୟ ସତ୍ ସାହସୀ ଓ ରଜୋଗୁଣ ସଂପନ୍ନ ଯୁବା ପୁରୁଷ ।

ବ୍ରିଟିଶ ଭାରତରେ ଇଂରେଜଙ୍କ ଅଦାଲତ ସମୂହରେ ଯେଉଁ ସବୁ ବିଧିବ୍ୟବସ୍ଥା ପ୍ରଚଳିତ, ସେଗୁଡ଼ିକ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ବୁଝାଇ ଦେବା ଦାୟିତ୍ୱ ଯୋଗେଶବାବୁ ଗ୍ରହଣ କଲେ । ସେ କ୍ରମେ ସ୍ୱର୍ଗୀୟ ରାଜା ବାହାଦୁରଙ୍କ ଉଚ୍ଚତର ରାଜକାର୍ଯ୍ୟ ପରିଚାଳନାରେ ପ୍ରଧାନ ସହାୟ ହୋଇ ପଡ଼ିଲେ । ଏହି ସମୟରେ ରେବତୀବାବୁ ବାମଣ୍ଡା ତ୍ୟାଗ କରି ଚାଲିଯିବା ଫଳରେ ଯୋଗେଶ ବାବୁ ପ୍ରାଇଭେଟ ସେକ୍ରେଟେରୀ ଓ ବିଦ୍ୟାଳୟ ପ୍ରଧାନ ଶିକ୍ଷକ ପଦ ପ୍ରାପ୍ତ ହୋଇ ସ୍ୱର୍ଗୀୟ ରାଜାଙ୍କ ଶେଷଦିନ ପର୍ଯ୍ୟନ୍ତ ତ୍ରିବିଧ କାର୍ଯ୍ୟ ଉତ୍ତମ ଭାବରେ ସଂପନ୍ନ କରିବାରେ ଲାଗିଲେ । ତାଙ୍କ ସମୟରେ କ୍ରମେ କ୍ରମେ ରାଜକାର୍ଯ୍ୟ ପରିଚାଳନା କ୍ଷେତ୍ରରେ ଏପରି ପରିବର୍ତ୍ତନ ସବୁ ଅନିବାର୍ଯ୍ୟ ହେବାକୁ ଲାଗିଲା ଯେ ସେହି ସୂତ୍ରରେ ରାଜା ବାସୁଦେବ ସୁଢ଼ଳଦେବ ପରିବର୍ତ୍ତିତ ସମୟ ସହିତ ରାଜ୍ୟ ପାଳନ ପଦ୍ଧତିର ଶ୍ରେଷ୍ଠତା ରକ୍ଷାପାଇଁ ଜୀବନ ବିସର୍ଜନ କରି ଯାଇଅଛନ୍ତି ।(୨୬) ପିତୃ ଇଂଗିତରେ ବର୍ତ୍ତମାନର ରାଜା ବାହାଦୁର ରାଜକାର୍ଯ୍ୟରେ ସହାୟତା ପାଇଁ ସ୍ୱତନ୍ତ୍ର କର୍ମଚାରୀଙ୍କ ପ୍ରୟୋଜନ ଅନୁଭବ କରି ଯୋଗେଶବାବୁଙ୍କୁ ବିଦ୍ୟାଳୟରୁ ଅବସର ଦେଲେ ଏବଂ ନିଜର ପ୍ରାଇଭେଟ ସେକ୍ରେଟେରୀ ଭାବରେ ନିଯୁକ୍ତ କଲେ । ବିଦ୍ୟାଳୟ ପାଇଁ ସ୍ୱତନ୍ତ୍ର ଶିକ୍ଷକ ନିଯୁକ୍ତ କରାଗଲା । ଏହି ଦିନଠାରୁ ଯୋଗେଶ ବାବୁ ବାମଣ୍ଡା ରାଜକାର୍ଯ୍ୟର ପ୍ରାଇଭେଟ ସେକ୍ରେଟେରୀ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦାଶ ମହାଶୟଙ୍କୁ ରାଜକାର୍ଯ୍ୟ ପରିଚାଳନାରେ ମନ୍ତ୍ରଣାଦାତା ରୂପେ ଗ୍ରହଣ କରି, କେବଳ ଯେ କୌଣସି କାରଣରେ କ୍ଷତିଗ୍ରସ୍ତ ହୋଇନାହାନ୍ତି ତାହା ନୁହଁ । ଦୀର୍ଘକାଳ ପୁତ୍ର ନିର୍ବିଶେଷରେ ସ୍ନେହର ଦୃଷ୍ଟିରେ ଦେଖିଅଛନ୍ତି ଏବଂ ସର୍ବବିଧ ଗୁରୁତର କାର୍ଯ୍ୟରେ ସହାୟତା ଲାଭକରି ଆନନ୍ଦ ଅନୁଭବ କରିଅଛନ୍ତି, ରାଜ ଦପ୍ତରରୁ ବହୁ ସଂଭ୍ରାନ୍ତ ବ୍ୟକ୍ତିଙ୍କ ସହିତ ପତ୍ରାଳାପରେ ଯୋଗେଶବାବୁ ସର୍ବଦାହିଁ ଉଚ୍ଚ ଯୋଗ୍ୟତାର ପରିଚୟ ପ୍ରଦାନ କରି ସାର୍ ବାସୁଦେବ ସୁଢ଼ଳଦେବଙ୍କ ଅକୃତ୍ରିମ ପ୍ରୀତିର ପାତ୍ର ହୋଇ, ତାଙ୍କ ସେବାରେ କାୟିକ ଓ ମାନସିକ ଉଭୟବିଧ ଶ୍ରମ ପରାକାଷ୍ଠା ପ୍ରଦର୍ଶନ କରି ଅଛନ୍ତି, ସଂଗେ ସଂଗେ ଦୀର୍ଘ ରାଜସେବାରେ ସ୍ୱାସ୍ଥ୍ୟ ମଧ୍ୟ ହରାଇଛନ୍ତି ।



Digitized by srujanika@gmail.com

ବିଭାଗୀୟ କମିଶନର ବା ପୋଲିଟିକାଲ୍ ଏଜେଣ୍ଟ୍ ବାମଣ୍ଡା ପରିଦର୍ଶନରେ ଆସିଲେ । ରାଜା ସାର୍ ବାସୁଦେବ ସୁଡ଼ଳଦେବଙ୍କ ଅଭିପ୍ରାୟ ଓ ମତ ବିବିଧ କାର୍ଯ୍ୟକଳାପର ପରିଦର୍ଶନ ପାଇଁ ସର୍ବାଙ୍ଗ-ସୁନ୍ଦର ବ୍ୟବସ୍ଥା ଯୋଗେଶ ବାବୁଙ୍କ ପର୍ଯ୍ୟବେକ୍ଷଣରେ ହିଁ ସଂପନ୍ନ ହେଉଥିଲା । ରାଜା ବାହାଦୁର ବହୁ ପୁତ୍ର-କନ୍ୟାଙ୍କର ବିବାହାଦି ବୃହତ୍ ସାମାଜିକ ଅନୁଷ୍ଠାନ ସବୁର ଆଂଶିକ କାର୍ଯ୍ୟ ସୁଶୃଙ୍ଖଳା ସହ ସଂପନ୍ନ କରାଇବା ଭାର ଯୋଗେଶ ବାବୁଙ୍କ ଉପରେ ନ୍ୟସ୍ତ କରି, ବାମଣ୍ଡା ରାଜାଙ୍କ ସର୍ବଦା ଆତ୍ମ ମର୍ଯ୍ୟାଦା ଅକ୍ଷୁଣ୍ଣ ରହିଅଛି, ଦେଖି ପ୍ରସନ୍ନ ହୋଇଛନ୍ତି ଏବଂ ପ୍ରାଦେଶିକ ଶାସନକର୍ତ୍ତାମାନଙ୍କ ଶୁଭାଗମନ କାଳରେ ସେମାନଙ୍କର ଅଭ୍ୟର୍ଥନା, ଅଭିନନ୍ଦନ, ଓ ପରିଚର୍ଯ୍ୟା ଇତ୍ୟାଦି ସର୍ବକର୍ମରେ ପ୍ରଧାନ ରାଜ-ଅମାତ୍ୟଙ୍କର କର୍ମ ସଂପନ୍ନ କରି ରାଜା ବାହାଦୁରଙ୍କ ପରମ ପ୍ରୀତିର ପାତ୍ର ହୋଇପାରିଛନ୍ତି ।

ସୁବିଧା ଓ ସୁଯୋଗ ମତେ ପ୍ରାଦେଶିକ ଶାସନକର୍ତ୍ତାମାନେ ଗଡ଼ଜାତ ପରିଦର୍ଶନରେ ବାହାରି ବାମଣ୍ଡା ଆସୁଥିଲେ । ଏକଦା ଏହିପରି କୌଣସି ପ୍ରାଦେଶିକ ଶାସନକର୍ତ୍ତାଙ୍କ ଶୁଭଗମନ କାଳରେ ଅଭିନନ୍ଦନ ପତ୍ର ରଚନାର ଭାର ଶ୍ରୀଯୁକ୍ତ ରେବତୀବାବୁଙ୍କ ଉପରେ ନ୍ୟସ୍ତ କରାଯାଏ । ସେହି କାର୍ଯ୍ୟ ପାଇଁ ରେବତୀବାବୁ ସ୍ୱତନ୍ତ ପୁରସ୍କାର ପାଇଥିଲେ । ପରବର୍ତ୍ତୀ କାଳରେ ପୁନରାୟ ଏଭଳି ଅନୁଷ୍ଠାନ କ୍ଷେତ୍ରରେ ସମବେତ ରାଜନ୍ୟମଣ୍ଡଳୀଙ୍କ ସଭାରେ ପଠିତ ହେବାପାଇଁ ଅଭିନନ୍ଦନ ପତ୍ର ରଚନା ଭାର ନାନା ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ କରାଯାଏ । ସେମାନଙ୍କର ମଧ୍ୟରେ ଶ୍ରୀଯୁକ୍ତ ଯୋଗେଶ ବାବୁଙ୍କ ରଚିତ ଅଭିନନ୍ଦନ ପତ୍ର ହିଁ ସରକାରୀ ପକ୍ଷଙ୍କର ଏବଂ ରାଜା ସାର୍ ବାସୁଦେବଙ୍କ ମନ ମୁତାବକ ହେବା ଫଳରେ, ତାହାହିଁ ପରିଗୃହୀତ ହୋଇଥିଲା, ସେଥିପାଇଁ ବାମଣ୍ଡାର ରାଜଦରବାର ପକ୍ଷରୁ ତାଙ୍କୁ ସ୍ୱତନ୍ତ ପୁରସ୍କାର ମଧ୍ୟ ପ୍ରଦତ୍ତ ହୋଇଥିଲା । ରାଜା ବାସୁଦେବ ଇଂରାଜୀ ଜାଣିନଥିଲେ,ସେପରି ସ୍ଥଳେ ତାଙ୍କ ମନ ମୁତାବକ ହେବାର ମୂଲ୍ୟ କଣ ଏବଂ ସେଥିପାଇଁ ପୁରସ୍କାର ପ୍ରଦତ୍ତ ହେବାର ମର୍ଯ୍ୟାଦା ବା କ'ଣ ?

ରାଜା ସାର୍ ବାସୁଦେବ ସୁଡ଼ଳଦେବଙ୍କ ସମ୍ବନ୍ଧରେ ପୂର୍ବେ ଯେତେ କଥା କୁହାଯାଇଅଛି, ତାଙ୍କର ଚରିତ୍ର ଓ କାର୍ଯ୍ୟକଳାପ ସମ୍ବନ୍ଧରେ ଯେତେ ଆଲୋଚନା କରା ଯାଇଅଛି । ସେହି ସବୁର ମର୍ଯ୍ୟାଦା ଓ ସମାଦର ଯେତେ ଅଧିକ ହେଉନା କାହିଁକି, କଠିଣତର ପ୍ରଶ୍ନ ସବୁର ବିଶ୍ଳେଷଣ ଓ ଯଥାଯଥ ତାତ୍ପର୍ଯ୍ୟ ଗ୍ରହଣ ପ୍ରଦର୍ଶନ ଉପରେ ତାଙ୍କର ମହଚ୍ଚରିତ୍ରର ଅସାଧାରଣତ୍ୱ ପ୍ରତିଷ୍ଠିତ ରହିଅଛି । ଏକଦା ଚୁଁଚୁଡ଼ାର ଗୋରା ବ୍ୟାରାକ୍‌ର ଦୁଇଜଣ ଗୋରା, ତ୍ରିବେଣୀ ଘାଟରେ ଅସାମାନ୍ୟ ଶ୍ରୁତିଧର ସ୍ୱର୍ଗତ ଜଗନ୍ନାଥ ତର୍କପଞ୍ଚାନନଙ୍କ ସମକ୍ଷରେ ଦ୍ୱନ୍ଦ୍ୱଯୁଦ୍ଧ କରୁ କରୁ ଯେଉଁ କଳହ କରିଥିଲେ, ସେହି କଳହର ବିଚାର କାଳରେ



Digitized by srujanika@gmail.com

ପଣ୍ଡିତଙ୍କ ସାକ୍ଷ୍ୟ ଦାନରେ ବିଚାର ଫଳ ନିୟନ୍ତ୍ରିତ ହୋଇଥିଲା । ଅର୍ଥାତ୍ ପଣ୍ଡିତ ଇଂରାଜୀ ଜାଣି ନଥିଲେ; କିନ୍ତୁ ଗୋରା ସାହେବ ଦ୍ୱୟଙ୍କର କଳହ ସଂଭୂତ ବଚସା ପରେ ପରେ ଠିକ୍ ଠିକ୍ କହି ପାରିଥିଲେ । ଏହା କିଭଳି କ୍ଷମତା ? ଏହି ମାନସିକ ଶକ୍ତିର ଅତ୍ୟୁତ୍ତମ ପରିଚାଳନା ଫଳରେ, ରାଜା ସାର୍ ବାସୁଦେବ ସୁଢ଼ଳଦେବ ଶବ୍ଦ ବ୍ୟବହାର ଶାସ୍ତ୍ରରେ ଦକ୍ଷତା ଲାଭ କରିଥିଲେ । ଦୀର୍ଘକାଳ ସ୍ୱୟଂ ରାଜକାର୍ଯ୍ୟ ପରିଚାଳନାରେ ଲିପ୍ତ ରହିବା ଫଳରେ, ବିଭାଗୀୟ କମିଶନର, ପୋଲିଟିକାଲ୍ ଏଜେଣ୍ଟ୍ ଓ ପ୍ରାଦେଶିକ ଶାସନକର୍ତ୍ତାମାନଙ୍କ ସହିତ ସର୍ବଦା ଯେଉଁସବୁ ପତ୍ରାଳାପ ହେଉଥିଲା, ସେହି ସବୁର ଗଠନ ପ୍ରଣାଳୀର ଇଙ୍ଗିତ ନିଜେ ହିଁ କରୁଥିଲେ । ଯେଉଁ ପତ୍ର ସବୁ ଆସୁଥିଲା, ସେଗୁଡ଼ିକର ତାତ୍ପର୍ଯ୍ୟ ନିଜେ ଉତ୍ତମରୂପେ ବୁଝିନେଉଥିଲେ ଏବଂ ସେହି ସବୁର ଉତ୍ତରଦାନ ର ପ୍ରଣାଳୀ ନିଜେ ହିଁ ନିର୍ଦ୍ଦେଶ କରି ଦେଉଥିଲେ, ସେଗୁଡ଼ିକ ଇଂରାଜୀରେ ପ୍ରସ୍ତୁତ ହେବାପରେ, ଶୁଣୁଥିଲେ । ଯେଉଁ ସ୍ଥାନରେ ତାଙ୍କର ମନଲାଖି ହେଉନଥିଲା, ତାହାର ପରିବର୍ତ୍ତନ ହେଉଥିଲା । ଯେତେବେଳ ଯାଏଁ ଠିକ୍ ହେଉନଥିଲା, ସେତେବେଳ ଯାଏଁ ଛାଡ଼ୁ ନଥିଲେ । ରାଜ ଦପ୍ତରରେ ଦୀର୍ଘକାଳ ବ୍ୟାପୀ ଫାଇଲ୍‌ର କେଉଁ ସ୍ଥାନରେ ନିଜମନର ଭାବ ଠିକ୍ ପ୍ରକାଶ ପାଇବା ଉପଯୋଗୀ ଇଂରାଜୀଟି ମିଳିବ, ତାହା କହି ଦେଉଥିଲେ । ଯେତେବେଳଯାଏଁ ତାହା ମିଳୁନଥିଲା, ସେତେବେଳଯାଏଁ ନିରସ୍ତ ହେଉନଥିଲେ । ଠିକ୍ ତାହା ପାଇଗଲେ କହୁଥିଲେ- 'ଏହି ଶବ୍ଦ ବା ଭାଷା ଏଠାରେ ବ୍ୟବହାର କଲେ, ବକ୍ତବ୍ୟ ବିଷୟର ଶକ୍ତି ଓ ସୌନ୍ଦର୍ଯ୍ୟ ବୃଦ୍ଧି ପାଇବ ।' *(୨୭)*

ପ୍ରତିଦିନର କାର୍ଯ୍ୟକଳାପ ମଧ୍ୟରେ ଯାହାଙ୍କର ସ୍ମୃତି ଶକ୍ତି, ଏଭଳି ଆଶ୍ଚର୍ଯ୍ୟ ଉପାୟରେ, ଅପରିଜ୍ଞାତ ବିଦେଶୀ ଭାଷା ଉପରେ ଶାସନ ଦଣ୍ଡ ପରିଚାଳନା କରୁଥିଲା, ସେ ଯେ ଅସାଧାରଣ ଶକ୍ତିଶାଳୀ ପୁରୁଷ ଏବଂ ତାଙ୍କ ଦଣ୍ଡ ଧାରଣା ପଶ୍ଚାତ୍‌ରେ, ତାଙ୍କ ସମଗ୍ର ହୃଦୟ ମନ ଯେ ନିତ୍ୟଲୀଳା କରିଅଛି, ସେହି ବିଷୟରେ କଣ କିଛି ସନ୍ଦେହ ଅଛି ? ବାମଣ୍ଡାର ସ୍ୱର୍ଗୀୟ ରାଜ ଜୀବନରେ ଏଭଳି ଘଟଣା ସର୍ବଦାହିଁ ଘଟିଅଛି ଏବଂ ସେହି ବିଷୟରେ ସାକ୍ଷ୍ୟଦାନ କରିବା ପାଇଁ ଲୋକଙ୍କର ମଧ୍ୟ ଅଭାବ ନାହିଁ । ଇଂରାଜୀ ଆକ୍ଷରିକ ଜ୍ଞାନ ବିହୀନ ଏହି ଅସାଧାରଣ ମନୀଷା ସଂପନ୍ନ ରାଜପୁରୁଷ କେବଳ ଇଂରାଜୀ ଶବ୍ଦଝଙ୍କାର ବୁଝୁଥିଲେ । ତାହା ନୁହେଁ, କେଉଁ ସ୍ଥଳର ରଚନାର ଭାବଭଙ୍ଗୀ କ'ଣ ଇଙ୍ଗିତ କରୁଅଛି, ତାହା ମଧ୍ୟ ବୁଝି ପାରୁଥିଲେ । ତେଣୁ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କର ରଚିତ ଇଂରାଜୀ ରଚନାର ଉତ୍କୃଷ୍ଟତା ବୁଝିବା ଶକ୍ତି ଅର୍ଜନ ତାଙ୍କ ପକ୍ଷରେ ସଂଭବ ହୋଇଥିଲା । ତେଣୁ ଯୋଗେଶବାବୁଙ୍କ ଅଭିନନ୍ଦନ ପତ୍ରଟି ପୁରସ୍କୃତ ହୋଇଥିଲା ।



Digitized by srujanika@gmail.com

ଯୋଗେଶବାବୁ ସ୍ୱର୍ଗୀୟ ରାଜା ବାସୁଦେବଙ୍କ ହାତରେ ଗଢ଼ା କର୍ମଚାରୀ । ଅବଶ୍ୟ ଯୋଗେଶ ବାବୁଙ୍କ ଭିତରେ ରାଜକାର୍ଯ୍ୟ ପରିଚାଳନା ଉପଯୋଗୀ ଉପକରଣ ପ୍ରଚୁର ପରିମାଣରେ ଥିଲା, ତେଣୁ ସେ ବାମଣ୍ଡା ରାଜ ସେବାରେ ଆପଣାକୁ ପ୍ରସ୍ଫୁଟିତ କରାଇ ପାରିଥିଲେ । ସେ ଅସାମାନ୍ୟ ଧୀଶକ୍ତି ସଂପନ୍ନ ନରେଶଙ୍କ ଆଶ୍ରୟ ଲାଭ କରିଥିଲେ ବୋଲି ତ, ତାଙ୍କର କର୍ମଶକ୍ତିର ଚରିତାର୍ଥତା ଲାଭ ଘଟିଅଛି । ରାଜା ସାର୍ ବାସୁଦେବ ସୁଡ଼ଳଦେବଙ୍କ ମର୍ତ୍ତ୍ୟଜୀବନର ଅବସାନରେ, ବର୍ତ୍ତମାନର ରାଜା ବାହାଦୁର ଯୋଗେଶବାବୁଙ୍କର ଦୀର୍ଘ ଅଭିଜ୍ଞତା ଅବଜ୍ଞା ସହକାରେ ଦୂରକୁ ଠେଲି ନ ଦେଇ, ତାକୁ ଉତ୍ତମତର ଆକାରେ ପୂର୍ବ ସ୍ଥାନରେ ଦୃଢ଼ ପ୍ରତିଷ୍ଠିତ କରାଇ ସର୍ବତୋଭାବେ ଗୁଣଗ୍ରାହିତାର ପରିଚୟ ଦେଇ ଅଛନ୍ତି ।

ବାମଣ୍ଡା ରାଜ୍ୟର ଅନ୍ୟାନ୍ୟ କାର୍ଯ୍ୟକ୍ଷେତ୍ରରେ, ବିଶେଷ ଭାବରେ ଉପବିଭାଗ ଗୁଡ଼ିକରେ ଅନେକ କର୍ମଠ ଓ ଅଭିଜ୍ଞ ରାଜକର୍ମଚାରୀଙ୍କ ପରିଚାଳନା ଓ ପର୍ଯ୍ୟବେକ୍ଷଣରେ ବହୁକାଳରୁ ରାଜକାର୍ଯ୍ୟ ସଂପନ୍ନ ହୋଇ ଆସୁଅଛି । ସେହି ସମସ୍ତ ରାଜକର୍ମଚାରୀଙ୍କର ବିସ୍ତାରିତ ବିବରଣୀ ଦ୍ୱାରା ପୋଥି ସ୍ଫୀତିକୃତ ହେବ ବୋଲି ସେହି ବିବରଣୀ ପରିତ୍ୟକ୍ତ ହେଲା ।

ସାର୍ ବାସୁଦେବ ସୁଡ଼ଳଦେବ ରାଜକାର୍ଯ୍ୟରେ ମନୋନିବେଶ କରିବା ବେଳରୁ ଆରମ୍ଭ କରି, ପ୍ରତ୍ୟେକ ଦଶ ବର୍ଷ ପରେ ବାମଣ୍ଡା ରାଜ୍ୟର ସମଗ୍ର ଆବାଦୀ ଜମିର ଉନ୍ନତି, ଅବନତି ଓ ପରିମାଣର ହ୍ରାସ ବୃଦ୍ଧି ହିସାବରେ ରାଜସ୍ୱର ମଧ୍ୟ ହ୍ରାସ ବୃଦ୍ଧି ହୋଇ ଆସୁଅଛି । ରାଜ୍ୟର ଆବାଦୀ ଜମିର କ୍ରମୋନ୍ନତି ଫଳରେ ରାଜସ୍ୱର ପରିମାଣ କ୍ରମଶଃ ପ୍ରଚୁର୍ ବୃଦ୍ଧିପ୍ରାପ୍ତ ହୋଇଅଛି । କିନ୍ତୁ ତହିଁରେ ରାଜକୋଷରେ ଧନ ସଂଚୟ ନହୋଇ ସଂଗୃହୀତ ସମସ୍ତ ଅର୍ଥ ରାଜ୍ୟର ବିବିଧ ଉନ୍ନତି କଳ୍ପେ ବ୍ୟୟିତ ହେଉଅଛି । ଆଉ ଏହା ରାଜ୍ୟର ସର୍ବପ୍ରଧାନ ସ୍ଥାୟୀ ଆୟ ଥିଲା ଏବଂ ଅଛି ମଧ୍ୟ । ଏତଦ୍ୱାରା ସଦର ଓ ମଫସଲ ରାଜକର୍ମଚାରୀମାନଙ୍କ କର୍ମପଟୁତାର ଉତ୍ତମ ପରିଚୟ ମିଳୁଅଛି ।

## (୯) ଡାକ ବିଭାଗ

ପୂର୍ବେ ବାମଣ୍ଡା ଡାକ ବିଭାଗ ବାମଣ୍ଡା ରାଜ୍ୟର ସଂପୂର୍ଣ୍ଣ କର୍ତ୍ତୃତ୍ୱାଧୀନ ଥିଲା । ଦେବଗଡ଼ରେ ପ୍ରଧାନ ଅଫିସ୍ ଓ ତାହା ଅଧୀନରେ ଆହୁରି କେତେକ ସ୍ଥାନରେ ତାହାର ଶାଖା ଅଫିସ୍‌ମାନ ଥିଲା । ବାମଣ୍ଡା ରାଜ୍ୟ ମଧ୍ୟରେ ଡାକଦ୍ୱାରା ପତ୍ରାଦି ଯାତାୟତରେ ବାମଣ୍ଡା ସ୍ୱତନ୍ତ୍ର ଡାକଟିକଟ ବ୍ୟବହୃତ ହେଉଥିଲା । ରାଜ୍ୟ ବାହାରକୁ ଯେଉଁ ପତ୍ର ସବୁ ପ୍ରେରିତ ହେଉଥିଲା, ସେଥିରେ ଦୁଇପ୍ରକାର ଷ୍ଟାମ୍ପ ବ୍ୟବହୃତ ହେଉଥିଲା । ଅର୍ଥାତ୍ ରାଜ୍ୟ ବାହାରକୁ ପତ୍ର ପ୍ରେରଣରେ ଅର୍ଦ୍ଧ ଅଣା ସ୍ଥାନରେ ଏକ ଅଣା ବ୍ୟୟ ହେଉଥିଲା । ଡାକ ବିଭାଗ ରାଜାଙ୍କର ଅଧୀନରେ ଥିବା ଫଳରେ ଡାକ ବିଭାଗର ଖର୍ଚ୍ଚପତ୍ର ଚଳାଇ କିଛି



Digitized by srujanika@gmail.com

ବାର୍ଷିକ ଆୟ ମଧ୍ୟ ହେଉଥିଲା; କିନ୍ତୁ କାର୍ଯ୍ୟରେ ବହୁତ ଅସୁବିଧା ହେଉଥିଲା । ତେଣୁ ଭାରତ ଗଭର୍ଣ୍ଣମେଣ୍ଟଙ୍କ ବିଭାଗର ପୁନଃ ପୁନଃ ପ୍ରସ୍ତାବ ଓ ଅନୁରୋଧ ଫଳରେ *(୨୮)* ରାଜା ସାର୍ ବାସୁଦେବ ସୁଢ଼ଳଦେବ ଡାକ ବିଭାଗ କାର୍ଯ୍ୟ ପରିଚାଳନା ଭାର ଭାରତ ଗଭର୍ଣ୍ଣମେଣ୍ଟ ହସ୍ତରେ ଅର୍ପଣ କଲେ । ଏହି ବ୍ୟବସ୍ଥା ଫଳରେ କାର୍ଯ୍ୟରେ ସୁବିଧା ହେଲେ ମଧ୍ୟ ତାଙ୍କର ଆୟ କିଞ୍ଚିତ୍ ହ୍ରାସ୍ ହୋଇଥିଲା । ଏଥିପାଇଁ ସେ କ୍ଷୁବ୍ଧ ହେବା ପାତ୍ର ନଥିଲେ । କାର୍ଯ୍ୟ ସୁବିଧା ହେବା ପ୍ରତ୍ୟାଶାରେ ସମ୍ମତ ହୋଇଥିଲେ ଏବଂ ସେହି ସୁବିଧା ସାଧିତ ହୋଇଅଛି ।*(୨୯)*

ସେ ଦୀର୍ଘକାଳ ଏହି ପରିବର୍ତ୍ତନ ପ୍ରସ୍ତାବରେ ସମ୍ମତ ହୋଇପାରି ନାହାନ୍ତି । ତାହାର ନିର୍ଦ୍ଦିଷ୍ଟ କାରଣ ମଧ୍ୟ ଥିଲା । ସେ ଏକନିଷ୍ଠ ଓ କର୍ତ୍ତବ୍ୟପରାୟଣ ରାଜା ଥିଲେ । ତାଙ୍କର ସମଗ୍ର ହୃଦୟ ଓ ମନର ସଂକଳ୍ପ ଏହା ଥିଲା ଯେ, ତାଙ୍କ ନିଜ ରାଜ୍ୟ ସେ ନିଜେ ହିଁ ସର୍ବାଙ୍ଗ ସୁନ୍ଦର ଭାବରେ ଶାସନ ଓ ପାଳନ କରିବେ । ତେଣୁ ପ୍ରସ୍ତାବ ପାଇବା ମାତ୍ରେ ବାହ୍ୟ ବ୍ୟବସ୍ଥାରେ ସହଜରେ ସମ୍ମତ ହୋଇପାରି ନାହାନ୍ତି; କିନ୍ତୁ ଜନସାଧାରଣଙ୍କ ଦ୍ୱିଗୁଣ ବ୍ୟୟ ନିବାରଣର ଅନ୍ୟ ଉପାୟ ନଥିଲା ବୋଲି ନିତ୍ୟାନ୍ତ ଅନିଚ୍ଛା ସତ୍ତ୍ୱେ ବାହ୍ୟ ପ୍ରସ୍ତାବରେ ସମ୍ମତ ହେବାକୁ ବାଧ୍ୟ ହୋଇଥିଲେ ଏବଂ ଏହି କଥା ବ୍ୟତୀତ ଅନ୍ୟ ବହୁ ବିଷୟରେ ବାହ୍ୟ ପରିବର୍ତ୍ତନ ପ୍ରବାହ ଗ୍ରହଣରେ ବହୁଥର ଅନୁରୋଧ ହୋଇ ସୁଦ୍ଧା କୌଣସି ଦିନ ସେହି ସବୁ ପ୍ରସ୍ତାବରେ ସମ୍ମତ ହୋଇ ନାହାନ୍ତି । ନିଜ କାର୍ଯ୍ୟ ମଧ୍ୟପ୍ରଦେଶର କର୍ତ୍ତୃପକ୍ଷଙ୍କ ଓ ଭାରତ ଗଭର୍ଣ୍ଣମେଣ୍ଟଙ୍କ ସନ୍ତୋଷ ସାଧନୋପଯୋଗୀ କରାଇ ସଂପନ୍ନ କରିବାରେ କାୟିକ, ମାନସିକ ଓ ଆର୍ଥିକ ଅସୁବିଧା ଭୋଗ କରି ଅଛନ୍ତି । ଏହା ହିଁ ତାଙ୍କର ସ୍ୱଭାବ ଏବଂ ରାଜଧର୍ମ ଥିଲା ।

## (ଙ) ଅବକାରୀ

ପ୍ରସଂଗକ୍ରମେ ରାଜୋଦ୍ୟାନର ବିବରଣୀ ଭିତରେ ମାଦକ ଦ୍ରବ୍ୟ ସମ୍ବନ୍ଧରେ ସାମାନ୍ୟ କିଛି ଇଂଗିତ କରାଯାଇଅଛି । ଏଠାରେ ଅତି ସ୍ପଷ୍ଟ ଭାବରେ ଉଲ୍ଲେଖ ଆବଶ୍ୟକ ଯେ, ରାଜା ବାହାଦୁର ମାଦକ ପର୍ଯ୍ୟାୟଭୁକ୍ତ ସମସ୍ତ ଦ୍ରବ୍ୟ ଉପରେ ଅତ୍ୟନ୍ତ ବିରୁଦ୍ଧ ଭାବାପନ୍ନ ଥିଲେ । କେବଳ ମାତ୍ର ଔଷଧ ହିସାବରେ ତାଙ୍କର ଚିକିତ୍ସାଳୟରେ ସେଗୁଡ଼ିକୁ ରଖିବାର ଅନୁମତି ଦେଉଥିଲେ । ରାଜାଦେଶ ଭିନ୍ନ କୌଣସି ମତେ ବାହାରୁ ମାଦକ ଦ୍ରବ୍ୟର ଆମଦାନୀ ଉପାୟ ନଥିଲା, ବର୍ତ୍ତମାନ ମଧ୍ୟ ନାହିଁ । ଚିକିତ୍ସକଙ୍କ ବ୍ୟବସ୍ଥା ଭିନ୍ନ, ଅନ୍ୟ କୌଣସି କାରଣରେ, ରାଜଧାନୀ ଦେବଗଡ଼କୁ କେନ୍ଦ୍ରକରି ଏହାର ଚାରିଦିଗରେ ଦଶମାଇଲ୍ ମଧ୍ୟରେ ସୁରା ସେବନ ଏକାବେଳକେ ଆଇନ୍ ଦ୍ୱାରା ନିଷିଦ୍ଧ କର୍ମ ବୋଲି ପ୍ରଚାରିତ ହୋଇଥିଲା ଏବଂ ତାହା



Digitized by srujanika@gmail.com

ଆଜିସୁଦ୍ଧା ବିଦ୍ୟମାନ । ସେହି ଆଦେଶ କେହି ଅମାନ୍ୟ କଲେ ଅତି ଗୁରୁତର ଦଣ୍ଡର ବ୍ୟବସ୍ଥା ରହିଅଛି । ସହ୍ୟ କରିବାର ଶକ୍ତି ଅନୁସାରେ ଅପରାଧୀର ବେତ୍ରାଦଣ୍ଡର ବ୍ୟବସ୍ଥା ହିଁ ପ୍ରଧାନ ଏବଂ ପ୍ରବଳ । ଅପରାଧୀକୁ ସେହି ବ୍ରେତାଘାତ ସମ୍ଭାଳିବାକୁ ଅନେକ ସମୟ ଲାଗୁଥିଲା । ଏଭଳି ନିଷ୍ଠା ସହକାରେ ଏହି ଦଣ୍ଡର ବ୍ୟବସ୍ଥା ତାଙ୍କର ଅଭିପ୍ରେତ ଥିଲାଯେ, ଏକଦା ତାଙ୍କର କୌଣସି ସଂଭ୍ରାନ୍ତ ପଦସ୍ଥ ଆତ୍ମିୟଙ୍କର ସୁରା ସେବନ ଫଳରେ ରାଜା ବାହାଦୁର ନିଜ ହସ୍ତରେ ତାଙ୍କର ଆପାଦମସ୍ତକ ପାଦୁକାଘାତରେ କ୍ଷତବକ୍ଷତ କରିଥିଲେ ଏବଂ କହିଥିଲେ- "ଏପରି ସ୍ଥଳେ ଆଦର୍ଶ ଦଣ୍ଡ ନ ଦେଲେ, ରାଜାଦେଶର ମର୍ଯ୍ୟାଦା ରହିବ ନାହି ।' ଏହି ଆଦର୍ଶ ଦଣ୍ଡ ଫଳରେ ଚାରିଆଡ଼େ ଏହି ବିଷୟରେ ରାଜାଙ୍କର ଆଦେଶ ଓ ଅଭିପ୍ରାୟର ଦୃଢ଼ତା ପ୍ରଚାରିତ ହୋଇଯାଇଥିଲା । ବାମଣ୍ଡାର ସଦର ଓ ମଫସଲରେ କୁତ୍ରାପି ରାଜକାର୍ଯ୍ୟରେ ଅହିଫେନ ସେବନକାରୀର ସ୍ଥାନ ନାହିଁ । ରାଜ ସରକାର ଠାରେ ଯେତେଜଣ କାର୍ଯ୍ୟ କରନ୍ତି, ସେମାନଙ୍କର ଅହିଫେନ ସେବନ ଚିର ନିଷିଦ୍ଧ ।

ଏକଦା ଜଣେ ଗଣମାନ୍ୟ ବିଦେଶୀୟ କର୍ମଚାରୀ ଅହିଫେନ ସେବନ କରୁଥିଲେ । ରାଜା ବାହାଦୁରଙ୍କର ସନ୍ଦେହ ହେବା ଫଳରେ, ଜିଜ୍ଞାସା କରିବା ଫଳରେ, ସେ ଭୟରେ ମିଥ୍ୟାର ଆଶ୍ରୟ ଗ୍ରହଣ କରନ୍ତି । ପୁନଃ ପୁନଃ ସନ୍ଦେହ ହେବା ଫଳରେ, ପୋଷ୍ଟ ଅଫିସ୍‌ର ପାର୍ସଲ ଅନୁସଂଧାନରୁ ଜଣାଯାଏ ଯେ, ସେ ଗୋପନରେ କଲିକତାରୁ ଆନିତ ସୁରା ପ୍ରେମରେ, ନିତ୍ୟ ନିତ୍ୟାନନ୍ଦ ସଂଭୋଗ କରିଥାନ୍ତି । ରାଜା ସାର୍ ବାସୁଦେବ ସୁଢ଼ଳଦେବ ତତ୍‌କ୍ଷଣାତ୍ ତାଙ୍କୁ ପ୍ରାପ୍ୟ ବେତନ ଏବଂ ପାଥେୟ ଦେଇ ବାମଣ୍ଡାରୁ ବିଦାୟ ନେବାର ଆଦେଶ ଦେଇଥିଲେ ।

ଭାରତରେ ମାଦକ ସେବନ ନିବାରଣ ବିଷୟରେ, ବାମଣ୍ଡା ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଭଳି ଆଦର୍ଶ ଆଉ ଦ୍ୱିତୀୟ ଅଛନ୍ତି କି ନାହିଁ ଜାଣିନାହିଁ ବୋଧହୁଏ ପ୍ରଜା ସାଧାରଣଙ୍କ ମାଦକ ସେବନ ନିବାରଣ ବିଷୟରେ ଏଭଳି କଠୋର ତପସ୍ୟା ପରାୟଣ ନରପତି କାହିଁକି, ଧର୍ମଗୁରୁ ମଧ୍ୟ ଦୁର୍ଲ୍ଲଭ ବୋଲି ମନେ ହୁଏ । କାରଣ ସଂସାରର ଅଧିକାଂଶ ଉପଦେଷ୍ଟା ଓ ନେତୃସ୍ଥାନୀୟ ବ୍ୟକ୍ତିଗଣଙ୍କ କାର୍ଯ୍ୟକଳାପ ଓ ଆଚାର ଆଚରଣରେ ବାମଣ୍ଡା ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଧର୍ମନିଷ୍ଠ ଓ ଦୃଢ଼ତା ଦେଖାଯାଏ ନାହିଁ । ତେଣୁ ସେହି ସମସ୍ତ ନରପତିଙ୍କ ତୁଳନାରେ ରାଜା ସାର୍ ବାସୁଦେବ ଦେବତା, କାରଣ ଯେଉଁ ମାନଙ୍କ ସର୍ବାଙ୍ଗୀନ କଲ୍ୟାଣର ଭାର ତାହାଙ୍କ ଉପରେ ନ୍ୟସ୍ତ ଥିଲା, ସେହି ଜନସାଧାରଣ ବିନାଶର ମୁକ୍ତ ପଥରେ ଯେଭଳି ବିଚରଣ କରି ନ ପାରନ୍ତି, ସେହି ଦିଗ ଉପରେ ତୀବ୍ର ଦୃଷ୍ଟି ରଖିବା ତାଙ୍କର ଧର୍ମ । ସେ ସେହି ଧର୍ମପାଳନ କରି ସ୍ୱର୍ଗାରୋହଣ କରି ଅଛନ୍ତି ।



Digitized by srujanika@gmail.com

ନିମ୍ନ ଶ୍ରେଣୀର ଲୋକଙ୍କ ମଧ୍ୟରେ ଗଞ୍ଜେଇ, ଅଫିମ ଓ ସୁରା ସେବନ ସ୍ୱଭାବସିଦ୍ଧ ଏବଂ ସେମାନଙ୍କ ପକ୍ଷରେ ରାଜାଙ୍କ ବ୍ୟବସ୍ଥା ଅତି କଠିଣ ବ୍ୟବସ୍ଥା ସନ୍ଦେହ ନାହିଁ । ତେଣୁ ବର୍ଷକୁ ଥରେ କିମ୍ବା ଦୁଇଥର ପାର୍ବଣ ଉପଲକ୍ଷେ ସେମାନେ ସ୍ୱଗୃହରେ ପ୍ରସ୍ତୁତ ସୁରା ସେବନର ଅନୁମତି ପାଇଥାନ୍ତି; କିନ୍ତୁ ନିର୍ଦ୍ଦିଷ୍ଟ ଦିନ ପରେ ସେମାନଙ୍କ ଗୃହରେ ସୁରା ମହଜୁଦ୍ ଥିଲେ ରାଜଦଣ୍ଡରେ ଦଣ୍ଡିତ ହେବାକୁ ପଡିଥାଏ । ଆଉ ଅଫିମ ବିକ୍ରୟାର୍ଥେ ଥାନାରେ ମହଜୁଦ୍ ଥାଏ । ଅଫିମଖୋରମାନଙ୍କର ନାମ ସେହିଠାରେ ଲେଖାହୋଇ ରହିଅଛି । ଥାନାକୁ ଯାଇ ନିୟମିତ ପରିମାଣରେ ଅଫିମ ଖାଇ ଆସିବାକୁ ପଡ଼ିଥାଏ । ଏହା ହିଁ ହେଲା ବାମଣ୍ଡାର ରାଜଧାନୀ ଦେବଗଡ଼ ନିକଟବର୍ତ୍ତୀ ସ୍ଥାନରେ ଅବକାରୀ ଆୟ, ଏଥିପାଇଁ ବାମଣ୍ଡା ରାଜକୋଷ ସର୍ବଦା ପ୍ରଚୁର ଧନରେ ପୂର୍ଣ୍ଣ ନଥାଏ । ରାଜା ବାହାଦୁର ସେଥିପାଇଁ କ୍ଷୁଣ୍ଣ ନଥିଲେ ବରଂ ତାଙ୍କର ପ୍ରଜାମଣ୍ଡଳୀ ଯେପରି ଅପବ୍ୟୟର ଅର୍ଥରେ ଦୁଇଓଳି ଦି'ମୁଠା ଉଦର ପୂର୍ଣ୍ଣ ଅନ୍ନ ପାଆନ୍ତି, ସେଥିପାଇଁ ସେ ନିଜେ ଆନନ୍ଦରେ - ପରମାନନ୍ଦରେ କାଳ ହରଣ କରିଅଛନ୍ତି ଏବଂ ସଂଗେ ସଂଗେ ଦରିଦ୍ର ନାରାୟଣଙ୍କ ଆଶୀର୍ବାଦ ଭାଜନ ହୋଇ ଅମରତ୍ୱ ଅର୍ଜ୍ଜନ କରି ଅଛନ୍ତି ।

ରାଜଧାନୀ ଦେବଗଡ଼କୁ କେନ୍ଦ୍ରକରି ଚାରିପାଖରେ ପାଞ୍ଚ କ୍ରୋଶ ବା ଦଶ ମାଇଲ୍ ଦୂରରେ ପ୍ରୟୋଜନ ମୁତାବକ ଗଞ୍ଜେଇ ଓ ଅଫିମ ରାଜାଦେଶରେ ଆମଦାନୀ ଓ ଦେଶୀମଦ ପ୍ରସ୍ତୁତ, ବିକ୍ରୟ ଓ ପାନର ଆଦେଶ ରହିଛି; କିନ୍ତୁ ସେହି ସମ୍ବନ୍ଧରେ ମଧ୍ୟ ଅତ୍ୟନ୍ତ କଠିଣ ନିୟମ ସବୁ ପ୍ରଜାମାନଙ୍କୁ ପାଳନ କରିବାକୁ ପଡ଼ିଥାଏ ଏବଂ ନିୟମ ପାଳନ ପର୍ଯ୍ୟବେକ୍ଷଣର ମଧ୍ୟ ସୁବ୍ୟବସ୍ଥା ରହିଛି । ବ୍ୟତିକ୍ରମ ହେଲେ ଗୁରୁତର ଦଣ୍ଡ ଭୋଗର ମଧ୍ୟ ନିୟମ ପ୍ରଚଳିତ ଅଛି ।*(୩୦)* ଏହି ହିସାବରେ ସାମାନ୍ୟ କିଛି ଅବକାରୀ ଆୟ ମଧ୍ୟ ହୋଇଥାଏ; କିନ୍ତୁ ଏହି କାର୍ଯ୍ୟ ପର୍ଯ୍ୟବେକ୍ଷଣ ପାଇଁ ନିଯୁକ୍ତ କର୍ମଚାରୀ ଏବଂ ସେହି କର୍ମଚାରୀମାନଙ୍କ କର୍ତ୍ତବ୍ୟନିଷ୍ଠା ପରିରକ୍ଷଣ ପାଇଁ ଯେଉଁ ଅର୍ଥ ବ୍ୟୟ ହୁଏ, ସେହି ବ୍ୟୟ ନିର୍ବାହ କରି ରାଜକୋଷରେ ଏହି ହିସାବରେ ବିଶେଷ କିଛି ଅର୍ଥ ସଞ୍ଚିତ ହୁଏ ନାହିଁ ।*(୩୧)* ବାମଣ୍ଡାର ପ୍ରଜାସାଧାରଣ ମାଦକ ସେବନ ସମ୍ବନ୍ଧରେ ସ୍ୱର୍ଗୀୟ ରାଜାଙ୍କ ଉଚ୍ଚ ନୀତିଜ୍ଞାନ ବିଷୟରେ ଜଣେ ଖ୍ୟାତନାମା ଇଂରେଜ ଧର୍ମଯାଜକଙ୍କର ଅଭିମତ ତାଙ୍କ ନିଜ ଭାଷାରେ ବ୍ୟକ୍ତ କରାଗଲା –

**An anti-opium Indian State**

In the course of recent missionary journey, I visited the Bamra Feudatory state and was greatly pleased to learn that the Raja, seeing how runions the opium habit is, to the individual and the community,


Digitized by srujanika@gmail.com

has strictly prohibited its use by any, save those who have long been adicted to it and whose names have been entered on a police Register as habitual consumers. These can obtain the drug only in moderate quantities at certain police stations (three in number I believe;) and no one known to be adicted to opium, is eligible for employment in the state service.

The adoption of this prohibitive measures, has effectually checked an evil that threatened to attain large proprtions and when the registrered consumers have passed away, the state will be wholly freed from the reaproach of using opium for any, save medical purposes.

The wise and enlightened policy of this Indian prince in thus preserving his people from a great danger is worthy of all praise and should be published as an example to others. The British Government might learn a lesson from him in this matter. Its approval of his general administration was signified, not long ago by conferring the honour of knighthood but the action of Sir Sudhal Deb KCIE, is suppressing the opium traffic within his jurisdiction is deserving of far higher recognition than that and will meet the hearty commendation of all who desire the welfare of the people of India. It would be a happy thing, if other Indian princes and also the great British Government, copied the example of this ruler and refused to derive any revenue from the sale of a drug so harmful to the people and therefore, in its ultimate results, so injurious to the prosperity of the state. At the time of the opium enquiry he gave his opinion against the fraffic but I have not seen this fact mentioned any where and it should be known together with the facts I have mentioned regarding prohibition in the state, to all who are engaged in the anti-opium campaign.

I believe, that campaign will sooner or later, with God's blessings end in complete victory, and I pray that the time may be hastened.

Sambalpur — (Sd) P.E. HEBERLET

26th April 1897 — Baptist Missionary

ଚତୁର୍ଦ୍ଦିଗରେ ମ୍ୟାଲେରିଆ ପରିବେଷ୍ଟିତ ସାମାନ୍ୟ ସ୍ୱାସ୍ଥ୍ୟକର ସ୍ଥାନ ଯେପରି ସହଜରେ କଳ୍ପନା କରାଯାଇନପାରେ, ସେହିପରି ଘଟଣା ସତ୍ୟ ବୋଲି ବିଶ୍ୱାସ କରିବାପାଇଁ ଯେପରି ବିସ୍ମୟର ଉଦୟ ହୁଏ, ଅନେକଗୁଡ଼ିଏ କ୍ଷୁଦ୍ର ବୃହତ ସାମନ୍ତ ରାଜ୍ୟ ପରିବେଷ୍ଟିତ ବାମଣ୍ଡାର ଅବକାରୀ ଇତିହାସ ଠିକ୍ ସେହିପରି ବିସ୍ମୟକର । ନିକଟବର୍ତ୍ତୀ କୌଣସି ରାଜ୍ୟର ସୁରା ସେବନ ଆୟ ପ୍ରାୟ ଲକ୍ଷେ ଟଙ୍କା । କୌଣସି କୌଣସି ରାଜ୍ୟରେ ଅହିଫେନ


Digitized by srujanika@gmail.com

ସେବନ ଏତେ ପ୍ରବଳ ଯେ, ସେହି ରାଜ୍ୟର ଲୋକମାନେ ସଂପୂର୍ଣ୍ଣ ଅକର୍ମଣ୍ୟ ହୋଇ ପଡିଅଛନ୍ତି, ତତ୍ରାପି ସେହି ସବୁ ଅନ୍ନହୀନ ଲୋକମଣ୍ଡଳୀଙ୍କ ରକ୍ଷାହେତୁ କୌଣସି ପ୍ରକାର ସଦୁପାୟ ଅବଲମ୍ବନର ବିଶେଷ ଚେଷ୍ଟା ନାହିଁ । ସେହିପରି ଜନସାଧାରଣଙ୍କ ମଧ୍ୟରେ ହିଁ ସାର୍ ବାସୁଦେବ ସୁଢ଼ଳଦେବଙ୍କର ଅଭ୍ୟୁଦୟ । ତେଣୁ ସେ କ୍ଷଣଜନ୍ମା ପୁରୁଷ, ତେଣୁ ସେ ପ୍ରାତଃ ସ୍ମରଣୀୟ ନରପତି, ତେଣୁ ସେ ଜନସମାଜରେ ବିଶିଷ୍ଟ ବ୍ୟକ୍ତି, ଲୋକସେବାରେ ଆଦର୍ଶ ମାନବ-ପ୍ରଜାଶାସନରେ ଆଦର୍ଶ ରାଜା ।

## (ଟ) ଟେଲିଫୋନ୍

ବାମଣ୍ଡା ରାଜ୍ୟ ଓ ରାଜଧାନୀ ଦେବଗଡ଼ର ଶୋଭା ସୌନ୍ଦର୍ଯ୍ୟ, ଐଶ୍ୱର୍ଯ୍ୟ ସଂପଦ, ମାନ ମର୍ଯ୍ୟାଦା ଓ ବିଦ୍ୟା-ଗୌରବ ବୃଦ୍ଧି କରିବା ହିଁ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ ଥିଲା, ତେଣୁ ଗୋଟାଏ ପରେ ଗୋଟାଏ ସଦ୍ ଅନୁଷ୍ଠାନର ସୂତ୍ରପାତ କରିଅଛନ୍ତି ଓ କ୍ରମେ ସେଗୁଡ଼ିକୁ ଏକ ଏକ ପ୍ରତିଷ୍ଠାନରେ ପରିଣତ କରିବା ପାଇଁ ପ୍ରାଣପଣେ ଯତ୍ନ କରିଅଛନ୍ତି । ପୋଷ୍ଟ ଅଫିସ ସମ୍ବନ୍ଧୀୟ ବ୍ୟବସ୍ଥା ଶେଷ କରି ରାଜାବାହାଦୁର ରାଜଧାନୀ ଦେବଗଡ଼ରେ ଏବଂ ରାଜ୍ୟର ଅନ୍ୟାନ୍ୟ ପ୍ରଧାନ ପ୍ରଧାନ ସ୍ଥାନରେ ଟେଲିଗ୍ରାଫ୍‌ର ତାର ବସାଇବାର ପ୍ରୟାସୀ ହୋଇ ପୋଲିଟିକାଲ ଏଜେଣ୍ଟଙ୍କ ଦ୍ୱାରା ତାରବିଭାଗର କର୍ତ୍ତାମାନଙ୍କ ସହିତ ପତ୍ରାଳାପ ଆରମ୍ଭ କରନ୍ତି । ବହୁ ପତ୍ରାଳାପ ପରେ ସ୍ଥିର ହେଲା ଯେ, ଯଦି ବାମଣ୍ଡା ରାଜ୍ୟରେ ଟେଲିଗ୍ରାଫ୍ ତାର ନେବା ବ୍ୟବସ୍ଥା ଭାରତ ଗଭର୍ଣ୍ଣମେଣ୍ଟ ମଞ୍ଜୁର କରନ୍ତି, ତାହେଲେ କୋଡ଼ିଏ ବର୍ଷ କାଳ ସେହି ଟେଲିଗ୍ରାଫ କାର୍ଯ୍ୟ ପରିଚାଳନା ଭାର ରାଜା ବାହାଦୁର ନିଜ ହସ୍ତରେ ରଖି ପାରନ୍ତି; କିନ୍ତୁ ସେହି ନିର୍ଦ୍ଦିଷ୍ଟ କାଳ ପରେ ଏହି ତାର ଅଫିସର କାର୍ଯ୍ୟକଳାପ ସବୁକିଛି ଗଭର୍ଣ୍ଣମେଣ୍ଟଙ୍କ ତତ୍ତ୍ୱାବଧାନକୁ ଚାଲିଯିବ । ସେତେବେଳେ ତାହା ଉପରେ ବାମଣ୍ଡା ରାଜ୍ୟର କୌଣସି କର୍ତ୍ତୃତ୍ୱ ରହିବ ନାହିଁ । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହିପରି ବ୍ୟବସ୍ଥାରେ ସମ୍ମତ ହୋଇ ପାରିଲେ ନାହିଁ ।

ଟେଲିଗ୍ରାଫ୍ ପ୍ରତିଷ୍ଠା ଦ୍ୱାରା ରାଜ୍ୟର ସୁବିଧା ସାଧନ ଚେଷ୍ଟାରେ ବ୍ୟର୍ଥ ମନୋରଥ ହୋଇ, ରାଜା ବାହାଦୁର ନିଶ୍ଚେଷ୍ଟ ହୋଇ ରହିବା ପାତ୍ର ନଥିଲେ । କି ଉପାୟ ଅବଲମ୍ବନ କଲେ, ବାମଣ୍ଡା ରେଲୱେ ଷ୍ଟେସନଠାରୁ ସହଜରେ ସ୍ୱଳ୍ପ ସମୟରେ, ୫୮ ମାଇଲ୍ ଦୂରରେ ସ୍ଥିତ ଦେବଗଡ଼ ରାଜଧାନୀରେ ବସି ବାହ୍ୟ ସଂସାରକୁ ସମ୍ବାଦ ଆଦାନ-ପ୍ରଦାନ କରାଯାଇ ପାରେ, ସେହି ଚିନ୍ତାରେ ବ୍ୟସ୍ତ ହୋଇ ପଡ଼ିଲେ । ଏହି ୫୮ ମାଇଲ ପଥରେ ଡାକ ଯାତାୟତ ପାଇଁ ଅନେକ ସମୟ ଲାଗେ, ଅଥଚ ଟେଲିଗ୍ରାଫର ସାହାଯ୍ୟ ପାଇବା ଆଶା ଭରସା ଏକାବେଳକେ ପରିତ୍ୟାଗ କରିବାକୁ ପଡ଼ିଲା ।



Digitized by srujanika@gmail.com

ପରିଶେଷରେ ଅନେକ ଭାବନା ଚିନ୍ତା କରି ଟେଲିଫୋନ୍ ତାର ପ୍ରତିଷ୍ଠା କରିବାର ସଂକଳ୍ପ କରି ପୁନରାୟ ଭାରତ ଗଭର୍ଣ୍ଣମେଣ୍ଟଙ୍କ ସହିତ ପତ୍ରାଳାପ ଆରମ୍ଭ କଲେ । କହିବା ବାହୁଲ୍ୟ ଯେ ଏହାର ମାତ୍ର କୋଡ଼ିଏ ବର୍ଷ ପୂର୍ବରୁ ଟେଲିଫୋନ୍‌ର ଉଦ୍ଭାବନ ହୋଇଥିଲା । ସଭ୍ୟ ଜଗତରେ ସର୍ବତ୍ର ସେତେବେଳେ ସୁଦ୍ଧା ଟେଲିଫୋନ୍‌ର ପ୍ରଚଳନ ହୋଇନାହିଁ । ଅନେକ ଲେଖାଲେଖି ପରେ, ଅନେକ ଆଲୋଚନା ପରେ ଗଭର୍ଣ୍ଣମେଣ୍ଟ ସେହି ପ୍ରସ୍ତାବ ମଞ୍ଜୁର କଲେ । ତା'ପରେ କଲିକତାର ଓରିଏଣ୍ଟାଲ୍ ଟେଲିଫୋନ୍ କମ୍ପାନୀ ସହିତ କଥାବାର୍ତ୍ତା କରି ବ୍ୟୟର ପରିମାଣ ନିର୍ଦ୍ଧାରଣ ପୂର୍ବକ ଉକ୍ତ କଂପାନୀ ଉପରେ ଗୋବିନ୍ଦପୁର (ବାମଣ୍ଡା ରେଲୱେ ଷ୍ଟେସନ) ଠାରୁ ରାଜଧାନୀ ଦେବଗଡ଼ ପର୍ଯ୍ୟନ୍ତ ଟେଲିଫୋନ୍ ତାର ବସାଇବା ଭାର ଅର୍ପଣ କଲେ । ୧୯୦୦ ଖ୍ରୀଷ୍ଟାବ୍ଦର ଶେଷ ଭାଗରେ ଏହି କାର୍ଯ୍ୟ ଆରମ୍ଭ ହୋଇ ୧୯୦୧ ଖ୍ରୀଷ୍ଟାବ୍ଦରେ କାର୍ଯ୍ୟ ସଂପନ୍ନ ହୋଇଥିଲା । ସର୍ବପ୍ରଥମ ଗୋବିନ୍ଦପୁର, କୁଚିଣ୍ଡା, ସିରିଡ଼ ଓ ଦେବଗଡ଼ ୫୮ ମାଇଲ୍ ପଥରେ ଏହି ଚାରିଗୋଟି ସ୍ଥାନରେ ଟେଲିଫୋନ୍ କଳ ପ୍ରତିଷ୍ଠିତ କରି କାର୍ଯ୍ୟ ଆରମ୍ଭ ହୋଇଥିଲା । ପରେ ରାସ୍ତାରେ କେଶାଇବାହାଲ୍ ନାମକ ସ୍ଥାନରେ ସର୍ବଶେଷରେ ନୂତନ ଷ୍ଟେସନ ଖୋଲାଯାଏ ଏବଂ ସେହି ସ୍ଥାନରୁ ଚାରିମାଇଲ୍ ଦୂରରେ ମହୁଲ ପାଲି ନାମକ ସ୍ଥାନର ପୋଲିସ ଷ୍ଟେସନରେ ଶାଖା ଲାଇନ୍ ପ୍ରତିଷ୍ଠିତ ହୁଏ । ଏଠାରେ ଶାଖା ଲାଇନ୍ ପ୍ରତିଷ୍ଠା କରିବା କାରଣ ଏହି ଯେ, ଏହି ଅଞ୍ଚଳରେ ସର୍ବଦା ଦସ୍ୟୁ ଭୟ ପ୍ରବଳ । ସମୟ ସମୟରେ ସେହି ଅଞ୍ଚଳକୁ ଶାସନରେ ରଖିବାପାଇଁ ବହୁପୂର୍ବେ ଅନେକ ଅସୁବିଧା ଭୋଗ କରିବାକୁ ପଡୁଥିଲା । ବର୍ତ୍ତମାନ ଟେଲିଫୋନ୍ ସାହାଯ୍ୟ ଫଳରେ ସ୍ୱଳ୍ପ ସମୟ ମଧ୍ୟରେ ଲୋକ ସଂଗ୍ରହ ଓ ଶକ୍ତି ସଂଚୟ ଦ୍ୱାରା ସେହି ସବୁ ଅଶାନ୍ତି ଦମନ କରିବା ସହଜ ହୋଇଅଛି । ମହୁଲ ପାଲି ଶାଖା ପ୍ରତିଷ୍ଠା ପୂର୍ବେ ହିଁ ଦେବଗଡ଼ ଠାରୁ ଏହି ଟେଲିଫୋନର ତାର ଆହୁରି ପୂର୍ବଦିଗରେ ପ୍ରସାରିତ ହୋଇ ବଳମ୍ କୃଷିକ୍ଷେତ୍ର ଏବଂ ସେଠାରୁ ରାଜ୍ୟର ପୂର୍ବ ସୀମାରେ ବାହ୍ମଣୀ ନଦୀ ତୀରରେ ବାରକୋଟ ମହକୁମା ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି ଏବଂ ବଳମ୍ କୃଷିକ୍ଷେତ୍ର ଠାରୁ ଉତ୍ତର ପଶ୍ଚିମ ଦିଗରେ ଚାରି ମାଇଲ୍ ଦୂରରେ ରମ୍ଭାଇ କୃଷିକ୍ଷେତ୍ର ଏବଂ କାରଖାନାରେ ଏକ ଶାଖା ଲାଇନ୍ ପ୍ରତିଷ୍ଠିତ ହୋଇଅଛି ।

ଆମ୍ଭେମାନେ ଭାରତବର୍ଷର ବାହାର ସମ୍ବାଦ ଅବଗତ ନୋହୁଁ, ତେବେ ଭାରତବର୍ଷ ମଧ୍ୟରେ ଅନ୍ୟ କୌଣସି ସ୍ଥାନରେ ଏଭଳି ବହୁଦୂର ବ୍ୟାପୀ ଟେଲିଫୋନ୍ ତାର ପ୍ରତିଷ୍ଠିତ ହୋଇନାହିଁ । ବର୍ତ୍ତମାନ ବାମଣ୍ଡାରେ ଏହି ପ୍ରଧାନ ଲାଇନ୍, ଗୋବିନ୍ଦପୁରଠାରୁ ବାରକୋଟ ପର୍ଯ୍ୟନ୍ତ ୭୮ ମାଇଲ୍ ପ୍ରସାରିତ । ଏହି ଲାଇନ୍ ପ୍ରତିଷ୍ଠା ଫଳରେ ବାମଣ୍ଡା ରାଜ୍ୟର ସର୍ବତ୍ର



Digitized by srujanika@gmail.com

ରାଜକାର୍ଯ୍ୟ ପରିଚାଳନା ଯେପରି ଏକପକ୍ଷେ ସହଜ ହୋଇଅଛି, ଅନ୍ୟପକ୍ଷରେ ପୁଣି ଏହି ସମସ୍ତ ସ୍ଥାନରୁ ବାମଣ୍ଡା ରେଳ ଷ୍ଟେସନକୁ ଟେଲିଗ୍ରାଫ୍ ସାହାଯ୍ୟରେ ରାଜ୍ୟର ବାହାରକୁ ସର୍ବତ୍ର ରାଜକୀୟ ଏବଂ ଅନ୍ୟାନ୍ୟ ପ୍ରୟୋଜନରେ ତାର ଦ୍ୱାରା ସମ୍ବାଦ ପଠାଇବା ମଧ୍ୟ ସହଜସାଧ୍ୟ ହୋଇଅଛି । ରାଜ୍ୟ ବାହାରେ ନାନା ସ୍ଥାନକୁ ସମ୍ବାଦ ଆଦାନ ପ୍ରଦାନ ବିଷୟରେ ବର୍ତ୍ତମାନ ୫୮ ମାଇଲ୍ ଦୂରରେ ଦେବଗଡ଼ରେ ବସି ରହିବା ଏବଂ ବାମଣ୍ଡା ଷ୍ଟେସନରୁ ଅର୍ଦ୍ଧମାଇଲ୍ ମଧ୍ୟରେ ଗୋବିନ୍ଦପୁରରେ ଥିବା ସମାନ ସୁବିଧାଜନକ ହୋଇଅଛି । ଏହା ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଏକ ଅପୂର୍ବ କୀର୍ତ୍ତି । ଏହି ଅନୁଷ୍ଠାନଟି ସୁସିଦ୍ଧ କରିବାପାଇଁ ସେ ପ୍ରଚୁର ଅର୍ଥ ବ୍ୟୟ କରିଥିଲେ ।

ବାମଣ୍ଡା ପରିଦର୍ଶନରେ ଯାତ୍ରାକରି ଆମ୍ଭେମାନେ ବାମଣ୍ଡା ଷ୍ଟେସନରେ ପହଞ୍ଚିବା ମାତ୍ରେ ବର୍ତ୍ତମାନର ରାଜା ବାହାଦୁର ୫୮ ମାଇଲ୍ ଦୂରରେ ସ୍ଥିତ ଦେବଗଡ଼ ଠାରୁ ଏହି ଟେଲିଫୋନ୍ ସାହାଯ୍ୟରେ ଆମ୍ଭମାନଙ୍କ କୁଶଳ ଜିଜ୍ଞାସା କରିଥିଲେ । ଏହିଠାରେ କଟକ କଲେଜର ବିଜ୍ଞାନାଚାର୍ଯ୍ୟ ରାୟସାହେବ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ରାୟ ଏମ୍.ଏ. ବିଦ୍ୟାନିଧି ମହାଶୟଙ୍କ ବାମଣ୍ଡା ସମ୍ବନ୍ଧୀୟ ଅଭିମତର କିୟଦ୍ ଅଂଶ ଉଦ୍ଧୃତ କରାହେଲା- 'ଆମ୍ଭେ ରେଲରୁ ଓହ୍ଲାଇବା ମାତ୍ରେ ହିଁ ମହାରାଜଙ୍କ ଜନୈକ କର୍ମଚାରୀ ତତ୍ରସ୍ଥ କଚେରୀ ଗୃହକୁ ନେଇଗଲେ । ସେହିଠାରେ ମହାରାଜଙ୍କ କାଠର ଏକ ବୃହତ୍ ବ୍ୟବସାୟ ଅଛି ଏବଂ ତଦୁପଲକ୍ଷେ ସେଠାରେ କେତେକ କର୍ମଚାରୀ ଓ ପୋଲିସ୍ ଥାନ୍ତି । ଗୃହରେ ଉପସ୍ଥିତ ହେବା ମାତ୍ରେ ଏକ ଅଶ୍ରୁତ ପୂର୍ବ ବ୍ୟାପାର ପ୍ରତ୍ୟକ୍ଷ କଲୁ । ଜନୈକ କର୍ମଚାରୀ କହିଲେ-ମହାରାଜ ଓ ଯୁବରାଜ ଆମ୍ଭମାନଙ୍କ ସହିତ କଥାବାର୍ତ୍ତା କରିବାକୁ ଚାହାଁନ୍ତି । ଜାଣିଅଛୁ ସେମାନେ ଦେବଗଡ଼ଠାରେ ଅଛନ୍ତି । ସେହିଠାରୁ ଦେବଗଡ଼ ପ୍ରାୟ ୬୨ ମାଇଲ୍ । ମହାରାଜ ଯେ ଏହି ସମସ୍ତ ପଥରେ ଟେଲିଫୋନ୍ ବସାଇଛନ୍ତି ଜାଣିଥିଲୁ । ଯାହା ହେଉ, ସେମାନେ ୬୨ମାଇଲ୍ ଦୂରରୁ ଆମ୍ଭମାନଙ୍କର ସ୍ୱାଗତ କୁଶଳ ପ୍ରଶ୍ନ କଲେ ଏବଂ ସେହିସ୍ଥାନଠାରୁ ଗଡ଼କୁ ଯିବାପାଇଁ ଯାନାଦି ଓ ପଥ ମଧ୍ୟରେ ଅବସ୍ଥିତର ବିଷୟ ଜଣାଇଲେ । ଆମ୍ଭେମାନେ ମଧ୍ୟ ଅଭିବାଦନ କରି ସେମାନଙ୍କ କୁଶଳ ଜିଜ୍ଞାସା କଲୁ । କୌଣସି ଦେଶୀୟ ରାଜ୍ୟରେ ଏଭଳି ଟେଲିଫୋନ୍‌ର ବ୍ୟବସ୍ଥା ଅଛି କି ? ଦେଶୀୟ ଲୋକେ ବଙ୍ଗଳା ଓ ଓଡ଼ିଆରେ ଟେଲିଫୋନ୍‌ରେ କଥାବାର୍ତ୍ତା କରୁଅଛନ୍ତି, ଅସଜ ହେଲେ, ଯନ୍ତ୍ରର ସଂସ୍କାର କରୁଅଛନ୍ତି, ଅଭିନବ ବ୍ୟାପାର ନିଶ୍ଚୟ । ୧୮୭୬ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଗ୍ରେହାମ୍ ବେଲ୍ ସାହେବ ଟେଲିଫୋନ୍ ଉଦ୍ଭାବନ କରିଥିଲେ, ସେ କଣ ଭାବିଥିଲେ ଯେ, ଭାରତବାସୀଙ୍କ ପରି ଅସଭ୍ୟ ଓ ଅର୍ଦ୍ଧସଭ୍ୟ



Digitized by srujanika@gmail.com

ଲୋକମାନେ ଇଂରାଜୀ ବଦଳରେ ଦେଶୀୟ ଭାଷାର ଶବ୍ଦ ଚାଳନା ଦ୍ୱାରା ଟେଲିଫୋନ୍ ଉପରେ ଅତ୍ୟାଚାର କରିବେ ? ଯାହାହେଉ, ଆଉ କୌଣସି ଦେଶୀୟ ରାଜ୍ୟରେ ଏଭଳି ଆଧୁନିକ ସଭ୍ୟତା ବ୍ୟଞ୍ଜକ ବ୍ୟବସ୍ଥା ଅଛି କି ନାହିଁ ତାହା ଜାଣିବାର ବିଷୟ ନିଶ୍ଚୟ ।'

ବର୍ତ୍ତମାନର ରାଜା ବାହାଦୁରଙ୍କ କୃପାରୁ ମୋଟର ସାହାଯ୍ୟରେ ରାଜ୍ୟର ନାନା ସ୍ଥାନକୁ ଯାତାୟତ ସୁବିଧା ହୋଇଅଛି; କିନ୍ତୁ ରାଜା ବାସୁଦେବ ସୁଢ଼ଳଦେବଙ୍କ ସମୟରୁ ହିଁ ସେହିପରି ସୁଯୋଗ ସାଧନର ସୂତ୍ରପାତ ଅର୍ଯୋଜନ ଅନୁଭୂତ ହୋଇଥିଲା । ତାଙ୍କ ସମୟରେ ହସ୍ତୀ, ଅଶ୍ୱ, ଶଗଡ଼, ପାଲିଙ୍କି ହିଁ ପ୍ରଧାନ ଯାନ ଥିଲା । ବର୍ତ୍ତମାନ ମଧ୍ୟ ସେ ସବୁର ବ୍ୟବହାର ପୂର୍ବବତ୍ ପ୍ରଚଳିତ ଅଛି; କିନ୍ତୁ ସେ ହିଁ ୧୯୦୩ ଖ୍ରୀଷ୍ଟାବ୍ଦରେ ବହୁ ଅର୍ଥ ବ୍ୟୟକରି ପ୍ରଥମ ମୋଟର କ୍ରୟ କରନ୍ତି ।

## (ଠ) ପିଲ୍‌ଖାନା ଓ ଘୋଡ଼ାଶାଳ ପ୍ରଭୃତି

ବାମଣ୍ଡା ଅବସ୍ଥାନ କାଳରେ ରାଜା ବାହାଦୁର ଦ୍ୱିତୀୟ କି ତୃତୀୟ ଦିବସ ଅପରାହ୍ଣ ସମୟରେ ଆମ୍ଭମାନଙ୍କୁ ପିଲ୍‌ଖାନା (ହସ୍ତୀଶାଳା) ଦେଖାଇବାପାଇଁ ନେଇ ଯାଇଥିଲେ । ସେହି ସମୟରେ ଏକ ବିସ୍ତୃତ ଆମ୍ର ବଗିଚାରେ ହସ୍ତୀମାନେ ବାସ କରୁଥିଲେ । ଏମାନେ ସଂଖ୍ୟାରେ ମଧ୍ୟ ଅଳ୍ପ ନୁହନ୍ତି । ଏମାନଙ୍କ ପାଇଁ ସ୍ୱତନ୍ତ୍ର ଗୃହ ଅଛି । ରାଜା ବାହାଦୁର ଆମ୍ଭମାନଙ୍କୁ ନେଇ ହସ୍ତୀମଣ୍ଡଳରେ ଉପସ୍ଥିତ ହେବା ମାତ୍ରେ, ସେହି ବିଶାଳ ଦେହ ଜୀବମାନେ ପ୍ରାୟ ଏକ ସମୟରେ ଏକ ଆନନ୍ଦ କୋଳାହଳ ବ୍ୟଞ୍ଜକ ଶବ୍ଦ କରି ଅତିଥିଙ୍କ ସହ ରାଜାଙ୍କର ସମ୍ବର୍ଦ୍ଧନା କଲେ । ସେମାନଙ୍କର ମଧ୍ୟରୁ ଅନେକେ ହିଁ ରାଜା ବାହାଦୁରଙ୍କ ଆଡ଼କୁ ମୁହଁ ଫେରାଇ କରୋତ୍ତୋଳନ ପୂର୍ବକ ଅଭିବାଦନ କରିବା ଦେଖି ଆମ୍ଭେମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲୁ । ଅପେକ୍ଷାକୃତ କ୍ଷୁଦ୍ରାକାରର ଏକ ହସ୍ତୀ ନିକଟକୁ ଆସିବା ମାତ୍ରେ, ରାଜା ବାହାଦୁର ହସ୍ତୀ ବୋଧ୍ୟ ଭାଷାରେ କିଛି କହିବାମାତ୍ରେ ସେ ବସି ପଡ଼ିଲା, ପରକ୍ଷଣରେ ପୁନଃ କିଛି କହିବା ମାତ୍ରେ ଏକାବେଳକେ ପୃଷ୍ଠୋପରି ଶୟନ କଲା । ସେମାନଙ୍କର ଭାଷା ବୁଝିପାରିବା ଓ ଆନୁଗତ୍ୟ ସ୍ୱୀକାରର ବ୍ୟାପାର ଦର୍ଶନ କରି ଏକ ଅପୂର୍ବ ଆନନ୍ଦ ସଂଭୋଗ କରିଥିଲୁ । ରାଜା ବାହାଦୁର ଆମ୍ଭମାନଙ୍କୁ ନେଇ ସବୁ ହାତୀଙ୍କ ନିକଟକୁ ଥରେ ଲେଖା ଯାଇଥିଲେ ଏବଂ ସମସ୍ତେ ହିଁ ସମାନ ଭାବରେ ତାଙ୍କର ଅଭ୍ୟର୍ଥନା କରିଥିଲେ । କେବଳ ଗୋଟିଏ ମାତ୍ର ହାତୀ ନିକଟକୁ କେହି ଯାଆନ୍ତି ନାହିଁ ।

ଶୁଣାଗଲା, ତିନିଗୋଟି ହସ୍ତୀ ଅଳ୍ପଦିନ ପୂର୍ବରୁ ଜଙ୍ଗଲରୁ ଧରାହୋଇ ଆସିଛନ୍ତି । ସେହି ତିନିଗୋଟି ମଧ୍ୟରୁ ଦୁଇଗୋଟି ମନର କ୍ଲେଶରେ ଅନାହାରରେ ମୃତ୍ୟୁବରଣ



Digitized by srujanika@gmail.com

କରିଛନ୍ତି । ଏହି ହସ୍ତୀଟି ସେହିଁ ଦଳର ଅନ୍ୟତମ । ଉପରେ ବର୍ଣ୍ଣିତ ବଶ୍ୟତା ଓ ଆନୁଗତ୍ୟର ଭାବ ଦେଖି, ଯେପରି ଏକପକ୍ଷରେ ଆନନ୍ଦ ହୋଇଥିଲା, ଅପର ପକ୍ଷରେ ଏହାର ବନ୍ଧନ ଦଶା ଓ ବିମର୍ଷ ଭାବ ଦେଖି ସେହିପରି ହୃଦୟରେ ଗଭୀର କ୍ଳେଶ ସଂଚାର ହୋଇଥିଲା । ଜୀବ ଜଗତରେ କେହିହେଲେ ସହଜରେ ପରାଧୀନତାର ନିଗଡ଼ରେ ଆବଦ୍ଧ ହେବାପାଇଁ ଓ ଦାସତ୍ୱ କରିବା ପାଇଁ ସମ୍ମତ ନୁହେଁ । ସେପରି ସ୍ଥଳରେ ବର୍ତ୍ତମାନ ଯୁଗର ସର୍ବାପେକ୍ଷା ବୃହତ୍ ଦେହ ସ୍ଥଳଚର ଜୀବ କାହିଁକି ବନ୍ୟ ଜୀବନର ପରମ ସୁଖ ପରିତ୍ୟାଗ କରି ସହଜରେ ମାନବ ସେବାରେ ସମ୍ମତ ହେବେ ? କିନ୍ତୁ ବହୁବିଧ ଉପାୟରେ ଏହି ସମସ୍ତ ଜୀବମାନଙ୍କୁ ବଶୀଭୂତ କରି ଆବାହମାନ କାଳରୁ ମନୁଷ୍ୟ ଆପଣାର ପ୍ରୟୋଜନ ସାଧନ କରି ଆସୁଅଛି । ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜ୍ୟର ଅରଣ୍ୟରେ ଏମାନଙ୍କର ଅଭାବ ନାହିଁ । ବହୁକାଳରୁ ଏମାନେ ଧୃତ ହୋଇ ଅନ୍ୟାନ୍ୟ ସ୍ଥାନ ପରି ଏହିଠାରେ ମଧ୍ୟ ରାଜ ସେବାରେ ନିଯୁକ୍ତ ଏବଂ ସମୟ ସମୟରେ ଅଧିକ ସଂଖ୍ୟକ ଧୃତ ହେଲେ, ସ୍ୱର୍ଗୀୟ ରାଜା ବାହାଦୁରଙ୍କର ସମୟରେ ରାଜ୍ୟ ବାହାରେ ବିକ୍ରୟ ମଧ୍ୟ ହୋଇଅଛନ୍ତି । ତାଙ୍କ ସମୟରେ ଏହାଦ୍ୱାରା ବର୍ଷ ପରେ ବର୍ଷ କିଛି କିଛି ଆୟ ବୃଦ୍ଧି ମଧ୍ୟ ହୋଇଅଛି ।*(୩୨)*

ଆମ୍ଭେମାନେ ଯେଉଁ ହାତୀଟିକୁ ଦେଖିଲୁ, ତାର ଚାରି ଗୋଡ଼ରେ ମୋଟା ଏବଂ ଦୀର୍ଘ ଦଉଡ଼ି ବାନ୍ଧି ଦୂରର ଆମ୍ବଗଛ ମୂଳରେ ବନ୍ଧା ଯାଇଅଛି । ଏଭଳି ଭାବରେ ବନ୍ଧା ହୋଇଅଛି ଯେ, ସେ ଇଚ୍ଛାକଲେ କେବଳ ଶୟନ କରିପାରେ । ଅଧିକ ଦୂରକୁ ଯାତାୟତର ସୁଯୋଗ ସୁବିଧା ନାହିଁ । ଦଳର ଦୁଇଗୋଟି ଅନାହାରରେ ଦେହତ୍ୟାଗ କରି ଅଛନ୍ତି, ଏହି ହାତୀଟି ଖାଇବା ଆରମ୍ଭ କରିଅଛି ଏବଂ ବଞ୍ଚି ରହିବ ବୋଲି ସମସ୍ତଙ୍କର ବିଶ୍ୱାସ ।

ହସ୍ତୀ ଶତବର୍ଷ ଜୀବିତ । ଉପଯୁକ୍ତ ଆହାର ପାଇଲେ, ଏମାନେ ସହଜରେ ମରନ୍ତି ନାହିଁ । କୌତୂହଳବଶତଃ ଅନୁସଂଧାନ କଲି । ଲୋକେ କଥାରେ କହନ୍ତି ହସ୍ତୀ ଜୀଇଁରହିଲେ ଲକ୍ଷେ ମଲେ ମଧ୍ୟ ଲକ୍ଷେ । ତେବେ ସେହି ମୃତ ହାତୀ ଦୁଇଟିର ଦନ୍ତ ଓ ଅସ୍ଥି ପଞ୍ଜର ବିକ୍ରୟ କରି କ'ଣ ରାଜ ଭଣ୍ଡାରରେ ପ୍ରଚୁର ଅର୍ଥ ମହଜୁଦ୍ ରହିଅଛି ? ଉତ୍ତରରେ ଯାହା ଶୁଣିଲି, ତହିଁରେ ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ଏକ ଅସାଧାରଣ, ସାବଧାନ, ନିର୍ଲୋଭ ଓ କର୍ତ୍ତବ୍ୟପରାୟଣ ନୃପତି ବୋଲି ଅନୁଭବ କଲି । ତାଙ୍କ ପ୍ରୟୋଜନ ମୁତାବକ ସଂଖ୍ୟାଠାରୁ ଅଧିକ ହାତୀ ଧରାହେଲେ, ସେଗୁଡ଼ିକୁ ବିକ୍ରୟ କରାଯାଉଥିଲା; କିନ୍ତୁ ମୃତ ହସ୍ତୀର ଦନ୍ତ, ହସ୍ତୀ ପଞ୍ଜର ବିକ୍ରୟ ଏକାବେଳକେ ନିଷିଦ୍ଧ କାର୍ଯ୍ୟ ବୋଲି ତାହାଙ୍କ କର୍ତ୍ତୃକ ରାଜାଦେଶ



Digitized by srujanika@gmail.com

ପ୍ରଚାରିତ ହୋଇ ବର୍ତ୍ତମାନ ସୁଦ୍ଧା ବଳବତ୍ତର ରହିଅଛି । ଆଜି ପର୍ଯ୍ୟନ୍ତ ସେହି ଆଦେଶର ଅନ୍ୟଥା ହୋଇନାହିଁ । କାରଣ ହସ୍ତୀର ହାଡ଼ରେ ଅର୍ଥୋପାର୍ଜ୍ଜନ ସମ୍ଭାବନାରେ, ଯେ କୌଣସି ବ୍ୟକ୍ତି ବିଷାକ୍ତ ଖାଦ୍ୟ ଖୁଆଇ ହସ୍ତୀ ହତ୍ୟା କରିପାରେ । ଏହି ଆଶଙ୍କା ହେତୁ ମୃତ ହସ୍ତୀର ଦେହ ବିକ୍ରୟ କରି ଅର୍ଥୋପାର୍ଜ୍ଜନ ବ୍ୟବସ୍ଥା ଏକାବେଳକେ ନିବାରଣ କରି ଦେଇଥିଲେ । ଏହି କାର୍ଯ୍ୟ ବାମଣ୍ଡା ରାଜ୍ୟରେ ହେବାର ଉପାୟ ନାହିଁ ।

ଦେବଗଡ଼ ପିଲଖାନାର ପୂର୍ବଦିଗରେ ଏକ ସୁବୃହତ୍ ଗୃହରେ ଅଶ୍ୱଶାଳା ପ୍ରତିଷ୍ଠିତ । ଅଶ୍ୱଶାଳାରେ ସର୍ବଦା ରାଜକାର୍ଯ୍ୟର ସୌକାର୍ଯ୍ୟାର୍ଥେ ବହୁ ଅଶ୍ୱ ପ୍ରତିପାଳିତ ହୋଇଥାନ୍ତି । ଏଗୁଡ଼ିକ ନାନା ଜାତୀୟ । ଏମାନଙ୍କ ମଧ୍ୟରୁ ଅଧିକାଂଶ ହିଁ ଭାରତର ନାନା ସ୍ଥାନରୁ ତଥା ବିଦେଶରୁ ଆନୀତ । ରାଜା ସାର୍ ବାସୁଦେବ ଏବଂ ତଦୀୟ କୁମାରଗଣ ସମସ୍ତେ ହିଁ ଅଶ୍ୱଚାଳନାପଟୁ ଘୋଡ଼ାସୱାର । ବର୍ତ୍ତମାନର ରାଜା, ଯୁବରାଜ ଓ ଅନ୍ୟାନ୍ୟ କୁମାରମାନେ ଶିକାର ପାଇଁ ବହିର୍ଗତ ହେଲେ, ହସ୍ତୀ ଅଶ୍ୱ ଉଭୟ ବିଧ ଯାନାରୋହଣ ପୂର୍ବକ ଶିକାର କାର୍ଯ୍ୟରେ ଅଗ୍ରସର ହୁଅନ୍ତି । ନାନା ସ୍ଥାନକୁ ଯାତାୟତ ପାଇଁ ଅଶ୍ୱ ବ୍ୟବହୃତ ହୁଏ । ଶକଟ ଚାଳନା ପାଇଁ ମଧ୍ୟ ବହୁ ଅଶ୍ୱ ନିୟୋଜିତ ହୋଇଥାନ୍ତି ।

ପ୍ରସଂଗ କ୍ରମେ ଏଠାରେ ଆଉ ଏକ ଜାତୀୟ ଅନୁଷ୍ଠାନର ଉଲ୍ଲେଖ କରା ଯାଉଅଛି । ଭାରତର ସର୍ବତ୍ର ହିଁ ନାନା କାରଣରେ ଗୋବଂଶ ଧ୍ୱଂସ ପାଉଅଛି । ସ୍ୱର୍ଗୀୟ ରାଜା ବାହାଦୁର ଗୋବଂଶ ରକ୍ଷା ପାଇଁ ଓ ଏମାନଙ୍କର ଶ୍ରୀବୃଦ୍ଧି ସାଧନ ପାଇଁ ନିତ୍ୟ ମନୋଯୋଗୀ ଥିଲେ । ଗୋ ଜାତିର ଉନ୍ନତି କଳ୍ପେ ଭାଗଲପୁର ପ୍ରଭୃତି ଭିନ୍ନ ଭିନ୍ନ ସ୍ଥାନରୁ ଗାଈ ଓ ବଳଦ ଅଣାଇଥିଲେ । ତାଙ୍କର ରାଜକୀୟ କୃଷିକ୍ଷେତ୍ର ପାଇଁ ବହୁ ସଂଖ୍ୟକ ସବଳ ବଳଦ ପ୍ରତିପାଳିତ ହୋଇଥାନ୍ତି । ଦୁଗ୍ଧପାଇଁ ରାଜଧାନୀରେ ଅନେକ ଗାଈ ପ୍ରତିପାଳିତ ହୁଅନ୍ତି । ଯେଉଁ ସବୁ କାରଣରୁ ଗୋବଂଶ  ବିନାଶ ଘଟୁଅଛି, ସେ ସବୁ ମଧ୍ୟରେ ଗୋଚର୍ମ ବିକ୍ରୟ ଏକ ପ୍ରଧାନ କାରଣ । ବାମଣ୍ଡା ପାର୍ଶ୍ୱବର୍ତ୍ତୀ ସମସ୍ତ ରାଜ୍ୟ ଏବଂ ବହୁ ବହୁ ସ୍ଥାନରେ ଗୋଚର୍ମ ଉପରେ ଏକ ରାଜକର ନିର୍ଦ୍ଧାରିତ ହୋଇଅଛି । ହିନ୍ଦୁ ରାଜାଙ୍କ ପକ୍ଷରେ ଏହି ଗୋଚର୍ମ ବିକ୍ରୟ ଲବ୍ଧ ଅର୍ଥ ଗ୍ରହଣ ନିତ୍ୟାନ୍ତ ହୀନ ବୃତ୍ତିର ପରିଚାୟକ, ତେଣୁ ରାଜା ବାସୁଦେବ ସୁଢ଼ଳଦେବ ଏଭଳି ବିକ୍ରୟ ଲବ୍ଧ ଅର୍ଥରେ ସମ୍ମତ ହୋଇପାରି ନ ଥିଲେ । ଜଣେ ମୁସଲମାନ ଠିକାଦାର ଏହି ଚର୍ମ ବିକ୍ରୟ ନିଷେଧାଜ୍ଞା ରହିତ କରିବାପାଇଁ ଉଚ୍ଚ ହାରରେ କରଧାର୍ଯ୍ୟ କରି ଚର୍ମ କ୍ରୟର ଇଂଗିତ ଦେଇ ରାଜା ବାହାଦୁରଙ୍କୁ ପ୍ରଲୁବ୍ଧ କରିବା ଚେଷ୍ଟା କରିଥିଲେ । ସେହି ପ୍ରସ୍ତାବ ଗ୍ରହଣ କରିଥିଲେ ଏହି ଚର୍ମ ବିକ୍ରୟ ଲବ୍ଧ ଅର୍ଥ ପରିମାଣ ବାର୍ଷିକ ଅନ୍ୟୁନ ଆଠହଜାର


Digitized by srujanika@gmail.com

ଟଙ୍କା ହୋଇଥାନ୍ତା । ରାଜା ସାର୍ ବାସୁଦେବ ସୁଡ଼ଳଦେବ ସେହି ମୁସଲମାନ ଠିକାଦାରଙ୍କ ଅର୍ଥବଳର ଅହଂକାର ଖର୍ବ କରିବା ପାଇଁ, ନିତ୍ୟାନ୍ତ ସାମାନ୍ୟ ମୂଲ୍ୟରେ ରାଜ୍ୟର ପ୍ରଜାଙ୍କୁ ଗୋଚର୍ମ ବିକ୍ରୟର ଆଦେଶ ଦେଇଥିଲେ । ରାଜାଙ୍କ ପ୍ରାପ୍ୟ ଗ୍ରହଣରେ ସଂପୂର୍ଣ୍ଣ ଅସମ୍ମତି ଜ୍ଞାପନ କରି ଏହି ଅଳ୍ପ ମୂଲ୍ୟରେ ଚର୍ମବିକ୍ରୟର ଆଦେଶ ଦେଇ, ସେହି ବିଷୟରେ ପ୍ରକୃତ ସଂବାଦ ରଖିବାପାଇଁ ଗୁପ୍ତଚର ନିଯୁକ୍ତ କରାଇଥିଲେ । ଏଭଳି ଆଦେଶ ଦେବାର ତାତ୍ପର୍ଯ୍ୟ ଏହା ଥିଲା ଯେ, ସେହିପରି ଅକିଂଚିତ୍କର ମୂଲ୍ୟପାଇଁ କେହି ଲୋଭର ବଶବର୍ତ୍ତୀ ହୋଇ ବିଷ ପ୍ରୟୋଗ କରିବେ ନାହିଁ । ସୁତରାଂ ଚର୍ମ ଖୁବ୍ ସାଧାରଣ ପରିମାଣରେ ସଂଗୃହୀତ ହେବ ।

କୌଣସି ରାଜାଙ୍କର ନ୍ୟାୟନିଷ୍ଠା ରକ୍ଷାପାଇଁ ଏତକମାତ୍ର କଲେ ହିଁ ପ୍ରଶଂସାର ସୀମା ରହେ ନାହିଁ; କିନ୍ତୁ ସାର୍ ବାସୁଦେବ ଯେତେବେଳେ ଜାଣିପାରିଲେ ଯେ ଇତର ଜନଗଣ ଗୋଚର୍ମ ଲୋଭୀ ଠିକାଦାରର ପ୍ରରୋଚନାରେ ଅଧିକତର ମୂଲ୍ୟର ପ୍ରତ୍ୟାଶାରେ ବିଷ ପ୍ରୟୋଗ ଦ୍ୱାରା ଗୋବଂଶ ଧ୍ୱଂସ କରିବା ଆରମ୍ଭ କଲେ ଏବଂ ଏହି ଉପାୟରେ ଏହି ଅଳ୍ପ ମୂଲ୍ୟର ଅନ୍ତରାଳରେ ଅଧିକ ପ୍ରାପ୍ତିର ଆଶାରେ ଅଧିକ ଚର୍ମ ସଂଗ୍ରହ କରୁଛନ୍ତି, ସଂଗେ ସଂଗେ ତାଙ୍କ ପ୍ରଚାରିତ ରାଜାଦେଶ ବ୍ୟର୍ଥ କରିବାର ଚେଷ୍ଟା କରୁଅଛନ୍ତି, ସେତେବେଳେ ରାଜା ବାହାଦୁର ଗୋବଂଶ ରକ୍ଷାପାଇଁ ବଦ୍ଧପରିକର ହୋଇ ଏକାବେଳକେ ଗୋଚର୍ମ ବିକ୍ରୟ ବନ୍ଦ କରାଇ ଦେଲେ । ଆଦେଶ ଦେଲେ ଯେ ଅତଃପରେ ବାମଣ୍ଡା ରାଜ୍ୟରେ ଆଉ ଗୋଚର୍ମ ବିକ୍ରୟ ହେବ ନାହିଁ । ଠିକାଦାରମାନେ ଚମଡ଼ା କ୍ରୟ ପାଇଁ ଯେପରି ଆଉ ରାଜ୍ୟମଧ୍ୟକୁ ପ୍ରବେଶ ନ କରନ୍ତି । ଠିକାଦାର ଚର୍ମ ସଂଗ୍ରହପାଇଁ ରାଜ୍ୟ ମଧ୍ୟରେ ବିଚରଣ କଲେ, ରାଜା ଦଣ୍ଡରେ ଦଣ୍ଡିତ ହେବେ । ସ୍ୱାଭାବିକ୍ କାରଣରେ ଯେତେ ପରିମାଣରେ ଚର୍ମ ସଂଗୃହୀତ ହେବ, ତାହା ରାଜ୍ୟର ପ୍ରୟୋଜନ ପାଇଁ ଚର୍ମକାରମାନେ ଗ୍ରହଣ କରିବେ ।

ରାଜା ସାର୍ ବାସୁଦେବ ସୁଡ଼ଳଦେବଙ୍କ ରୁଚି ପ୍ରବୃତ୍ତି ଏତେ ସହଜ ଓ ସ୍ୱାଭାବିକ, ଏତେ ସିଧାସିଧା ଥିଲା ଯେ, ସେ ଚର୍ମକାର ପ୍ରଜାଙ୍କ ଦ୍ୱାରା ନିର୍ମିତ ପାଦୁକା ହିଁ ସର୍ବଦା ପରିଧାନ କରୁଥିଲେ ଏବଂ ରାଜ ପରିବାରର ସମସ୍ତେ ତାଙ୍କର ଏହି ସଦୃଷ୍ଟାନ୍ତର ଅନୁକରଣ କରନ୍ତି, ରାଜା ବାହାରକୁ ଯିବାପାଇଁ ହେଲେ ଏବଂ ରାଜଦରବାର ପ୍ରଭୃତିରେ ଉପସ୍ଥିତ ହେବାକୁ ହେଲେ, ରାଜ୍ୟ ବାହାରେ ପ୍ରସ୍ତୁତ ଉତ୍ତମ 'ବିନାମା' ପରିଧାନ କରୁଥିଲେ । ଆଜିକାଲିକା ଦିନରେ, ଦେଶରେ ଅନେକ ବଡ଼ ବଡ଼ ଆଦର୍ଶ ପ୍ରକାଶି କରିବା ପାଇଁ, ଆମ ଦେଶର ଅନେକ ଗଣ୍ୟମାନ୍ୟ ବ୍ୟକ୍ତି କର୍ତ୍ତା ସାଜି ଅନେକ ବକ୍ତୃତା ଦେଇ ଅନେକ ଉପଦେଶ



Digitized by srujanika@gmail.com

ଦେଇ ଥା'ନ୍ତି । କିନ୍ତୁ ଆକ୍ଷେପର ବିଷୟ ଏହି ଯେ, ସେମାନେ ଦେଶୀୟ ଲୋକଙ୍କୁ ନ ଚାହିଁ ସ୍ୱଦେଶ ସେବାର ଉପଦେଶ ଦେଇ, ନିଜେ ପରିଚ୍ଛେଦର ସୌଷ୍ଠବ ଓ ଶୋଭା ସଂପାଦନ ପାଇଁ ସର୍ବଦା ହିଁ ବିଦେଶୀ ବସ୍ତ୍ର ଓ ବନାମା ବ୍ୟବହାର କରିଥାନ୍ତି ।

ତାହା ଆଜିକୁ ଅନ୍ତତଃ କୋଡ଼ିଏ ବର୍ଷ ପୂର୍ବ କଥା, ଏକଥା କଲିକତାର କୌଣସି ଖ୍ୟାତନାମା ସାପ୍ତାହିକ ସମ୍ବାଦପତ୍ର ସଂପାଦକ ମହାଶୟଙ୍କୁ ଆମ୍ଭମାନଙ୍କ କେଉଁ ଏକ ସ୍ୱଦେଶ ସେବକ ବନ୍ଧୁ ଜିଜ୍ଞାସା କରିଥିଲେ, 'ଆପଣଙ୍କ ସମ୍ବାଦପତ୍ରରେ ସ୍ୱଦେଶୀ ଦ୍ରବ୍ୟର ପ୍ରଚଳନ ଚେଷ୍ଟା ତରଙ୍ଗ ତୋଫାନ୍ ତୋଳିଛି, କିନ୍ତୁ ଆପଣ ସ୍ୱୟଂ ବିଦେଶୀ ବହୁମୂଲ୍ୟ ପାଦୁକା, ପରିଚ୍ଛେଦ ଓ ଛତ୍ର ବ୍ୟବହାର କରନ୍ତି ?' ଉତ୍ତରରେ ସେହି ସଂଭ୍ରାନ୍ତ ସଂପାଦକ ପ୍ରବର କହିଥିଲେ, 'ଲେଖିଲେ ଅର୍ଥୋପାର୍ଜନ ହୁଏ, ଆଉ ବିଦେଶୀ ଉତ୍ତମ ଦ୍ରବ୍ୟସବୁର ବ୍ୟବହାରରେ ଆରାମ ଅଛି ।' ଦେଶରେ ଏହି ନୀତିର ପରିପୋଷକ ପଦସ୍ଥ ବ୍ୟକ୍ତିଗଣଙ୍କ ତାଲିକା ପ୍ରସ୍ତୁତ କରି ପାରିଲେ, କପାଳରେ କରାଘାତ କରି କହିବାକୁ ପଡ଼ିବ- 'କୁହ ମା ସେମାନେ ଛିଡ଼ାହେବେ କୋଉଠି ?' ଏହି ଶ୍ରେଣୀର ସମାଜ ପରିଚାଳକଗଣଙ୍କ ସମକ୍ଷରେ ଦୀର୍ଘ ଜୀବନବ୍ୟାପୀ ସ୍ୱଦେଶୀ ପରିଚ୍ଛଦ ଧାରଣର ଅତ୍ୟୁଚ୍ଚ ଆଦର୍ଶ ରଖି ଆମ୍ଭମାନଙ୍କ ଚିରପୂଜ୍ୟ ବିଦ୍ୟାସାଗର ମହାଶୟ ସ୍ୱର୍ଗାରୋହଣ କରିଅଛନ୍ତି । ଅନେକ ବନ୍ଧୁଙ୍କ ତାହାଙ୍କୁ 'ଉଡ଼େ' ବୋଲି ଉପହାସ କରି କଣ୍ଠକଳଂକିତ କରିବା ଆମ୍ଭେ ଶୁଣିଅଛୁ । ତାହାଙ୍କ ସୁହୃଦ୍ ରାଜା ସାର୍ ବାସୁଦେବ ସୁଢ଼ଳଦେବ ସ୍ୱରାଜ୍ୟ ଓ ସ୍ୱଦେଶସେବାର ଯେଉଁ ଉଜ୍ଜ୍ୱଳ ତିଳକ ଲଲାଟରେ ଧାରଣ କରି ଆମ୍ଭମାନଙ୍କ ସମ୍ମୁଖରେ ଦଣ୍ଡାୟମାନ, ତାହାଙ୍କୁ ମଧ୍ୟ 'ଉଡ଼େ' ପର୍ଯ୍ୟାୟଭୁକ୍ତ କରି ବହୁ ବ୍ୟକ୍ତି ଆରାମ ଓ ଆନନ୍ଦ ସଂଭୋଗ କରିବା ପାଇଁ ବ୍ୟାକୁଳ ହେବେ । ତେବେ ସେମାନଙ୍କ ଜାଣିବା ଉଚିତ୍ ସ୍ୱର୍ଗୀୟ ବିଦ୍ୟାସାଗର ମହାଶୟ କିମ୍ବା ସ୍ୱର୍ଗୀୟ ସାର୍ ବାସୁଦେବଙ୍କ ଜୀବନର ଆଦର୍ଶ ମାନବ ସମାଜରେ ବିରଳ ଏବଂ ତାହା 'ଉଡ଼େ' ପର୍ଯ୍ୟାୟଭୁକ୍ତ ହେବାର ନୁହେଁ । ସେହି ଆଦର୍ଶ ଜଗତର ଆଦର୍ଶ । ଜ୍ୟେଷ୍ଠରେ ପେନ୍ଥା ପେନ୍ଥା ଜାମ୍ବୁ ଫଳେ, ବସନ୍ତରେ ରାଶି ରାଶି ଫୁଲ ଫୁଟେ, କିନ୍ତୁ ବିଧାତାଙ୍କର 'କୃପାସିଦ୍ଧ ଆଦର୍ଶ ମାନବ ଶିଶୁ' ଶତବର୍ଷରେ ଜଣେ ଆବିର୍ଭୂତ ହୁଅନ୍ତି କି ନାହିଁ ସନ୍ଦେହ । ତାହା ନହେଲେ, ଭାରତର ସର୍ବତ୍ର ଆସାମର ଚା' ବଗିଚାରେ ଓ ଭାରତର ବାହାରେ ନାନା ଦେଶ ଦେଶାନ୍ତରେ ଦାସତ୍ୱ କରିବା ପାଇଁ ଲୋକ ସଂଗ୍ରହରେ ନିଯୁକ୍ତ ଦଲାଲ୍ କୋଉଠି ଭ୍ରମଣ ନ କରନ୍ତି ? ଆସମୁଦ୍ର ହିମାଳୟ, ଆବ୍ରହ୍ମ ପଞ୍ଚନଦ, ସର୍ବତ୍ର ଦଲାଲମାନଙ୍କର ବିଚରଣ ସହଜ ହୋଇଅଛି । ବିଶେଷ ଭାବରେ ମାନ୍ଦ୍ରାଜରେ, ମଧ୍ୟ ପ୍ରଦେଶରେ, ଓଡ଼ିଶାରେ ଓ



Digitized by srujanika@gmail.com

ଛୋଟନାଗପୁରରେ ଏମାନଙ୍କର କର୍ମକ୍ଷେତ୍ରର ପ୍ରସାର ବହୁ ବିସ୍ତୃତ ଏବଂ ଏମାନଙ୍କ ବିଚରଣ ଫଳରେ କେତେ ନିରୀହ ଦରିଦ୍ର ସଂସାର ବିଧ୍ୱସ୍ତ, ବିନଷ୍ଟ ଓ ଲୁପ୍ତ ହେଉଅଛି । ସେମାନଙ୍କ ବିଳାପ ଓ ଅଶ୍ରୁଜଳ ଏକ ବିଧାତାଙ୍କ ଭିନ୍ନ ଆଉ କିଏ ବା ଦେଖି ଓ ଶୁଣି ପାରନ୍ତି ? ଆଉ ଦେଖି ପାରନ୍ତି ମନୁଷ୍ୟ ପରି ମନୁଷ୍ୟ-ସାର୍ ବାସୁଦେବ ସୁଢ଼ଳଦେବ ।

ଏହି ଦଲାଲ୍‌ମାନେ ବାମଣ୍ଡା ରାଜ୍ୟରେ ପ୍ରବେଶ କରି କୁଲି ସଂଗ୍ରହ ଚେଷ୍ଟାରେ ଥିଲେ । ଜଣେ ଦୁଇଜଣ ସଂଗ୍ରହ କରି ଚାଲିଯାଇଛନ୍ତି । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହି ସମ୍ବାଦ ଅବଗତ ହୋଇ ସେହି ଅପହୃତ ଲୋକଙ୍କ ସଂଧାନରେ ଲୋକ ନିଯୁକ୍ତ କଲେ, କିନ୍ତୁ ତହିଁରେ ସେହି ଲୋକମାନଙ୍କ ସମ୍ବାଦ ମିଳିଲା ନାହିଁ । ମଧ୍ୟ ପ୍ରଦେଶର ସାନ ଓ ବଡ଼ ବିଭାଗୀୟ ଶାସନ କର୍ତ୍ତାମାନଙ୍କ ସହିତ ପତ୍ରାଳାପରେ ମଧ୍ୟ କୌଣସି ସୁଫଳ ମିଳିଲା ନାହିଁ । ଅତଃପରେ ନିଜ ରାଜ୍ୟ ମଧ୍ୟରେ ପ୍ରଚାର କରାଇ ଦେଲେ ଯେ, ଦଲାଲ୍ ଧରି ଦେଇପାରିଲେ ପ୍ରଜାମାନେ ପୁରସ୍କାର ପାଇବେ । ଏହି ଆଦେଶ ପ୍ରଚାରହେବା ପରେ ଦଲାଲ୍ ସର୍ଦ୍ଦାରମାନଙ୍କ ପରିଚାଳିତ ପ୍ରବଳ ପକ୍ଷ, ଛତିଶଗଡ଼ର ପୋଲିଟିକାଲ ଏଜେଣ୍ଟଙ୍କ ଦ୍ୱାରା ପତ୍ର ଲେଖାଇ ବାମଣ୍ଡା ରାଜ୍ୟରୁ କୁଲି ସଂଗ୍ରହ କରିବା ପାଇଁ ରାଜାଦେଶ ପ୍ରାର୍ଥନା କଲେ । ସେତେବେଳେ ରାଜା ନୂତନ ଆଦେଶ ପ୍ରଚାର କରାଇ ଜନସାଧାରଣଙ୍କୁ ଜଣାଇ ଦେଲେ ଯେ ରାଜ୍ୟର ଜଣେ ମାତ୍ର ବ୍ୟକ୍ତି ଉଦରାନ୍ନ ପାଇଁ ରାଜ୍ୟବାହାରକୁ ଯିବେ ନାହିଁ । ବାମଣ୍ଡା ରାଜ୍ୟରେ ରାଜକାର୍ଯ୍ୟରେ ନିଯୁକ୍ତ କରିବା ପାଇଁ ଉପଯୁକ୍ତ ଶ୍ରମଜୀବୀଙ୍କର ଅଭାବ ରହିଅଛି । ଯେଉଁମାନଙ୍କ ଅର୍ଥାଭାବ ବା ଅନ୍ନାଭାବ ହେବ, ରାଜ ଦରବାରରେ ସେହି ସମ୍ବାଦ ଜଣାଇଲେ, ସେମାନଙ୍କୁ କାମ ଦିଆଯିବ । ଦଲାଲ୍‌ମାନଙ୍କ ପ୍ରବେଶ ଏବଂ ପ୍ରତାରଣା ପୂର୍ବକ ଲୋକଙ୍କୁ ରାଜ୍ୟ ବାହାରକୁ ନେଇଯିବା ଦଣ୍ଡନୀୟ ବୋଲି ଘୋଷଣା କଲେ । ପୋଲିଟିକାଲ୍ ଏଜେଣ୍ଟ ବାହାଦୁରଙ୍କ ପତ୍ରର ଉତ୍ତରରେ ରାଜାବାହାଦୁର ପତ୍ର ଦ୍ୱାରା ଜଣାଇ ଦେଲେ ଯେ ଅର୍ଥୋପାର୍ଜ୍ଜନ ପାଇଁ ପାର୍ଶ୍ୱବର୍ତ୍ତୀ ପାଲ୍ଲହଡ଼ା, ତାଳଚେର, ବଣାଇ ଓ ଗାଙ୍ଗପୁର ପ୍ରଭୃତି ସ୍ଥାନରୁ ନରନାରୀ ବାମଣ୍ଡାକୁ ଆସି ଅର୍ଥୋପାର୍ଜ୍ଜନ ଅନ୍ନସଂସ୍ଥାନ କରନ୍ତି ଏବଂ ମୋହର ରାଜ୍ୟର ପ୍ରଜା ଉପାର୍ଜ୍ଜନ ପାଇଁ କାହିଁକି ବିଦେଶକୁ ଯିବେ । ଜଣେ ପ୍ରାଣୀ ସୁଦ୍ଧା ଖଟି ଖାଇବା ପାଇଁ ବିଦେଶ ଯିବେ ନାହିଁ । ଲୋକ ସଂଗ୍ରହ ପାଇଁ ଦଲାଲ୍‌ମାନଙ୍କର ଗୁପ୍ତ ବିଚରଣ ଧରା ପଡ଼ିଲେ, ଆଦେଶ ଅମାନ୍ୟ କରିବା ଅପରାଧରେ, ପାଞ୍ଚଶତ ଟଙ୍କା ଅର୍ଥଦଣ୍ଡ ଓ ଛଅମାସ କାରାବାସ ଅଥବା ଉଭୟବିଧ ଦଣ୍ଡଭୋଗ କରିବାକୁ ହେବ । ଏହିଠାରୁ ବାମଣ୍ଡାରେ ଦଲାଲମାନଙ୍କ ବିଚରଣ ଚିରଦିନ ପାଇଁ ନିବାରିତ ହୋଇଅଛି । ଏହି ସବୁ ବ୍ୟବସ୍ଥା ସତ୍ତ୍ୱେ ସମୟ ସମୟରେ ଜଣେ ଦୁଇଜଣ ଲୋକ ଦଲାଲ୍‌ମାନଙ୍କ



Digitized by srujanika@gmail.com

ହସ୍ତଗତ ହୁଅନ୍ତି । ସେହି ଲୋକମାନେ ରାଜକର୍ମଚାରୀମାନଙ୍କ ସମକ୍ଷରେ ବାସସ୍ଥାନ ଉଲ୍ଲେଖ କରିବା ସମୟରେ ବାମଣ୍ଡାବାସୀ ବୋଲି ପରିଚୟ ଦେଲେ, ସରକାରୀ ପକ୍ଷ ସେମାନଙ୍କୁ ବାମଣ୍ଡା ଫେରାଇ ଦେଇଥାନ୍ତି । ଏଭଳି ଘଟଣା ଗୌହାଟୀ, ଗୋୟାଲନ୍ଦ, କଲିକତା ବା ସମ୍ବଲପୁର ଯେଉଁଠାରେ ହେଉନା କାହିଁକି, କୁଲି ଫେରି ଆସିବାକୁ ବାଧ୍ୟ ।

ଅସଲ କଥା ଏହି ଯେ, ରାଜା ସାର୍ ବାସୁଦେବ ସୁଡ଼ଲଦେବ ଏଭଳି ସୁଶୃଙ୍ଖଳା ସହକାରେ ନାନା ଉପାୟରେ ରାଜ୍ୟର ଅର୍ଥକାରୀ ଶକ୍ତିର ପରିପୁଷ୍ଟ ଦ୍ୱାରା ରାଜ୍ୟର ଶ୍ରୀବୃଦ୍ଧି ସାଧନରେ ନିୟତ ମନୋଯୋଗୀ ଥିଲେ ଯେ, ରାଜ୍ୟର ପ୍ରଜାମାନଙ୍କ ପ୍ରୟୋଜନ ହେଲେ ନିଜ ଦେଶରେ ଓ ଘରେ ବସି ଅର୍ଥୋପାର୍ଜନ ଅଭାବ ହେଉନଥିଲା; କିନ୍ତୁ ସେମାନଙ୍କ ମଧ୍ୟରୁ ଅନେକେ ହିଁ, ସାମାନ୍ୟ ଆକାରରେ, ଏଭଳି ସଂପନ୍ନ ଗୃହସ୍ଥ ଯେ, ଅନେକ ସମୟରେ ରାଜ କାର୍ଯ୍ୟରେ ନିଯୁକ୍ତ ହେବା ପ୍ରୟୋଜନ ହୁଏ ନାହିଁ । ଯେଉଁମାନଙ୍କର ସେଭଳି ଅଭାବ ଅଛି, ସେମାନଙ୍କ ପାଇଁ ବାମଣ୍ଡା ରାଜ କାର୍ଯ୍ୟରେ ଅର୍ଥୋପାର୍ଜନର ସ୍ଥାନ ଓ ସୁଯୋଗ ତଦନୁରୂପ ପ୍ରଚୁର । ଅନେକ ସମୟରେ ରାଜକାର୍ଯ୍ୟ ପାଇଁ ମଜୁରିଆ ମିଳନ୍ତି ନାହିଁ ।

ଅନ୍ୟପକ୍ଷରେ ଅନ୍ନାଭାବେ ଅର୍ଥୋପାର୍ଜନ ପାଇଁ ପାର୍ଶ୍ୱବର୍ତ୍ତୀ ରାଜ୍ୟର ଜନସାଧାରଣ ବାମଣ୍ଡାକୁ ଆସି କାମ ପାଆନ୍ତି ଏବଂ ଅର୍ଥୋପାର୍ଜନ କରନ୍ତି । ସଂଗେ ସଂଗେ ସେମାନଙ୍କ ମଧ୍ୟରୁ ଅନେକେ ବାରମାସ କାମର ସୁବିଧା ପାଇଁ ବାମଣ୍ଡାରେ ବାସ କରିଥାନ୍ତି । ବହୁ ପୂର୍ବେ ପ୍ରତିଦିନର ଉପାର୍ଜନ ଥିଲା, ପୁରୁଷଙ୍କର ଦୁଇଅଣା ଏବଂ ସ୍ତ୍ରୀ ଲୋକଙ୍କର ଏକ ଅଣା । କ୍ରମଶଃ ବର୍ତ୍ତମାନ ସେହି ପାରିଶ୍ରମିକର ପରିମାଣ ତିନି ଅଣା, ସାଢ଼େ ତିନିଅଣା ଓ ଚାରିଅଣା ପର୍ଯ୍ୟନ୍ତ ବୃଦ୍ଧି ପାଇଛି । ଏପରି ସ୍ଥଳେ ଏଠାରୁ ଲୋକେ କାହିଁକି ବା ବିଦେଶ ଯିବେ ଏବଂ ବିଦେଶୀ ପ୍ରଜାମାନେ ମଧ୍ୟ କାହିଁକି ବା ଏଠାକୁ ନ ଆସିବେ । ମୋଟ ଉପରେ ପ୍ରଜାମାନେ ସୁଖ ଓ ସ୍ୱାଚ୍ଛନ୍ଦରେ କାଳହରଣ କରନ୍ତି । ଜ୍ଞାନାଚାର୍ଯ୍ୟ ରାୟସାହେବ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ରାୟ ଏମ୍.ଏ. ବିଦ୍ୟାନିଧି ମହାଶୟ ବାମଣ୍ଡା ପରିଦର୍ଶନ ବିଷୟକ ପ୍ରବନ୍ଧରୁ ନିମ୍ନରେ ପ୍ରଦତ୍ତ ଅଂଶ ପାଠକଙ୍କୁ ଆନନ୍ଦ ଦାନ କରିବ–

'ମହାରାଜ ପ୍ରଜାମାନଙ୍କ ପାଇଁ ଅନେକ ସତ୍-କାର୍ଯ୍ୟକରି ଅଛନ୍ତି, ସ୍ଥାନେ ସ୍ଥାନେ କୃଷିକ୍ଷେତ୍ର କରି ନାନାବିଧ ନୂତନ ନୂତନ ଶସ୍ୟ ଓ ପ୍ରଚଳିତ ଶସ୍ୟର ଉତ୍କୃଷ୍ଟ ପଦ୍ଧତି ଶିକ୍ଷା ଦେବାର ବ୍ୟବସ୍ଥା କଲେ ବହୁ ଉପକାର ହେବ ।*(୩୩)* ପ୍ରଜାଙ୍କ ଧନରେ ହିଁ ରାଜା ଧନୀ । ସୁତରାଂ ପ୍ରଜାର ଧନବୃଦ୍ଧି କଳେ ଯେଉଁ ଅର୍ଥ ବ୍ୟୟ ହୁଏ, ତାହା ବ୍ୟୟ ନୁହେଁ । ପ୍ରାଚୀନମାନଙ୍କ ଭାଷାରେ ତାହା ପୁନରାବର୍ତ୍ତକ ଧନ ବିଶେଷ ।



Digitized by srujanika@gmail.com

ଲୋକସଂଖ୍ୟା ଅଳ୍ପ ହେବା ଫଳରେ ମହାରାଜ ସ୍ୱରାଜ୍ୟରୁ ଅନ୍ୟତ୍ର କୁଲି ଚାଲାଣ ଏକାବେଳକେ ନିଶିଦ୍ଧ କରିଅଛନ୍ତି । ରାଜ୍ୟରେ ଯେପରି ମଦଭାଟି ନରହେ, ତାହା ମଧ୍ୟ ତାଙ୍କର ସବିଶେଷ ଇଚ୍ଛା । ରାଜ୍ୟ ମଧ୍ୟରେ ବାରବନିତା ବାସ କରି ପାରନ୍ତି ନାହିଁ । ଦେବଗଡ଼ (ଚାରିପାଖରେ) ପାଞ୍ଚ କୋଶ ମଧ୍ୟରେ ମଦ ଦୋକାନ ନାହିଁ । କୌଣସି କର୍ମଚାରୀ ଅହିଫେନ ସେବିନ କଲେ, ଯେପରି ସେ ସେହି ବଦଭ୍ୟାସ ତ୍ୟାଗ କରନ୍ତି, ସଂପ୍ରତି ମହାରାଜ ସ୍ୱୟଂ ଯତ୍ନ କରନ୍ତି । ସ୍ଥାନେ ସ୍ଥାନେ ଅରଣ୍ୟ ରକ୍ଷିତ ହୋଇଅଛି; କିନ୍ତୁ ପ୍ରଜାମାନେ ଆପଣା ଆବଶ୍ୟକ ମୁତାବକ କାଠ ବିନାମୂଲ୍ୟରେ ନେଇପାରନ୍ତି । ଏହି ସମୁଦାୟ ଦେଶ ହିତକର କାର୍ଯ୍ୟରେ ମହାରାଜଙ୍କର ଆଳସ୍ୟ ନାହିଁ । ବୋଧହୁଏ ପ୍ରଜାଙ୍କ ଚରିତ୍ରର ଉନ୍ନତି ନିମିତ୍ତ ଏଦେଶୀୟ ଅଳ୍ପ ରାଜା ବାମଣ୍ଡାର ସମକକ୍ଷ ହୋଇ ପାରିବେ । ମହାରାଜ ବୁଝିଅଛନ୍ତି –

"ଯଦି ନ ସ୍ୟନ୍ନରପତିଃ ସମ୍ୟଙ୍‌ନେତା ତତଃପ୍ରଜାଃ
ଅକର୍ଣ୍ଣଧାରା ଜଳଧୌ ବିପ୍ଲବେତେହ ନୌରିବ ।"



---

ପାଦଟୀକା

(୧) ବାମଣ୍ଡାର ପ୍ରଧାନ ରାଜକର୍ମଚାରୀ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦାଶ ମହାଶୟଙ୍କ ନିକଟରୁ ଶୁଣିଅଛି ।

(୨) Resolution of the C.P. Government (1897) says- 'But save in Bamra, where the prohibition of export of food grains appears to have secured the immediate object with which it was issued by the chief.

(୩) ବାମଣ୍ଡା ବିଦ୍ୟାଳୟର ଭୂତପୂର୍ବ ଶିକ୍ଷକ ଶ୍ରୀଯୁକ୍ତ ବାବୁ ରେବତୀ ମୋହନ ଦାଶ.ଏମ୍.ଏ. ମହାଶୟଙ୍କର ନିକଟରୁ ଏହି ଘଟଣା ଶୁଣିଅଛି ।

(୪) "There is an excellent water supply brought from the hills in a masonry channel" [Report of the political Agent 1892.]

(୫) 'ଉତ୍କଳ ସାହିତ୍ୟ' ସଂପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ମହାଶୟଙ୍କ ବର୍ଣ୍ଣିତ ବିବରଣୀରୁ ଗୃହୀତ ।



Digitized by srujanika@gmail.com

(୬) କଟକ କଲେଜର ବିଜ୍ଞାନାଚାର୍ଯ୍ୟ ରାୟ ସାହେବ ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ରାୟ ଏମ୍.ଏ. ବିଦ୍ୟାନିଧି ମହାଶୟଙ୍କ ପ୍ରଦତ୍ତ ବିବରଣୀରୁ ସଂଗୃହୀତ ।

(୭) "The Bamra Raja is an enterprising chief who has improved his chief Town on the European fashion" =Resolution of the chief commissioner C.P. (sd) K.K. Laurie offg.C. Secretary.

(୮) ବର୍ତ୍ତମାନ ରାଜା ବାହାଦୁରଙ୍କ ପ୍ରତିଷ୍ଠିତ ଚିନି କଳର ଚିନିର ସର୍ବପ୍ରଥମ ତିନି ପ୍ରକାର ନମୂନା ସେ କଟକର ବିଜ୍ଞାନାଚାର୍ଯ୍ୟ ରାୟ ସାହେବ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ରରାୟ ଏମ୍.ଏ. ମହାଶୟଙ୍କ. ନିକଟକୁ ପ୍ରେରଣ କରନ୍ତି । କଳରେ ପ୍ରସ୍ତୁତ ଚିନିର ଉତ୍କୃଷ୍ଟତା ସଂପାଦନ ବିଷୟରେ ସେ ତାଙ୍କର ଅଭିମତ ଓ ଉପଦେଶ ମାଧ୍ୟମରେ ଲେଖିଥିଲେ । କୌଣସି ବିଷୟରେ କାର୍ଯ୍ୟ ଅସଂପୂର୍ଣ୍ଣ ରଖିବା ବାମଣ୍ଡା ରାଜ୍ୟର ସ୍ୱଭାବ ବିରୁଦ୍ଧ । କଟକରେ ଯୋଗେଶବାବୁଙ୍କ ନିକଟରୁ ଏହା ଶୁଣିଅଛି ।

(୯) କେବଳ ମାତ୍ର ମଧ୍ୟପ୍ରଦେଶ ଅନ୍ତର୍ଗତ ଖଡ଼ିଆଳ ରାଜା ବାହାଦୁର ଜଣେ କର୍ମଚାରୀ ପଠାଇ ଏବଂ ଛଅ ମାସ କାଳ ତାଙ୍କୁ ବାମଣ୍ଡାରେ ରଖାଇ ଚିନି କାରବାର ଚଳାଇବା ଉପଯୋଗୀ ଶିକ୍ଷା ଦେଇ ନେଇ ଯାଆନ୍ତି । କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଥିଲା । ଦୁଃଖର ବିଷୟ ଖଡ଼ିଆଳ ରାଜାଙ୍କର ଲୋକାନ୍ତର ଗମନ ଫଳରେ ସେହି କାର୍ଯ୍ୟ ସ୍ଥଗିତ ରହିଅଛି । ବାମଣ୍ଡାର ରାଜକର୍ମଚାରୀ ଶ୍ରୀଯୁକ୍ତ କୁମୁଦ ବନ୍ଧୁ ସେନ୍ ଗୁପ୍ତଙ୍କ ନିକଟରୁ ଏହା ଶୁଣିଅଛି ।

(୧୦) "The public Garden is certainly one of the finest and most richly stocked in the central Provinces"- Report of the political Agent-1892.

(୧୧) "The state Gardens to which reference is made, in the report deserves some mention. That at Deogarh, is of a specially high order. Raja himself is an enthusiastic gardener and is fond of experimenting with exotics.'- Administration Report.-1895

(୧୨) "The Raj's gardens testify to the great personal interest, he takes in horticulture. The year has been an unpropitious one for oranges. The Raja's efforts to popularise the patato, are meeting with success.Commissioner's Report-1898

(୧୩) କଟକ କଲେଜର ବିଜ୍ଞାନାଚାର୍ଯ୍ୟ ରାୟ ସାହେବ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ମହାଶୟ କର୍ତ୍ତୃକ ଗଣିତ ।

(୧୪) ସେହି ସମୟରେ ଏଭଳି ଆଲୋଚନାର ପ୍ରସଂଗ ଆମ୍ଭେ ରାଜକର୍ମଚାରୀ ଶ୍ରୀଯୁକ୍ତ କୁମୁଦବନ୍ଧୁ ସେନଗୁପ୍ତଙ୍କ ନିକଟରୁ ଶୁଣିଅଛୁ ।



Digitized by srujanika@gmail.com

(୧୫) During the year the construction of the road connecting Deogarh, the chief town of the state, with the Bengal Nagpur Railway, which passes through the Tahsil head quarters of Kuchinda, has been pushed on with vigour. Near Kuchinda there is a very difficult ghat, and this has now been made practicable for wheeled traffic by a really skilful piece of Engineering, directed and supervised by the Raja himself, who spent three weeks in camp at this place at a very unhealthy season of the year. Raja Sudhal Deo sets a most excellent example to the other Gorjhat chiefs, and instead of leaving the business of governing his state to others, he sees himself to every branch of its administration. The consequence is that all instituations are well-managed and are thriving.- Administration Report 1891.

(୧୬) ଦୈବକ୍ରମେ ଦୁଇ ଚାରିଜଣ ପରିଚିତ ବ୍ୟକ୍ତିଙ୍କ ନିକଟରେ ମୋତେ ଏହି ପ୍ରସଂଗରେ ଆଲୋଚନା କରିବା ଶୁଣି ରାଜା ବାହାଦୁର ମୋତେ କହିଥିଲେ- 'ଆପଣ ଯାହା ଲକ୍ଷ୍ୟ କରିଅଛନ୍ତି, ତାହା ଠିକ୍, କିନ୍ତୁ ତାହାବୋଲି ଯେ ବାମଣ୍ଡା ରାଜ୍ୟରେ ଅଭାବ ନାହିଁ ବା ଭିଖାରୀ ଏକାବେଳକେ ନାହାନ୍ତି, ଏଭଳି କହି ପାରିବେ ନାହିଁ ।' ଏହି ବାକ୍ୟ ତାଙ୍କ ମୁଖରେ ହିଁ ଶୋଭା ପାଏ । ସେ ପୁଣି ଏକଥା ମଧ୍ୟ କହିଅଛନ୍ତି ଯେ- 'ଲୋକଙ୍କର ଅଭାବ ଅଛ ବୋଲି ସବୁ ସମୟରେ ମଜୁରିଆ ମିଳନ୍ତି ନାହିଁ ।'

(୧୭) ରାଜ୍ୟର ସମସ୍ତ ଗୁରୁତର କାର୍ଯ୍ୟର କେନ୍ଦ୍ରସ୍ଥଳ ଏହି ପ୍ରାଇଭେଟ ସେକ୍ରେଟେରୀଙ୍କ ଅଫିସ୍ । ଏହିଠାରେ ନିତ୍ୟାନ୍ତ ବିଶ୍ୱାସ ବ୍ୟକ୍ତି ହିଁ ନିଯୁକ୍ତ ହୋଇଥାନ୍ତି । ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ନନ୍ଦ ବାମଣ୍ଡା ନିବାସୀ । ବାମଣ୍ଡା ବିଦ୍ୟାଳୟରେ ଶିକ୍ଷାପ୍ରାପ୍ତ ଓ ବିଶ୍ୱାସଭାଜନ କର୍ମଚାରୀ ।

(୧୮) "Indeed it is no uncommon experience to find that the convicts are housed in much better buildings than the house occupied by Raj family." Administration Report 1899

(୧୯) Deogarh itself, though situated in the very midst of hill and forest, has all the appearance of an advanced town. Fine handsome masonary buildings have been Provided for school, police station and quarter guard. There is a large printing press housed in a fine building. Administration Report- 1892

(୨୦) "The health of the prisoners was good; they are daily visited by Hospital Assistant and their diet and clothing are sufficient.' Administration Report-1892

(୨୧) The number of prisoners under confinement in Deogarh Jail at the close of the year was only 32. The arrangement appears to work very satisfectorily, and the prisoners are employed on veriety of forms of labour. Their health is carefully atttended to by Medical officer in charge of the state Hospital. A new jail building is now under construction. Just out side the town.Administration Report 1893.



Digitized by srujanika@gmail.com

(୨୨) "The present Jail building is badly situated and the wards are quite insufficiently ventilated. The Feudatory chief proposes to built a new jail out side the town. This should be put in hand as soon as possible.'

"The prisoners are not employed in hard labour, and I think, it would be a great improvement, if the Raja would appoint an exprienced jail Daroga and introduce more fully the approved khalsa methods of prison Management". Administration Report - 1892

(୨୩) And provided that good enclosure is made, the internal buildings might, in my opinion be made on a less ambitious scale."-A.D. Younghusband, Commissioner-1899

(୨୪) ଏହି ମୃତ୍ତିକାରୁ ହିଁ ଚାଇନାର ବାସନ ପ୍ରସ୍ତୁତ ହୁଏ । ବାମଣ୍ଡା ରାଜ୍ୟରେ ପ୍ରଚୁର ପରିମାଣରେ ଏହି ମୃତ୍ତିକା ମିଳିଥାଏ ।

(୨୫) "During the year the Raja invested his eldest son Lal Satchidananda Deo, who has received a through English education, and appears to be a young man of good intelligence and promise, with the full powers of the state, himself exercising a general supervision in all matters and advising in all cases of difficulty. The arrangement seems to have worked Satisfactorily, and no better training for the future ruler of the state could be wished for."- Administration Report-1893

(୨୬) In the Administration of Bamra the designation of Dewan is not and never has been known. The Raja has always personally supervised all the details of administration, a duty which he has now to a great extent delegated to his eldest son.- Administration Report-1894

(୨୭) ଷ୍ଟେଟ୍ ର ଅନ୍ୟତମ କର୍ମଚାରୀ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ଦାଶଙ୍କ ନିକଟରୁ ଏଭଳି ବହୁ ଘଟଣା ସଂପର୍କରେ ଶୁଣିଅଛି ।

(୨୮) The Raja has hitherto kept the postal arrangement within his state, entirely in his own hands, although the question of inducing him to consent to the amalgamation of his system with the Imperial post office, has for sometime past under discussion. The authorities of the imperial post office Department are now prepared to take over the arrangement, undertaking to afford the same postal facilities and conveniences to the publice of Bamra state, as in British India and at the same time assuring the Raja that he will, at no time, be called upon to contiribute towards the cost. Administration 1893.



Digitized by srujanika@gmail.com

( ୨୯ ) The negotiations with the Raja of Bamra for amalgamation of his local postal system with that of the Goverment of India were brought to a happy conclusion and the new arrangements have been introduced with effect from Ist January 1895.

-Administration Report-1894

(୩୦) The smuggling of ganga of which there is so much complaint in other states of the Estern forntier, is said to be almost unkown here. The Raja considers that his arrangement for punishing offenders and rewarding informers afford him all the protection he needs .

-Administration Report-1893.

(୩୧) The state towards the north and northwest has suffered from the importation of smugggled ganja from chota Nagpur Native states. Bamra is the only state which has succeded in effectually dealing with this difficulty, another testimony to the practical management of the Raja. -Resolution of the C.P. Government 1894

(୩୨) The Raja is a shrewed and capable financier. He does a good deal of profitable trade by river with Cuttack. He has established a large printing press, which he informs me, pays well and he derives some revenue from the sale of elephants captured in his extensive forests.

-Administration Report 1892

(୩୩) ବିଦ୍ୟାନିଧି ମହାଶୟ ୧୯୦୩ ଖ୍ରୀଷ୍ଟାବ୍ଦରେ ବାମଣ୍ଡା ପରିଦର୍ଶନରେ ଯାଇଥିଲେ । ସେହି ବର୍ଷ ରାଜା ସାର୍ ବାସୁଦେବ ସୁଢ଼ଳଦେବ ସ୍ୱର୍ଗାରୋହଣ କରନ୍ତି । ତାହାର ବହୁ ବର୍ଷ ପୂର୍ବେ ବାମଣ୍ଡାରେ ନାନାସ୍ଥାନରେ ରାଜକୀୟ କୃଷି କ୍ଷେତ୍ର ପ୍ରତିଷ୍ଠିତ ହୋଇଥିଲା ।



Digitized by srujanika@gmail.com

## ଏକାଦଶ ଅଧ୍ୟାୟ

# ବ୍ୟବସାୟ ବାଣିଜ୍ୟ

ବାମଣ୍ଡା ରାଜ୍ୟର ଉତ୍ପନ୍ନ ଦ୍ରବ୍ୟ ସଂଖ୍ୟା ନିତ୍ୟାନ୍ତ ଅଳ୍ପ ନୁହେଁ । ସର୍ବବିଧ ସଂପଦରେ ପରିପୂର୍ଣ୍ଣ ହୋଇ ଭାରତବର୍ଷର ନାନା ପ୍ରଦେଶ ଯେପରି ବର୍ଷ ପରେ ବର୍ଷ ଅସଂଖ୍ୟ କୋଟି ଜୀବଙ୍କୁ ବକ୍ଷରେ ଧାରଣକରି ପ୍ରତିପାଳନ କରୁଅଛନ୍ତି, ବାମଣ୍ଡା ମଧ୍ୟ ଅଳ୍ପାକାରେ ସେହି ସର୍ବବିଧ ସଂପଦର ଆଳୟ ହୋଇ ପ୍ରାଣୀ ପାଳନରେ ନିତ୍ୟ ନିଯୁକ୍ତ । ବାମଣ୍ଡାର ଭୌଗୋଳିକ ପ୍ରକୃତି ବାମଣ୍ଡାକୁ ତ୍ରିବିଧ ଧନର ଅଧିକାରୀ କରିଅଛି । ଖଣିଜ, ଉଦ୍ଭିଦ ଓ ପ୍ରାଣୀଜ ଧନରେ ବାମଣ୍ଡା ପୂର୍ଣ୍ଣ ହୋଇ ରହିଅଛି । କେତେ ପ୍ରକାର ଖଣିଜ ପଦାର୍ଥ ଯେ ବାମଣ୍ଡା ଭୂଗର୍ଭରେ ଲୁକ୍କାୟିତ ରହିଅଛି, ତାହାର ସଂଖ୍ୟା ନାହିଁ । ବାମଣ୍ଡା ନିକଟବର୍ତ୍ତୀ ପାହାଡ଼ରେ ପ୍ରଚୁର ପରିମାଣରେ ଚୂନ ପଥର ରହିଅଛି ଏବଂ ରାଜଧାନୀର ବହୁ ବହୁ ଅଟ୍ଟାଳିକା ନିର୍ମାଣରେ ଏହି ପଥର ପୋଡ଼ି ଚୂନ ପ୍ରସ୍ତୁତ କରାଯାଉଅଛି । ରାଜ୍ୟର ନାନା ସ୍ଥାନରେ ଲୌହର ଖଣି ରହିଅଛି । ସାମାନ୍ୟ ପରିମାଣରେ ଲୌହ ଖଣିରୁ ସଂଗ୍ରହ କରାଯାଇଥାଏ । ଏହି ଲୁହା ଏପରି ଉତ୍ତମ ଯେ, ଏଥିରୁ ବାମଣ୍ଡାରୁ ପ୍ରୟୋଜନୀୟ ଅସ୍ତ୍ରଶସ୍ତ୍ର ନିର୍ମିତ ହୋଇଥାଏ । ବିସ୍ତୃତ ଆକାରରେ ଆୟୋଜନ କରି ବାଣିଜ୍ୟର ଲୌହ ଉତ୍ତୋଳନ କରି ତାହାକୁ କାର୍ଯ୍ୟୋପଯୋଗୀ କରିବାର ଉପାୟ ଅବଲମ୍ବନ କରିପାରିଲେ ବାମଣ୍ଡାର ବର୍ତ୍ତମାନର ଅର୍ଥ ସଂପଦ ବହୁ ଗୁଣରେ ବୃଦ୍ଧି ପ୍ରାପ୍ତ ହୋଇପାରେ । ସ୍ୱର୍ଗୀୟ ରାଜାଙ୍କ ସମୟରେ ସେହି ସୁଯୋଗ ଘଟିନାହିଁ; ବର୍ତ୍ତମାନର ରାଜା ବାହାଦୁର ଚେଷ୍ଟା କଲେ, ଭବିଷ୍ୟତରେ ସେହି କାର୍ଯ୍ୟରେ ସୁସିଦ୍ଧ ହୋଇପାରିବେ । ବାମଣ୍ଡା ରାଜ୍ୟରେ ଉପଯୁକ୍ତରୂପେ ପରୀକ୍ଷା ଆରମ୍ଭ କଲେ ବିଭିନ୍ନ ଧନରତ୍ନର ସମ୍ବାଦ ମିଳିପାରେ । କାରଣ ବାମଣ୍ଡା ଚାରିପାଖ ରାଜ୍ୟଗୁଡ଼ିକରେ ବହୁକାଳରୁ ବ୍ୟବହାରଯୋଗ୍ୟ ମୂଲ୍ୟବାନ ପ୍ରସ୍ତର ମଣି, ସ୍ୱର୍ଣ୍ଣ ରୌପ୍ୟ ଓ ଅନ୍ୟାନ୍ୟ ବିବିଧ ଧାତୁର ଆକାର ଆବିଷ୍କୃତ ହୋଇ ସାରିଛି । ବାମଣ୍ଡାରେ ଏହି କାର୍ଯ୍ୟରେ ପର୍ଯ୍ୟାପ୍ତ ହସ୍ତକ୍ଷେପର ସମୟ ହୋଇନାହିଁ । ଆମ୍ଭେମାନେ ବାଲ୍ୟକାଳରେ 'ସମ୍ବଲପୁରରେ ହୀରା ପଥର' ପାଠ କରିଅଛୁ । ବର୍ତ୍ତମାନ ମଧ୍ୟ ସିଂହଭୂମି ଜିଲ୍ଲାରେ ସ୍ୱର୍ଣ୍ଣ ମିଳିଥାଏ । ସୁବର୍ଣ୍ଣରେଖା ନଦୀ



Digitized by srujanika@gmail.com

ଛୋଟନାଗପୁର ମଧ୍ୟରେ ଉତ୍ପନ୍ନ ହୋଇ ଓଡ଼ିଶାର ପୂର୍ବ ପ୍ରାନ୍ତ ବେଷ୍ଟନ କରି ସାଗରରେ ପତିତ ହୋଇଅଛି । ଏହି ନଦୀର ବାଲିରାଶି ଧୌତ କରି ସୁବର୍ଣ୍ଣକଣା ସଂଗୃହିତ ହୋଇଥାଏ । ସୁତରାଂ ବାମଣ୍ଡା ଯେ ଏହି ସକଳ ସଂପଦରୁ ବଂଚିତ, ଏଭଳି ମନେହୁଏ ନାହିଁ ।

ଏହାପରେ ଉଦ୍ଭିଜ ପଦାର୍ଥ ଦୁଇ ପ୍ରକାର, ଅରଣ୍ୟସଂପଦ ଓ ଗ୍ରାମ୍ୟସଂପଦ । ଶାଳ, ପିଆଶାଳ (ବିଜା)ଶିଶୁ ପ୍ରଭୃତି କାଷ୍ଠ ଏଗୁଡ଼ିକର ଏବଂ ଖଇର ପ୍ରଭୃତି ବୃକ୍ଷର ନିର୍ଯ୍ୟାସ, ବହୁବିଧ ପ୍ରକାରର ଲତା, ଗୁଳ୍ମ, ଫଳ ଫୁଲ ଏବଂ ଘାସ ଅରଣ୍ୟ ଉଦ୍ଭିଜ ସଂପଦ ଧାନ, ଯଅ ଓ ଗହମ, ନାନାବିଧ ଡାଲି ଜାତୀୟ ଶସ୍ୟ, ରାଶି, ସୋରିଷ, ତିଆସି ନାନାବିଧ ଫଳଫୁଲ ଓ ମୂଳ ଗ୍ରାମ୍ୟ-ଉଦ୍ଭିଜ ସଂପଦ । ତାପରେ ପ୍ରାଣୀଜ ସଂପଦ ଯଥା-ହସ୍ତୀ, ମହିଷି, ମୃଗ ଓ ଗୟଳ ପ୍ରଭୃତି ବହୁବିଧ ବଣ୍ୟଜନ୍ତୁ ଓ ସେମାନଙ୍କର ଦନ୍ତ, ଅସ୍ଥି, ଶିଙ୍ଘ, ଚର୍ମ, ଲାକ୍ଷା ପ୍ରଭୃତି ଆରଣ୍ୟ ପ୍ରାଣୀଜ ସଂପଦ ଏବଂ ଗୋ, ମେଷ, ମହିଷ, ଛାଗ ଓ ତନ୍ତୁକୀଟ ପ୍ରଭୃତି ସଂପଦ ଗ୍ରାମ୍ୟ ପ୍ରାଣୀଜ ସଂପଦ । ବାମଣ୍ଡାରେ ଏ ସବୁର ଅଭାବ ନାହିଁ । ଏହି ଶେଷୋକ୍ତ ଦୁଇପ୍ରକାର ଅର୍ଥାତ୍ ଆରଣ୍ୟ ଉଦ୍ଭିଦ ଓ ପ୍ରାଣୀଙ୍କର ସାହାଯ୍ୟରେ ବାମଣ୍ଡାର ଧନ ଓ ଐଶ୍ୱର୍ଯ୍ୟ ପରିପୁଷ୍ଟ ସାଧନରେ ସ୍ୱର୍ଗୀୟ ରାଜା ସାର୍ ବାସୁଦେବ ସୁଢ଼ଳଦେବ ପ୍ରାଣପାତ କରି ଯାଇଅଛନ୍ତି । ଯେଉଁ ଯେଉଁ ଉପାୟରେ ସ୍ୱର୍ଗୀୟ ରାଜା ରାଜ୍ୟର ଧନ ସଂପଦ ବୃଦ୍ଧି କଳ୍ପେ ଏସବୁର ନିୟୋଗ କରିଅଛନ୍ତି, ସେ ସବୁର ଅନେକାଂଶର ଆଲୋଚନା ପୂର୍ବରୁ ହିଁ କରାଯାଇଅଛି । ବର୍ତ୍ତମାନ ଯାହା ଯାହା ବାକି ରହିଯାଇଅଛି ସେ ସବୁର ଆଲୋଚନା କରାଯାଉଅଛି ।

ବାମଣ୍ଡାର ଉତ୍ପନ୍ନ ଦ୍ରବ୍ୟ ଗୁଡ଼ିକଦ୍ୱାରା ରାଜ୍ୟର ଅଭାବ ପୂର୍ଣ୍ଣ ହେବାପରେ, ଉଦ୍ବୃତାଂଶ କ୍ରୟ ପାଇଁ ରାଜ୍ୟ ବାହାରର ମହାଜନମାନେ ବାମଣ୍ଡା ଆସୁଥିଲେ । ସେଭଳି ଅବସ୍ଥାରେ ବିଦେଶୀ ବଣିକମାନେ ସୁଲଭ ମୂଲ୍ୟରେ ଦ୍ରବ୍ୟାଦି କ୍ରୟ କରି ନେଇ ଯାଉଥିଲେ । ରାଜା ସାର୍ ବାସୁଦେବ ଦେଖିଲେ ରାଜ୍ୟ ବାହାରେ କେଉଁ ବାଣିଜ୍ୟ କେନ୍ଦ୍ରରେ ମହଜୁଦ୍ କରି ବିକ୍ରୟର ବ୍ୟବସ୍ଥା କଲେ, ତଦପେକ୍ଷା ଅଧିକ ଲାଭର ସଂଭାବନା ରହିଅଛି । ଏହି ଧାରଣା ଯେ ଏକାବେଳକେ ଭ୍ରମାତ୍ମକ ଥିଲା ତାହାନୁହେଁ । ସେ ଠିକ୍ ଭାବରେ ବୁଝିଥିଲେ ଏବଂ ସେହି ଧାରଣାର ବଶବର୍ତ୍ତୀ ହୋଇ ରାଜାବାହାଦୁର ଓଡ଼ିଶାର ରାଜଧାନୀ କଟକ ନଗରୀରେ ଏକ ବାଣିଜ୍ୟ କେନ୍ଦ୍ର ସ୍ଥାପନ କରାଇଥିଲେ ।

ଏହି କାର୍ଯ୍ୟପାଇଁ ବହୁ ଅର୍ଥ ବ୍ୟୟ କରିବାକୁ ପଡ଼ିଥିଲା । କଟକରେ ବାଣିଜ୍ୟଦ୍ରବ୍ୟ ପ୍ରେରଣପାଇଁ ସହଜ ପଥ ନ ଥିଲା । ସ୍ଥଳପଥରେ କଟକ ଷାଠିଏ କୋଶରୁ କମ୍ ହେବ ନାହିଁ । ସେହି ପଥରେ ଯାତାୟତ ଓ ବାଣିଜ୍ୟ ଦ୍ରବ୍ୟ ସଂଭାର ପ୍ରେରଣ ଉପଯୋଗୀ ପଥ



Digitized by srujanika@gmail.com

ମଧ୍ୟ ନଥିଲା । ବାମଣ୍ଡା ରାଜ୍ୟରୁ କଟକକୁ ଯିବାପାଇଁ ସହଜ ପଥ ଉଦ୍ଭାବନରେ ପ୍ରବୃତ୍ତ ହେଲେ । ବାମଣ୍ଡାର ପୂର୍ବ ସୀମା ମଧ୍ୟ ଦେଇ ବ୍ରାହ୍ମଣୀ ନଦୀ ସାଗରାଭିମୁଖେ ଅଗ୍ରସର ହୋଇ ମହାନଦୀର ପୂର୍ବାଂଶରେ ଓ ବୈତରଣୀର ପଶ୍ଚିମାଂଶରେ ସାଗରରେ ମିଳିତ ହୋଇଅଛି । ଏହି ପାର୍ବତ୍ୟ ନଦୀପଥକୁ ନୌକା ଚଳପ୍ରଚଳର ଉପଯୋଗୀ କରିବା ପାଇଁ, ରାଜା ସାର୍ ବାସୁଦେବଙ୍କୁ ପ୍ରଚୁର ଅର୍ଥ ବ୍ୟୟ କରିବାକୁ ପଡ଼ିଥିଲା । ନଦୀ ବକ୍ଷରେ ବହୁ ବହୁ ସ୍ଥାନରେ ଭୀଷଣକାୟ ପଥର ଓ କ୍ଷୁଦ୍ର କ୍ଷୁଦ୍ର ପାହାଡ଼ ଥିବା ଫଳରେ, ଅଗଭୀର ଜଳସ୍ରୋତରେ ନୌକା ଚଳାଇବାର ଉପାୟ ନଥିଲା । ସ୍ୱର୍ଗୀୟ ରାଜା ବାହାଦୁର ନଦୀ ବକ୍ଷରେ ଡିନାମାଇଟ୍ ଲଗାଇ ଅସଂଖ୍ୟ ସ୍ଥାନରେ ପଥର ପାହାଡ଼ ଫଟାଇ, ଜଳସ୍ରୋତକୁ ପ୍ରବଳ ଓ ଗଭୀର କରାଇ ବ୍ୟବସାୟର ସୂତ୍ରପାତ କରାଇଥିଲେ । ପୂର୍ବେ ନାନା ଘଟଣାରେ ପ୍ରତିପନ୍ନ କରା ହୋଇଅଛି ଯେ, ରାଜା ସାର୍ ବାସୁଦେବ ସୁଢ଼ଳଦେବ ଯେଉଁ କାର୍ଯ୍ୟ କରିବେ ବୋଲି ଥରେ ମନସ୍ଥ କରୁଥିଲେ, ସେହି କାର୍ଯ୍ୟରେ କୃତକାର୍ଯ୍ୟ ହେବାପାଇଁ ପ୍ରାଣପଣେ ଯତ୍ନ କରୁଥିଲେ । ତାଙ୍କର ସ୍ୱଭାବ ଥିଲା– 'ମନ୍ତ୍ରର ସାଧନ କି ଶରୀର ପତନ' ।

ସେ ବ୍ରାହ୍ମଣୀ ନଦୀକୁ ନିଜର କାର୍ଯ୍ୟୋପଯୋଗୀ କରାଇ କଟକରେ ଏକ ବିସ୍ତୃତ କାରବାର ଆରମ୍ଭ କରି ଦେଇଥିଲେ । ଧର୍ମ ସାହୁ ନାମକ ଜଣେ ଦଲାଲ୍‌କୁ ନିଜ କାର୍ଯ୍ୟ ପରିଚାଳନା ପାଇଁ କର୍ମଚାରୀ ଭାବରେ ନିଯୁକ୍ତ କରିଥିଲେ । କଟକ ସହର ପାଇଁ ଏବଂ ସେହିଠାରୁ ଅନ୍ୟ ନାନା ସ୍ଥାନକୁ ବିକ୍ରୟ ପାଇଁ ଶାଳକାଠର ଚାଲାଣ ଆରମ୍ଭ ହେଲା । ସଂଗେ ସଂଗେ, ତିଳ, ରାଶି, ସୋରିଷ ପ୍ରଭୃତି ରବି ଶସ୍ୟ ପୂର୍ଣ୍ଣ ନୌକା ଚାଲିବା ଆରମ୍ଭ ହେଲା । ରାଜ୍ୟର ସମସ୍ତ ପ୍ରକାର ଉତ୍ପନ୍ନ ଦ୍ରବ୍ୟ ସଂଗ୍ରହ କରାଇ ମହଜୁଦ୍ କରିବା ପାଇଁ ଗୋଆ, ନୈକୂଳ, ରେଙ୍ଗାଲି ପ୍ରଭୃତି ନଦୀ ତୀରସ୍ଥ ସ୍ଥାନରେ ଗୋଦାମ ପ୍ରସ୍ତୁତ କରାଇଥିଲେ । ମହଜୁଦ୍ ଦ୍ରବ୍ୟ ସଂଭାର ବିକ୍ରୟାର୍ଥେ କଟକର ବାଣିଜ୍ୟକେନ୍ଦ୍ରକୁ ପ୍ରେରିତ ହେବାରେ ଲାଗିଲା ଏବଂ ନୌକାଚାଳକମାନେ ଫେରିବା ପଥରେ, ଲୁଗା, ଲୁଣ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ଦ୍ରବ୍ୟ ବାମଣ୍ଡା ବଜାରକୁ ଆଣିବାରେ ଲାଗିଲେ । କଲିକତାକୁ ପୁନଃ ପୁନଃ ଭ୍ରମଣରେ ଯିବା ଫଳରେ ବିଦେଶୀ ବ୍ୟବସାୟୀମାନଙ୍କର କାରବାର ପଦ୍ଧତି ପରିଦର୍ଶନ କରି ତାଙ୍କର ରାଜବୁଦ୍ଧିରେ ଏହି ପନ୍ଥାମାନ କାର୍ଯ୍ୟରେ ଲଗାଇ ଥିଲେ ।*(୧)*

ପ୍ରଥମେ ପ୍ରଥମେ କାମ ବେଶ୍ ଭଲ ଭାବରେ ଚାଲିବାରେ ଲାଗିଲା; କିନ୍ତୁ ଅଳ୍ପଦିନ ପରେ ହିଁ ରାଜା ବାହାଦୁର ବୁଝି ପାରିଲେ ଯେ, ଧର୍ମ ସାହୁ ଏହି ସୁବୃହତ୍ କାରବାରର ସମ୍ୟକ୍ ଭାରପ୍ରାପ୍ତ ହେବାପାଇଁ ଉପଯୁକ୍ତ ବ୍ୟକ୍ତି ନୁହନ୍ତି । ତେଣୁ ଅନେକ ଭାବନାଚିନ୍ତା ପରେ ଏବଂ ଖୁବ୍ ବିଶ୍ୱାସୀ ବୋଲି ବିଶ୍ୱାସ ରହିଥିବା ହେତୁ, ତଦାନିନ୍ତନ ଯୁବରାଜଙ୍କ



Digitized by srujanika@gmail.com

(ବର୍ତ୍ତମାନର ରାଜା) ପ୍ରାଥମିକ ଗୁରୁ ବାବୁ ଈଶ୍ୱର ଚନ୍ଦ୍ର ମିତ୍ରଙ୍କୁ ଏହି କାର୍ଯ୍ୟ ପର୍ଯ୍ୟବେକ୍ଷଣ ପାଇଁ ପ୍ରେରଣ କରନ୍ତି । ବାମଣ୍ଡାର ଭାବୀ ରାଜାଙ୍କର ପ୍ରାଥମିକ ଗୁରୁଙ୍କୁ ବିଶ୍ୱାସ କରି ସ୍ୱର୍ଗୀୟ ରାଜାବାହାଦୁର ଯେ କ୍ଷତିଗ୍ରସ୍ତ ହେବେ, ଏଭଳି ଧାରଣା ନଥିଲା; କିନ୍ତୁ ଈଶ୍ୱର ବାବୁ କଟକ ଯାଇ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ପ୍ରତିଷ୍ଠା ଓ ପ୍ରତିପତ୍ତି ବୃଦ୍ଧି ବିପରୀତ ନାନା ପ୍ରକାରେ ବହୁ ଅର୍ଥ ବ୍ୟୟ କରି ରାଜସଂପଦ ଧ୍ୱଂସ କରିବାରେ ଲାଗିଲେ । ଅନିଷ୍ଟ ସଂଭାବନା ବୁଝିବା ପାଇଁ ରାଜାଙ୍କୁ ସାମାନ୍ୟ ବିଳମ୍ବ ହୋଇଥିଲା । ସେଥିପାଇଁ ଏହି ପ୍ରଚୁର ଲାଭଜନକ କାରବାର ତାଙ୍କୁ ବନ୍ଦ କରିବାକୁ ପଡ଼ିଥିଲା । ପରବର୍ତ୍ତୀ କାଳରେ କଟକ ଭଳି କଲିକତାର ନିମତଲା ଘାଟରେ ଆଉ ଏକ ସ୍ୱତନ୍ତ୍ର କାଠ କାରବାର ପ୍ରତିଷ୍ଠିତ କରାଇ ବ୍ୟବସାୟ ଚଳାଇଥିଲେ, ଲୋକାଭାବ ହେତୁ କାଠ ସରବରାହ କରି ନପାରିବାରୁ, ସେହି କାରବାର ମଧ୍ୟ ବନ୍ଦ କରିଦେବାକୁ ପଡ଼ିଥିଲା । ଏହି ଉଭୟ କାରବାର ଫଳରେ ପ୍ରଚୁର ଧନାଗମ ପଥ ଉନ୍ମୁକ୍ତ ହୋଇଥିଲା । ଆକ୍ଷେପର ବିଷୟ ଅଯୋଗ୍ୟ ଲୋକଙ୍କ ଅପବ୍ୟବହାର ଫଳରେ କଟକର ଏତେ ବିରାଟ ବାଣିଜ୍ୟକେନ୍ଦ୍ର ବନ୍ଦ କରିଦେବାକୁ ପଡ଼ିଥିଲା ।*(୨)*

**ସ୍ଲିପର୍ କାରବାର:** କାଳୀଘାଟ ନିବାସୀ ବାବୁ ଯଜ୍ଞେଶ୍ୱର ମୁଖୋପାଧ୍ୟାୟ ନାମକ ଜଣେ ଭଦ୍ରବ୍ୟକ୍ତି ଇଷ୍ଟଇଣ୍ଡିୟାନ୍ ରେଲଓ୍ୱେ କଂପାନୀକୁ ସ୍ଲିପର୍ ସରବରାହ କରିବା ଅଗ୍ରୀମ ନେଇ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସହିତ ଦେବଗଡ଼ ଠାରେ ସାକ୍ଷାତ କରି, କାଠ କାରବାର ଆରମ୍ଭ କରିବା ପାଇଁ, ତାଙ୍କୁ ଅଂଶୀଦାର କରି ନେବା ପ୍ରସ୍ତାବ ଦିଅନ୍ତି । ଏହି ସମୟରେ ଶ୍ରୀଯୁକ୍ତ ରେବତୀ ମୋହନ ଦାଶ ମହାଶୟ ବାମଣ୍ଡା ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଏବଂ ରାଜାଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦାଶ ମହାଶୟ ଦ୍ୱିତୀୟ ଶିକ୍ଷକ ଓ ଷ୍ଟେଟ୍ କାଉନ୍ସେଲ୍ର ସେକ୍ରେଟେରୀ । ରେବତୀବାବୁ ସବୁ ବ୍ୟାପାର ଅବଗତ ହୋଇ ରାଜା ବାହାଦୁରଙ୍କୁ କହିଲେ- 'ଆପଣ ଏଭଳି ଭାବରେ କାର୍ଯ୍ୟ ଆରମ୍ଭ କରିବେ ନାହିଁ । ଯଦି ରେଲଓ୍ୱେ ସ୍ଲିପର୍ ସରବରାହ କାର୍ଯ୍ୟ ଚଳାଇବାପାଇଁ ଇଚ୍ଛା କରନ୍ତି, ମୁଁ ପତ୍ର ଲେଖି ରେଳ କଂପାନୀ ପାଖରୁ ସ୍ୱତନ୍ତ୍ର କଣ୍ଟ୍ରାକ୍ଟ ଅଣାଇ ଦେଉଅଛି ।' ଏହାପରେ ରେବତୀବାବୁ ପତ୍ର ଲେଖିଲେ, ଯଥା ସମୟରେ ପତ୍ରରେ ଉତ୍ତର ଆସିଲା ଯେ, ଯଜ୍ଞେଶ୍ୱର ବାବୁଙ୍କୁ ଯେଉଁ କାର୍ଯ୍ୟ ଦିଆଯାଇଛି, ତାହା ଯଜ୍ଞେଶ୍ୱର ବାବୁ କର୍ତ୍ତୃକ ବାମଣ୍ଡାର ରାଜାଙ୍କର ନାମରେ ହିଁ ଗୃହୀତ ହୋଇଅଛି । ତା'ପରେ ସାକ୍ଷାତଭାବେ କଂପାନୀ ସହିତ କାର୍ଯ୍ୟାରମ୍ଭ ହେଲା । ପ୍ରଥମ ବର୍ଷ ଆଠ ହଜାର ସ୍ଲିପର ଦିଆ ଯାଇଥିଲା । ଏହି ସମୟରେ ରେବତୀ ବାବୁ ବାମଣ୍ଡା ତ୍ୟାଗ କରିବା ଫଳରେ ଏହି ସୁବୃହତ୍ କାର୍ଯ୍ୟ ସୁସଂପାଦନ ଭାର ଶ୍ରୀଯୁକ୍ତ ଯୋଗେଶ ବାବୁଙ୍କର ଉପରେ ନ୍ୟସ୍ତ ହୁଏ । ସେ ଅସୀମ ଶ୍ରମସହକାରେ ଏହି କାର୍ଯ୍ୟ



Digitized by srujanika@gmail.com

ସଂପାଦନରେ ରାଜା ବାହାଦୁରଙ୍କୁ ସାହାଯ୍ୟ କରିଥିଲେ ଏବଂ ବର୍ତ୍ତମାନ ମଧ୍ୟ ରାଜାବାହାଦୁରଙ୍କୁ ସାହାଯ୍ୟ କରୁଅଛନ୍ତି ।

ଯଜ୍ଞେଶ୍ୱର ବାବୁଙ୍କ ସମ୍ବନ୍ଧରେ ରାଜାଙ୍କ ମନରେ ଏକ ଅଶାନ୍ତିକର ଚିନ୍ତା କ୍ଲେଶ ଦେଉଥିଲା । ରାଜା ସାର୍ ବାସୁଦେବ ନିଜର ସେହି ମାନସିକ କ୍ଲେଶ ନିବାରଣ ପାଇଁ ବ୍ୟସ୍ତ ହେଲେ । ଯଜ୍ଞେଶ୍ୱର ବାବୁ ପ୍ରଥମେ ସେହି କାର୍ଯ୍ୟ ସଂଗ୍ରହ କରି ଆଣିଥିଲେ ବୋଲି, ତାଙ୍କୁ ସାତଶହ ଟଙ୍କା ପାରିଶ୍ରମିକ ବା ପୁରସ୍କାର କରି ଦିଆଯାଇଥିଲା । ସଂଗେ ସଂଗେ ରେବତୀବାବୁଙ୍କ ଉଦ୍ୟୋଗ ଫଳରେ ସ୍ୱାଧୀନ ଭାବରେ କାରବାର ଆରମ୍ଭ ହେଲା ବୋଲି ତାଙ୍କୁ ଏବଂ ଯୋଗେଶବାବୁଙ୍କୁ ପୁରସ୍କାର ଦିଆଯାଏ । ଇତିପୂର୍ବେ କଟକରେ ଯେଉଁ ଶାଳ କାଠର କାରବାର ଚାଲୁଥିଲା, ତାହା ଉଚ୍ଚ ଆକାରର ଲାଭଜନକ କାରବାର ହେଲେ ମଧ୍ୟ ତାହାକୁ ଉଚ୍ଚାଙ୍ଗ ବ୍ୟବସାୟ କୁହାଯାଇ ନପାରେ । ବିଶେଷଭାବରେ କିଛି ନହେବା ଅପେକ୍ଷା ଉତ୍ତମ ଥିଲା । ବର୍ତ୍ତମାନଠାରୁ ପ୍ରକୃତ ପ୍ରସ୍ତାବରେ ବାମଣ୍ଡା ତ୍ରିବିଧ ଐଶ୍ୱର୍ଯ୍ୟ ସଂପଦର ଏକତୃତୀୟାଂଶ ଉପରେ ହସ୍ତକ୍ଷେପ ହେଲା ଏବଂ ଏହା ଦ୍ୱାରା ଧନାଗମର ଉତ୍ତମ ପଥ ଆବିଷ୍କୃତ ହେଲା । ସ୍ୱର୍ଗୀୟ ରାଜାବାହାଦୁର, ରେବତୀବାବୁ କିମ୍ବା ଯୋଗେଶ ବାବୁ କେହିହେଲେ ଏହି ଅର୍ଥାଗମ ସମ୍ବନ୍ଧୀୟ ତତ୍ତ୍ୱ ପାରିଜ୍ଞାତ ନଥିଲେ । ଯଜ୍ଞେଶ୍ୱର ବାବୁଙ୍କଦ୍ୱାରା ଏହି ବିଷୟରେ ରାଜା ଓ ରାଜାମାତାଙ୍କ ଆଖି ଖୋଲିଥିଲା, ତେଣୁ ରାଜା କୃତଜ୍ଞତାର ନିଦର୍ଶନ ସ୍ୱରୂପ ଯଜ୍ଞେଶ୍ୱର ବାବୁଙ୍କୁ ପୁରସ୍କୃତ କରି ଅନ୍ତରରେ ଆନନ୍ଦ ଅନୁଭବ କରିଥିଲେ ।

କ୍ରମେ କ୍ରମେ ରାଜା ସାର୍ ବାସୁଦେବ ସୁଢ଼ଳଦେବ ବୁଝିପାରିଲେ ଯେ, ବାମଣ୍ଡା ରାଜ୍ୟର ଅକ୍ଷୟ ଅରଣ୍ୟ ସଂପଦ ପ୍ରଚୁର ଧନାଗମର ଜନୟିତ୍ରୀ ହୋଇ ତାଙ୍କ ସମ୍ମୁଖରେ ବିଦ୍ୟମାନ । ବର୍ତ୍ତମାନ ସେହି ବନସଂପଦ ସହାସ୍ୟେ ଓ ସମାଦରେ ତାଙ୍କୁ ଅଗ୍ରସର ହେବାପାଇଁ ଆହ୍ୱାନ କରୁଅଛି, ସେ ଜାଣି ପାରିଲେ । କେବଳ ଇଷ୍ଟ ଇଣ୍ଡିଆନ୍ ରେଲୱେ ନୁହେଁ, ଇଷ୍ଟର୍ଣ୍ଣ ବେଙ୍ଗଲ୍ ଇଷ୍ଟେଟ ରେଲୱେ ଓ ସ୍ୱରାଜ୍ୟର ପ୍ରାନ୍ତ ସ୍ପର୍ଶୀ ବେଙ୍ଗଲ ନାଗପୁର ରେଲୱେର ସର୍ବତ୍ର ହିଁ ଏହି ସ୍ଲିପର ସରବରାହ କରି ପାରିଲେ ବର୍ଷକୁ ବର୍ଷ ଲକ୍ଷ ଲକ୍ଷ ଟଙ୍କାର ସଂସ୍ଥାନ ହୋଇପାରିବ । ସେତେବେଳେ ତାଙ୍କର ହୃଦବୋଧ ହେଲା, ଦେଶୀୟ କରତରେ ମଜଦୁର ଦ୍ୱାରା ବୃକ୍ଷ ଛେଦନ ଓ ସ୍ଲିପର୍ ପ୍ରସ୍ତୁତ କରାଇ ବିଶେଷ କୌଣସି ଲାଭଜନକ ବ୍ୟବସାୟ ଚଳିପାରେ ନାହିଁ । ବିଲାତରୁ କରତ କଳ(Saw Machine)ଓ ଇଞ୍ଜିନ୍ ଅଣାଇ ଅଳ୍ପ ସମୟରେ ଅଳ୍ପ ବ୍ୟୟରେ ପ୍ରଚୁର ପରିମାଣରେ ସ୍ଲିପର୍ ପ୍ରସ୍ତୁତ କରାଇ ନପାରିଲେ ଆଶାନୁରୂପ ଲାଭର ସମ୍ଭାବନା ନାହିଁ । ତେଣୁ ରାଜ ସଂସାରରେ, ବ୍ୟକ୍ତିଗତ ସଂପତ୍ତି ଭାବରେ ତାଙ୍କର ନିଜସ୍ୱ ଯାହାକିଛି ଥିଲା ଏବଂ ଯାହାକିଛି ସଂଗ୍ରହ କରିବାର



Digitized by srujanika@gmail.com

ଉପାୟ ଥିଲା, ସେସବୁ ଏକତ୍ର କଲେ ତାହା ବିନିମୟରେ ବିଲାତରୁ କରତକଳ ଓ ଇଞ୍ଜିନ୍ ଅଣାଇ କାର୍ଯ୍ୟାରମ୍ଭ କରିବାରେ ଦୃଢ଼ସଂକଳ୍ପ ହେଲେ ।

ଇଂଲଣ୍ଡରୁ କାଠ ଚିରିବା ଓ ସ୍ଲିପର ପ୍ରସ୍ତୁତ କରାଇବା କଳ ଅଣାଇବା ପରେ ପଦେ ପଦେ ବିଘ୍ନ ଉପସ୍ଥିତ ହେବାରେ ଲାଗିଲା । ବିଲାତରୁ ଆମଦାନୀ କରା ହୋଇଥିବା ଇଞ୍ଜିନ୍ ଓ କରତ କଳ ବସାଇ ଏବଂ ଚଳାଇ ଦେବାପାଇଁ ସଂଗେ ସଂଗେ ସେହି ବିଲାତି ସଉଦାଗରଙ୍କ ଲୋକମଧ୍ୟ ଆସିଥିଲେ । ପ୍ରଥମ ବ୍ୟକ୍ତି ଅପାରଗ ହୋଇ ଫେରିଗଲେ । ଶେଷରେ ଜଣେ ଫ୍ରେଞ୍ଚମ୍ୟାନ୍ ମେକାନିକାଲ୍ ଇଂଜିନିୟର, ତାହାଙ୍କ କର୍ତ୍ତୃକ ପ୍ରେରିତ ହୋଇ ଆସିଲେ ଏବଂ କଳ ବସାଇ ଚଳାଇ ଦେଲେ । କାର୍ଯ୍ୟ ମଧ୍ୟ ଆରମ୍ଭ ହେଲା; କିନ୍ତୁ ପଦେ ପଦେ କଳ ବିକଳ ହୋଇ କାର୍ଯ୍ୟରେ ବ୍ୟାଘାତ ଜନ୍ମାଇ ପାରେ ଏହି ଭୟରେ ରାଜାଙ୍କର ଉତ୍କଣ୍ଠା ବୃଦ୍ଧି ପାଇବାରେ ଲାଗିଲା । ତେଣୁ କାର୍ଯ୍ୟ ଆରମ୍ଭରୁ ଜଣେ ଇଂରେଜ୍ ମେକାନିକ୍‌ଙ୍କୁ ସ୍ଥାୟୀ ଭାବରେ ନିଯୁକ୍ତି ଦେଇ କଳଟିକୁ ସବଳ ଓ ସଚଳ କରି ନେଇଥିଲେ । ସଂଗେ ସଂଗେ ଦେଶୀୟ ମିସ୍ତ୍ରୀମାନଙ୍କୁ କଳ ଚଳାଇବା, ଭାଙ୍ଗିଗଲେ ମରାମତି କରିବା, ଅଚଳ କଳକୁ ସଚଳ କରିବା ନିୟମ ପଦ୍ଧତିସବୁ ଶିଖାଇବାରେ ଲାଗିଲେ । ଦେଶୀୟ ମିସ୍ତ୍ରୀମାନେ ସେହି କାର୍ଯ୍ୟରେ ପଟୁତା ଲାଭ କରିବା ପରେ ମଧ୍ୟ ପୂର୍ବବତ୍ ଜଣେ ନା ଜଣେ ସାହେବ ମେକାନିକ୍‌ଙ୍କୁ ପୂରା ବେତନରେ ଦୀର୍ଘକାଳ ବାମଣ୍ଡାରେ କାର୍ଯ୍ୟରେ ନିଯୁକ୍ତ କରିଥିଲେ ।*(ଘ)*

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଅତିଶୟ ଦୂରଦର୍ଶୀ ରାଜା ଥିଲେ, ଏହି କାଠ କାରବାରର ସୂଚନାରେ ହିଁ ଦିବ୍ୟ ଦୃଷ୍ଟିରେ ତାଙ୍କର ଭାବୀ ଅର୍ଥାଗମର ସଂଭାବନା ବୁଝି ପାରିଥିଲେ, ତେଣୁ ନିଜର ପ୍ରାପ୍ତ ସଂଚିତ ସମସ୍ତ ଅର୍ଥ କ୍ଷୟ କରି ଏହି କାର୍ଯ୍ୟରେ ନିୟୋଗ କରିଥିଲେ । ବ୍ୟବସାୟରେ ଲାଭର ସୂତ୍ରପାତ ହେବାରୁ, ସଞ୍ଚିତ ଅର୍ଥ ଯାହା ବ୍ୟୟ କରିଥିଲେ ସେସବୁ ପରିପୂରଣ କଲେ ଏବଂ ଧାରସୂତ୍ରରେ ଯାହା ଯାହା ଆଣିଥିଲେ ତାହା ମଧ୍ୟ ପରିଶୋଧ କଲେ; କିନ୍ତୁ ଏହି କାରବାରକୁ ରାଜ୍ୟର ଅଙ୍ଗୀଭୂତ ନ କରି ତାହାକୁ 'ରାଜକୁମାର ସ୍ଲିପର ବ୍ୟବସାୟ' ବୋଲି ଅଭିହିତ କଲେ । ଏହି ବ୍ୟବସାୟ ଚଳାଇବା ପାଇଁ ରାଜ୍ୟର ଅରଣ୍ୟ ଆୟ ବୋଲି ଏକ ରୟେଲଟି ହିସାବରେ ଯଥେଷ୍ଟ ଅର୍ଥ ସମୟ ସମୟରେ ଷ୍ଟେଟ୍‌ର ଧନ ଭଣ୍ଡାରକୁ ଅର୍ପଣ କରିଥିଲେ । ସମୟ ସମୟରେ ରାଜକୋଷରେ ଏଭଳି ଜମା ଦେଖା ହେଉଥିଲେ ମଧ୍ୟ ଗଭର୍ଣ୍ଣମେଣ୍ଟ ଏହି ବ୍ୟବସାୟ ଲବ୍ଧ ଟଙ୍କା ରାଜ୍ୟର ସାଧାରଣ ସଂପତ୍ତି କରିବା ପାଇଁ ଇଙ୍ଗିତ କରିଥିଲେ; କିନ୍ତୁ ରାଜା ବାହାଦୁର କୌଣସି ମତେ ତାହା କରିବାପାଇଁ ସମ୍ମତ ହୋଇ ନାହାନ୍ତି । ଏହି ହିସାବରେ ରାଜ୍ୟର ବାର୍ଷିକ ଆୟ ବୃଦ୍ଧି ପ୍ରାପ୍ତ ହେଲେ ମଧ୍ୟ, ଉଦ୍‌ବୃତ୍ତ ପ୍ରଚୁର ଅର୍ଥ 'ରାଜକୁମାର ସ୍ଲିପର ବ୍ୟବସାୟ' ଲବ୍ଧ ଧନରେ ପରିଣତ ହେବାରେ ଲାଗିଲା ।



Digitized by srujanika@gmail.com

ଦେଶୀୟ ରାଜ୍ୟର ବାର୍ଷିକ ଶାସନ ବିବରଣୀରେ ପୋଲିଟିକାଲ୍ ଏଜେଣ୍ଟ ଏବଂ ମଧ୍ୟ ପ୍ରଦେଶର ଶାସନକର୍ତ୍ତାମାନେ ବାମଣ୍ଡାର ବାର୍ଷିକ ଆୟର ପରିମାଣକୁ ସର୍ବଦାହିଁ ପ୍ରକୃତ ଆୟ ଅପେକ୍ଷା ଅଳ୍ପବୋଲି ଇଙ୍ଗିତ କରୁଥିଲେ ଏବଂ 'ରାଜକୁମାର ଶ୍ଳିପର୍ ବ୍ୟବସାୟ' ରାଜାଙ୍କର ବେନାମୀ କାରବାର ବୋଲି ଉଲ୍ଲେଖ କରୁଥିଲେ; କିନ୍ତୁ ସାମନ୍ତ ନରପତିମାନଙ୍କର ରାଜ୍ୟର ଏଭଳି ଆଭ୍ୟନ୍ତରୀଣ ବ୍ୟବସ୍ଥାରେ କୌଣସି ଦିନ ହସ୍ତକ୍ଷେପ କରିବାର ପ୍ରୟୋଜନ ବୋଧ କରି ନାହାନ୍ତି । କେବଳ ଏଭଳି ଭାବରେ ଇଙ୍ଗିତ କରି ଅଛନ୍ତି ମାତ୍ର । ଶ୍ଳିପର୍ ବ୍ୟବସାୟ ଆରମ୍ଭ ହେବା ପରେ ବର୍ଷ ପରେ ବର୍ଷ ବାମଣ୍ଡାର ବାର୍ଷିକ ଆୟର ପରିମାଣ ବୃଦ୍ଧି ପାଇଅଛି । କ୍ରମେ ସାର୍ ବାସୁଦେବ ସୁଢ଼ଳଦେବଙ୍କ ସ୍ୱର୍ଗାରୋହଣ ପୂର୍ବବର୍ଷ ପର୍ଯ୍ୟନ୍ତ ଅର୍ଥାତ୍ ୧୯୦୨ ଖ୍ରୀଷ୍ଟାବ୍ଦର ଶାସନ ବିବରଣୀରେ ବାର୍ଷିକ ଆୟ ୧,୭୨,୩୧୦ ଟଙ୍କା ଦେଖାଯାଉଅଛି; କିନ୍ତୁ ଏହି ବର୍ଷ ପର୍ଯ୍ୟନ୍ତ 'ରାଜକୁମାର ଶ୍ଳିପର୍ ବ୍ୟବସାୟ' ରେ ସରକାରୀ ଆୟ ବାଦ୍‌ଦେଇ କେତେ ଟଙ୍କା ଲାଭ ହୋଇଅଛି ତାହା ଜାଣିବାର ଉପାୟ ନାହିଁ । କାରଣ ତାହା ରାଜାଙ୍କର ବ୍ୟକ୍ତିଗତ ସଂପତ୍ତି ମାତ୍ର ।

ପୂର୍ବରୁ କୁହାଯାଇଅଛି ଯେ, ରାଜା ସାର୍ ବାସୁଦେବ ସୁଢ଼ଳଦେବ ଯେତେବେଳେ ବାମଣ୍ଡା ରାଜ୍ୟର ଶାସନଭାର ଗ୍ରହଣ କରନ୍ତି, ସେତେବେଳେ ଏହି ରାଜ୍ୟର ବାର୍ଷିକ ଆୟ ଥିଲା ମାତ୍ର ଛଅ ହଜାର ଟଙ୍କା । ତାହା ପରେ ତାଙ୍କର ରାଜ୍ୟପାଳନ ପଦ୍ଧତିର ଉତ୍ତମତର ପରିସ୍ଫୁଟନ ଫଳରେ ବାମଣ୍ଡାର ଐଶ୍ୱର୍ଯ୍ୟ ସଂପଦ ଯେ ଆଶ୍ଚର୍ଯ୍ୟଜନକ ଭାବରେ ବର୍ଦ୍ଧିତ ହୋଇଅଛି, ତାହାର କ୍ରମୋନ୍ନତିର ସାମାନ୍ୟ ଆଭାସ ଦିଆଯାଉଅଛି । ୧୮୬୯ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମକାଳରେ ରାଜା ବାହାଦୁର ବ୍ରଜସୁନ୍ଦର୍ ଦେବଙ୍କର ଲୋକାନ୍ତର ଗମନରେ, ବାସୁଦେବ୍ ସୁଢ଼ଳଦେବ ଯେତେବେଳେ ପିତୃପରିଚାଳନାର ରାଜ୍ୟଭାର ଗ୍ରହଣ କରନ୍ତି, ସେତେବେଳେ ରାଜ୍ୟର ବାର୍ଷିକ ଆୟ ଥିଲା ମାତ୍ର ଛଅ ହଜାର ଟଙ୍କା । ୧୮୭୩ ଖ୍ରୀଷ୍ଟାବ୍ଦରେ ସ୍ୱୟଂ ରାଜକାର୍ଯ୍ୟ ପରିଚାଳନା ଭାର ନିଜ ହସ୍ତରେ ଗ୍ରହଣ କରିବା ଫଳରେ ୧୮୭୪ ଖ୍ରୀଷ୍ଟାବ୍ଦର ବାର୍ଷିକ ଆୟ ହୋଇଥିଲା ଅଠର ହଜାର ଟଙ୍କା । ତାହାଙ୍କ ଶାସନ ପଦ୍ଧତିର କ୍ରମୋନ୍ନତି ଫଳରେ, ଦିନୁଦିନ ରାଜ୍ୟର ଆୟ ବୃଦ୍ଧି ହେଉଥାଏ । ଏହାର ଅଠର ବର୍ଷ ପରେ ୧୮୯୨ ଖ୍ରୀଷ୍ଟାବ୍ଦରେ ମଧ୍ୟପ୍ରଦେଶର ସାମନ୍ତ ରାଜା ଗଣଙ୍କର ବାର୍ଷିକ ସରକାରୀ ରିପୋର୍ଟରେ ବାମଣ୍ଡାର ବାର୍ଷିକ ଆୟ ୫୨,୦୦୦ ଟଙ୍କା ଦେଖାଯାଇଅଛି । ଏଥିରୁ ସ୍ପଷ୍ଟ ଜଣାପଡୁଅଛି ଯେ, ଏହି ଅଠର ବର୍ଷ କ୍ରମେ କ୍ରମେ ଚଉତ୍ରିଶ ହଜାର ଟଙ୍କା ବୃଦ୍ଧି ପାଇଥିଲା । ତାହା ପରେ କ୍ରମୋନ୍ନତି ଫଳରେ ଧୀରେ ଧୀରେ ୧୮୯୩ ଖ୍ରୀଷ୍ଟାବ୍ଦରେ ୬୧.୭୬୯ ଟଙ୍କା ପରବର୍ତ୍ତୀ ୧୮୯୪ ଖ୍ରୀଷ୍ଟାବ୍ଦରେ ୬୬, ୫୮୮ ଟଙ୍କା । ଏହି ବର୍ଷ ପର୍ଯ୍ୟନ୍ତ ରାଜ୍ୟ ସରକାରଙ୍କର ଆର୍ଥିକ ଉନ୍ନତି



Digitized by srujanika@gmail.com

ଏତେଟା ହୋଇଥିଲେ ମଧ୍ୟ, ବ୍ୟୟର ପରିମାଣ ମଧ୍ୟ ତାହା ସଂଗେ ସଂଗେ ବୃଦ୍ଧି ପାଇଥିଲା । ଉନ୍ନତତର ପଦ୍ଧତି ଅନୁଯାୟୀ ରାଜକାର୍ଯ୍ୟ ପରିଚାଳନା ପାଇଁ(୪) ପ୍ରଜାମଣ୍ଡଳୀଙ୍କ ସୁଶିକ୍ଷା ବିଧାନାର୍ଥେ ନାନା ସ୍ଥାନରେ ବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଏବଂ ରାଜଧାନୀରେ ଉଚ୍ଚ ଶ୍ରେଣୀରେ ଉତ୍କୃଷ୍ଟ ବିଦ୍ୟାଳୟର ବ୍ୟୟ ବହନ(୫) ପାଇଁ, ପୋଲିସ ବିଭାଗ ଗଠନ କରି ତୋଳିବାପାଇଁ, ନାନା ସ୍ଥାନରେ କୃଷିକ୍ଷେତ୍ରରେ ଅଭିଜ୍ଞ ଏବଂ ଉପଯୁକ୍ତ ଲୋକ ନିୟୋଗ କରିବାପାଇଁ, ଉତ୍ତମତର ପ୍ରଣାଳୀ ଅନୁଯାୟୀ କୃଷିକର୍ମ ପରିଚାଳନ ପାଇଁ, ସର୍ବୋପରି ବର୍ଷ ପରେ ବର୍ଷ ଏକ ଜଙ୍ଗଲ ପରିବେଷ୍ଟିତ ନିହାତି ପଲ୍ଲୀଗ୍ରାମ ସଦୃଶ ପଲ୍ଲୀ ବାସସ୍ଥାନକୁ ସର୍ବବିଧ ଶୋଭା ସଂପଦରେ ଏବଂ ଐଶ୍ୱର୍ଯ୍ୟର ଆଳୟ କରି ତୋଳିବାପାଇଁ(୬) ବର୍ଷ-ଶେଷରେ ସର୍ବଦାହିଁ ରାଜକୋଷ ଶୂନ୍ୟ ହୋଇ ପଡୁଥିଲା । ଏହା ଉପରେ ରାଜକୁମାର ଏବଂ ରାଜକୁମାରୀଗଣଙ୍କର ବିବାହ ବ୍ୟାପାରରେ ମଧ୍ୟ ପ୍ରଚୁର ଅର୍ଥ ବ୍ୟୟିତ ହେଉଥିଲା । ଏହା ବ୍ୟତୀତ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଶତବିଧ ସଦ୍ ଅନୁଷ୍ଠାନ ଓ ବିପନ୍ନଙ୍କ ରକ୍ଷାପାଇଁ ପ୍ରଚୁର ଅର୍ଥ ବ୍ୟୟ ହେଉଥିଲା । ତେଣୁ ଅର୍ଥ ବ୍ୟବହାରରେ କଳ୍ପତରୁ ସଦୃଶ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ରାଜକୋଷ ଶୂନ୍ୟ ରଖିବା ବ୍ୟବସ୍ଥା ବିଧାତା କରି ନାହାନ୍ତି । ୧୮୬୯ ଖ୍ରୀଷ୍ଟାବ୍ଦ ଠାରୁ ୧୮୯୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଯତ୍ର ଆୟ ତତ୍ର ବ୍ୟୟରେ ଚାଲିଥିଲା । ସେ ଏକ ବିଷୟରେ ସର୍ବଦା ହିଁ ଖୁବ୍ ସାବଧାନ ଥିଲେ, ଦୀର୍ଘ କାଳର ବାର୍ଷିକ ବିବରଣୀରେ କୁତ୍ରାପି ଋଣର ଉଲ୍ଲେଖ ଦେଖାଯାଏ ନାହିଁ । ଚିରଦିନ ଆୟ ଅନୁପାତରେ ବ୍ୟୟ କରି ଆସୁଥିଲେ, ତେଣୁ ସରକାରୀ ରିପୋର୍ଟରେ ତାଙ୍କୁ ବର୍ଷ ପରେ ବର୍ଷ 'Capable Financier' ଉଚ୍ଚଦରର ଅର୍ଥନୀତିବିଦ୍ ବୋଲି ମଧ୍ୟ ପ୍ରଦେଶର ଶାସନକର୍ତ୍ତାମାନେ ସମାଦର ପ୍ରଦର୍ଶନ କରି ଅଛନ୍ତି ।

୧୮୯୫ ଖ୍ରୀଷ୍ଟାବ୍ଦରୁ ବାମଣ୍ଡା ରାଜ୍ୟର ଆୟର ପରିମାଣ ଅସଂଭବ ଭାବରେ ବୃଦ୍ଧି ପ୍ରାପ୍ତ ହେବା ଆରମ୍ଭ ହୁଏ । ସେହି ଆୟ ୧୯୦୧ ଖ୍ରୀଷ୍ଟାବ୍ଦରେ ୧,୩୨,୪୭୩ ଟଙ୍କା ଓ ପରବର୍ତ୍ତୀ ବର୍ଷ ଅର୍ଥାତ୍ ୧୯୦୨ ଖ୍ରୀଷ୍ଟାବ୍ଦରେ ୧,୭୨,୩୧୦ ଟଙ୍କାରେ ପରିଣତ ହୁଏ । ସାମନ୍ତ ରାଜାଗଣଙ୍କ ସହିତ ଇଂରେଜ ସରକାରଙ୍କର ସନ୍ଧିସୂତ୍ରରେ ନିର୍ଦ୍ଦିଷ୍ଟକାଳ ପରେ ପରେ ଆୟ ବୃଦ୍ଧିର ସଂଗେ ସଂଗେ ରାଜକର (Tribute) ମଧ୍ୟ ବୃଦ୍ଧି ପ୍ରାପ୍ତ ହୋଇ ସେହି ପ୍ରାଚୀନ ୧୫୦୦ଟଙ୍କା ବର୍ତ୍ତମାନ ୭୫୦୦ଟଙ୍କା ହୋଇଅଛି ।

ବାମଣ୍ଡା ରାଜ୍ୟର ନାନା ସ୍ଥାନରେ ବହୁ ବିସ୍ତୃତ ଶାଳ ବୃକ୍ଷ ଛେଦନ, ସ୍ଲିପର୍ ପ୍ରସ୍ତୁତ ଓ ବିକ୍ରୟରେ ୧୮୯୫ ଖ୍ରୀଷ୍ଟାବ୍ଦରୁ ୧୯୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଆଠ ନଅ ବର୍ଷ ସର୍ବବିଧ ବ୍ୟୟ ବାଦ୍ ଦେଇ କେତେ ପରିମାଣ ଅର୍ଥ ସଞ୍ଚିତ ହୋଇଅଛି ଓ ତାହା ପରଠାରୁ ଅର୍ଥାତ୍ ବର୍ତ୍ତମାନ ରାଜା ବାହାଦୂରଙ୍କର ସମୟ ଅର୍ଥାତ୍ ୧୯୦୪ ଖ୍ରୀଷ୍ଟାବ୍ଦରୁ ୧୯୧୫ ଖ୍ରୀଷ୍ଟାବ୍ଦ



Digitized by srujanika@gmail.com

ପର୍ଯ୍ୟନ୍ତ ଏହି କାରବାରରେ କେତେ ପରିମାଣ ଅର୍ଥ ସଂଚିତ ହୋଇଅଛି, ସରକାରୀ ହିସାବ ପତ୍ରରେ ତାହାର ବିବରଣୀ ପ୍ରଦତ୍ତ ହୋଇନାହିଁ । ସୁତରାଂ ତାହା ଜାଣିବାର ଉପାୟ ନାହିଁ । ତେବେ ସେହି ଅର୍ଥ ଅଳ୍ପ ନୁହେଁ ଏବଂ ସେହି ଅର୍ଥର ଆଂଶିକ ବ୍ୟୟରେ ସାର୍ ବାସୁଦେବ ତାଙ୍କର ଅପର ଆଠଜଣ ପୁତ୍ରଙ୍କର ସ୍ଥାୟୀ ଧନଭଣ୍ଡାର ସ୍ଥାପନ କରିଦେଇ ଯାଇଛନ୍ତି । ଏହି ସମ୍ବାଦ ଆମ୍ଭର ଅବଗତ ହୋଇଅଛି । 'ରାଜକୁମାର ସ୍ଲିପର୍ ବ୍ୟବସାୟ' ନାମରେ କାରବାର ଚଳାଇବାରେ ତାଙ୍କର ଯେଉଁ ଉଦ୍ଦେଶ୍ୟ ଥିଲା, ଲୋକାନ୍ତରଗମନ କାଳରେ, ସେହି ଅଭିପ୍ରାୟ ସେ ସୁସିଦ୍ଧ କରି ଯାଇଅଛନ୍ତି ।

ବାମଣ୍ଡାର ନାନା ସ୍ଥାନେ ବର୍ତ୍ତମାନ ମଧ୍ୟ ଅରଣ୍ୟ ସୁରକ୍ଷିତ । ଅରଣ୍ୟ ରକ୍ଷା ପାଇଁ, ବହୁ ବ୍ୟୟରେ ବହୁ କର୍ମଚାରୀ ନିଯୁକ୍ତ ହୋଇ ରହିଅଛନ୍ତି । ଅନେକ ସ୍ଥାନର ଅରଣ୍ୟ ସଂପଦ ଅର୍ଥାତ୍ ପ୍ରାଚୀନ ବୃକ୍ଷ ସମୂହ ବାଣିଜ୍ୟ ସୂତ୍ରରେ ଲୋପ ପାଇଅଛି ଏବଂ ସେହି ସବୁ ସ୍ଥାନରେ ପୁନରାୟ କାର୍ଯ୍ୟୋପଯୋଗୀ ଶାଳବୃକ୍ଷ ପ୍ରସ୍ତୁତ ହେବାପାଇଁ ବିଳମ୍ବ ଘଟିବ ।*(୨)* ବର୍ତ୍ତମାନ ବାମଣ୍ଡାରେ ଯେଉଁ ସ୍ଲିପର୍ କାରବାର ଚଳୁଅଛି, ତହିଁରେ ଆଉ ଇଞ୍ଜିନ ଓ କଳର ପ୍ରୟୋଜନ ହୁଏ ନାହିଁ । କାରଣ ଏକ ସ୍ଥାନରେ ଏକତ୍ର ଆଉ ବହୁ ବହୁ ପ୍ରାଚୀନ ବୃକ୍ଷ ମିଳେନାହିଁ । ଯାହା ମିଳେ, ସେଗୁଡ଼ିକର କାର୍ଯ୍ୟରେ ଦେଶୀୟ ଶ୍ରମଜୀବୀଙ୍କର ନିୟୋଗ ସର୍ବତ୍ର ଲାଭଜନକ । ତେଣୁ ଇଞ୍ଜିନ ଏବଂ କରତ କଳ ବଳମ୍ କୃଷିକ୍ଷେତ୍ରରେ ପ୍ରତିଷ୍ଠିତ କରି କାର୍ଯ୍ୟ ଚଳୁଅଛି । ଏଠାରେ କଳଦ୍ୱାରା ଯେଉଁସବୁ କାଠ ଚିରା ଯାଉଅଛି, ସେଗୁଡ଼ିକ ବାମଣ୍ଡା ରାଜଧାନୀର କାର୍ଯ୍ୟରେ କଡ଼ି, ଝର୍କା, ଦରଜା ପ୍ରଭୃତି ନାନା ପ୍ରୟୋଜନରେ ଲାଗିଥାଏ ।



---

ପାଦଟୀକା

(୧) The Raja is a shrewd and capable Financier. He does a good deal of profitable trade by river with Cuttack.-Administration Report-1891.

(୨) ଈଶ୍ୱର ବାବୁ କର୍ତ୍ତୃକ ସ୍ୱର୍ଗୀୟ ରାଜା ବାହାଦୁର ନାନା ପ୍ରକାରେ କ୍ଷତିଗ୍ରସ୍ତ ହେଲେ ମଧ୍ୟ ପ୍ରାଥମିକ ଗୁରୁବୋଲି ସର୍ବଦା କ୍ଷମା କରୁଥିଲେ । ସାର୍ ବାସୁଦେବ ଓ ଯୁବରାଜ (ବର୍ତ୍ତମାନର ରାଜା)ଙ୍କର ଅସୀମ କରୁଣାର ନିଦର୍ଶନ ରୂପେ ଈଶ୍ୱରବାବୁ ଆଜିସୁଦ୍ଧା ବୃତ୍ତି ପ୍ରାପ୍ତ ହୋଇ ବାମଣ୍ଡାରେ ହିଁ ବାସ କରୁଅଛନ୍ତି ।



Digitized by srujanika@gmail.com

(୩) There are large saw-mills in the state and a considerable business is done. This brings much profit to the inhabitants of the state, who are enabled to earn good wages by their labour and by carting the timber to the Railways. -Administration Report 1898

(୪) It is surprising to see the amount of good and parmanent work which, with his limited means, he has already been able to do for the improvement of his state. -Administration Report-1893

(୫) The Raja of Bamra, in this in all branches of administration preferes his own independent method of working and in view of the generally excellent result which he produces, there is certainly no occassion to subject those methods to any disparaging criticism.

The head quarter Schools at Deogarh, which provide a higher education both in the vernacular and English, and are presided over by highly qualified masters, have long since established a reputation which appears to have been fully sustained in the year under report 1895.

Bamra has maintained its reputation for a sound system of rural education, and its Rajcoomar school is the best in the states.

-Report-1898

(୬) If I add that the streèt and sorroundings of the Town are kept strictly clean, it will be realised, how much the Raja has done to improve his capital. -Report-1892

(୭) In Bamra the operations have now been transferred to more distant forests but they still yield a substancial profit; they are under the personal supervision of the Raja who has shown himself a sound man of business. The forests are the most valuable property possessed by the state and I saw no signs that they were being overworked in a way detrimental to their conservation.

-Administration Report-1899



Digitized by srujanika@gmail.com

## ଦ୍ୱାଦଶ ଅଧ୍ୟାୟ

# ଓଡ଼ିଶା ସହିତ ଘନିଷ୍ଠତର ଯୋଗ

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଅନନ୍ୟ ସାଧାରଣ ସଂସ୍କୃତଜ୍ଞ ପଣ୍ଡିତ ଓ ଦାର୍ଶନିକ ବୋଲି ଦେଶ ବିଦେଶରେ ପରିଚିତ ଓ ପରିଗଣିତ ହୋଇଥିଲେ । କାଶୀ, କାଞ୍ଚି,କନୌଜ, କଲିକତା, ନାସିକ, ନବଦ୍ୱୀପ, ନେପାଳ ଓ ପୁରୀ ପ୍ରଭୃତି ସ୍ଥାନରେ ପଣ୍ଡିତ ମଣ୍ଡଳୀ ନାନା ସମୟରେ ବାମଣ୍ଡା ରାଜ ଦରବାରରେ ବିବିଧ ଅନୁଷ୍ଠାନକ୍ଷେତ୍ରେ ସମ୍ମାନିତ ଓ ବିଦାୟ ପ୍ରାପ୍ତ ହେବା ସଂଗେ ସଂଗେ ରାଜାଙ୍କ ବିଦ୍ୟା ଗୌରବର ପରିଚୟ ପାଇ ଆନନ୍ଦ ସଂଭୋଗ କରିଅଛନ୍ତି । ସୁତରାଂ ଦେଶରେ ଏବଂ ବିଦେଶରେ ସଂସ୍କୃତଜ୍ଞ ପଣ୍ଡିତ ମଣ୍ଡଳରେ ତାଙ୍କର ପ୍ରଚୁର ପ୍ରତିଷ୍ଠା ପୂର୍ବରୁ ହିଁ ଥିଲା ।

ଓଡ଼ିଶାର ଶିକ୍ଷିତ ଓ୍ ପଦସ୍ଥ ବ୍ୟକ୍ତିଗଣ ଓ ଜନସାଧାରଣ ତାହାଙ୍କୁ 'ଅଖୋଜ ବାମଣ୍ଡା'ର ରାଜା ବୋଲି ଜାଣୁଥିଲେ । ପରେ କାଳକ୍ଷୟ ସହିତ ଓଡ଼ିଶାର ଲୋକେ ବାମଣ୍ଡା ଯାତାୟତ ଆରମ୍ଭ କରିବା ଫଳରେ, ତାଙ୍କର ରାଜ୍ୟ ପାଳନ ପଦ୍ଧତିର ଉତ୍କୃଷ୍ଟତା ବିଷୟରେ କିଛି କିଛି ସମ୍ବାଦ ଓଡ଼ିଶାର ନାନା ସ୍ଥାନରେ ପ୍ରଚାରିତ ହେବା ଆରମ୍ଭ ହୁଏ । ସମଗ୍ର ଓଡ଼ିଶାର ଜନସାଧାରଣଙ୍କ ନିକଟରେ ତାଙ୍କର ଆଉ ଏକ ଅତି ଉଚ୍ଚସମ୍ମାନ ଲାଭର କାରଣ ଏହା ଥିଲା ଯେ, ସେ ଓଡ଼ିଶାର ଐତିହାସିକ ଅଶେଷବିଧ ଗୁଣ ଗୌରବ ସଂପନ୍ନ ପ୍ରାଚୀନ ଗଙ୍ଗବଂଶୀୟ ରାଜା । ଏହି ଗଙ୍ଗବଂଶୀୟ ବିଦ୍ୟା ଗୌରବ ମଣ୍ଡିତ ରାଜା ସାର୍ ବାସୁଦେବଙ୍କ ଆକର୍ଷଣରେ ଅକୃଷ୍ଟ ହୋଇ ତଦାନିନ୍ତନ ଓଡ଼ିଶାର ଶିକ୍ଷା ବିଭାଗର ଇନ୍‌ସ୍‌ପେକ୍ଟର ରାୟ ରାଧାନାଥ ରାୟ ବାହାଦୁର ବାମଣ୍ଡା ଗମନ କରନ୍ତି । ରାଧାନାଥବାବୁ ଇଂରାଜୀ ଓ ସଂସ୍କୃତ ଉଭୟବିଧ ଭାଷାରେ ସୁପଣ୍ଡିତ ଥିଲେ । ପରିଚୟ  ସଂଗେ ସଂଗେ ରାଜା ବାହାଦୁରଙ୍କ ସହିତ ତାଙ୍କର ଅକୃତ୍ରିମ ଆତ୍ମୀୟତାର ସୂତ୍ରପାତ ଓ କ୍ରମେ ସେହି ଆତ୍ମୀୟତା ଘନୀଭୂତ ହୋଇଥିଲା ।

ଏହା ପରେ ଐତିହାସିକ ସାହିତ୍ୟ କଳହ ସୂତ୍ରେ ଏବଂ କଟକରେ ବ୍ୟବସାୟ ବାଣିଜ୍ୟର ସୂତ୍ରପାତ ଓଡ଼ିଶାର ସର୍ବତ୍ର ତାଙ୍କର ଯଶ ପ୍ରଚାରିତ ହୋଇ ପଡ଼ିଥିଲା । ଏହି ସମୟରେ ଓଡ଼ିଶାର ସୁସନ୍ତାନ ଅଧୁନା ଲୋକାନ୍ତରିତ ଚତୁର୍ଭୁଜ ପଟ୍ଟନାୟକ ବିଦ୍ୟାଶିକ୍ଷା



Digitized by srujanika@gmail.com

ସମାପନ କରି ବିଶ୍ୱବିଦ୍ୟାଳୟର ଉପାଧି ପ୍ରାପ୍ତ ହୋଇ କିଛିକାଳ ଶିକ୍ଷା ବିଭାଗର ଡେପୁଟି ଇନ୍‌ସପେକ୍ଟର କାର୍ଯ୍ୟ କରୁକରୁ ପଦୋନ୍ନତି ସହ ସରକାରଙ୍କର ଓଡ଼ିଆ ଅନୁବାଦକ ପଦରେ ନିଯୁକ୍ତ ହୁଅନ୍ତି, ଏବଂ ବିଶେଷ ଯୋଗ୍ୟତାର ସହିତ ସେହି କାର୍ଯ୍ୟ ସଂପନ୍ନ କରୁଥାନ୍ତି । ଅବସର କ୍ରମେ ସେ ବାମଣ୍ଡା ରାଜ୍ୟର ନିମନ୍ତ୍ରଣ ଗ୍ରହଣ କରି ବାମଣ୍ଡା ଗମନ କରନ୍ତି । ସେଠାରେ କେତେଦିନ ଅବସ୍ଥିତି ପରେ, ରାଜା ବାହାଦୁରଙ୍କ ସହିତ ପରାମର୍ଶ କରି ସମଗ୍ର ଓଡ଼ିଶାର କଲ୍ୟାଣ ସାଧନ ପ୍ରତ୍ୟାଶାରେ ଦୁଇଖଣ୍ଡ ମାସିକ ପତ୍ରିକା ପ୍ରଚାରର ପରାମର୍ଶ ସ୍ଥିର ହେଲା । ଖଣ୍ଡେ ସମାଜ ସଂସ୍କାର ବିଷୟକ ଅନ୍ୟ ଖଣ୍ଡେ ଧର୍ମ ସଂସ୍କାର ବିଷୟକ, ଦୁଇ ଖଣ୍ଡ ମାସିକ ପତ୍ରିକାର ନାମକରଣ ହେଲା 'ସଂସ୍କାରକ' ଓ 'ସେବକ' ।

ଏହି ଉଭୟ ପତ୍ରିକା ପ୍ରଚାର ପାଇଁ ମୁଦ୍ରାଯନ୍ତ୍ର କ୍ରୟ ଓ ପତ୍ରିକା ପରିଚାଳନା ପାଇଁ ୧୫୦୦ ଟଙ୍କା ଅର୍ଥ ସାହାଯ୍ୟ ନେଇ ଚତୁର୍ଭୁଜ ବାବୁ କଟକ ଫେରି ଆସନ୍ତି । ଏହି ଅର୍ଥରେ ସୁଢ଼ଳପ୍ରେସ ପ୍ରତିଷ୍ଠିତ ହୋଇ 'ସଂସ୍କାରକ' ଓ 'ସେବକ' ମାସିକ ଦ୍ୱୟ ଯଥାରୀତି ପ୍ରକାଶିତ ହେବାରେ ଲାଗିଲା । ଦୁଇଟିଯାକ ପତ୍ରିକାରେ ରାଜା ବାସୁଦେବ ସୁଢ଼ଳଦେବଙ୍କ ନିକଟରେ ଓ ତଦୀୟ ସହଚରବୃନ୍ଦଙ୍କ ନିକଟରେ ସାହିତ୍ୟିକ ସାହାଯ୍ୟ ପାଉଥିଲେ । ଚତୁର୍ଭୁଜବାବୁ ବହୁ ପରିଶ୍ରମ ସହକାରେ କିଛିକାଳ ଏହାର କାର୍ଯ୍ୟ ପରିଚାଳନା କରି, ରାଜକୀୟ କର୍ତ୍ତବ୍ୟର ପୀଡ଼ନରେ ଏକାବେଳକେ ଅବସରଶୂନ୍ୟ ହୋଇ ପଡ଼ିଲେ । ପତ୍ରିକା ପରିଚାଳନା କାର୍ଯ୍ୟଭାର କ୍ରମେ ଅନ୍ୟ ହସ୍ତରେ ନ୍ୟସ୍ତ ହୋଇଥିଲା । ମାସିକ ପତ୍ରିକା ଦ୍ୱୟ କିଛିକାଳ ସ୍ୱକାର୍ଯ୍ୟ ସାଧନ କରି କ୍ରମେ ଉତ୍ତମ ପରିଚର୍ଯ୍ୟା ଅଭାବରେ ଅବସନ୍ନ ହୋଇ ପଡ଼ିଲା । କ୍ରମଶଃ ପତ୍ରିକା ବନ୍ଦ ହୋଇଗଲା । ଏହାପରେ ସୁଢ଼ଳପ୍ରେସ୍ କାର୍ଯ୍ୟ ପରିଚାଳନା ଚେଷ୍ଟା କରି ମଧ୍ୟ ବିଶେଷ ସୁବିଧା ନ ହେବା ଫଳରେ, ଏକାଂଶ ବାବୁ ସୀତାନାଥ ରାୟଙ୍କୁ ଦାନ କରି ଅପରାଂଶ ବାମଣ୍ଡାକୁ ନେଇଆସି ପୂର୍ବରୁ ପ୍ରତିଷ୍ଠିତ ଜଗନ୍ନାଥ ବଲ୍ଲଭ ପ୍ରେସ୍ ସହିତ ମିଶାଇ ଦିଆଯାଏ ।

ଏହି ଦୀର୍ଘକାଳ ମଧ୍ୟରେ ବାମଣ୍ଡାରାଜ ସାର୍ ବାସୁଦେବ ସୁଢ଼ଳଦେବଙ୍କ ନିମନ୍ତ୍ରଣ ଗ୍ରହଣ କରି କଟକର ବହୁ ବହୁ ପଦସ୍ଥ ବ୍ୟକ୍ତି ବହୁବାର ବାମଣ୍ଡାରେ ପଦାର୍ପଣ କରିଅଛନ୍ତି ଓ ରାଜଆତିଥ୍ୟ ଗ୍ରହଣ କରି ତାଙ୍କର ଆଚାର ବ୍ୟବହାର, ତାଙ୍କର ବିଦ୍ୟାନୁରାଗ, ତାଙ୍କର ଲୋକ ହିତୈଷଣା, ତାଙ୍କର ରାଜ୍ୟପାଳନ, ତାଙ୍କର ଆତ୍ମୀୟତାର ଆଦାନ ପ୍ରଦାନରେ ମୁଗ୍ଧ ହୋଇ ସ୍ୱସ୍ଥାନକୁ ପ୍ରତ୍ୟାଗମନ କରିଅଛନ୍ତି । ରାଧାନାଥବାବୁ ଚତୁର୍ଭୁଜବାବୁଙ୍କ ନାମ ପୂର୍ବରୁ ଉଲ୍ଲେଖ କରାଯାଇଅଛି । ଏହି ସମୟ ମଧ୍ୟରେ ରାୟ ବାହାଦୁର ମଧୁସୂଦନ ରାଓ, ସ୍ୱର୍ଗତ ନନ୍ଦଲାଲ ବନ୍ଦୋପାଧ୍ୟାୟ, ଶ୍ରୀଯୁକ୍ତ ବିଶ୍ୱନାଥ କର, ଶ୍ରୀଯୁକ୍ତ ରାଜମୋହନ ବସୁ ଇତ୍ୟାଦି



Digitized by srujanika@gmail.com

ବହୁ ଓଡ଼ିଆ ଓ ବଙ୍ଗାଳୀ ବାମଣ୍ଡାର ଆତିଥ୍ୟ ଆସ୍ୱାଦନ ଲାଭକରି ଆନନ୍ଦିତ ଓ ଆପ୍ୟାୟିତ ହୋଇଥିଲେ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ ପ୍ରଥମ ଯୌବନରେ ଏକଦା ଦେଶ ପର୍ଯ୍ୟଟନରେ ବାହାରି ମହାନଦୀ ପଥରେ କଟକ ଯାଇଥିଲେ । ସେହି ସମୟରେ ସେ କଟକରେ କାହାରି ସହିତ ପରିଚିତ ହେବାର ଚେଷ୍ଟା କରି ନାହାନ୍ତି । ମାତ୍ର କିଛିଦିନ କଟକରେ ବାସ କରି, ଅପରିଚିତ ଲୋକଙ୍କ ପରି ନିଜ କୌତୂହଳ ଚରିତାର୍ଥ କରିବାପାଇଁ, କେତେକ ଦ୍ରଷ୍ଟବ୍ୟ ସ୍ଥାନ ଓ ସେହି ସ୍ଥାନମାନଙ୍କର କାର୍ଯ୍ୟକଳାପ ପରିଦର୍ଶନ କରି, କେନାଲ୍ ପଥରେ ଚାନ୍ଦବାଲି ଦେଇ କଲିକତା ଯାତ୍ରାକରିଥିଲେ । ଏଥର ୧୯୦୦ ଖ୍ରୀଷ୍ଟାବ୍ଦରେ ନଭେମ୍ବର ମାସରେ ତାଙ୍କର କଟକ ଓ ପୁରୀ ଯାତ୍ରାର ଅନୁଷ୍ଠାନ । ଏଥର ଓଡ଼ିଶା ସାମାଜିକ ରୀତିନୀତି, ଆଚାର, ବ୍ୟବହାର ଓ ଅନ୍ୟ ବିବିଧ ବିଷୟକ କାର୍ଯ୍ୟକଳାପର ପଦ୍ଧତି ପର୍ଯ୍ୟବେକ୍ଷଣ ହିଁ ତାଙ୍କ ଭ୍ରମଣର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ରାଜା ବାହାଦୁର ଯେଉଁ ସମୟରେ କଟକ ଯାତ୍ରା କରନ୍ତି, ଠିକ୍ ସେହି ସମୟରେ ହିଁ ବାଲେଶ୍ୱର ନିକଟରେ ଏକ ଦୁର୍ଘଟଣା ଫଳରେ ରେଳ ଭାଙ୍ଗି ଯାଇଥିଲା ଓ ଅନେକ ଯାତ୍ରୀ ମୃତ୍ୟୁମୁଖରେ ପତିତ ହୋଇଥିଲେ । ରାଜାଙ୍କ ସାଂଗରେ ଥିଲେ ଯୁବରାଜ, ମଧ୍ୟମା କନ୍ୟା ଶ୍ରୀମତୀ ଦେବୀ, ହିତୈଷିଣୀର ସଂପାଦକ ନୀଳମଣି ବିଦ୍ୟାରତ୍ନ, ପୋଲିସ୍ ଅଫିସର୍ ବାବୁ ରାମଚନ୍ଦ୍ରପାଲ୍, ପାଚକ ଓ ଅନୁଚରବର୍ଗ । ରାଜା ବାହାଦୁର ପଥରେ ଏହି ସମ୍ବାଦ ଅବଗତ ହୋଇ, ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କୁ ଆଗେ ପ୍ରେରଣ କରି ପଥ କ୍ଲେଶ ନିବାରଣ ଆୟୋଜନ କରିବାପାଇଁ କୁହନ୍ତି । ତଦନୁସାରେ ନୀଳମଣି ବିଦ୍ୟାରତ୍ନ ବାଲେଶ୍ୱର ଆସି ଦଳବଳ ସହ ରାଜା ବାହାଦୁରଙ୍କ ଅବସ୍ଥିତିର ବ୍ୟବସ୍ଥା କରନ୍ତି, ସ୍ଥାନୀୟ ଜମିଦାର ବାବୁ ରାଜନାରାୟଣ ଦାଶ ଓ ବାବୁ ରାଧାଚରଣ ଦାଶ ମହାଶୟଙ୍କର ଆତିଥ୍ୟ ଗ୍ରହଣ କରନ୍ତି । ସେମାନଙ୍କ ସହାୟତାରେ ଗାଡ଼ି ପାଲିଙ୍କିର ବ୍ୟବସ୍ଥା ହୋଇଥିଲା । ରାଜା ସାର୍ ବାସୁଦେବ ସୁଢ଼ଳଦେବ ବାଲେଶ୍ୱର ଆସି ଦୁଇଦିନ ବିଶ୍ରାମ କରନ୍ତି । ଏଠାରେ ବ୍ରାହ୍ମ ସମାଜର ଅସଂପୂର୍ଣ୍ଣ ଉପାସନା ମନ୍ଦିର ପାଇଁ ୨୫୦ ଟଙ୍କା ସାହାଯ୍ୟଦାନ କରିଥିଲେ । ଏହି ଅର୍ଥରେ ହିଁ ବାଲେଶ୍ୱର ବ୍ରାହ୍ମମନ୍ଦିର ଆରବ୍ଧ ଓ ଅସଂପୂର୍ଣ୍ଣ କାର୍ଯ୍ୟସଂପୂର୍ଣ୍ଣ ହୋଇଥିଲା । ଶେଷରେ ଗାଡ଼ି ଓ ପାଲିଙ୍କି ସାହାଯ୍ୟରେ ରେଳ ଦୁର୍ଘଟଣାର ଆରପାରିରେ ଉପସ୍ଥିତ ହୋଇ ରେଳଗାଡ଼ିରେ ଆରୋହଣ ପୂର୍ବକ କଟକକୁ ଆସି ନିରାପଦରେ ପହଞ୍ଚିଥିଲେ ।

କଟକ ନଗରୀରେ ପହଞ୍ଚିବା ପୂର୍ବରୁ ହିଁ ତାଙ୍କର ଆଗମନ ସମ୍ବାଦ କଟକରେ ପ୍ରଚାରିତ ହୋଇଥିଲା । ତେଣୁ ତାଙ୍କ ଆଗମନରେ କଟକର ସଜ୍ଜନ ମଣ୍ଡଳୀ ତାଙ୍କର



Digitized by srujanika@gmail.com

ସାଦର ଅଭ୍ୟର୍ଥନା ପାଇଁ କଟକ ଷ୍ଟେସନରେ ଉପସ୍ଥିତ ଥିଲେ । ରାଧାନାଥବାବୁଙ୍କ ପୁତ୍ର ଶ୍ରୀଯୁକ୍ତ ଶଶୀଭୂଷଣ ରାୟଙ୍କ ଯତ୍ନ ଓ ଆୟୋଜନରେ ବହୁ ସଂଭ୍ରାନ୍ତ ବ୍ୟକ୍ତି ପରିବେଷ୍ଟିତ ହୋଇ ରାଜା ସାର୍ ବାସୁଦେବ ସୁଢ଼ଳଦେବ କଟକରେ ପୂର୍ବ ନିର୍ଦ୍ଦିଷ୍ଟ ବାସସ୍ଥାନରେ ଉପସ୍ଥିତ ହୋଇଥିଲେ । ବହୁ ବହୁ ବୋମାର ଶବ୍ଦରେ କଟକରେ ତାଙ୍କର ଆଗମନ ସମ୍ବାଦ ଘୋଷିତ ହୋଇଥିଲା । ରାୟ ରାଧାନାଥ ରାୟ ବାହାଦୁର ସେହି ସମୟରେ ବର୍ଦ୍ଧମାନ ବିଭାଗର ଇନ୍‌ସପେକ୍ଟର ତେଣୁ ରାଜା ବାହାଦୁରଙ୍କର କଟକ ପ୍ରବାସ କାଳରେ ଆନନ୍ଦୋତ୍ସବରେ ଯୋଗ ଦେଇ ନାହାନ୍ତି । ଦୂରରେ ଥାଇ ମଧ୍ୟ ନିଜ ପୁତ୍ର ଶ୍ରୀଯୁକ୍ତ ଶଶୀଭୂଷଣ ରାୟ ପ୍ରମୁଖ ଘରର ପ୍ରଧାନ ବର୍ଗଙ୍କୁ ତାଙ୍କର ପ୍ରତିନିଧି ଭାବରେ ନିଜ-ଆଳୟରେ ସ୍ୱତନ୍ତ୍ର ଭାବରେ ସଂବର୍ଦ୍ଧନା କରିବାପାଇଁ ଆଦେଶ ଦେଇଥିଲେ । ତଦନୁସାରେ ରାୟ ବାହାଦୁର ରାଧାନାଥ ରାୟଙ୍କ ଗୃହରେ ହିଁ ରାଜା ସାର୍ ବାସୁଦେବଙ୍କର ପ୍ରଥମ ଅଭ୍ୟର୍ଥନାର ଆୟୋଜନ ହୋଇଥିଲା । ଏହି ସଭାରେ ଶଶୀଭୂଷଣବାବୁଙ୍କ ନିମନ୍ତ୍ରଣରେ ବହୁ ବ୍ୟକ୍ତିଙ୍କ ସମାଗମରେ ସଭାର ସୌଷ୍ଠବ ଓ ଗୌରବ ବର୍ଦ୍ଧିତ ହୋଇଥିଲା ।

ତତ୍ପରେ କଟକର ସଂଭ୍ରାନ୍ତ ଜନଗଣଙ୍କର ଆୟୋଜନରେ କଟକ ପ୍ରିଣ୍ଟିଂ ମୁଦ୍ରାଯନ୍ତ୍ରର ବହୁ ବିସ୍ତୃତ ଭବନରେ ଆଉ ଏକ ସମ୍ବର୍ଦ୍ଧନାର ଆୟୋଜନ ହୋଇଥିଲା । ଏହିଠାରେ କଟକର ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସମାଗମରେ ଏବଂ ବିଶିଷ୍ଟ ରାଜକର୍ମଚାରୀମାନଙ୍କ ଆଦର ଆପ୍ୟାୟନରେ ସଭାର ସଂଭ୍ରମ ଓ ଶୋଭା ପ୍ରଚୁର ବର୍ଦ୍ଧିତ ହୋଇଥିଲା । ଏହି ଦୁଇ ସ୍ଥାନରେ ଆହୃତ ଦୁଇ ସଭାରେ କଟକବାସୀ ସଂଭ୍ରାନ୍ତ ବ୍ୟକ୍ତିଗଣଙ୍କ ପ୍ରଦର୍ଶିତ ସମାଦର ରାଜା ବାସୁଦେବଙ୍କ ପକ୍ଷରେ ଯଥେଷ୍ଟ ହେଲେ ମଧ୍ୟ କଟକବାସୀ ଏଥିରେ ସନ୍ତୁଷ୍ଟ ହୋଇପାରି ନାହାନ୍ତି । ତେଣୁ ସେମାନେ ସମସ୍ତେ ସମବେତ ହୋଇ, କନିକା ରାଜାଙ୍କର ନିମନ୍ତ୍ରଣ ପାଇ, ତାଙ୍କ କଟକସ୍ଥ ରାଜକୀୟ ଉଦ୍ୟାନ ଭବନରେ, ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଆଦର ଆପ୍ୟାୟନ ପାଇଁ ଏକ ସନ୍ଧ୍ୟା ସମ୍ମିଳନୀର ଆୟୋଜନ କରନ୍ତି । ଏହି ସଭାରେ ପ୍ରାୟ ଦୁଇ ସହସ୍ର ବ୍ୟକ୍ତି ନିମନ୍ତ୍ରିତ ହୋଇଥିଲେ ଏବଂ ସମସ୍ତେ ଆଗ୍ରହରେ ସେହି ସୁହୃଦ ସମ୍ମିଳନୀରେ ଯୋଗ ଦେଇଥିଲେ । ପରେ ପରେ ଏହି ତିନିଗୋଟି ସଭାରେ କଟକର ଓ ଅନ୍ୟାନ୍ୟ ବିଦେଶୀୟ ସମଗ୍ର ସଜ୍ଜନଗଣଙ୍କ ସହିତ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ପରିଚୟ ଓ ଆତ୍ମୀୟତା ବୃଦ୍ଧିପ୍ରାପ୍ତ ହୁଏ ।

କନିକା ରାଜ ନବରରେ ଯେଉଁ ସମ୍ମିଳନୀ ଅନୁଷ୍ଠାନ ହୋଇଥିଲା, ସେହି ଧରଣର ଅନୁଷ୍ଠାନ ତତ୍‌ପୂର୍ବେ ଯେ କଟକରେ ହୋଇନାହିଁ ତାହା ନୁହେଁ, ତଦପେକ୍ଷା ବୃହତ୍ତର ସ୍ଥାନରେ ମଧ୍ୟ ଅତି ଅଳ୍ପ ହୋଇଥାଏ ।



Digitized by srujanika@gmail.com

ଏହି ଅନୁଷ୍ଠାନର ସୌଷ୍ଠବ ବୃଦ୍ଧି ପାଇଁ କଲିକତା ଠାରୁ ସର୍କସ ଅଣାଯାଇଥିଲା । ସେମାନଙ୍କର ନାନାବିଧ କ୍ରୀଡ଼ା କୌତୁକ ଉପସ୍ଥିତ ଜନଗଣଙ୍କର ପ୍ରଚୁର ଆନନ୍ଦ ଉତ୍ପାଦନ କରିଥିଲା । ବାଳକମାନେ ବାଳିକା ବେଶରେ ଓଡ଼ିଆ ନୃତ୍ୟଗୀତ ଦ୍ୱାରା ସଭାସ୍ଥ ସମସ୍ତଙ୍କର ପ୍ରୀତି ବୃଦ୍ଧି କରିଥିଲେ । ଅପରବିଧ ମଜଲିସ୍ ଗୀତ ବାଦ୍ୟର ଅନୁଷ୍ଠାନ ମଧ୍ୟ ହୋଇଥିଲା । ବହୁ ଅର୍ଥବ୍ୟୟରେ ସମଗ୍ର ଉଦ୍ୟାନ ଓ ଭବନ ଆଲୋକ ମାଳାରେ ସଜ୍ଜିତ କରା ହୋଇଥିଲା । ନାନାବିଧି ଅଗ୍ନିକ୍ରୀଡ଼ାର (Fire -works) ଅନୁଷ୍ଠାନ ମଧ୍ୟ ହୋଇଥିଲା । ଏହି ସନ୍ଧ୍ୟା ସମ୍ମିଳନୀର ପ୍ରାରମ୍ଭରେ ପ୍ରତ୍ୟେକଙ୍କୁ ଗୋଲାପ ଜଳରେ ସିକ୍ତ ଓ ଅତର ବିତରଣ କରା ହୋଇଥିଲା । ସର୍ବଶେଷରେ କନିକା ରାଜାଙ୍କର ସମାଦର ପୂର୍ଣ୍ଣ ଉତ୍ତମତର ଜଳଯୋଗର ଅନୁଷ୍ଠାନ ମଧ୍ୟ ସମାଗତ ଜନବୃନ୍ଦଙ୍କ ରସନାରେ ରସ ସଂଚାର କରିବାରେ କୃପଣତା କରିନାହିଁ । ଏହି ଅନୁଷ୍ଠାନ ଯେପରି ସମାରୋହପୂର୍ଣ୍ଣ ହୋଇଥିଲା, ଏହି ଅନୁଷ୍ଠାନର ସୁସଂପାଦନରେ ସେହିପରି ପ୍ରଚୁର ଅର୍ଥ ମଧ୍ୟ ବ୍ୟୟ କରାଯାଇଥିଲା ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ କେତେଦିନ ପରମାନନ୍ଦେ କଟକରେ ଯାପନ କଲେ । କଟକରେ ଅବସ୍ଥାନ କାଳରେ ବହୁ ବହୁ ସଂଭ୍ରାନ୍ତ ବ୍ୟକ୍ତିଙ୍କ ସହିତ ଏବଂ କମିଶନର ପ୍ରଭୃତି ପ୍ରଧାନ ପ୍ରଧାନ ରାଜ କର୍ମଚାରୀମାନଙ୍କ ସହିତ ସାକ୍ଷାତ କରିବାପାଇଁ ସମସ୍ତଙ୍କ ଆଳୟକୁ ଗମନ କରିଥିଲେ । ବହୁ ଶିକ୍ଷିତ ଓ ପଦସ୍ଥ ବ୍ୟକ୍ତି ନାନା ସ୍ଥାନରେ ଜମିଦାର ଗଣ, ତାଙ୍କ ସହିତ ସାକ୍ଷାତ କରିବା ପାଇଁ ତାଙ୍କ ପ୍ରବାସ ଆଳୟରେ ଉପସ୍ଥିତ ହୋଇଛନ୍ତି ଏବଂ ପରିଚୟରେ ପ୍ରୀତି ଲାଭ କରି ସେମାନେ ସୁଖୀ ହୋଇଛନ୍ତି । ଓଡ଼ିଶାର ରାଜନ୍ୟବର୍ଗଙ୍କ ମଧ୍ୟରେ ଯେଉଁମାନେ ସେହି ସମୟରେ କଟକରେ ଉପସ୍ଥିତ ଥିଲେ ସେମାନେ ମଧ୍ୟରାଜା ବାହାଦୁରଙ୍କ ସହିତ ପରଚିୟର ସୁଖ ସଂଭୋଗ ଲୋଭ ତ୍ୟାଗ କରି ପାରିନାହାନ୍ତି । ତାଙ୍କର ରାଜସମ୍ମାନ ବିଦ୍ୟାଗୌରବ ମଣ୍ଡିତ ହେବା ଫଳରେ ତାଙ୍କୁ ଜଣେ ଆଶ୍ଚର୍ଯ୍ୟ ବ୍ୟକ୍ତି ବୋଲି ସମସ୍ତେ ଗ୍ରହଣ କରିଥିଲେ । ଅନେକେ ବିରୂପ ଭାବାପନ୍ନ ହୃଦୟରେ ତାଙ୍କ ସହ ସାକ୍ଷାତ କରିବାକୁଆସି ପରିଶେଷରେ ପରମାତ୍ମୀୟ ପରି ବ୍ୟବହାର ପାଇ ସାନନ୍ଦରେ ପୂର୍ବପୋଷିତ ନିଜ ନିଜ ଧାରଣର ପରିବର୍ତ୍ତନ ସ୍ୱୀକାର କରି ଯାଇଛନ୍ତି । ଏହି ସମୟରେ ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ସମାଦର ପ୍ରଦର୍ଶନରେ ପ୍ରତିଯୋଗିତା ଦେଖି ଅନେକେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । କଟକର ସେହି ସମୟର ସୁଧୀଗଣଙ୍କର ଧାରଣା ଯେ, ସେଭଳି ଏକ ବିରାଟ ସମାଜର ପ୍ରଦର୍ଶନ ତତ୍‌ପୂର୍ବେ କେବେ କୌଣସି ଦିନ କଟକ ନଗରୀରେ ପରିଦୃଷ୍ଟ ହୋଇନାହିଁ ।

କଟକ ଅବସ୍ଥାନ କାଳରେ ରାଜା ସାର୍ ବାସୁଦେବ ସୁଢ଼ଳଦେବ କଟକର ରେଭେନ୍ସା କଲେଜ ଏବଂ କଲେଜର ବିଜ୍ଞାନଗାର ପରିଦର୍ଶନ କରିବାକୁ ଯାଇଥିଲେ । କଟକ ନର୍ମାଲ



Digitized by srujanika@gmail.com

ସ୍କୁଲ, ଟାଉନ୍ ସ୍କୁଲ, ଭିକ୍‌ଟୋରିଆ ସ୍କୁଲ୍ ପରିଦର୍ଶନ କରିଥିଲେ । ଟାଉନ୍ ସ୍କୁଲ୍‌ର ପୋଷଣ ପାଇଁ ଚାରିବର୍ଷକାଳ ବାର୍ଷିକ ସାହାଯ୍ୟ ଦାନର ବ୍ୟବସ୍ଥା କରି ଦେଇଥିଲେ । ଯେଉଁ ଯେଉଁ ବିଦ୍ୟାଳୟ ପରିଦର୍ଶନ କରିବାପାଇଁ ଯାଇଥିଲେ, ସେହି ବିଦ୍ୟାଳୟର ଛାତ୍ରବୃନ୍ଦଙ୍କର ଆନନ୍ଦ ବର୍ଦ୍ଧନ ପାଇଁ କେଉଁଠାରେ ୨୦୦ ଟଙ୍କା କେଉଁଠାରେ ୧୦୦ଟଙ୍କା କେଉଁଠାରେ ୫୦ଟଙ୍କା ସେମାନଙ୍କ ଜଳଯୋଗ ପାଇଁ ବ୍ୟୟ କରିଥିଲେ । ଏତଦ୍ ଭିନ୍ନ ନାନା ବ୍ୟକ୍ତିଙ୍କର ନାନାବିଧ ଅଭାବର ସମ୍ବାଦ ଅବଗତ ହୋଇ ସାହାଯ୍ୟ ଦାନ କରିଥିଲେ । ଅନେକ ପରିଚିତ ବ୍ୟକ୍ତିଙ୍କ ପୁତ୍ରକନ୍ୟାମାନଙ୍କ ସହିତ କଥାବାର୍ତ୍ତା କରି ସନ୍ତୁଷ୍ଟ ହୋଇ ପାରିତୋଷିକ ଆକାରରେ ଅର୍ଥଦାନ କରିଥିଲେ । ଲୋକେ ତାଙ୍କର ଅକପଟ ବ୍ୟବହାର ଦର୍ଶନରେ ମୁଗ୍ଧ ମନରେ ଶତ ଶତ ସାଧୁବାଦ କରିଥିଲେ ।

ରାଜା ବାସୁଦେବ ପ୍ରଥମ ବୟସରେ, ପ୍ରଥମଥର କଲିକତା ଯିବା ସମୟରେ, କଟକରେ ଅପରିଚିତ ଭାବରେ ଯେଉଁ ସମସ୍ତ ସ୍ଥାନ ପରିଦର୍ଶନ କରିଥିଲେ, ସେହି ସମସ୍ତ ସ୍ଥାନ ଏବଂ ଅନ୍ୟାନ୍ୟ ବହୁବହୁ ଦ୍ରଷ୍ଟବ୍ୟ ସ୍ଥାନ ଭ୍ରମଣ କରି, ବିବିଧ ବିଷୟରେ ସମ୍ବାଦ ସଂଗ୍ରହ କରି ପୁରୀ ଯାତ୍ରା କରିଥିଲେ । କଟକ ଷ୍ଟେସନରେ ଅବତରଣ କାଳରେ ଯେତେ ଲୋକ ତାଙ୍କୁ ସମାଦରେ କଟକରେ ସ୍ୱାଗତ କରିବା ପାଇଁ ଷ୍ଟେସନରେ ଉପସ୍ଥିତ ଥିଲେ, କଟକ ତ୍ୟାଗ କାଳରେ ତାହା ଅପେକ୍ଷା ଶତ ଗୁଣରେ ଅଧିକ ଲୋକ ତାଙ୍କୁ ବିଦାୟ ଦେବା ପାଇଁ ଆସିଥିଲେ । ସେହି ଜନମଣ୍ଡଳୀର କେହି କେହି ତତ୍ ସମଭିବ୍ୟାହାରେ ଭୁବନେଶ୍ୱର ପର୍ଯ୍ୟନ୍ତ ଗମନ କରିଥିଲେ ।

ଭୁବନେଶ୍ୱରରେ ଗୋଟାଏ ଦିନ ଯାପନ ପୂର୍ବକ ସ୍ଥାନୀୟ ରାଜବଂଶୀୟ କୀର୍ତ୍ତି ସବୁ ଦର୍ଶନ କରନ୍ତି । ପରଦିନ ନିର୍ଦ୍ଦିଷ୍ଟ ସମୟରେ ପୁରୀଧାମରେ ଉପସ୍ଥିତ ହୁଅନ୍ତି । ଏଠାକୁ ଆସି ମହାପ୍ରଭୁଙ୍କ ମନ୍ଦିର ଓ ଦେବମୂର୍ତ୍ତି ଦର୍ଶନ କରି ଧର୍ମାନୁଷ୍ଠାନ ସଂପନ୍ନ କରିଥିଲେ । ଅନ୍ୟାନ୍ୟ ଦେବାଳୟ ଓ ଦ୍ରଷ୍ଟବ୍ୟ ସ୍ଥାନ ଭ୍ରମଣ ଓ ଦର୍ଶନାନ୍ତେ, ପୁରୀରେ ବ୍ରାହ୍ମଣ ପଣ୍ଡିତଗଣଙ୍କର ଏକ ବିରାଟ ସଭା ଆହ୍ୱାନ କରିଥିଲେ । ଏହି ସଭାରେ ବହୁବିଧ ଶାସ୍ତ୍ରୀୟ ତତ୍ତ୍ୱ ଆଲୋଚନା ଓ ମୀମାଂସା ହୋଇଥିଲା । ପଣ୍ଡିତମଣ୍ଡଳୀ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଶାସ୍ତ୍ରଜ୍ଞାନ ଦର୍ଶନରେ, କାବ୍ୟ ଅଳଂକାର ଓ ଦର୍ଶନଶାସ୍ତ୍ରରେ ଅସାଧାରଣ ବ୍ୟୁତ୍ପତ୍ତି ଦର୍ଶନରେ, ମୁଗ୍ଧମନରେ ତାଙ୍କର ଅସଂଖ୍ୟ ସାଧୁବାଦ କରିଥିଲେ । ପଣ୍ଡିତଗଣଙ୍କର ପାଣ୍ଡିତ୍ୟଜ୍ଞାନ ପଦମର୍ଯ୍ୟାଦା ଅନୁରୂପ ବିଦାୟ ଦାନରେ ରାଜା ବାହାଦୁର ସମସ୍ତଙ୍କୁ ସନ୍ତୁଷ୍ଟ କରିଥିଲେ ।



Digitized by srujanika@gmail.com

ପୁରୀର ରାଜା ଆଜି ପର୍ଯ୍ୟନ୍ତ ଗଙ୍ଗବଂଶର କ୍ଷୀଣଲୋକ ବିକୀର୍ଣ୍ଣ କରି ମହାପ୍ରଭୁଙ୍କ ଦ୍ୱାରଦେଶରେ ରାଜତ୍ୱ କରୁ ଅଛନ୍ତି । ବାମଣ୍ଡା ରାଜା ସାର୍ ବାସୁଦେବ ସୁଢ଼ଳଦେବ ପୁରୀଧାମ ଆସିଥିବା ଅବଗତ ହୋଇ, ଅପୁତ୍ରିକ ପୁରୀରାଜା ଶ୍ରୀଯୁକ୍ତ ମୁକୁନ୍ଦଦେବ ତାଙ୍କ ନିକଟକୁ ପ୍ରଧାନ କର୍ମଚାରୀ ପ୍ରେରଣ ପୂର୍ବକ, ବାମଣ୍ଡାରାଜାଙ୍କର ଏକ ପୁତ୍ରଙ୍କୁ ପୋଷ୍ୟ ଗ୍ରହଣ କରିବାର ଅଭିପ୍ରାୟ ଜଣାଇଥିଲେ । ରାଜା ବାସୁଦେବ ସମ୍ମତି ଜଣାଇ କହି ପଠାଇଥିଲେ ଯେ, ପୁରୀ ରାଜ୍ୟର ଏକଲକ୍ଷ ପଚିଶ ହଜାର ଟଙ୍କା ଋଣ, ବିନା ସୁଧରେ ପରିଶୋଧକରି ଦତ୍ତକର ନାବାଳକ ଅବସ୍ଥା ଅତିକ୍ରାନ୍ତ ନ ହେବା ପର୍ଯ୍ୟନ୍ତ, ସମସ୍ତ ସଂପତ୍ତିର ରକ୍ଷଣାବେକ୍ଷଣ ଓ ଉନ୍ନତି ସାଧନଭାର ବାମଣ୍ଡା ରାଜ୍ୟ ଉପରେ ନ୍ୟସ୍ତକଲେ, ସେ ଏକ ପୁତ୍ର ଦାନରେ ସମ୍ମତ ଅଛନ୍ତି, ପ୍ରସ୍ତାବ ଏତେଦୂର ଅଗ୍ରସର ହୋଇଥିଲା ଯେ କେବଳ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ପ୍ରସ୍ତାବ ଉପସ୍ଥିତ କରାଇ ମଞ୍ଜୁର କରାଇନେବା ବାକି ଥିଲା; କିନ୍ତୁ କେତେକ ସ୍ୱାର୍ଥପର ଲୋକଙ୍କ ପ୍ରରୋଚନାରେ ପୁରୀରାଜା ପରିଶେଷରେ ଭଗ୍ନୋତ୍ସାହ ହୋଇ ପଶ୍ଚାତ୍‌ପଦ ହେଲେ । ପ୍ରସ୍ତାବଟି ଏହିଠାରେ ହିଁ ରହିଗଲା ।

ସାର୍ ବାସୁଦେବଙ୍କ ସ୍ୱର୍ଗାରୋହଣ ପରେ, ପୁରୀ ରାଜକର୍ତ୍ତୃକ ବାମଣ୍ଡାର ବର୍ତ୍ତମାନ ରାଜା ବାହାଦୁର ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ସମୀପରେ ପୁନରାୟ ପୋଷ୍ୟ ଗ୍ରହଣର ପ୍ରସ୍ତାବ ପ୍ରେରିତ ହେଲା । ବର୍ତ୍ତମାନର ବାମଣ୍ଡା ରାଜା, ପଣ୍ଡିତ ଚିନ୍ତାମଣି ମିଶ୍ର ତର୍କ ବାଚସ୍ପତିଙ୍କୁ ପ୍ରେରଣ ପୂର୍ବକ, ସେହି ପୁରାତନ ପିତୃ ପ୍ରସ୍ତାବର ସର୍ତ୍ତାବଳୀ ଉଲ୍ଲେଖ କରି ସମ୍ମତି ଜ୍ଞାପନ କରିଥିଲେ; କିନ୍ତୁ ଏହି ପ୍ରସ୍ତାବ ମଧ୍ୟ ପରିଗୃହୀତ ହୋଇପାରି ନାହିଁ ।

ପୁରୀ ଅବସ୍ଥାନ କାଳରେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଅଭିପ୍ରାୟ ମୁତାବକ ଏକ ସନାତନ ଧର୍ମରକ୍ଷିଣୀ ସଭା ପ୍ରତିଷ୍ଠା ହୋଇଥିଲା । ଏହି ସଭାର ତତ୍ତ୍ୱାବଧାନରେ ସଂସ୍କୃତ ସାହିତ୍ୟ, କାବ୍ୟ, ନାଟକ ଓ ଧର୍ମଶାସ୍ତ୍ର ଇତ୍ୟାଦି ବିଷୟକ ନିର୍ଦ୍ଦିଷ୍ଟ ଗ୍ରନ୍ଥମାନ ପାଠାନ୍ତେ ପରୀକ୍ଷା ଗ୍ରହଣ ବ୍ୟବସ୍ଥା କରାଇଥିଲେ । ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ରଗଣଙ୍କୁ ମୁଦ୍ରିତ ପ୍ରଶଂସା ପତ୍ର ସହ କର୍ଣ୍ଣାଭରଣ ସ୍ୱର୍ଣ୍ଣକୁଣ୍ଡଳ ପାରିତୋଷିକ ଦାନ ବ୍ୟବସ୍ଥା କରିଥିଲେ । ରାଜା ବାସୁଦେବଙ୍କ ଜୀବିତ କାଳ ମଧ୍ୟରେ କେତେଥର ଏହିପରି ପରୀକ୍ଷା ଗ୍ରହଣ ଓ ପ୍ରଶଂସା ପତ୍ର ସହ ସ୍ୱର୍ଣ୍ଣ କୁଣ୍ଡଳ ପୁରସ୍କାର ଦାନ ଅନୁଷ୍ଠାନ ହୋଇଥିଲା ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ, ଯୁବରାଜ ଓ ଅନ୍ୟାନ୍ୟ ସହଚରବୃନ୍ଦ ପରିବୃତ ହୋଇ ସୁସ୍ଥ ଶରୀରରେ ନିର୍ବିଘ୍ନରେ ଦେବଗଡ଼କୁ ପ୍ରତ୍ୟାବୃତ୍ତ ହୋଇଥିଲେ ।





Digitized by srujanika@gmail.com

## ତ୍ରୟୋଦଶ ଅଧ୍ୟାୟ

# ରାଜଧର୍ମ ଓ ପ୍ରଜାଧର୍ମ ପାଳନ

ରାଜା ସାର୍ ବାସୁଦେବ ସୁଢ଼ଳଦେବ ବୈଷ୍ଣବଧର୍ମାବଲମ୍ବୀ ହିନ୍ଦୁ ରାଜା ହେଲେ ମଧ୍ୟ, ଦେବଗଡ଼ରେ ତାଙ୍କ ରାଜଭବନରେ କାଳୀମୂର୍ତ୍ତି ପ୍ରତିଷ୍ଠିତ ଅଛନ୍ତି । ଏହି ଦେବୀଙ୍କ ନିତ୍ୟ ପୂଜା ହୋଇଥାଏ । ପ୍ରତିବର୍ଷ ଦୁର୍ଗୋତ୍ସବର ତିନିଦିନ ବିଶେଷଭାବରେ ଏହି ଦେବୀମୂର୍ତ୍ତିଙ୍କ ପୂଜା ଏବଂ ସେଠାରେ ଚଣ୍ଡୀପାଠ ତଥା ବଳିଦାନ ହୋଇଥାଏ । ସାର୍ ବାସୁଦେବଙ୍କ ରାଜ୍ୟଭାର ଗ୍ରହଣ ପୂର୍ବେ ଅସଂଖ୍ୟ ଛାଗବଳି ଏବଂ ଅନେକାନେକ ମହିଷ ବଳି ହେଉଥିଲା । ସେ ଏହି ଜୀବକୁଳର ଧ୍ୱଂସ ଆଦୌ ପସନ୍ଦ କରୁନଥିଲେ । ରାଜ୍ୟଭାର ଗ୍ରହଣ ପରେ ଧୀରେ ଧୀରେ ଏହି ବଳିର ସଂଖ୍ୟା ହ୍ରାସ କରାଇବା ଆରମ୍ଭ କଲେ । ବଳିପ୍ରଥା ଏକାବେଳକେ ଉଠାଇ ଦେବା ତାଙ୍କର ଅଭିପ୍ରେତ ଥିଲା; କିନ୍ତୁ ସେଭଳି ଅନୁଷ୍ଠାନ, ଅଶିକ୍ଷିତ ଓ ଅନୁନ୍ନତ ପ୍ରଜାମାନଙ୍କ ଦୃଷ୍ଟିରେ ଏକ ବିପ୍ଳବ ସଂକୁଳ ପରିବର୍ତ୍ତନ ବୋଲି ପ୍ରତୀୟମାନ ହେଲେ ସେମାନେ ମନେକରି ପାରନ୍ତି ଯେ, ରାଜା ଦେଶରୁ ସମାଜ ଧର୍ମରଲୋପ କରିବା ଆୟୋଜନ କରୁ ଅଛନ୍ତି । ତେଣୁ ତାଙ୍କୁ ସାବଧାନ ଓ ସନ୍ତର୍ପଣରେ ବଳି ସଂଖ୍ୟା ହ୍ରାସ କରାଇବାକୁ ପଡ଼ିଥିଲା । ତାଙ୍କ ସମୟରୁ ମହିଷବଳି ଏକାବେଳକେ ରହିତ ହୋଇ ଯାଇଅଛି । ଛାଗବଳି ମଧ୍ୟ ଏକ ସଂଗତ ସଂଖ୍ୟାକୁ ଆଣି ପାରିଥିଲେ । ରାଜଧର୍ମ ପାଳନ ବିଷୟରେ ରାଜାବାହାଦୁର ପ୍ରଜାମଣ୍ଡଳୀର ନାନାବିଧ ଧର୍ମମତ ପ୍ରତି ସସ୍ନେହ ଉଦାର ଭାବାପନ୍ନ ଥିଲେ । କେବଳ ଯେ ନିମ୍ନ ଶ୍ରେଣୀ ହିନ୍ଦୁ ପ୍ରଜାଗଣଙ୍କ ନାନାବିଧ ଗ୍ରାମ୍ୟ ଦେବତାଙ୍କ ସମାଦର ରକ୍ଷା ପାଇଁ ସହାୟତା କରୁଥିଲେ, ତାହା ନୁହେଁ, କୁଚିଣ୍ଡା ଉପବିଭାଗରେ ମୁସଲମାନ୍ ପ୍ରଜାଗଣଙ୍କ ପାଇଁ ରାଜବ୍ୟୟରେ ମସଜିଦ୍ ନିର୍ମାଣ କରାଇ ଯାଇଛନ୍ତି ।

ରାଜପରିଜନ ଓ ପ୍ରଜାସାଧାରଣଙ୍କ ବ୍ୟକ୍ତିଗତ ଓ ସାମାଜିକ ଧର୍ମଭାବର ପରିପୋଷଣ ପାଇଁ, ରାଜ୍ୟର ନାନାସ୍ଥାନେ ଅନେକ ଦେବାଦେବୀ ପ୍ରତିଷ୍ଠିତ ଅଛନ୍ତି । ସେହି ସମସ୍ତ ଦେବା ଦେବୀଙ୍କ ନିତ୍ୟ ପୂଜା ବ୍ୟବସ୍ଥା ମଧ୍ୟ ଅଛି । ଏହି ସବୁ ମନ୍ଦିରମାନଙ୍କ ମଧ୍ୟରେ ପୁରୁଣାଗଡ଼ର କାଳୀ ମନ୍ଦିର ଓ ଜଗନ୍ନାଥ ମନ୍ଦିର ସର୍ବପ୍ରଥମ ।



Digitized by srujanika@gmail.com

ଧର୍ମ ସଂସୃଷ୍ଟ ଜାତୀୟ ପାର୍ବଣଗୁଡ଼ିକ ମଧ୍ୟରେ ପ୍ରଧାନ ପାର୍ବଣ ଗୁଡ଼ିକର ଉଲ୍ଲେଖ କରାଯାଉଅଛି । ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଜଗନ୍ନାଥ ମହାପ୍ରଭୁଙ୍କର ଚନ୍ଦନ ଯାତ୍ରାର ଅନୁଷ୍ଠାନ ହୋଇଥାଏ । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ମହା ସମାରୋହରେ ସ୍ନାନଯାତ୍ରାର ଅନୁଷ୍ଠାନ ହୋଇଥାଏ । ଏହି ଉଭୟ ବିଧ ଅନୁଷ୍ଠାନ ସମୟରେ ଲୋକସମାଗମ ମଧ୍ୟ ଅଳ୍ପ ହୁଏ ନାହିଁ । ତାହାପରେ ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ରଥଯାତ୍ରା ଉତ୍ସବରେ ରାଜ୍ୟର ନାନା ସ୍ଥାନରୁ ଲୋକେ ପୁରୁଣାଗଡ଼ରେ ରଥାଯାତ୍ରା ଠାରେ ମିଳିତ ହୋଇଥାନ୍ତି । ଏହି ଯାତ୍ରା ବହୁ ବ୍ୟୟରେ, ବହୁ ସମାରୋହରେ ସଂପନ୍ନ ହୋଇଥାଏ । ନାନା ବେଶଭୂଷାରେ ସୁସଜ୍ଜିତ ହସ୍ତୀ, ଘୋଡ଼ା ପ୍ରଭୃତିଙ୍କ ଶୋଭାଯାତ୍ରା ବାହାରିଥାଏ । ମନ୍ଦିରରୁ ମହାପ୍ରଭୁ ଜଗନ୍ନାଥଙ୍କୁ ରଥାରୂଢ଼ କରାଇବା ସମୟରେ ଓ ତତ୍ପରେ ହସ୍ତୀମାନେ ଚାମର ଧାରଣ କରି ଦେବତାମାନଙ୍କୁ ବ୍ୟଜନ କରିଥାନ୍ତି । ଲୋକ ସମାରୋହ ଦେଖିଲେ ବୋଧହେବ ଯେପରି ରାଜ୍ୟଯାକର ଲୋକେ ଗୃହ ଶୂନ୍ୟକରି ରଥାଯାତ୍ରା ଦେଖିବାପାଇଁ ଆସିଛନ୍ତି । ନାନା ଶ୍ରେଣୀ ଓ ନାନାବର୍ଣ୍ଣର ସ୍ତ୍ରୀ ପୁରୁଷଙ୍କ ମିଳିତ ଜନତା ଏକ ଅପୂର୍ବ ଦୃଶ୍ୟ । ଫାଲ୍‌ଗୁନ ପୂର୍ଣ୍ଣିମାରେ ଦୋଳ ଆସରରେ ଅବିର ଖେଳରେ ସମସ୍ତ ରାଜଭବନ, ରାଜ ପରିଜନ, ପ୍ରଜାମଣ୍ଡଳୀ ଓ ରାଜ୍ୟ ରାସ୍ତାଘାଟ ଲାଲେ ଲାଲ୍ ହେଇଯାଏ । ଏକ ଦିଗରେ ବାସନ୍ତୀ ପ୍ରକୃତି ଦେବୀଙ୍କର ମଧୁର ସୁନ୍ଦର ନବଭାବେ ଆବିର୍ଭାବ, ଅନ୍ୟ ଦିଗରେ ବାମଣ୍ଡା ନାଗରିକ ଗଣଙ୍କ ଉତ୍ସବ ଉନ୍ମାଦନା । ଏକ ଦିଗରେ ଶାନ୍ତରସାସ୍ୱଦ ନବୀନ ଅରଣ୍ୟଶୋଭା ଓ ସୌନ୍ଦର୍ଯ୍ୟର ସ୍ନିଗ୍ଧ ନୀରବତା, ଅନ୍ୟ ଦିଗରେ କୁଂଜେ କୁଂଜେ କୋକିଳ କୂଜନ ଓ ଶତବିଧ ପକ୍ଷୀ-କଳରବ ମୁଖରିତ କାନନ କାକଳି । ଏମାନେ ପରସ୍ପର ପରସ୍ପରଙ୍କ ସହିତ ପ୍ରତିଯୋଗିତା କରୁଥାନ୍ତି । ଏହି ସମୟରେ ଏହି ଅରଣ୍ୟ ଜନପଦ ସବୁ ଆନନ୍ଦର ଲୀଳାକ୍ଷେତ୍ରରେ ପରିଣତ ହୋଇଥାଏ । ଏହି ସମୟରେ ଏଠାରେ ସମସ୍ତ ସୁନ୍ଦର ଓ ମନୋହର । ଚାରି ପାଖରେ ନେତ୍ରପାତ କଲେ, ବୋଧ ହେବ ଯେଭଳି ସମଗ୍ର ପ୍ରକୃତି ଜୀବନ୍ତ ଓ ଜାଗ୍ରତ ହୋଇ ଜଡ଼ ଓ ଜୀବ ପରସ୍ପର ଆଲିଙ୍ଗନରେ ଆବଦ୍ଧ ହୋଇଅଛନ୍ତି । ଏହି ଦୋଳ ଉତ୍ସବ ବାମଣ୍ଡାରେ ଅତ୍ୟନ୍ତ ପ୍ରୀତିକର ।

ବାମଣ୍ଡା ରାଜ୍ୟର ଧର୍ମାନୁଷ୍ଠାନ କ୍ଷେତ୍ରରେ ରୁକ୍ମିଣୀ ବିବାହ ଏକ ବିଶିଷ୍ଟ ପର୍ବାନୁଷ୍ଠାନ । ଚୈତ୍ର ମାସ ଶୁକ୍ଳ ଅଷ୍ଟମୀ ଦିନ ରୁକ୍ମିଣୀ ଦେବୀଙ୍କ ବିବାହାନୁଷ୍ଠାନ ପର୍ବ ସଂପନ୍ନ ହୋଇଥାଏ । ସ୍ନାନଯାତ୍ରା ଓ ରଥଯାତ୍ରା ସମୟରେ ଯେଉଁ ପରିମାଣରେ ଲୋକ ସମାଗମ ହୋଇଥାଏ, ରୁକ୍ମିଣୀ ବିବାହ ଉତ୍ସବରେ ତାହା ଅପେକ୍ଷା ଜନ ସମାଗମ ନିତ୍ୟାନ୍ତ ଅଳ୍ପ ହୋଇନଥାଏ ।

ଏହାପରେ ଚୈତ୍ରମାସ ଶୁକ୍ଳପକ୍ଷର ବାସନ୍ତୀ ପୂଜା ସମୟରେ, ନବମୀ ଦିନ ରାମଙ୍କର ଜନ୍ମୋତ୍ସବ ମଧ୍ୟ ମହାସମାରୋହରେ ପାଳିତ ହୋଇଥାଏ । ରାଜା ବାସୁଦେବଙ୍କ ସ୍ୱର୍ଗାରୋହଣ ପରେ, ବର୍ତ୍ତମାନର ରାଜା ବାହାଦୁରଙ୍କର ଇଚ୍ଛା ଓ ଅଭିପ୍ରାୟ ଅନୁସାରେ ଏକ ନୂତନ ପର୍ବାନୁଷ୍ଠାନର ସୂତ୍ରପାତ ହୋଇଅଛି । ତାହାର ନାମ 'ହରିହର ଭେଟ' । ଫାଲ୍‌ଗୁନର କୃଷ୍ଣ ଚତୁର୍ଦ୍ଦଶୀରେ ଏହି ଉତ୍ସବଟି ମହାସମାରୋହରେ ସଂପନ୍ନ ହୋଇ ଆସୁଅଛି ।



Digitized by srujanika@gmail.com

ଏହି ଅନୁଷ୍ଠାନ ପ୍ରତି ରାଜା ବାହାଦୁରଙ୍କର ବିଶେଷ ଆଗ୍ରହ ଥିବା ହେତୁ, ଏହା ମଧ୍ୟ କ୍ରମେ ରାଜ୍ୟର ଏକ ପ୍ରଧାନ ଉତ୍ସବରେ ପରିଣତ ହୋଇଅଛି ।

ହିନ୍ଦୁ ଗାର୍ହସ୍ଥ୍ୟ ଜୀବନର ସଂସ୍କାର ଗୁଡ଼ିକ ମଧ୍ୟରେ ଉପନୟନ ଓ ବିବାହ ବାମଣ୍ଡା ରାଜ ପରିବାରର ବିଶିଷ୍ଟ ଅନୁଷ୍ଠାନ । କୁମାରଗଣଙ୍କ ଉପନୟନ ସଂସ୍କାର କାଳରେ ଦେଶ ଦେଶାନ୍ତରର ପଣ୍ଡିତଗଣଙ୍କୁ ନିମନ୍ତ୍ରଣ କରାଯାଇଥାଏ । ପାର୍ଶ୍ୱବର୍ତ୍ତୀ ଅନ୍ୟାନ୍ୟ ରାଜ୍ୟର ରାଜନ୍ୟବର୍ଗଙ୍କ ନିକଟକୁ ନିମନ୍ତ୍ରଣ ପ୍ରେରିତ ହୋଇଥାଏ । ଭିନ୍ନ ଭିନ୍ନ ରାଜ୍ୟର ପ୍ରତିନିଧି ହୋଇ ଗୁରୁ ପୁରୋହିତଗଣ ନାନାବିଧ ଉପଢୌକନ ସହ ରାଜଧାନୀରେ ଉପସ୍ଥିତ ହୁଅନ୍ତି । ବହୁ ସ୍ଥାନରେ ପଣ୍ଡିତଗଣଙ୍କ ସମାଗମ ଓ ଶାସ୍ତ୍ରାଳାପ ପାଇଁ ସଭାର ଅନୁଷ୍ଠାନ ମଧ୍ୟ ହୋଇଥାଏ । ସେମାନଙ୍କୁ ଉପଯୁକ୍ତ ବିଦାୟ ଦାନରେ ବହୁ ସହସ୍ର ମୁଦ୍ରା ବ୍ୟୟ ହୋଇଥାଏ । ବିଭିନ୍ନ ରାଜ୍ୟରୁ ନିମନ୍ତ୍ରଣ ରକ୍ଷାକରି ସମାଗତ ପ୍ରତିନିଧି ଓ ଗୁରୁ ପୁରୋହିତଗଣଙ୍କୁ ରାଜଯୋଗ୍ୟ ଲୌକିକତା ଓ ବିଦାୟ ଦାନରେ ରାଶି ରାଶି ଅର୍ଥ ବ୍ୟୟ ହୋଇଥାଏ । ବାମଣ୍ଡା ଓ ତତୁଲ୍ୟ ପାର୍ଶ୍ୱବର୍ତ୍ତୀ ରାଜ୍ୟଗୁଡ଼ିକରେ କୁମାରଗଣଙ୍କର ଉପନୟନ ସଂସ୍କାର ଏକ ବିରାଟ ଉତ୍ସବ ।

ରାଜକୁମାରୀଗଣଙ୍କର ବିବାହାନୁଷ୍ଠାନ ବାମଣ୍ଡାର ଉପନୟନ ଅନୁଷ୍ଠାନ ଅନୁରୂପ ସର୍ବତ୍ର ପଣ୍ଡିତ ମଣ୍ଡଳୀରେ ନିମନ୍ତ୍ରଣ ପ୍ରେରିତ ହୋଇଥାଏ । ପାର୍ଶ୍ୱବର୍ତ୍ତୀ ମୂଲ୍ୟବାନ ଦ୍ରବ୍ୟ ପ୍ରେରିତ ହୋଇଥାଏ । ସେହି ସବୁ ବ୍ୟୟର ତାଲିକା ଏକ ଅଦ୍ଭୁତ ବ୍ୟାପାର । ତାହାପରେ ଅଧ୍ୟାପକାଦି ବ୍ରାହ୍ମଣଗଣଙ୍କ ବିଦାୟରେ ଓ ରାଜନ୍ୟବର୍ଗଙ୍କ ପ୍ରତିନିଧିଗଣଙ୍କ ବିଦାୟରେ, ବହୁ ସହସ୍ର ମୁଦ୍ରା ରାଜକୋଷ ଶୂନ୍ୟ କରି ଚାଲିଯାଏ । ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସମୟରେ ବାମଣ୍ଡା ରାଜଧାନୀ ଦେବଗଡ଼ରେ କୁମାରଗଣଙ୍କ ଉପନୟନ ଓ ରାଜକୁମାରୀମାନଙ୍କ ବିବାହ ପ୍ରଭୃତି ସାମାଜିକ ଅନୁଷ୍ଠାନରେ ବିଦେଶୀୟ ଜନଗଣଙ୍କ ଅନିମଂତ୍ରିତଙ୍କ ସଂଖ୍ୟା ମଧ୍ୟ ଅଳ୍ପ ହେଉ ନଥିଲା । ଦେବଗଡ଼ରେ ଏହିପରି ସୁବୃହତ୍ ଜନମଣ୍ଡଳୀଙ୍କୁ ସ୍ଥାନ ଦାନ ଓ ଅତିଥି ସତ୍କାରରେ ଯେତେ ବ୍ୟୟ ହୋଇଥାଏ ତାହା ଆମ୍ଭ ଦେଶର ଅନେକ ଅତ୍ୟନ୍ତ ସ୍ୱଚ୍ଛଳ ଧନୀ ସନ୍ତାନମାନଙ୍କ ପକ୍ଷରେ ମଧ୍ୟ ସଂଭବ ନୁହେଁ । ସେ 'ଦିୟତାମ୍ ଭୁଜ୍ୟତାମ୍' ଆଧୁନିକ ବଙ୍ଗରେ ଏକପ୍ରକାର ଲୋପ ପାଇଅଛି । ସେହି ଲୌକିକତା ଆଉ ଆମ ଦେଶରେ ନାହିଁ । ସେହି କଥା ବର୍ତ୍ତମାନ ସ୍ୱପ୍ନରେ ଓ ରୂପକଥାରେ ପରିଣତ ହୋଇଅଛି ।

ସାର୍ ବାସୁଦେବ ସୁଢ଼ଳଦେବ ଏହି ଦ୍ୱିବିଧ ସାମାଜିକ ଅନୁଷ୍ଠାନରେ ଯେଉଁଭଳି ଆଦର୍ଶ ରଖି ଯାଇଅଛନ୍ତି, ତାହାର ସ୍ୱର ବଜାୟ ରଖିବା ପାଇଁ ବର୍ତ୍ତମାନର ରାଜା ବାହାଦୁର ମଧ୍ୟ ପ୍ରାଣପ୍ରଣେ ଯତ୍ନ କରୁଅଛନ୍ତି । ସ୍ୱର୍ଗୀୟ ରାଜାବାହାଦୁର ତାଙ୍କ କନ୍ୟାମାନଙ୍କ ବିବାହ ଅନୁଷ୍ଠାନରେ ଉପର ବର୍ଣ୍ଣିତ ସମାରୋହ ସଂପନ୍ନ କରାଇବାରେ, ଯେଉଁ ରାଶି ରାଶି ଅର୍ଥ ଅକୁଣ୍ଠିତ ଚିତ୍ତରେ ବ୍ୟୟ କରିଅଛନ୍ତି, ତାହା ହିଁ ତାଙ୍କ ବ୍ୟୟ ମାତ୍ରାର ଶେଷ ସୀମା ନଥିଲା । କନ୍ୟାଦାନ ସଂଗେ ସଂଗେ ଯେଉଁ ବରାଭରଣ ଦେଉଥିଲେ ଶ୍ୱଶୁରାଳୟରେ



Digitized by srujanika@gmail.com

ରାଜା କନ୍ୟାଙ୍କ ମର୍ଯ୍ୟାଦା ରକ୍ଷାପାଇଁ, ସେ ସବୁ ବହୁମୂଲ୍ୟ ଉପଢୌକନ ଦେଉଥିଲେ, ସେସବୁ ମଧ୍ୟରେ ମଣି, ମୁକ୍ତା, ହୀରା ଓ ସ୍ୱର୍ଣ୍ଣର ପରିମାଣ ପ୍ରଚୁର ରହିବ ନିଶ୍ଚୟ । ତା ଉପରେ ବହୁବିଧ ପ୍ରକାରର ରାଶି ରାଶି ଆହାର୍ଯ୍ୟ ଓ ଜାମାତାଙ୍କ ବ୍ୟବହାର ପାଇଁ ଉତ୍ତମ ଅଶ୍ୱ ଓ ହସ୍ତୀ ଇତ୍ୟାଦି ମଧ୍ୟ ବରକନ୍ୟାଙ୍କ ସହ ପ୍ରେରିତ ହେଉଥିଲା । ପାଠକେ ! ଏଭଳି ବ୍ୟାପାରର ଗୁରୁତ୍ୱ ଏବଂ ଅର୍ଥ ବ୍ୟୟର ପରିମାଣ କଳ୍ପନା କରିପାରିଲେ ହିଁ, ଏହି ଦରିଦ୍ର ଲେଖକ ଅବ୍ୟାହତ ପାଇବ ।

ରାଜ ପରିବାରର ପ୍ରତ୍ୟେକ ବ୍ୟକ୍ତିଙ୍କ ଓ ପ୍ରଜାସାଧାରଣଙ୍କ ନିତ୍ୟନୈମିତ୍ତିକ ଧର୍ମ, ପାର୍ବଣ ଓ ସାମାଜିକ ଅନୁଷ୍ଠାନରେ ଆନନ୍ଦ ପ୍ରବାହ ଅକ୍ଷୁଣ୍ଣ ପ୍ରବାହିତ ରଖିବା ପାଇଁ, ରାଜା ସାର୍ ବାସୁଦେବ ସୁଢ଼ଳଦେବ ନିଷ୍ଠାସହ କର୍ତ୍ତବ୍ୟ ପାଳନ, କିପରି ଗୁରୁତର ବ୍ୟାପାର ଥିଲା, ତାହା ବର୍ଣ୍ଣନା ଅପେକ୍ଷା ଅନୁମାନ କିଂଚିତ୍ ସହଜସାଧ୍ୟ । ସେ ଭାରତବର୍ଷର ବିଶାଳ କ୍ଷେତ୍ରରେ ସାମାନ୍ୟ ଏକ ବିନ୍ଦୁ ସ୍ଥାନର ସାମନ୍ତ ନୃପତି ହେବେ, ଏହି ରାଜତିଳକ ଲଲାଟରେ ଧାରଣ କରି ଅବତୀର୍ଣ୍ଣ ହୋଇଥିଲେ । ଧର୍ମ ବୋଧରେ ସେହି ଗୁରୁଭାର ଆନନ୍ଦରେ ବହନ କରି ଯାଇଅଛନ୍ତି । ସେ ଏଭଳି ଉଚ୍ଚ ଉପାଦାନରେ ଗଠିତ ହୃଦୟ ଓ ମନନେଇ ଜନ୍ମଗ୍ରହଣ କରିଥିଲେ ଯେ, ବାମଣ୍ଡା ଅପେକ୍ଷା ଶତଗୁଣରେ ବିସ୍ତୃତତର ରାଜ୍ୟ ଭାର ତାଙ୍କ ଉପରେ ନ୍ୟସ୍ତ ହୋଇଥିଲେ, ସେ ସେହି ବିଶାଳ କ୍ଷେତ୍ରର ରାଜଧର୍ମ ପାଳନରେ ସଂପୂର୍ଣ୍ଣ ସକ୍ଷମ ହୋଇଥାନ୍ତେ । ତାଙ୍କ ରାଜ ଜୀବନର ସମଗ୍ର ଦିଗ ପର୍ଯ୍ୟାଲୋଚନା କଲେ ଦେଖାଯାଏ, ରାଜଧର୍ମ ପାଳନ ହିଁ ତାଙ୍କ ବ୍ୟକ୍ତିଗତ ଜୀବନର ମେରୁଦଣ୍ଡ ଥିଲା । ପ୍ରଜାମାନଙ୍କର ଯାହାର ଯାହା ଧର୍ମ, ତାହାର ସେହି ଧର୍ମ ରକ୍ଷା, ପୋଷଣ ଓ ପରିସ୍ଫୁଟନ କ୍ଷେତ୍ରେ ସହାୟତା କରିବାରେ ତାଙ୍କ ହୃଦୟ ଚରିତାର୍ଥତା ଲାଭ କରୁଥିଲା ।

ବାମଣ୍ଡା ରାଜ ପରିବାରର ପ୍ରାଚୀନ ଧର୍ମ ଶାକ୍ତ ଧର୍ମ । ସ୍ୱର୍ଗୀୟ ରାଜାଙ୍କର ଧର୍ମ ଥିଲା ବୈଷ୍ଣବ ଧର୍ମ; କିନ୍ତୁ କେଉଁ ପଦ୍ଧତି ଅନୁଯାୟୀ ସେ ବ୍ୟକ୍ତିଗତ ଭାବେ ସେହି ଧର୍ମ ନିଜ ଜୀବନରେ ପାଳନ କରୁଥିଲେ, ତାହା ନିଜେ ହିଁ ସେ ଜାଣୁଥିଲେ । ସେହି ବିଷୟରେ ସାକ୍ଷ୍ୟ ଦେବାପାଇଁ ଲୋକ ନାହାନ୍ତି । କିଭଳି ଭାବରେ ନିତ୍ୟଧର୍ମ ପାଳନ କରୁଥିଲେ ତାହା ମଧ୍ୟ କେହି କହିପାରିବେ ନାହିଁ । ତେବେ ନାରାୟଣ ଯେ ସର୍ବଭୂତେ ସର୍ବାବସ୍ଥାରେ ପ୍ରକଟ । ଲୀଳାମୟ ଭଗବାନ ଯେ, ପ୍ରାଣୀ ମାତ୍ରେ ହିଁ ପ୍ରାଣରେ ପ୍ରକାଶିତ, ଏହା ତାଙ୍କର ଜ୍ଞାନୋଜ୍ଜ୍ୱଳ ହୃଦୟ, ମନକୁ ମୋହିତ କରୁଥିଲା । ତାଙ୍କ ରାଜ୍ୟ ପାଳନ ପଦ୍ଧତିର ଭିତର ଦେଇ ଏହି ସମ୍ବାଦ ଜାଣିପାରିବା ସଂଭବ ହୋଇଅଛି ଯେ ସେ ନାରାୟଣଙ୍କର ଉପାସକ ଥିଲେ । ତେଣୁ ପୁରୁଷ ଶ୍ରେଷ୍ଠ ବାସୁଦେବ ସୁଢ଼ଳଦେବ ନରସେବା କରି ନରଲୋକରେ ଅମରତ୍ୱ ଅର୍ଜନ ଓ ଗୋଲକକୁ ଗମନ କରିଅଛନ୍ତି ।





Digitized by srujanika@gmail.com

**ଚତୁର୍ଦ୍ଦଶ ଅଧ୍ୟାୟ**

# ଇଂରେଜ ରାଜଦରବାରରେ ବାସୁଦେବ

ଓଡ଼ିଶାର ଟ୍ରିବ୍ୟୁଟେରୀ ଓ ମଧ୍ୟପ୍ରଦେଶର ଫ୍ୟୁଡ଼େଟେରୀ ରାଜନ୍ୟବର୍ଗଙ୍କର ରାଜ୍ୟ ପାଳନ ପଦ୍ଧତିର ଇତିବୃତ୍ତି ରଚନା କରିବା ଗ୍ରନ୍ଥାକାରର ଉଦ୍ଦେଶ୍ୟ ନୁହେଁ । ଉଦ୍ଦେଶ୍ୟ ବାମଣ୍ଡା-ରାଜ ସାର୍ ବାସୁଦେବ ସୁଢ଼ଳଦେବଙ୍କ ଚରିତ୍ର ଚିତ୍ର ଅଙ୍କିତ କରିବା । ଏହି ଉଭୟ ପ୍ରଦେଶର ରାଜନ୍ୟବର୍ଗଙ୍କ ମଧ୍ୟରେ ବାମଣ୍ଡା ଫ୍ୟୁଡ଼େଟେରୀ ରାଜା ସାର୍ ବାସୁଦେବ ସୁଢ଼ଳଦେବ ରାଜକାର୍ଯ୍ୟ ପରିଚାଳନା ଦ୍ୱାରା ନିଜ ରାଜ୍ୟର ପ୍ରଜାମଣ୍ଡଳୀଙ୍କ ଦୃଷ୍ଟିରେ, ଓଡ଼ିଶାର ଓ ମଧ୍ୟପ୍ରଦେଶର ଇତର ଭଦ୍ରଜନଗଣଙ୍କ ଦୃଷ୍ଟିରେ ଏବଂ ଭାରତର ଅନ୍ୟାନ୍ୟ ପ୍ରଦେଶର ଶିକ୍ଷିତ ଓ ପଦସ୍ଥ ବ୍ୟକ୍ତିବର୍ଗଙ୍କ ଦୃଷ୍ଟିରେ ତାଙ୍କର ରାଜଯୋଗ୍ୟ ସମାଦର ଲାଭ କରିଅଛନ୍ତି ଏବଂ କରୁଥିବେ ।

ଆମ୍ଭେ ବର୍ତ୍ତମାନ ଦେଖାଇବା ପାଇଁ ଚାହୁଁଅଛୁ, ସୁବିଶାଳ ଭାରତ କ୍ଷେତ୍ରର ଏକଛତ୍ର ରାଜା, ଇଂରେଜ ରାଜଶକ୍ତିର ପରିଚାଳନା କ୍ଷେତ୍ରରେ କର୍ଣ୍ଣଧାର-ଗଣ, ବିଭାଗୀୟ କମିଶନରଗଣ, ପୋଲିଟିକାଲ୍ ଏଜେଣ୍ଟ ମହୋଦୟଗଣ ଓ ପ୍ରାଦେଶିକ ଶାସନକର୍ତ୍ତାଗଣ ଏହି କ୍ଷୁଦ୍ର ରାଜ୍ୟ ସାମନ୍ତ ନୃପତି ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ କିଭଳି ଭାବରେ ଦେଖୁଥିଲେ, ବର୍ତ୍ତମାନ ସେହି ବିଷୟରେ କିଞ୍ଚିତ୍ ପ୍ରମାଣ ପ୍ରଦାନ କରାଯାଉଅଛି । ରାଜା ସାର୍ ବାସୁଦେବ ସୁଢ଼ଳଦେବ ବାମଣ୍ଡାର ରାଜ୍ୟଭାର ଗ୍ରହଣ କରିଥିଲା ପର୍ଯ୍ୟନ୍ତ ରାଜ୍ୟର ଶ୍ରୀବୃଦ୍ଧି ସାଧନ ପାଇଁ ମଧ୍ୟପ୍ରଦେଶର ଶାସନକର୍ତ୍ତାଗଣ ବର୍ଷ ପରେ ବର୍ଷ ଏକ ବାକ୍ୟରେ ତାଙ୍କର ପ୍ରଶଂସା କରିଅଛନ୍ତି । ଏହି ସୁପ୍ରଣାଳୀ ସଂଗତ ଶାସନ ପଦ୍ଧତି ଫଳରେ ୧୮୮୯ ଖ୍ରୀଷ୍ଟାବ୍ଦରେ ରାଜା ବାସୁଦେବ ସୁଢ଼ଳଦେବ ଇଂରେଜ ରାଜ ଦରବାରରୁ ନିଜ କର୍ମାନୁରୂପ ରାଜସମ୍ମାନ ସି.ଆଇ.ଇ.(C.I.E.) ଉପାଧି ଲାଭ କରନ୍ତି । କହିବା ବାହୁଲ୍ୟ, ସେହି ସମୟରେ ଓଡ଼ିଶାର ଟ୍ରିବ୍ୟୁଟାରୀ ମହଲରେ ଓ ଛତିଶଗଡ଼ର ଅନ୍ୟ କୌଣସି ରାଜା ଏହି ଉପାଧି ଲାଭ କରିପାରିନାହାନ୍ତି । ୧୮୯୪ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସରେ ମଧ୍ୟପ୍ରଦେଶର ଶାସନକର୍ତ୍ତା ସାର୍ ଜନ୍ ଉଡ୍‌ବରନ୍ ମହୋଦୟ ଗଡ଼ଜାତ ଭ୍ରମଣରେ ବହିର୍ଗତ ହୋଇ



Digitized by srujanika@gmail.com

ବାମଣ୍ଡାରେ ପଦାର୍ପଣ କରିଥିଲେ । ତାଙ୍କୁ ଯେଉଁ ଅଭିନନ୍ଦନ ପତ୍ର ଅର୍ପଣ କରାଯାଇଥିଲା, ତଦୁତ୍ତରରେ ସେ ଏହିପରି କହିଥିଲେ-'କର୍ଣ୍ଣେଲ୍ ବୁଇ ଓ ପ୍ରିଷ୍ଟ ସାହେବ (Col. Booye and Mr. H.H.Priest)ଙ୍କ ଠାରୁ ଆପଣଙ୍କ ରାଜ୍ୟ ପାଳନ ପଦ୍ଧତି ବିଷୟରେ ଯେଉଁ ପ୍ରଚୁର ଗୁଣଗ୍ରାମର କଥା ଶୁଣିଥିଲି, ଆଜି ମୁଁ ତାହା ସ୍ୱଚକ୍ଷୁରେ ଦର୍ଶନ କଲି । ରାଜ୍ୟ ପାଳନ, ସୁଚିକିତ୍ସା ଓ ସୁଶିକ୍ଷା ଦାନର ବ୍ୟବସ୍ଥା ଯାହା ଦେଖିଲି, ସବୁକିଛି ଅତ୍ୟନ୍ତ ଆନନ୍ଦକର ।' ରାଜ୍ୟର ଉପସ୍ଥିତ ପ୍ରଜା ସାଧାରଣଙ୍କୁ ଲକ୍ଷ୍ୟକରି ହିନ୍ଦୀ ଭାଷାରେ କହିଥିଲେ- 'ମୁଁ ତୁମ୍ଭମାନଙ୍କ ଭାଷା ଜାଣିନାହିଁ, ବର୍ତ୍ତମାନ ଆଉ ଶିଖିବାର ବୟସ ମଧ୍ୟନାହିଁ, ତୁମ୍ଭେମାନେ କିଛି କିଛି ହିନ୍ଦୀ ଜାଣିଛ । ରାଜା ବାହାଦୁରଙ୍କ ସହିତ ମୋର ଅନ୍ୟତ୍ର ଦେଖା ହୋଇପାରେ, ଏଠାକୁ ଆଜି ମୁଁ ତୁମ୍ଭମାନଙ୍କୁ ଦେଖିବା ପାଇଁ ଆସିଅଛି । ତୁମ୍ଭମାନଙ୍କ ରାଜା ବାହାଦୁରଙ୍କ ଅଶେଷ ଗୁଣର କଥା ମହାରାଣୀ ଭାରତେଶ୍ୱରୀଙ୍କ କର୍ଣ୍ଣଗୋଚର ହୋଇଅଛି, ସେଥିପାଇଁ ତୁମ୍ଭମାନଙ୍କ ରାଜାବାହାଦୁର ଯେଉଁ ସମ୍ମାନଜନକ ପଦ ଲାଭ କରିଅଛନ୍ତି, ତାହା ମଧ୍ୟ ସେ ଆଜି ନିଜେ ଏବଂ ଭାବୀ ବଂଶ ପରଂପରା କ୍ରମେ ଭୋଗ କରିବେ । ତୁମ୍ଭେମାନେ ତାଙ୍କ ଶାସନରେ ସୁଖରେ ଥାଅ । ଏହା ହିଁ ମୋର କାମନା ।'

୧୮୯୨ ଖ୍ରୀଷ୍ଟାବ୍ଦରୁ ୧୯୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମଧ୍ୟପ୍ରଦେଶ ଶାସନ ବିବରଣୀରୁ ପ୍ରୟୋଜନୀୟ ଅନେକ ଅନେକ ଅଂଶ ରାଜାଙ୍କ ଜୀବନୀର ଆଲୋଚନା କାଳରେ ଅଙ୍ଗୀଭୂତ କରାଯାଇଅଛି । ତାହା ବ୍ୟତୀତ ସାଧାରଣ ଭାବରେ ଏହି କେତେ ବର୍ଷ ଶାସନ ବିବରଣୀରୁ ଏହି ସବୁ ବିବରଣୀ ପାଠ ଦ୍ୱାରା ସ୍ୱର୍ଗୀୟ ରାଜାଙ୍କ ସମ୍ବନ୍ଧରେ ଇଂରେଜ ସରକାରଙ୍କ ଉଚ୍ଚ ଧାରଣାର ଓ ସେଥିପାଇଁ ଉଚ୍ଚ ସମାଦର ପ୍ରଦର୍ଶନର ପ୍ରଚୁର ପ୍ରମାଣ ମିଳିପାରିବ ।

## Self Governed Feudatories, Bamra

(Administration Report-1891)

The state was visited during the year by the commissioner, who thus records the results of his visit: "I marched from Sambalpur to Deogarh and from Deogarh to Kochinda and then on to Jharsugra, and thus saw a great deal of the state. I found the people every where contented and satisfied with the Raja's rule. Though he was not with me, not a single complaint was made to me and I noticed that there had been an immense increase in Cultivation in recent years. Although I found that there had been immense improvement in the condition of the state since I last visited it some 12 years ago; I was greatly pleased to be able to renew my old friendship with the Raja, and to find that in the work of administration of his state he had thoroughly fulfilled the promise of his earlier years. All the Raja's sons, of whom



Digitized by srujanika@gmail.com

there are now many, are bright and intelligent and are being well educated. The Lal Sahib is particularly quiet and gentlemanly, and has already acquired a fair knowledge of English.'

## General Review 1892

The state was administered throughout the year, by the Feudatory chief, Raja Sudhal Deo, C.I.E. He supervises personally all branches of the state administration and has an intimate knowledge of its circumstances and needs. The greater number of his official are men who are residents of his state and who have been entirely educated in the schools, which he had founded.

## Resolution of the C.P.Government, 1893

Raja Sudhal Deo, C.I.E. of Bamra, is a ruler of much intelligence and enterprise and has done a great deal to develop and improve his state. His entire abstention from direct taxation in the shape of pandhri and income tax is probably a wise measure, for, in a remote and backward state like Bamra, it is essential that every possible encouragement should be given to trade. His attention to the higher education of his subjects is also praiseworthy, though it is desirable that something more should be done for primary education. Here again, however, it is possible that, his policy is not ill-adapted to the need of a primitive population, where few desire education and fewer still would greatly benefit by it, the following remarks of the political Agent with reference to this state, are of interest and may be quoted here.

'This state is undoubtedly the most interesting of all Chhattisgarh. Feudatories. It is the only one of which the administration has preserved any originality and character of its own, owing to its never having fallen under the management of British Government and having (Partly perhaps, owing to its remoteness) been subjected to a very little interference at the hand of Government officers. It seems a pity that so little is known beyond the limits of the state, of the details of the Raja's administration. This example of the results which can be attained by a Native chief governing according to his own methods, without-assistance from without, and studying British institutions rather for the sake of comparison and judicious adaptation than of servile imitiation, seems worthy of the careful attention not only of his brother chiefs but of British administrators of native states, who seem apt at times to ignore the fundamental distinctions between the conditions prevaling in British territory and in that of a small state under Native rule." Resolution of the C.P. Government.



Digitized by srujanika@gmail.com

## Administration Report of C.P. for the year 1894 Resolution

Bamra continues to be a particularly bright instance of the success of an unaided native regime, and the good Government of this state procured for its chief the honour, hitherto un-precedented among the Feudatories of the central provinces of the decoration of K.C.I.E. in January last.

### General Review

'Lastly, an event of great significance, though belonging strictly to the history of 1895, was the advancement, in the new years list of honours, of the Raja of Bamra to the dignity of a knight commander of Indian Empire, and his investiture with the insignia of the order, at the hands of his excellency the Grand master at Calcutta on 7th march, 1895.'

'Raja Sudhal Deo K.C.I.E. was advanced to the dignity of a knight Commandership of the most Eminent order of the indian Empire in the Honour's Gazette of 1st January 1895. He attended the invesiture held in Calcutta on the 7th march, where he was duly invested by his Excellency the Grand Master with the insignia of the 2nd class of the order."

"The distinction thus conferred, is one in which the whole of the Chhatisgarh Feudatories have reason to feel special pride, as being without precedent in their history up to this time. It is the more gratifying as being a recognition, not of any conspicuous accidents of rank, position or wealth, but purely of PERSONAL MERIT. It is to be hoped that it may serve as a stimulus particularly to the younger generation of chiefs, in their endeavours to emulate the prudent and successful administration of the Raja of Bamra-an administration of which the standard appears to be fully sustained in the record of the year under report. The record reflects credit both on Raja Sir Sudhal Deo himself and on his eldest-son Lal. Satchidanand Deo, whom as already reported, the Raja has entrusted, subject of course to his own supreme control, with the immediate charge of all branches of the administration."

୧୮୯୫ ଖ୍ରୀଷ୍ଟାବ୍ଦର ମାର୍ଚ୍ଚମାସ ୭ତାରିଖରେ କଲିକତା ବଡ଼ଲାଟ୍ ଭବନରେ ଏକ ବିଶିଷ୍ଟ ଦରବାରରେ, ଉପାଧିପ୍ରାପ୍ତ ବ୍ୟକ୍ତି ଓ ଅନ୍ୟାନ୍ୟ ବହୁ ସଂଭ୍ରାନ୍ତ ବ୍ୟକ୍ତିଗଣଙ୍କ ସମକ୍ଷରେ ସୁଢ଼ଳଦେବ ଉପାଧିଭୂଷିତ ହୋଇଥିଲେ । ପରବର୍ତ୍ତୀ ମାର୍ଚ୍ଚ ମାସ ୧୦ ତାରିଖ 'ଇଣ୍ଡିଆନ୍ ମିରର୍' ରୁ ଉଦ୍ଧୃତ ଅଂଶ ପାଠକଙ୍କ ଅବଗତି ପାଇଁ ଏଠାରେ ପ୍ରଦତ୍ତ ହେଉଅଛି-



Digitized by srujanika@gmail.com

'Mr Cunningham read out the names of those whom it was intended to decorate, and than Sri John Lambert, Sir Edwin Collin and the under secretary of the Foreign Department escorted Raja Sudhal Deo of Bamra to the Dias. The Raj was not invested in the usual manner, the ceremony of the accolade being dispensed with the other formalities in his case were how ever similar to those already described.

The Raja of Bamra has from the first steadily resisted all temptations to increase his revenue by taxation of this nature, his object being to encourage the settlement of traders in his state, and his attention in this respect has been referred to by the chief commissioner as probably a wise measure. I venture to think that other states, which have the same object in view as Bamra, and whose finances have now been placed in a position enabling them better to afford such forbearance, might well consider the expediency of following this example, and of relieving their subjects, either once for all or at all events by degrees from the burden of pandhri taxation. Both in the encouragement given to trade and the general satisfaction of the people the small immediate sacrifice of revenue would no doubt be amply repaid.

The states of Bamra and Khairagarh still retain the lead, and afford typical examples to the rest, the two distinct schools of administration the old and the new. A careful study of both of them, and the judicious adaptation to their own need of all the best features of both, may sately be recommended to those responsible for the administration of other states."

**General Review 1895**

The Raja has to deal not only with limited resourses which, however, he has always shown himself ready to spend liberally in any direction that seems to promise a return in the wellfare of his subjects. But with an extremely backward, wild and apathetic population, whome I have every reason to belive that he is doing his utmost to educate and civilise.

The state was visited by me in May of the year under report, and in December. The Raja and his sons attended the chief commissioner's Darbar at Raipur. The advancement of the Raja to the dignity of K.C.I.E. on 1st January, 1895 and his subsequent investiture with the insignia at Calcutta, were noticed in the last year's review. The PRUDENT and STATESMANLIKE administration of which. THIS WAS THE REWARD continues to distinguish Raja Sir Sudhal Deo



Digitized by srujanika@gmail.com

above his fellows and to be a MODEL for OTHER STATES. Lal Satchidanand Deo. The Raja's eldest son, who continued to be in subordinate charge of entire administration, gives very indication of having inharited his father's high qualities a fact which renders the feature of this state particularly hopeful.

**General Review of the Administration for the year 1899**

FINANCE- The total real expenditure increased from Rs 87, 070 to Rs 93,426. The increased expenditure is principally due to the celebration of the marriage of the Raja's fourth daughter with the minor chief of Talcher in the Tributory Mohals, whilst several, departments of the state administration were strengthened. This excludes the amount of the large timber trade carried on by the chief from the state forest in the name of his sons. A large quantity of sleepers is supplied to Railways and a timber depot is maintained at calcutta at which a considerable business is done. The state accounts thus exclude are of the largest sources of income. This business has been Vigrously and successfully managed by the chief himself. The saw-mills have been removed to Forests more distance from the Railway and this will, to some extent, affect profit. It affords profitable employment to a large number of the state subjects.

The chief reports that owing to failure of crops he has decided to grant a substantial remission to the gauntias of his state in the current year. He rightly points out that the prosperity of his state is dependant on the prosperity of his subjects, and this liberal measure will prove of much help ot them. No less than 42 percent of the land revenue has been alienated principally in muafi grants to the Rajfamily, and this seriously affects the recorded income from land. This policy is done that will require careful watching to see that the grants are not larger than the state can afford.

**1899**

**General Remark**

The state was visited by me for the first time during the year, and it was a pleasure to find that the administration is generally maintained on efficient lines. Much has been done towards opening out the state by construction of good surface roads, and this has resulted in a considerable extension of cultivation, whilst it has permitted the profitable working of the state forests situated at some considerable distance from the railway.



Digitized by srujanika@gmail.com

The people seem prosperous and contented under the Raj's rule and administration of most departments is systematically carried on.

## General Review 1900

Bamra was the only state in which there was any interference with trade; the prohibition by Feudatory chief of Bamra of the exportation of the food grain continued in force throughout the year.

The prices of food grains have been high throughout the year. Famine prices prevailed generally until September or October, and at the end of the year prices were still above normal. With some local exceptions, prices have been virtually governed from Bengal and determined by the cost of importing rice from that province. It is by no means clear that prices prevailing in Bamra are an exception to this rule or that the Feudatory Chief's prohibition of export had any material affects on prices. In that state prices were certainly lower than in the neighbouring states in this agency. It cannot however safely be inferred that they would have been higher than they were, if exports have been free, because it is not certain, how far the prohibition was effective, and further, because the supplementary measure was adopted of borrowing rice and selling it at fourteen seers per rupee. I am not prepared to say that under no concievable circumstances can it be justifiable to prohibit export of food grains, but it is obvious that in so far as such a prohibition lowers prices, it benefits the consumer at the expense of the producer.

## Notes on Feudatory States 1902

The Bamra Rajkumar High School appears to be well managed . It is reported that minor chief of Bonai was sent to the school during the year under the orders of the Government of Bengal. A set of physical and chemical apparatus was provided for the school at a cost of Rs 5170 and the teaching staff was strengthened during the year.

The administration is one of the most successful among states managed by their own chiefs, and the Feudatory chief has been only assisted in the conduct of the affairs by his eldest son Tikayat Satchidanand Deo. The Feudatory chief was invited to the coronation ceremonies at Delhi, but unfortunately was prevented by a serious illness from attending them.





Digitized by srujanika@gmail.com

## ପଞ୍ଚଦଶ ଅଧ୍ୟାୟ

# ସମାଜ ସଂସ୍କାର

ମଧ୍ୟପ୍ରଦେଶର ଛତିଶଗଡ଼ ଏବଂ ଓଡ଼ିଶାର ଅଠର ଗଡ଼ ମୋଟ ଚଉବନଟି ଗଡ଼ରେ ଯେଉଁ ରାଜାଗଣ ବାସ ଓ ରାଜତ୍ୱ କରନ୍ତି (କ୍ୱଚିତ୍ ଦୁଇ ତିନୋଟି ସ୍ଥାନକୁ ବାଦ୍ ଦେଇ) ସେମାନେ ସମସ୍ତେ କୌଣସି ନା କୌଣସି ସୂତ୍ରରେ କ୍ଷତ୍ରିୟ ବଂଶୋଦ୍ଭବ । ଏମାନେ ସମସ୍ତେ ନିଜ ନିଜ ଗଡ଼ରେ ଅର୍ଥାତ୍ ରାଜ୍ୟ ମଧ୍ୟେ ଅନେକ ପରିମାଣରେ ସ୍ୱାଧୀନ ଭାବରେ ରାଜତ୍ୱ କରିଥାନ୍ତି । ସୁତରାଂ ଏମାନଙ୍କ ଶାସନ ଏବଂ ପାଳନ ଆଶ୍ରୟରେ ଯେଉଁ ସୁବୃହତ୍ ଜନମଣ୍ଡଳୀ ବାସ କରନ୍ତି, ସେହି ଜନମଣ୍ଡଳୀ ସମସ୍ତେ ସ୍ୱଦେଶୀୟ ପ୍ରଜା, ସେମାନେ ସମସ୍ତେ ଯେ ଅପେକ୍ଷାକୃତ ନିମ୍ନ ଶ୍ରେଣୀର ବା ଇତର ଜାତିର ପ୍ରଜା, ତାହା ନୁହେଁ । ଅବଶ୍ୟ ଏହିପରି ଅଭିଧାନରେ ଅଭିହିତ ହେବା ଯୋଗ୍ୟ ଲୋକ ସଂଖ୍ୟା ନିତ୍ୟାନ୍ତ ଅଳ୍ପ ନୁହେଁ । କିନ୍ତୁ ଶିକ୍ଷିତ, ଅର୍ଦ୍ଧ ଶିକ୍ଷିତ ଓ ଅଶିକ୍ଷିତ ଭଦ୍ରଜନତାଙ୍କ ସଂଖ୍ୟା ମଧ୍ୟ ଅଳ୍ପ ନୁହେଁ । ଏହି ସମସ୍ତ ରାଜ୍ୟର ରାଜପରିବାର ସଂସୃଷ୍ଟ ବହୁ ଆତ୍ମୀୟ ସ୍ୱଜନ ବର୍ଗଙ୍କ ବହୁକାଳବ୍ୟାପୀ ବଂଶଧାରା ଭଦ୍ରସମାଜ ବୋଲି ଅଭିହିତ ଓ ପରିଚିତ । ଏହି ସମସ୍ତ ଭଦ୍ରସମାଜର ନିତ୍ୟ ନୈମିତ୍ତିକ ଧର୍ମ କାର୍ଯ୍ୟ ଅନୁଷ୍ଠାନରେ ସହାୟତା କରିବା ପାଇଁ ଗୁରୁପୁରୋହିତ ରୂପେ, ଅସଂଖ୍ୟ ବ୍ରାହ୍ମଣ ଓ ଅନ୍ୟାନ୍ୟ କାର୍ଯ୍ୟରେ ସହାୟତା ପାଇଁ ବହୁ ଜଳଚଳ ଜାତି ଏହି ସମସ୍ତ ରାଜ୍ୟରେ ବସବାସ କରିଥାନ୍ତି ।

ଏହାପରେ ଅତି ପ୍ରାଚୀନ କାଳରୁ ରାଜାମାନେ ଗ୍ରାମକୁ ଗ୍ରାମଦାନ କରିଦେଇ, ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରି ଯାଇଅଛନ୍ତି । ସେହି ସବୁ ଗ୍ରାମର ସମଗ୍ର ଭୂମି ବଙ୍ଗର ବ୍ରହ୍ମୋତ୍ତରଙ୍କ ଭଳି ଓଡ଼ିଶାର ଓ ମଧ୍ୟପ୍ରଦେଶର ଗଡ଼ଗୁଡ଼ିକରେ ବ୍ରାହ୍ମଣଙ୍କ ଅଧିକାରଭୁକ୍ତ । ଏତଦ୍ ଭିନ୍ନ ନାନା ସମୟରେ ବଙ୍ଗ ଓ ବିହାରଠାରୁ ବହୁବହୁ ଲୋକ, କର୍ମସୂତ୍ରେ ବାସକରି, ଶେଷରେ ଏହି ସମସ୍ତ ରାଜ୍ୟର ପ୍ରଜାମଣ୍ଡଳୀ ଅନ୍ତର୍ଭୁକ୍ତ ହୋଇ ଯାଇଛନ୍ତି । ଅସ୍ପୃଶ୍ୟ ହୀନ ଓ ଇତର ଜାତି ବାଦ୍‌ଦେଲେ ମଧ୍ୟ, ଏକ ସମାଜ ଶାସନର ଅଧୀନ ହୋଇ ଚଳିବା ପାଇଁ ବାଧ୍ୟ । ଏଭଳି ଲୋକଙ୍କ ସଂଖ୍ୟା ମଧ୍ୟ ଅନେକ । ଯେଉଁମାନେ ଏହିପରି ସମାଜ



Digitized by srujanika@gmail.com

ଶାସନର ଅଧୀନ ହୋଇ ଚଳୁଅଛନ୍ତି, ସେମାନଙ୍କର, ଏହି ସମସ୍ତ ରାଜ୍ୟର ରାଜାଗଣଙ୍କର ନିର୍ଦ୍ଦିଷ୍ଟ ବିଧିନିଷେଧ ମାନି ଚଳିବାକୁ ପଡିଥାଏ । ରାଜାମାନେ ମଧ୍ୟ ଇଚ୍ଛାମାତ୍ରେ କୌଣସି ବିଷୟରେ ସହସା ଆମୂଳ ପରିବର୍ତ୍ତନ ଘଟାଇ ପାରନ୍ତି ନାହିଁ । ସେମାନଙ୍କୁ ମଧ୍ୟ ପୂର୍ବ କାଳ ଠାରୁ ପ୍ରବର୍ତ୍ତିତ ଓ ସେଥିପାଇଁ ଜନସାଧାରଣଙ୍କ କର୍ତ୍ତୃକ ଅନୁଷ୍ଠିତ ବିଧି ନିଷେଧ ମାନି ଚଳିବାକୁ ପଡିଥାଏ ।

ସମୟୋପଯୋଗୀ ସଂସ୍କାର ବିହୀନ ବିଧି ନିଷେଧର ଅଧୀନ ହୋଇ ଚଳୁ ଚଳୁ, ଜନସମାଜ କିଭଳି ଭାବରେ ଅଲକ୍ଷିତ ଓ ଅତର୍କିତ ଭାବରେ ଅବନତି ଆଡ଼କୁ ଅଗ୍ରସର ହୁଅନ୍ତି, ବର୍ତ୍ତମାନ ବଙ୍ଗୀୟ ହିନ୍ଦୁ ସମାଜ ତାହାର ଏକ ଉତ୍ତମ ଦୃଷ୍ଟାନ୍ତ ସ୍ଥଳ । ତର୍କରେ ଜୟ ପରାଜୟ ଏକ କଥା, ଆଉ ନିଜ ଜୀବନରେ ପ୍ରତ୍ୟକ୍ଷୀଭୂତ ସତ୍ୟ ଆଉ ଏକ କଥା । ଅଧିକ ଦୂର ଯିବାକୁ ପଡ଼ିବ ନାହିଁ, ଆମ୍ଭମାନଙ୍କ ବାଲ୍ୟକାଳରେ ଆମ୍ଭ ଦେଶର ସମାଜ ଦେହରେ ଯେଉଁ ସବୁ ହୀନ ପରିବର୍ତ୍ତନ ସ୍ଥାନ ପାଇ ନାହିଁ, ବିଗତ ପଚାଶ ବର୍ଷ କାଳ ମଧ୍ୟରେ, ହିନ୍ଦୁ ସାମାଜିକ ଜୀବନର ମତିଗତି ଓ ରୀତି ପଦ୍ଧତି ସେହି ସବୁ ଅକଲ୍ୟାଣକର ହୀନ ଆଦର୍ଶକୁ ସମାଜରେ ସ୍ଥାନ ଦେଇଅଛି ଏବଂ ବର୍ତ୍ତମାନ ସହସ୍ର ଚେଷ୍ଟା କଲେ ମଧ୍ୟ ସେହି ସବୁର ବଜ୍ରବନ୍ଧନଠାରୁ ସମାଜ ମୁକ୍ତିଲାଭ କରିପାରୁନାହିଁ । ଏ ସବୁର ଆକ୍ରମଣରୁ ସମାଜ ରକ୍ଷା ଓ ମୁକ୍ତ କରିବାର ଅନ୍ୟନାମ ସମାଜ ସଂସ୍କାର ।

ଏହି ସମାଜ ସଂସ୍କାର ଚେଷ୍ଟାର ସ୍ପନ୍ଦନ ଯଦି ଆମ୍ଭମାନଙ୍କ ବଙ୍ଗ ଦେଶରେ ଅନୁଭୂତ ହୋଇଥାଏ, ସେହି ସ୍ପନ୍ଦନ ଯଦି କମ୍ପନରେ ପରିଣତ ହୋଇଥାଏ, ସେହି କମ୍ପନ ଯଦି ବେଦନାଦାୟକ ହୋଇଥାଏ, ଏବଂ ସେହି ବେଦନାର ଆକ୍ରମଣରୁ ଅବ୍ୟାହତି ପାଇବା ଚେଷ୍ଟା କରିବାକୁ ଯାଇ, ବହୁ ବହୁ ଲୋକଙ୍କୁ ନିପୀଡ଼ିତ ହେବାକୁ ପଡିଥାଏ । ତାହା ହେଲେ, ସଂପୂର୍ଣ୍ଣ ରୂପେ ଚେଷ୍ଟାହୀନ ସ୍ଥାଣୁବତ୍ ସମାଜ ଜୀବନର ଅବସ୍ଥା କଳ୍ପନା କରିବା ଶକ୍ତି ଥିଲେ, ଆଉ ସେପରି କଳ୍ପନା କରିବାକୁ ଯାଇ ଯଦି ଅନ୍ତରରେ ସାମାନ୍ୟଭାବରେ ମଧ୍ୟ ଆନ୍ଦୋଳନର କୋଳାହଳ ପରିଶ୍ରୁତ ହୁଏ, ଆଉ ହୃଦୟର ସେହି କାତରତାର ତାଡ଼ନାରେ ଯଦି ସତକୁ ସତ ଭାରତୀୟ ଜନସାଧାରଣଙ୍କ କୌଣସି ବିଶିଷ୍ଟାଂଶର କଲ୍ୟାଣ ସାଧନରେ ଆତ୍ମନିୟୋଗ କରିବାକୁ ପଡ଼େ, ତେବେ ସେହି ମଧ୍ୟପ୍ରଦେଶ ଓ ଓଡ଼ିଶାର ଚଉବନ ଗଡ଼ର ସଭ୍ୟତାଭିମାନୀ ଭଦ୍ରସମାଜର ଉଦ୍ଧାର ସାଧନ ।

କଥାଟା କଟୁ ହେଲା, କିନ୍ତୁ ଉପାୟ ନାହିଁ । ସମୟ ସମୟରେ କଠୋର ସତ୍ୟ କଥା କହିବା ଏକାନ୍ତ ପ୍ରୟୋଜନ । ଓଡ଼ିଶାର ମୋଗଲବନ୍ଦୀ ଅଂଶ ଅର୍ଥାତ୍ କଟକ, ପୁରୀ, ବାଲେଶ୍ୱରର କଥା କୁହାଯାଉ ନାହିଁ, ଏହି ସବୁ ଅଞ୍ଚଳରେ ଇଂରେଜ ଶାସନ ଫଳରେ



Digitized by srujanika@gmail.com

କିଞ୍ଚିତ୍ ପରିବର୍ତ୍ତନ ସାଧିତ ହୋଇଅଛି, ବର୍ତ୍ତମାନ ମଧ୍ୟ ହେଉଅଛି ଏବଂ ପରେ ମଧ୍ୟ ହେବ । ମଧ୍ୟପ୍ରଦେଶର ଇଂରେଜ ଅଧିକୃତ ଅଂଶ ସହିତ ଏହି ଯୁକ୍ତିର ପ୍ରୟୋଗ ହୋଇପାରେ, କିନ୍ତୁ ଗଡ଼ଜାତ ସମାଜ ଜୀବନ ଅବସ୍ଥା କାହାରିକୁ ବୁଝାଇଦେବା ଅତୀବ କଠିନ ବ୍ୟାପାର । ବଙ୍ଗର ନାନା ସ୍ଥାନେ ବର୍ଣ୍ଣାଧମ ଜାତିର ଉଦ୍ଧାର ସାଧନ ପାଇଁ ଡିପ୍ରେସ୍‌ଡ୍ କ୍ଳାସ୍ ମିଶନ (Depressed Class Mission) ଖୋଲା ଯାଇଅଛି । ସେମାନଙ୍କ ସାମାଜିକ ହିତ ପାଇଁ ଶିକ୍ଷିତ ବଙ୍ଗାଳୀ ଜନତା ବଦ୍ଧପରିକର ହୋଇପଡ଼ିଛନ୍ତି । ସେଥିପାଇଁ କେତେ ଅର୍ଥ ଚାନ୍ଦା ଆଦାୟ କରାଯାଉଅଛି ଓ ବ୍ୟୟ ହେଉଅଛି, କିନ୍ତୁ ଏହି ଲୋକ ହିତୈଷଣା ବ୍ରତରେ ଉତ୍ସର୍ଗୀକୃତ ପ୍ରାଣ ଶିକ୍ଷିତ ଭଦ୍ରଗଣଙ୍କୁ ଯଦି ଜିଜ୍ଞାସା କରନ୍ତି ଯେ ଏମାନେ ଉଦ୍ଧାର ଲାଭ କରି ସୁବିଶାଳ ହିନ୍ଦୁ ସମାଜର କେଉଁ ସ୍ତରକୁ ଉନ୍ନୀତ ହେବେ ? ତାହା ହେଲେ ହିଁ 'ଚକ୍ଷୁସ୍ଥିର' ।

ଇଂରେଜ ମାନଙ୍କ ଶିକ୍ଷାଦାନ ପଦ୍ଧତି ଫଳରେ ବଙ୍ଗ ଏବଂ ବଙ୍ଗ ବାହାରେ, ଭାରତର ଅନ୍ୟ ନାନା ସ୍ଥାନେ, ହୀନ ଜାତି ଜନଗଣଙ୍କ ଅଗ୍ରଗମନ ଶନୈଃ ଶନୈଃ ସାଧିତ ହେଉଅଛି । ସେଥିପାଇଁ ଦେଶର ଶିକ୍ଷିତ ସଂପ୍ରଦାୟଙ୍କ ମୌଖିକ ବ୍ୟାକୁଳତାର ପ୍ରୟୋଜନ ନାହିଁ । ଦେଶର ବ୍ରାହ୍ମଣ ସମାଜ ପରିଚାଳିତ ଉଚ୍ଚ ବର୍ଣ୍ଣର ଅହଂକାର ବାଧା ପ୍ରଦାନରେ ମଧ୍ୟ ତାହାଙ୍କର ଅଗ୍ରଗମନ ରୋଧ ହେବ ନାହିଁ । ଭାରତରେ ଇଂରେଜମାନଙ୍କର ଆଗମନ ଫଳରେ ଯେତେ ପ୍ରକାର କଲ୍ୟାଣ ସାଧିତ ହୋଇଅଛି, ସେ ସବୁ ମଧ୍ୟ ମିଶି 'ବ୍ୟକ୍ତିଗତ ମର୍ଯ୍ୟାଦା ଜ୍ଞାନ' ଭାରତର ସର୍ବତ୍ର ବିତରଣ କରୁଅଛନ୍ତି । ଏଥିରେ ଭାରତୀୟ ସମାଜ ଜୀବନର ପ୍ରକୃତ କଲ୍ୟାଣ ସାଧିତ ହେବ ।

ସମାଜ ସଂସ୍କାରର ଯଦି କୌଣସି ନିର୍ଦ୍ଦିଷ୍ଟ ବା ବିଶିଷ୍ଟ ପ୍ରୟୋଜନ ଥାଏ, ତେବେ ତାହା ଏହି ଦେଶର ସାମନ୍ତ ରାଜାଗଣଙ୍କ ରାଜ୍ୟରେ ସର୍ବାଗ୍ରେ ସୂଚୀତ ହେବାର ଯଥେଷ୍ଟ କାରଣ ରହିଛି । ଏହି ସମସ୍ତ ଅଂଶରେ ରାଜା, ରାଜପରିବାର, ରାଜ ଆତ୍ମୀୟଗଣଙ୍କ ମଧ୍ୟରେ ଏବଂ ଏହି ସମସ୍ତ ରାଜ୍ୟର ପ୍ରଜାମାନଙ୍କ ମଧ୍ୟରେ ଜୀବନ ସଂଗ୍ରାମରେ ସଂସ୍କାରର ପ୍ରବଳ ପ୍ରବାହ ପ୍ରବାହିତ କରିବାର ଚେଷ୍ଟା ହିଁ ଦେଶର ଲୋକଙ୍କ ପକ୍ଷରେ ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ କର୍ତ୍ତବ୍ୟ କର୍ମ । ଏହି ସୁବୃହତ୍ କର୍ତ୍ତବ୍ୟ ସାଧନ ବିରୁଦ୍ଧରେ ଶତପ୍ରକାର ଯୁକ୍ତିତର୍କର ଅବତାରଣା କରାଯାଇପାରେ କିନ୍ତୁ ହାତ ପାପୁଲିର ଆଚ୍ଛାଦନରେ ସୂର୍ଯ୍ୟଠାରୁ ନିଜ ଦୃଷ୍ଟିକୁ କେବଳ ଆବୃତ୍ତ କରାଯାଏ, ତା' ଠାରୁ ଅଧିକ ଆଉ କିଛି ଆବୃତ୍ତ କରାଯାଇ ପାରେ ନାହିଁ, ସେହିପରି ଯୁକ୍ତିତର୍କ ଗୋଟାଏ କଥା, ଆଉ ସାମନ୍ତ ରାଜ୍ୟର ରାଜା ପ୍ରଜାଙ୍କର ଯାପିତ ଜୀବନ ଅବସ୍ଥା ଆଉ ଗୋଟିଏ କଥା ।



Digitized by srujanika@gmail.com

ତେଣୁ ଗଡ଼ଜାତର ଘସରା ହୀନ ଜୀବନ ଯାପନର ମଧ୍ୟସ୍ଥଳେ ସାର୍ ବାସୁଦେବ ସୁଡ଼ଳଦେବଙ୍କ ରାଜ ସିଂହାସନ ଆରୋହଣ, ଗଡ଼ଜାତର ବର୍ତ୍ତମାନ ଯୁଗର ଏକ ବିଚିତ୍ର ବ୍ୟାପାର । ତାଙ୍କର ଜନ୍ମଗ୍ରହଣ, ରାଜ୍ୟଲାଭ ଓ ରାଜ ଜୀବନଯାପନ ଗଡ଼ ଭାଗ୍ୟରେ ସୌଭାଗ୍ୟ । କାରଣ ସେ ଗଡ଼ର ନିତ୍ୟ ଜୀବନ ଯାପନର ସମଳ ସ୍ରୋତ ନିର୍ମଳ କରିବା ପାଇଁ, ହୀନ ବୃତ୍ତିର ଉତ୍କର୍ଷ ସାଧନ କରିବା ପାଇଁ, ପ୍ରତ୍ୟେକ ଲୋକର ଆଶା ଓ ଆକାଙ୍କ୍ଷାକୁ ଉଚ୍ଚତର ପଦବୀରେ ଉନ୍ନୀତ କରାଇବା ପାଇଁ ଯୁଗ ପ୍ରବର୍ତ୍ତକ ରୂପେ ଆବିର୍ଭୂତ ହୋଇଥିଲେ ।

ତାଙ୍କ ସମାଜ ସଂସ୍କାରର ଶାଣିତ ତରବାରୀ, ସେ ସର୍ବାଗ୍ରେ ଆପଣା ପ୍ରତି ପ୍ରୟୋଗ କରିଥିଲେ, କାରଣ ତାହା ଭିନ୍ନ ରାଜା କୁହ, ଆଉ ପ୍ରଜା କୁହ, ମନୁଷ୍ୟ ଜୀବନର କେବେହେଲେ ପ୍ରତିଷ୍ଠା ଲାଭ କରିପାରେ ନାହିଁ । ବାସୁଦେବ ଆବାଲ୍ୟ ଚଞ୍ଚଳ, କର୍ମପଟୁ ଓ ସଦୁଦ୍ଦେଶ୍ୟ ପରିଚାଳିତ । ଚଞ୍ଚଳତା ବା କର୍ମ ପଟୁତାର ତାଡ଼ନାରେ କେବେହେଲେ ଅନ୍ୟାୟକୁ ପ୍ରଶ୍ରୟ ଦେଉନଥିଲେ । ବୟୋବୃଦ୍ଧି ସଂଗେ ସଂଗେ ରାଜ୍ୟଯୋଗ୍ୟ ଉଚ୍ଚଭାବ ସକଳ ତାଙ୍କ ହୃଦୟ ମନ ଅଧିକାର କରିଥିଲା । ରାଜା ବାହାଦୁର ବ୍ରଜସୁନ୍ଦର ଦେବଙ୍କର ନିଯୁକ୍ତ ଶିକ୍ଷକ ମଣ୍ଡଳୀ, ବାସୁଦେବଙ୍କ ବିବିଧ ଶାସ୍ତ୍ରରେ, କାବ୍ୟରେ, ଅଳଂକାରରେ ଓ ସାହିତ୍ୟରେ ଅନୁରାଗୀ ଦେଖି ଯତ୍ନ ପୂର୍ବକ ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ ଥାଇ ଆନନ୍ଦ ଅନୁଭବ କରିଅଛନ୍ତି । ବାଲ୍ୟରେ ଓ ଯୌବନରେ ଏକ ଦିଗରେ ନିର୍ମଳ ପ୍ରାକୃତିକ, ଅପର ଦିଗରେ ବିଦ୍ୟାନୁରାଗ ତାହାଙ୍କୁ ତାଙ୍କର ପାର୍ଶ୍ୱବର୍ତ୍ତୀ ରାଜନ୍ୟମଣ୍ଡଳୀଙ୍କ ସମକ୍ଷରେ ଆଦର୍ଶ ନୃପତି ରୂପରେ ଗଢ଼ି ତୋଳିଥିଲା ।

ରାଜା ବାସୁଦେବଙ୍କ ଜୀବନାଭିନୟ ଆରମ୍ଭରୁ କ୍ରମୋନ୍ନତି ସଂଗେ ସଂଗେ 'ଅଖୋଇ ବାମଣ୍ଡା' ରାଜ୍ୟ ଲୋକଲୋଚନ ଗୋଚରୀଭୂତ ହୋଇ ଉଠିବାରେ ଲାଗିଲା । ଯେଉଁ ସବୁ କାରଣ ହେତୁ ବାମଣ୍ଡାରାଜ୍ୟ ଓ ରାଜା ବାସୁଦେବ ସୁଡ଼ଳଦେବ, କାଳ କ୍ଷୟ ସଂଗେ ସଂଗେ ଏକ ପକ୍ଷରେ ଇଂରେଜ ଶାସକଙ୍କ ଦରବାରରେ, ଅନ୍ୟପକ୍ଷରେ ଦେଶର ଲୋକମାନଙ୍କ ଦୃଷ୍ଟିରେ ଆଦର୍ଶ ରାଜା ରୂପେ ପରିଗୃହୀତ ହୋଇଥିଲେ, ସେଗୁଡ଼ିକ ଅଧିକାଂଶର ଆଲୋଚନା କରାଯାଇଅଛି । ତାମ୍ବୁଲ ଓ ତାମ୍ରକୂଟ ସେବନ ଭିନ୍ନ ଅନ୍ୟ କୌଣସି ରକମର ଆରାମ ସଂଭୋଗ ତାଙ୍କର ଅଭ୍ୟାସ ନଥିଲା । ମାଦକ ପର୍ଯ୍ୟାୟ ଭୁକ୍ତ ସର୍ବବିଧ ଦ୍ରବ୍ୟ ଉପରେ ତାଙ୍କର କିଭଳି ବିଜାତୀୟ ଘୃଣା ଥିଲା, ତାହା ପାଠକେ ପୂର୍ବରୁ ହିଁ ପରିଜ୍ଞାତ ହୋଇଅଛନ୍ତି । ବ୍ରାହ୍ମଣ ସମାଜର କ୍ରମୋନ୍ନତି ପାଇଁ, ସାର୍ ବାସୁଦେବ କେତେ ଅର୍ଥବ୍ୟୟ କରି ଦଶକର୍ମ ସଂପାଦନୋପଯୋଗୀ ଗ୍ରନ୍ଥ ସକଳ ପ୍ରଚାର ଓ ସେହି ସକଳ ଗ୍ରନ୍ଥରେ ବ୍ରାହ୍ମଣ ଗଣଙ୍କ ପରୀକ୍ଷା ଦାନ ବାଧ୍ୟତାମୂଳକ ରାଜାଦେଶ ଦ୍ୱାରା ନିୟମିତ


Digitized by srujanika@gmail.com

କରାଇଥିଲେ । 'ଏହି ସମସ୍ତ ପରୀକ୍ଷାରେ ବ୍ୟର୍ଥକାମ ବ୍ରାହ୍ମଣଗଣ ରାଜ୍ୟ ମଧ୍ୟରେ ଗୁରୁ ପୁରୋହିତଙ୍କ ସ୍ଥାନ ଅଧିକାର କରିପାରିବେ ନାହିଁ । ବିନା ନିମନ୍ତ୍ରଣରେ ସକଳ ଗୃହସ୍ଥଙ୍କ ଗୃହରେ ବ୍ରାହ୍ମଣ, ସମ୍ମାନରୁ ବଞ୍ଚିତ ହେବେ ।' ଏଭଳି ଆଦେଶ ପ୍ରଚାର କରି ତାହାକୁ କାର୍ଯ୍ୟରେ ପରିଣତ କରାଇବା ଉଚ୍ଚାଙ୍ଗ ରାଜଶକ୍ତି ସଂପନ୍ନ ମହାମନା ମହାପୁରୁଷଙ୍କର ପ୍ରୟୋଜନ । ବ୍ରାହ୍ମଣ ବଂଶଜ ପ୍ରତ୍ୟେକ ଗୁଣବାନ ବ୍ୟକ୍ତିଙ୍କୁ ବାହ୍ମଣ ସମ୍ମାନରେ ସମ୍ମାନିତ କରିବା, ସମାଦର କରିବା, ଉଚ୍ଚମର୍ଯ୍ୟାଦା ଦାନ କରିବା ଜାଣିଥିଲେ ଓ କରୁଥିଲେ ତେଣୁ ପରୀକ୍ଷାର ବ୍ୟବସ୍ଥା କରାଇ ବ୍ରାହ୍ମଣ ସମାଜ ସଂସ୍କାରରେ ହସ୍ତକ୍ଷେପ କରିଥିଲେ । ତାଙ୍କ ମତରେ ଏବଂ ତାଙ୍କ ଦୃଷ୍ଟିରେ ଶାସ୍ତ୍ରଜ୍ଞାନହୀନ ଅଜ୍ଞ ବ୍ରାହ୍ମଣ ବ୍ରାହ୍ମଣ ସମ୍ମାନରୁ ବଞ୍ଚିତ ହେଉଥିଲେ ।

ଏହି ସମସ୍ତ ସଂସ୍କାର ସାଧନ ସଂପୂର୍ଣ୍ଣରୂପେ ରାଜଯୋଗ୍ୟ ଅନୁଷ୍ଠାନ । ସେ ଯଦି ଆଉ କିଛି କରିପାରି ନଥାନ୍ତେ, ତାହାହେଲେ କେବଳ ଏହି ଅଳ୍ପ କେତୋଟି ଅନୁଷ୍ଠାନ ପାଇଁ ସେ ସମଗ୍ର ହିନ୍ଦୁ ଜାତିର ସ୍ମରଣୀୟ ପୁରୁଷ । ଏହି ସମସ୍ତ ସଂସ୍କାର ସାଧନ ପାଇଁ ଯଦି ଗଡ଼ଜାତର ରାଜନ୍ୟମଣ୍ଡଳରେ ଓ ଲୋକସମାଜରେ ସେ ପୁରୁଷଶ୍ରେଷ୍ଠ ବୋଲି ସମାଦୃତ ନ ହୁଅନ୍ତି, ତହିଁରେ ଦୁଃଖ ନାହିଁ, ସମଗ୍ର ଉତ୍କଳ ଦେଶରେ ଯଦି ଏହି ଉଚ୍ଚ ଆଦର୍ଶରେ ଗଠିତ ମହାନାମା ରାଜପୁରୁଷଙ୍କ ଉପଯୁକ୍ତ ସମାଦର କରିବା ପାଇଁ ଅଗ୍ରସର ନ ହୁଅନ୍ତି, ତାହାହେଲେ ଗଡ଼ଜାତ ଓ ଉତ୍କଳର ଦୁରଦୃଷ୍ଟ ବୋଲି ସ୍ୱୀକାର କରିବାକୁ ହେବ । କିନ୍ତୁ ଏହି ସମସ୍ତ ସଂସ୍କାର ସାଧନ ପାଇଁ, ତାଙ୍କର ପ୍ରାଣପଣ ଚେଷ୍ଟାର ଉପଯୁକ୍ତ ମର୍ଯ୍ୟାଦା ବଙ୍ଗରେ ଏବଂ ଅନ୍ୟାନ୍ୟ ଦେଶରେ ଅବଶ୍ୟ ହିଁ ସ୍ୱୀକୃତ ହେବ, ସମାଦୃତ ହେବ ଓ ପୂଜିତ ହେବ । ଏହି କଥା ହିଁ ସାର କଥା ଯେ, ହିନ୍ଦୁ ରାଜାଙ୍କ ପକ୍ଷରେ ଯାହା ସର୍ବାଗ୍ରେ କର୍ତ୍ତବ୍ୟ, ହିନ୍ଦୁ ରାଜା ବୋଲି ନିଜ ରାଜ୍ୟ ମଧ୍ୟରେ ସେ ସର୍ବାଗ୍ରେ ସେହି ସବୁ ଅବଶ୍ୟ କରବ୍ୟ କର୍ମଗୁଡ଼ିକ ସଂପାଦନରେ ସିଦ୍ଧିଲାଭ କରିଥିଲେ । ଏହା ହିଁ ହିନ୍ଦୁରାଜାଙ୍କ ପକ୍ଷରେ ସର୍ବଶ୍ରେଷ୍ଠ ଗୌରବର କଥା ।

ସଂସ୍କୃତ ଓ ଜାତୀୟ ସାହିତ୍ୟରେ, କାବ୍ୟ ଓ ଅଳଂକାରରେ, ସର୍ବୋପରି ଦେଶର ଧର୍ମଶାସ୍ତ୍ର ଗୁଡ଼ିକରେ ଗଭୀର ଜ୍ଞାନ ଏବଂ ସେଥିପାଇଁ ସେଗୁଡ଼ିକ ଉପରେ ସଂପୂର୍ଣ୍ଣ ରୂପେ ଶ୍ରଦ୍ଧା ସଂପନ୍ନ ଓ ଆସ୍ଥାବାନ ହୋଇ ସମାଜ ସମ୍ବନ୍ଧରେ, ସମାଜ ଧର୍ମ ସମ୍ବନ୍ଧରେ ଓ ବ୍ୟକ୍ତିଗତ ଧର୍ମ ଜୀବନ ସମ୍ବନ୍ଧରେ ସେ ଅତ୍ୟନ୍ତ ଉଦାର ପ୍ରକୃତି ବିଶିଷ୍ଟ ବ୍ୟକ୍ତି ଥିଲେ । ଯିଏ ଯେଉଁ ଧର୍ମ ପାଳନ ଓ ସ୍ୱୀକାର କରନ୍ତି, ତାଙ୍କ ଦୃଷ୍ଟିରେ ତାହାଙ୍କ ପକ୍ଷେ କଲ୍ୟାଣକର ବୋଲି ସେ ଅନୁଭବ କରୁଥିଲେ । ତାଙ୍କ ଦୃଷ୍ଟିରେ 'ପରଧର୍ମ ଭୟାବହ' ନୀତିହିଁ ସମସ୍ତଙ୍କ


Digitized by srujanika@gmail.com

ପକ୍ଷରେ ପ୍ରୟୋଗ ଯୋଗ୍ୟ ବୋଲି ଅଭିମତ ବ୍ୟକ୍ତ କରୁଥିଲେ । ଆପଣ କୌଣସି ଧର୍ମ ସଂପ୍ରଦାୟ ବା କୌଣସି ଭିନ୍ନତର ଧର୍ମାନୁଷ୍ଠାନକୁ ହୀନଚକ୍ଷୁରେ ଦେଖୁ ନଥିଲେ । ତେଣୁ ସେ ମୁସଲମାନ ପ୍ରଜାମାନଙ୍କ ପାଇଁ ରାଜବ୍ୟୟରେ ମସଜିଦ୍ ନିର୍ମାଣ କରାଇ ଦେଇଥିଲେ । ସେ କଟକରେ ଖ୍ରୀଷ୍ଟୀୟ ଉପାସନା ମନ୍ଦିରରେ ଉପସ୍ଥିତ ହେବାପାଇଁ କୁଣ୍ଠାବୋଧ କରି ନାହାନ୍ତି; କଟକ ଯାତ୍ରାକାଳରେ ବାଲେଶ୍ୱରର ବ୍ରହ୍ମମନ୍ଦିର ନିର୍ମାଣ କାର୍ଯ୍ୟରେ ସାହାଯ୍ୟ ଦାନ କରି ଆନନ୍ଦ ଅନୁଭବ କରିଥିଲେ ଏବଂ କଟକର ମଧୁବାବୁ ପ୍ରମୁଖ ବ୍ରାହ୍ମଦଳ ବାମଣ୍ଡାରେ ଉପସ୍ଥିତ ହେଲେ, ବିଦ୍ୟାଳୟ ଗୃହରେ ବ୍ରହ୍ମୋପାସନାର ଅନୁଷ୍ଠାନରେ ସ୍ୱୟଂ ଉପସ୍ଥିତ ହୋଇ ଭଗବାନଙ୍କର ଗୁଣକୀର୍ତ୍ତନରେ ଯୋଗ ଦେଉଥିଲେ । ସଂପୂର୍ଣ୍ଣ ରୂପେ ପ୍ରାଚୀନତନ୍ତ୍ରର ଲୋକ ହୋଇମଧ୍ୟ, ଆପଣାର ଜ୍ଞାନ, ବୁଦ୍ଧି ଓ ବିଶ୍ୱାସବଳରେ ସର୍ବଜନଙ୍କ ଧର୍ମକର୍ମର ଅନୁଷ୍ଠାନରେ ତାଙ୍କ ଇଷ୍ଟଦେବତା ନାରାୟଣଙ୍କ ଆବିର୍ଭାବ ଅନୁଭବ କରି ଆନନ୍ଦିତ ହେଉଥିଲେ । ସେହି ଦେବତାଙ୍କ ମାହାତ୍ମ୍ୟରେ ତାଙ୍କ ଆସ୍ଥା ଦିନୁଦିନ ଗଭୀରତର ଓ ଘନତର ହେଉଥିଲା । ତାଙ୍କ ହୃଦୟ ଉଦାରତାର ବଶବର୍ତ୍ତୀ ହୋଇ ସେ ସର୍ବବିଧ ଧର୍ମାନୁଷ୍ଠାନ ସହ ସମଗ୍ର ବସୁଧାକୁ ଆତ୍ମୀୟଙ୍କର ଆବାସଭୂମି ବୋଲି ଅନୁଭବ କରୁଥିଲେ । ସମାଜ ସଂସ୍କାରର ଶାଣିତ ତରବାରୀ ସର୍ବାଗ୍ରେ ନିଜ ପ୍ରତି ପ୍ରଯୁକ୍ତ କରି ଆପଣାକୁ ପାଶମୁକ୍ତ କରିଥିଲେ, ତେଣୁ ନାନାବିଧ ପରିବର୍ତ୍ତନରେ ହସ୍ତକ୍ଷେପ କରିବାରେ ଏବଂ ସେଥିରେ କୃତଜ୍ଞତା ହେବାରେ ସକ୍ଷମ ହୋଇପାରିଥିଲେ । ସେହି ବିବରଣୀ ମଧ୍ୟ ପୂର୍ବେ ପ୍ରସଙ୍ଗ କ୍ରମେ ଆଲୋଚିତ ହୋଇଅଛି ।

ଗଡ଼ଜାତର କ୍ଷତ୍ରିୟ ଗୃହେ କନ୍ୟାଗଣଙ୍କ ବିବାହର ବୟସ ବୃଦ୍ଧି କରିବା ପାଇଁ ରାଜା ବାହାଦୂରଙ୍କୁ ସାକ୍ଷାତଭାବରେ ବିଶେଷ କିଛି କରିବାକୁ ପଡ଼ିନାହିଁ । କାରଣ ଏହି ସମସ୍ତ ରାଜ ପରିବାର ଉପରେ ବଙ୍ଗର ଶେଷ ସ୍ମାର୍ତ୍ତ ବ୍ୟବସ୍ଥାକାର ରଘୁନନ୍ଦନଙ୍କର ବିଧିନିଷେଧ ପ୍ରସାର ଲାଭ କରିନାହିଁ । ସେହି 'ଅଷ୍ଟବର୍ଷା ଭବେତ୍ ଗୌରୀ ନବବର୍ଷା ତୁ ରୋହିଣୀ' ଇତ୍ୟାଦି ଶାସ୍ତ୍ରବାକ୍ୟ ଶାସନଦଣ୍ଡ ପରିଚାଳନ କରି ନ ପାରିବା ହେତୁ ଓଡ଼ିଶାର ରାଜପରିବାର ଗୁଡ଼ିକରେ ଓ ତତ୍ ସଂସୃଷ୍ଟ ଜନଗଣଙ୍କ ଗୃହରେ ବିବାହକାଳ ସମ୍ବନ୍ଧରେ ଅତି ପ୍ରାଚୀନ ରୀତି ପ୍ରଚଳିତ ରହିଅଛି । ଏହି ସମସ୍ତ ରାଜସଂସାରରେ କନ୍ୟାମାନେ ବୟଃପ୍ରାପ୍ତ ହୋଇ ମଧ୍ୟ ଅବିବାହିତାବସ୍ଥାରେ ପିତୃଗୃହରେ ଅବସ୍ଥାନ କରିଥାନ୍ତି । କିନ୍ତୁ ଗଡ଼ଜାତର ସର୍ବତ୍ର ଏହି ସମସ୍ତ କନ୍ୟାଗଣଙ୍କ ବିଦ୍ୟାଶିକ୍ଷା ପାଇଁ ବିଶିଷ୍ଟ ରୂପେ ସୁବ୍ୟବସ୍ଥା ନଥିଲା । କୌଣସିଠାରେ ସାମାନ୍ୟ କିଛି ଅଛି । କୌଣସିଠାରେ ଆଦୌ କିଛି ନାହିଁ । ଶିକ୍ଷାଦାନର ସୁବ୍ୟବସ୍ଥା କରିବା ପକ୍ଷରେ ଅନ୍ତରାୟ ମଧ୍ୟ ଅନେକ ଥିଲା ଏବଂ ବର୍ତ୍ତମାନ



Digitized by srujanika@gmail.com

ମଧ୍ୟ ରହିଅଛି । ରାଜା ସାର୍ ବାସୁଦେବ ସୁଢ଼ଳଦେବ ବାମଣ୍ଡା ରାଜସଂସାରରେ କୁମାରୀଗଣଙ୍କ ବୟଃବୃଦ୍ଧି ସଂଗେ ସଂଗେ ଉତ୍କୃଷ୍ଟ ରୂପେ ଶିକ୍ଷାଦାନ ବ୍ୟବସ୍ଥା କରିଥିଲେ । ଓଡ଼ିଆ, ବଙ୍ଗଳା ଓ ସଂସ୍କୃତ ଭାଷାରେ ଶିକ୍ଷାଦାନ ହେଉଥିଲା । ବର୍ତ୍ତମାନ ମଧ୍ୟ ସେହି ବ୍ୟବସ୍ଥା ରହିଅଛି । କୌଣସି କୌଣସି ରାଜକୁମାରୀଙ୍କୁ ସ୍ୱର୍ଗୀୟ ରାଜାବାହାଦୁର ଇଂରାଜୀ ଶିକ୍ଷାଦାନ ବ୍ୟବସ୍ଥା ମଧ୍ୟ କରିଥିଲେ । ବାମଣ୍ଡାର ବର୍ତ୍ତମାନର ରାଜା ବାହାଦୁର ରାଜକୁମାରୀଙ୍କୁ ଏହି ସମସ୍ତ ଶିକ୍ଷାଦାନ ସଂଗେ ସଂଗେ ଇଂରାଜୀ ଶିକ୍ଷାଦାନର ମଧ୍ୟ ସୁବ୍ୟବସ୍ଥା କରିବା ପାଇଁ ବିଶେଷ ଚେଷ୍ଟା କରୁଅଛନ୍ତି ।

ରାଜ୍ୟର ନାନା ସ୍ଥାନରେ ପ୍ରତିଷ୍ଠିତ ନିମ୍ନ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଗୁଡ଼ିକରେ ରାଜଦେଶରେ ବାଳକବାଳିକା ଏକତ୍ର ବିଦ୍ୟାଶିକ୍ଷା କରିଥାନ୍ତି । ଏଠାରେ ବାଧ୍ୟତାମୂଳକ ଶିକ୍ଷାପଦ୍ଧତି ପ୍ରଚଳିତ । ଏକ ନିର୍ଦ୍ଦିଷ୍ଟ ବୟସ ହେବାମାତ୍ରେ ବାଳକ ବାଳିକାମାନଙ୍କୁ ରାଜବ୍ୟୟରେ ବିଦ୍ୟାଳୟକୁ ପ୍ରେରଣ କରିବାକୁ ହେବ । ଏହିପରି ବ୍ୟବସ୍ଥା ପ୍ରଚଳିତ ଅଛି ବୋଲି ଗଡ଼ର ଅନ୍ୟାନ୍ୟ ସ୍ଥାନ ତୁଳନାରେ ବାମଣ୍ଡାରେ ବାଳିକାମାନଙ୍କ ପ୍ରାଥମିକ ଶିକ୍ଷାର ବିସ୍ତୃତି ଅନେକ ଅଧିକ । ସ୍ତ୍ରୀ ଶିକ୍ଷା ସୁପ୍ରଚାର ସମ୍ବନ୍ଧରେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଯେଉଁଳି ଆଗ୍ରହ ଥିଲା, ତାହାଙ୍କ ପୂର୍ବ କଥିତ ଏକ ଉକ୍ତି ଦ୍ୱାରା ତାହା ବିଶଦ ଭାବରେ ବ୍ୟକ୍ତ ହୋଇଥିଲା । ତାହାହେଉଛି- 'କୌଣସି କାର୍ଯ୍ୟ ଜନସାଧାରଣଙ୍କ ମଧ୍ୟରେ ପ୍ରଚାର କରିବାକୁ ହେଲେ, କେବଳ ମୁଖର କଥାରେ ହୁଏ ନାହିଁ, ସେହି କାର୍ଯ୍ୟ ନିଜେ କରି ଅନ୍ୟକୁ ଶିକ୍ଷା ଦେବା ଏବଂ ତାହାଫଳରେ ସମସ୍ତଙ୍କୁ ଆକୃଷ୍ଟ କରିବାକୁ ପଡିଥାଏ ।

ରଘୁନନ୍ଦନଙ୍କ ବ୍ୟବସ୍ଥାସୂତ୍ରେ ବଙ୍ଗର ଗୃହେ ଗୃହେ, କି ଧନୀ କି ଦରିଦ୍ର, ଆପାମର ସାଧାରଣ ସମସ୍ତଙ୍କ ଗୃହରେ କନ୍ୟାମାନଙ୍କ ବିବାହ କାଳ ଆଠ ଓ ନଅ ବର୍ଷ ବୟସରେ ହିଁ ସୀମାବଦ୍ଧ ହୋଇଥିଲା । ଆର୍ୟ୍ୟୁବେଦର ବ୍ୟବସ୍ଥା-ଚରକଙ୍କ ନିର୍ଦ୍ଦେଶ ଅତିକ୍ରମ କରି ବଙ୍ଗାଳୀ ଜାତି କ୍ରମେ ଅତ୍ୟଳ୍ପ ବୟସରେ ବାଳିକାମାନଙ୍କୁ ପାତ୍ରସ୍ଥ କରିବାକୁ ଆରମ୍ଭ କରନ୍ତି । ପ୍ରାଚୀନ ପଦ୍ଧତିର ଏଭଳି ପରିବର୍ତ୍ତନ ଯେ ବଙ୍ଗରେ ହିଁ ଆବଦ୍ଧ ହୋଇ ରହିଅଛି, ତାହା ବୋଧହୁଏ ନାହିଁ । ଯେଉଁ କାରଣରେ ସ୍ମାର୍ତ୍ତ ରଘୁନନ୍ଦନ ସମାଜ ରକ୍ଷାପାଇଁ, ଏହି ବ୍ୟବସ୍ଥାର ଆଶ୍ରୟ ଗ୍ରହଣ କରିଥିଲେ । ବଙ୍ଗ ବାହାରେ ଯେଉଁ ସମସ୍ତ ସ୍ଥାନରେ ସେହି କାରଣ ପ୍ରବଳ ଭାବରେ ବର୍ତ୍ତମାନ ଥିଲା, ବଙ୍ଗର ଦେଖାଦେଖି ସେହି ସମସ୍ତ ସ୍ଥାନରେ ଅଜ୍ଞାତସାରରେ ସ୍ମାର୍ତ୍ତ ମତ ପ୍ରତିଷ୍ଠିତ ହୋଇଅଛି । ଓଡ଼ିଶା, ବିହାର ଓ ଉତ୍ତର-ପଶ୍ଚିମ ପ୍ରଦେଶ ତାହାର ଦୃଷ୍ଟାନ୍ତ ସ୍ଥଳ । ଓଡ଼ିଶା ଓ ବିହାରରେ ମଧ୍ୟ ଜନସାଧାରଣ ଏହି ଆଠ ଓ ନଅବର୍ଷ ଏପରିକି ତାହାଠାରୁ ମଧ୍ୟ ଅଳ୍ପ ବୟସରେ କନ୍ୟାମାନଙ୍କର ବିବାହ ସଂସ୍କାର ସଂପନ୍ନ କରିବା ଆରମ୍ଭ କରିଥିଲେ ।



Digitized by srujanika@gmail.com

ଶୁଭକ୍ଷଣରେ ବଙ୍ଗରେ ଓ ସଂଗେ ସଂଗେ ଭାରତର ଅନ୍ୟ ନାନା ସ୍ଥାନରେ ଇଂରେଜ ରାଜ୍ୟ ପ୍ରତିଷ୍ଠା ଲାଭର ସୂତ୍ରପାତ ହେତୁ ଏହି ଦେଶର ସମାଜ ଜୀବନରେ ଯେଉଁ ନୂତନଚିନ୍ତାର ସ୍ରୋତ ପ୍ରବାହିତ ହୁଏ, ତାହାର ଫଳସ୍ୱରୂପ, ବଙ୍ଗରେ ବାଲ୍ୟବିବାହ କ୍ରମଶଃ ହ୍ରାସ ପାଇବା ଆରମ୍ଭ ହୋଇଛି । କିନ୍ତୁ ଓଡ଼ିଶା ପ୍ରଭୃତି ଅପେକ୍ଷାକୃତ ଦୂରବର୍ତ୍ତୀ ଓ ଅନୁନ୍ନତ ସ୍ଥାନରେ ସମାଜଜୀବନ ବର୍ତ୍ତମାନ ସୁଦ୍ଧା ସେହି ପୂର୍ବ ବ୍ୟବସ୍ଥାର ଦୃଢ଼ ନିଗଡ଼ରେ ଆବଦ୍ଧ । ରାଜା ସାର୍ ବାସୁଦେବ ସୁଢ଼ଳଦେବ ନିଜରାଜ୍ୟ ମଧ୍ୟରେ ଏହି ବାଲ୍ୟ ବିବାହ ନିବାରଣ କରିବା ମାନସରେ ବ୍ରାହ୍ମଣଙ୍କଠାରୁ ଆରମ୍ଭ କରି ଭିନ୍ନ ଭିନ୍ନ ଜାତିର ସଭା ସମିତିର ଅନୁଷ୍ଠାନ ଦ୍ୱାରା ସର୍ବାଗ୍ରେ ପ୍ରଜାମାନଙ୍କୁ ଏହି କୁପ୍ରଥାର ବିଷମୟ ଫଳ ବୁଝାଇବାରେ ଲାଗିଲେ । କିଛି କାଳ ଏହିପରି ବହୁ ଜାତିର ବହୁ ସଂପ୍ରଦାୟର ସଭାରେ ବୁଝାଇ ବାଳିକାମାନଙ୍କର ବିବାହର ବୟସ ବୃଦ୍ଧି କରିବାପାଇଁ ଚେଷ୍ଟା କରନ୍ତି । ଏହି ସମୟରେ ମାନ୍ଦ୍ରାଜ ଅନ୍ତର୍ଗତ ଖଲ୍ଲିକୋଟ-ଆଠଗଡ଼ର ରାଜା ବାହାଦୁର ନିଜ ରାଜ୍ୟ ମଧ୍ୟରେ ବାଲ୍ୟବିବାହ ରହିତ କରିବା ପାଇଁ ବିଧିମତେ ଚେଷ୍ଟା କରୁଅଛନ୍ତି ଶୁଣି, ରାଜା ସାର୍ ବାସୁଦେବ ସୁଢ଼ଳଦେବ ଗଭୀର ଆନନ୍ଦ ପ୍ରକାଶ କରିଥିଲେ ଏବଂ ଆଠଗଡ଼ ରାଜା ବାହାଦୁରଙ୍କୁ ହୃଦୟର ଆନନ୍ଦ ଜଣାଇ, ନିଜ ରାଜ୍ୟରେ ମଧ୍ୟ ନୂତନ ଉତ୍ସାହ ସହକାରେ ବାଲ୍ୟବିବାହ ରହିତ କରିବା ଚେଷ୍ଟା କରିବାରେ ଲାଗିଲେ । ପରେ ଏକ ରାଜାଦେଶ ପ୍ରଚାର ଦ୍ୱାରା ଦ୍ୱାଦଶ ବର୍ଷରୁ ନ୍ୟୁନ ବୟସ ବାଳିକା ବିବାହ ଏକାବେଳକେ ନିଷିଦ୍ଧ ବୋଲି ପ୍ରଚାର କରାଇ ଦିଅନ୍ତି । ସେହି ଆଦେଶ ପ୍ରଚାରରେ ସେ କଠୋର ନୀତିର ଆଶ୍ରୟ ଗ୍ରହଣ କରିନାହାନ୍ତି । ସମସ୍ତ ଜାତିର ଜନ ସାଧାରଣଙ୍କୁ ଏହି ପ୍ରଚାରିତ ଆଦେଶ ପାଳନ କରିବା ପାଇଁ ଜିଦ୍ ପରିବର୍ତ୍ତେ ଅନୁରୋଧର ଭାଷା ବ୍ୟବହାର କରିଥିଲେ । ବାରବର୍ଷରୁ ନ୍ୟୁନ ବୟସ ବାଳିକାର ବିବାହ ହେବାମାତ୍ରେ ସେହି କ୍ଷେତ୍ରରେ ନିୟମ ପାଳନ ଅନ୍ତରାୟର ଅନୁସନ୍ଧାନ କରୁଥିଲେ ଏବଂ ଯେପରି ଏଭଳି ଆଉ ନ ହୁଏ ସେହି ଚେଷ୍ଟା ମଧ୍ୟ କରୁଥିଲେ । ବର୍ତ୍ତମାନର ରାଜା ବାହାଦୁର ବାଲ୍ୟବିବାହ ନିବାରଣ କଳ୍ପେ ସ୍ୱର୍ଗୀୟ ରାଜା ବାହାଦୁରଙ୍କ ପଦାଙ୍କ ଅନୁସରଣ ପୂର୍ବକ ସ୍ୱର୍ଗୀୟ ରାଜାଙ୍କ ଆଦେଶ ରକ୍ଷାପାଇଁ ବଦ୍ଧପରିକର ।

ଓଡ଼ିଶାର ସମାଜ ଜୀବନରେ କନ୍ୟାପଣ (ଯୌତୁକ)ପ୍ରଥା ନିତ୍ୟାନ୍ତ ଅଳ୍ପ, ପ୍ରବଳ ନୁହେଁ । ତେବେ ବଙ୍ଗପ୍ରଦେଶରେ ବରପଣ ଯେଭଳି 'ମ୍ୟାକେଂଜି ଲୟାଲ'ର ନିଲାମ ଡାକ ପରି ଚଢ଼ିଯାଇଛି, ସହସ୍ର ଚେଷ୍ଟା କରି ମଧ୍ୟ ବରବଜାରରେ ଦର ଆଉ ଆଦୌ କମୁନାହିଁ, ଓଡ଼ିଶାରେ କନ୍ୟାପଣ ସେହିପରି ଭାବରେ ବୃଦ୍ଧିପ୍ରାପ୍ତ ହୋଇନାହିଁ । କିନ୍ତୁ ତଥାପି ଅଳ୍ପ ନୁହେଁ । ଶାସ୍ତ୍ରକାରଗଣ ଶୁଳ୍କବିକ୍ରୟ ମହାପାପ ବୋଲି ନର୍ଦ୍ଦେଶ କରିଅଛନ୍ତି ।



Digitized by srujanika@gmail.com

ସେହି ହିସାବରେ ବରପଣ ଓ କନ୍ୟାପଣ ଉଭୟେ ହିଁ ସମଭାବରେ ନିଷିଦ୍ଧ କର୍ମ । ମାନବ ଜୀବନ ଉପରେ ସୁଶାସନ ରକ୍ଷା ଭାର କାହାରି ଉପରେ ନ୍ୟସ୍ତ ହୋଇନାହିଁ ବୋଲି, କିପରି ସହଜ ଭାବରେ ଏହି ଉଭୟବିଧ ପ୍ରଥା ପ୍ରୟୋଜନାନୁରୂପେ, ସମାଜ ମଧ୍ୟରେ ପ୍ରଚଳିତ ହୋଇ ନିଜ ବଳରେ ପ୍ରତିଷ୍ଠିତ ହୋଇଅଛି । ସହସ୍ର ସମାଲୋଚନା, ନିନ୍ଦା ଓ ତିରସ୍କାରରେ ତାହାର ପ୍ରବଳ ସ୍ରୋତ ମନ୍ଦିଭୂତ ହେଉନାହିଁ । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହି ପ୍ରଥାର ଭୟାନକ ଶତ୍ରୁଥିଲେ । ଯେପରି ପୁତ୍ରକନ୍ୟା ବିକ୍ରୟରେ ବିବାହ ଅନୁଷ୍ଠିତ ନ ହୁଏ, ତାହା ଉପରେ ସର୍ବଦା ତୀକ୍ଷ୍ଣଦୃଷ୍ଟି ରଖୁଥିଲେ ଏବଂ ପ୍ରୟୋଜନ ହେଲେ ଶାସନ କରୁଥିଲେ ଓ ଦଣ୍ଡ ମଧ୍ୟ ଦେଉଥିଲେ ।

ଯୌତୁକ ପ୍ରଥା ପ୍ରଚଳିତ ହେବା ଯେ ଅତ୍ୟନ୍ତ ଅନ୍ୟାୟ କାର୍ଯ୍ୟ, ପ୍ରଜାମାନଙ୍କୁ ତାହା ପ୍ରଥମେ ପ୍ରଥମେ ବୁଝାଇବାର ଚେଷ୍ଟା କରନ୍ତି । ବୁଝିସାରି ମଧ୍ୟ ଯେତେବେଳେ ଅନେକ ବ୍ୟକ୍ତି ଏହା ହାତରୁ ଅବ୍ୟାହତି ଲାଭରେ ନିଚେଷ୍ଟ ରହୁଥିଲେ, ସେତେବେଳେ ଏଭଳି ଘଟଣା କର୍ଣ୍ଣଗୋଚର ହେବାମାତ୍ରେ, ବର ଓ କନ୍ୟାପକ୍ଷଙ୍କୁ ଡ଼କାଇ ଏଭଳି କାର୍ଯ୍ୟରୁ ବିରତ ହେବାପାଇଁ ପରାମର୍ଶ ଦେଉଥିଲେ । ଏକଦା ଜଣେ ଅଧିକ ବୟସ୍କ ବ୍ୟକ୍ତି ବହୁ ଅର୍ଥ ପଣ ଦେଇ ଏକ କନ୍ୟା କ୍ରୟ କରି ବିବାହ କରିବାରେ ଉଦ୍ୟତ, ଠିକ୍ ଏହି ସମୟରେ ସ୍ୱର୍ଗୀୟ ରାଜା ବାହାଦୁର କନ୍ୟା ପିତା ଓ ବରକୁ ଡକାଇ ଅନେକ ବୁଝାଇଥିଲେ, ତହିଁରେ ଫଳୋଦୟର ସଂଭାବନା ଅଳ୍ପ ବୋଲି ଅନୁଭବ କରି ଏଭଳି ବିବାହ ଆଦୌ ହୋଇପାରିବ ନାହିଁ ବୋଲି ଆଦେଶ ଦେଲେ । ପ୍ରଜାଙ୍କ ରକ୍ଷାପାଇଁ, ପ୍ରଜାବର୍ଗଙ୍କର ଧର୍ମ ଓ ନୀତିଜ୍ଞାନର ପରିସ୍ଫୁଟନ ପାଇଁ ରାଜ୍ୟରେ ବିଧବାଙ୍କ ସଂଖ୍ୟା ହ୍ରାସ କରିବା ପାଇଁ, ତାଙ୍କ ଦୀର୍ଘ ଜୀବନରେ ସର୍ବଦା ହିଁ ପ୍ରାଣପଣେ ଚେଷ୍ଟା କରି ପରିଣାମ ସ୍ୱରୂପ ଶତ ଶତ ଲୋକଙ୍କ ଆଶୀର୍ବାଦ ଭାଜନ ହୋଇଅଛନ୍ତି ।

ମାନବ ସଂସାରରେ ଅଧିକାଂଶ ସ୍ଥାନରେ ପିତାମାତା ଥାଇ ଓ ପିତୃମାତୃହୀନ ଅପ୍ରାପ୍ତ ବୟସ୍କ ବାଳକ ବାଳିକା ରାଜାଶ୍ରିତ । ରାଜା ରାଜ୍ୟର ପ୍ରତ୍ୟେକ ଶିଶୁଙ୍କ ରକ୍ଷଣାବେକ୍ଷଣ କରିପାରନ୍ତି ନାହିଁ ବୋଲି ପିତାମାତା ବଞ୍ଚିଥିବା ଯାଏଁ ପିତାମାତା ଅଭିଭାବକ, ଅନ୍ୟତ୍ର ନିତ୍ୟାନ୍ତ ନିକଟ ଆତ୍ମୀୟ ପିତାମାତାଙ୍କ ସ୍ଥାନ ଅଧିକାର କରନ୍ତି । କିନ୍ତୁ ଶିଶୁର ଲାଳନ ପାଳନ ଓ ରକ୍ଷଣାବେକ୍ଷଣରେ ଅଯତ୍ନ ହେଲେ, ରାଜା ତାହାର ସମ୍ବାଦ ରଖିବାରେ ବାଧ୍ୟ । ଠିକ୍ ସେହିପରି ପତି ପୁତ୍ରହୀନା ବିଧବାମାନେ ମଧ୍ୟ ରାଜାଶ୍ରିତ । ରାଜାଙ୍କର ରକ୍ଷଣାବେକ୍ଷଣରେ ସେମାନେ ନିରାପଦରେ ଜୀବନଯାତ୍ରା ନିର୍ବାହ କରିବେ, ଏହାହିଁ ରାଜବିଧି । ଏହି ରାଜବିଧି ଫଳରେ ଅପେକ୍ଷାକୃତ ଅନୁନ୍ନତ ଦେଶର ଅନୁନ୍ନତ ସମାଜରେ



Digitized by srujanika@gmail.com

ବିଧବାମାନେ ରାଜ ପରିଚାରିକା ବା ସେବିକାରେ ପରିଣତ ହୋଇଥାଆନ୍ତି । ଏଭଳି ଏହି ଦେଶରେ ଏକାବେଳକେ ବିରଳ । ଏଭଳି ମନେ କରିବାର କାରଣ ନାହିଁ, ଏହା ଭିନ୍ନ, ପତିପୁତ୍ର ଥାଇ ସୁଦ୍ଧା ଯେ ସ୍ତ୍ରୀ ଜାତି ସର୍ବତ୍ର ସମ୍ୟକ ନିରାପଦ, ଏଭଳି ମଧ୍ୟ ମନେ କରିବାର ଯଥେଷ୍ଟ କାରଣ ଅଛି ବୋଲି ମନେ ହୁଏ ନାହିଁ । ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସମ୍ବନ୍ଧରେ ଯେତେ କିଛି ଉତ୍ତମତର ଆଲୋଚନା କରା ହୋଇଅଛି, ସେ ସମସ୍ତର ମୂଲ୍ୟ ଓ ମର୍ଯ୍ୟାଦା ଶତଗୁଣରେ ବର୍ଦ୍ଧିତ ହୋଇଅଛି, ତାଙ୍କ ରାଜ୍ୟରେ ନାରୀ ଧର୍ମରକ୍ଷା ବିଷୟକ ଯତ୍ନ ଚେଷ୍ଟା ଭିତରେ । ସେ ଦୃଢ଼ଭାବରେ ଆତ୍ମରକ୍ଷା କରି ଯେପରି ଏକ ପକ୍ଷରେ ରାଜ୍ୟର ନାରୀଧର୍ମ ରକ୍ଷା କରି ଉଚ୍ଚ ରାଜଧର୍ମର ପରିଚୟ ଦେଇ ସ୍ୱର୍ଗାରୋହଣ କରିଅଛନ୍ତି, ଅପର ପକ୍ଷରେ ନିଜ ପୁତ୍ରମାନଙ୍କ ସମକ୍ଷରେ ଅତ୍ୟୁଚ୍ଚ ରାଜାଦର୍ଶର ନିର୍ମଳ ଓ ପବିତ୍ର ଛବି ଅଙ୍କିତ କରି ବିଦାୟ ଗ୍ରହଣ କରିଅଛନ୍ତି । ମାନବ ସଂସାରରେ ପୁତ୍ର ପିତା ପ୍ରତି ଯଦି କେଉଁଠାରେ ଅକପଟରେ କହିପାରେ–

"ପିତା ଧର୍ମଃ ପିତା ସ୍ୱର୍ଗଃ ପିତା ହିଁ ପରମନ୍ତପଃ
ପିତରି ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବଦେବତାଃ ।"

. ବାମଣ୍ଡାର ବର୍ତ୍ତମାନ ରାଜଶ୍ରୀ ସଂପନ୍ନ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ବାହାଦୁର ଓ ତଦୀୟ ଭ୍ରାତୃଗଣ, ପିତୃମୂର୍ତ୍ତି ସମକ୍ଷରେ ଦଣ୍ଡାୟମାନ ହୋଇ ଅସଂକୋଚରେ ଏବଂ ଅକପଟ ହୃଦୟରେ-ଭକ୍ତିଭରେ-ଗଦ୍‌ଗଦ୍ ସ୍ୱରରେ ପିତାଙ୍କ ଉଦ୍ଦେଶ୍ୟରେ ଏହି ଶ୍ଳୋକ ଆବୃତ୍ତି କରି, ଏହାର ତାତ୍ପର୍ଯ୍ୟ ହୃଦୟଙ୍ଗମ ଓ ସଂଭୋଗ କରି ଧନ୍ୟ ହୋଇଛନ୍ତି; ସେହି ବିଷୟରେ ସନ୍ଦେହ ଅଛି ବୋଲି ମନେହୁଏ ନାହିଁ । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହିପରି ଉଚ୍ଚ ଆଦର୍ଶ ପରିପୂରଣ ପାଇଁ ଅରଣ୍ୟବେଷ୍ଟିତ ବନ୍ୟ ଜୀବନର ମଧ୍ୟସ୍ଥଳରେ ଏକ ବିରାଟ ରାଜାଦର୍ଶ ପ୍ରତିଷ୍ଠା କରି ଯାଇଅଛନ୍ତି । ଆଶାହୁଏ କାଳ କ୍ଷୟର ସଂଗେ ସଂଗେ ସେହି ମହାଶୟ ରାଜପୁରୁଷଙ୍କ ସୌରଭପୂର୍ଣ୍ଣ ଜୀବନପୁଷ୍ପର ସମାଦର ବୃଦ୍ଧିପ୍ରାପ୍ତ ହୋଇ ଚାଲିଥିବ । ସାବଧାନରେ ସୁରକ୍ଷିତ ମୃଗନାଭି ସୌରଭ କୌଣସି କାଳରେ କୋଣସି ଦିନ ମ୍ଳାନ ହୋଇନାହିଁ, କେବଳ ତାହା ନୁହେଁ, ଯେତେ ଯେତେ ଦିନ ଅତିକ୍ରାନ୍ତ ହେଉଅଛି, ସେତେ ସେତେ ସେହି ଅପୂର୍ବ ଚରିତ୍ରର ମାଧୁରୀ ଆହୁରି ଅଧିକତର ଉଜ୍ଜ୍ୱଳ ହୋଇ ପ୍ରବଳଭାବେ ମାନବ ହୃଦୟ ଅଧିକାର କରୁଅଛି । ଠିକ୍ ସେହିପରି ବାମଣ୍ଡା ଅରଣ୍ୟ ମଧ୍ୟରେ ପ୍ରସ୍ଫୁଟିତ ଏହି ରାଜ ଜୀବନର ଇତିବୃତ୍ତ, ଦୀର୍ଘ-ଅତି ଦୀର୍ଘ ଭବିଷ୍ୟତରେ ପୂଜାର ବସ୍ତୁ ହୋଇ ଦେବ ଚରିତ୍ରର ସୌରଭ ବିସ୍ତାର କରିବ ।



Digitized by srujanika@gmail.com

ଅନ୍ୟ ବହୁ ବହୁ ବିଷୟରେ ଯେପରି ସମାଜ ସଂସ୍କାର କ୍ଷେତ୍ରରେ କୃତକାର୍ଯ୍ୟ ହେବାପାଇଁ ହେଲେ ତଦପେକ୍ଷା ଶତଗୁଣରେ ଅଧିକ ଶକ୍ତି ସାମର୍ଥ୍ୟର ପ୍ରୟୋଜନ । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଆଦର୍ଶବାଦ ଓ ପ୍ରଜାସୁହୃଦ ନରେଶ୍ୱର । ସେ ଯେଉଁ ସମସ୍ତ ସଂସ୍କାର କାର୍ଯ୍ୟର ସୂଚନା କରିଯାଇଅଛନ୍ତି, ତାଙ୍କର ସେହି ଆର୍‌ବ୍‌ଧ କାର୍ଯ୍ୟର ଉତ୍ତମତର ପରିସ୍ଫୁଟନ ଓ ପରିସମାପ୍ତିର ଭାର ତାଙ୍କର ପୁତ୍ର ଓ ପୌତ୍ରଗଣଙ୍କ ହସ୍ତରେ ଅର୍ପିତ । ରାଜ୍ୟଭାର ଅର୍ପଣ ସଂଗେ ସଂଗେ ରାଜପିତା, ପୁତ୍ର ବର୍ତ୍ତମାନର ରାଜା ବାହାଦୁରଙ୍କୁ ଏବଂ ପୌତ୍ର ବର୍ତ୍ତମାନର ଯୁବରାଜ ଶ୍ରୀମାନ ଦିବ୍ୟଶଙ୍କର ବାହାଦୁରଙ୍କୁ ବାମଣ୍ଡା, ଗୌରବ ରକ୍ଷା ଓ ବର୍ଦ୍ଧନର ଏକ ଅଲିଖିତ ଅର୍ପଣ ପତ୍ର ପ୍ରଦାନ କରି ଯାଇଅଛନ୍ତି । ସେହି ଅର୍ପଣ ପତ୍ରରେ ହିଁ ବାମଣ୍ଡାର ସର୍ବବିଧ ମଙ୍ଗଳର ରାଜକୀୟ ସ୍ଥାୟୀ ନୂତନ ପଂଜିକା । ଏହି ପଞ୍ଜିକା କୌଣସି ଦିନ ପୁରାତନ ପଞ୍ଜିକାରେ ପରିଣତ ହେବନାହିଁ । ବର୍ତ୍ତମାନର ରାଜା  ବାହାଦୁର ଓ ତଦୀୟ ଗୁଣବାନ  ସୁଶିକ୍ଷିତ ଜ୍ୟେଷ୍ଠପୁତ୍ର ଯୁବରାଜ ପ୍ରୟୋଜନ ହେବା ମାତ୍ରେ, ସେହି ପଞ୍ଜିକାରେ ଦୃଷ୍ଟିପାତ ମାତ୍ରେ ପ୍ରଜାସାଧାରଣଙ୍କର ସର୍ବାଙ୍ଗୀନ କଲ୍ୟାଣ ସାଧନର ଗୁପ୍ତମନ୍ତ୍ର ଲାଭ କରିବେ । ପୁତ୍ରଗଣଙ୍କ କର୍ତ୍ତୃକ ପ୍ରତିଷ୍ଠିତ ମର୍ମର ନିର୍ମିତ ରାଜମୂର୍ତ୍ତି ଦେବଗଡ଼ର ଦ୍ୱାର ଦେଶରେ କେବଳ ଶୋଭାର ବସ୍ତୁ ନୁହେଁ, ସେହି ବୀରତ୍ୱ ବ୍ୟଞ୍ଜକ ମୂର୍ତ୍ତି ନିୟତ ହିଁ ରାଜ୍ୟର କଲ୍ୟାଣ ସାଧନୋପଯୋଗୀ ଉପାୟ୍ ପଦ୍ଧତିଗୁଡ଼ିକର ଇଙ୍ଗିତ କରୁଅଛନ୍ତି । ଦୃଷ୍ଟି ଥିଲେ, ଦେଖିହେବ ଏବଂ ହୃଦୟ ଥିଲେ, ଅନୁଭବ କରିହେବ ତାହାଙ୍କ ପ୍ରଦର୍ଶିତ ପଥରେ ଚାଲିଛି, ବାମଣ୍ଡା । ଏହାର ପାର୍ଶ୍ୱବର୍ତ୍ତୀ ସମସ୍ତ ରାଜ୍ୟ ଓ ସମଗ୍ର ଦେଶର ପ୍ରଭୂତ କଲ୍ୟାଣ ସାଧିତ ସଂଗେ ସଂଗେ ବର୍ତ୍ତମାନର ରାଜାବାହାଦୁର ଓ ଯୁବରାଜ ବାହାଦୁର ପିତୃପୁଣ୍ୟରେ ଗୌରବାନ୍ୱିତ ଓ ଧନ୍ୟ ହୋଇଛନ୍ତି ।





Digitized by srujanika@gmail.com

## ଷୋଡ଼ଶ ଅଧ୍ୟାୟ

# ବିବିଧ ବିଷୟ

ବାମଣ୍ଡା ରାଜ୍ୟ ସୃଷ୍ଟି କାଳଠାରୁ 'ଶଙ୍ଖ' ରାଜାମାନଙ୍କ ପରିଚାୟକ ଚିହ୍ନ ବା ନିଦର୍ଶନ ରୂପେ ପରିଗୃହୀତ । ହିନ୍ଦୁ ଗୃହର ସର୍ବବିଧ ମଙ୍ଗଳାନୁଷ୍ଠାନରେ ଶଙ୍ଖ ଶୁଭ ଚିହ୍ନ ବୋଲି ବାମଣ୍ଡା ଏହି ଶଙ୍ଖକୁ ରାଜ୍ୟର ମଙ୍ଗଳ ଚିହ୍ନ ରୂପେ ବ୍ୟବହାର କରିଆସୁଅଛି । ପ୍ରଧାନପାଟ ପ୍ରପାତ ନିକଟସ୍ଥ ପର୍ବତୋପରି ନିର୍ମିତ ବସନ୍ତ ନିବାସତ୍ରୟର ଅନ୍ୟତମ ସିଂହ ଦ୍ୱାର ଉପରେ ଏକ ସୁବୃହତ୍ କୃତ୍ରିମ ପ୍ରତିଷ୍ଠାନ ହୋଇ ବାମଣ୍ଡାରେ ଶଙ୍ଖର ବିଶେଷତ୍ୱ ପ୍ରଚାର କରୁଅଛି ।

ବିଧାତାଙ୍କ ଆଶୀର୍ବାଦରେ ବାମଣ୍ଡା ରାଜ୍ୟ ଧନଧାନ୍ୟେ ପୂର୍ଣ୍ଣ ହୋଇ ରାଜ୍ୟର ମଙ୍ଗଳ ଓ ପ୍ରଜାସାଧାରଣଙ୍କର ସୁଖଶାନ୍ତି ବୃଦ୍ଧି କରୁଅଛି । ସୁଶାସନ ଓ ସୁଶିକ୍ଷା ବାମଣ୍ଡାର ନାମାନ୍ତରରେ ପରିଣତ ହୋଇଅଛି । କଟକ କଲେଜରୁ ବିଜ୍ଞାନାଚାର୍ଯ୍ୟ ରାୟ ସାହେବ ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ରାୟ ଏମ୍.ଏ. ବିଦ୍ୟାନିଧି ମହାଶୟଙ୍କ ରଚିତ ପ୍ରବନ୍ଧରୁ ନିମ୍ନ ପ୍ରଦତ୍ତ ପ୍ରବନ୍ଧାଂଶ ଏହାର ଅତ୍ୟୁତ୍ତମ ସାକ୍ଷ୍ୟ ଦାନ କରୁଅଛି- "ସେଦିନ ଆମ୍ଭେମାନେ ଅଭିଷ୍ଟସ୍ଥାନକୁ ଯିବାର କଳ୍ପନା ତ୍ୟାଗ କଲୁ । ପ୍ରାୟ ଦଶମାଇଲ୍ ଆସିଲେ ବେହେରା ପରିବର୍ତ୍ତନର ବ୍ୟବସ୍ଥା ଥିଲା । ସେଠାକୁ ଆସୁଆସୁ ଅପରାହ୍ନ ଚାରିଟା ହେଲା । ଶରୀରର ବେଦନା, ବାହାରେ ବର୍ଷା, ପଥର କର୍ଦ୍ଦମ ଭାବି ଆମ୍ଭେମାନେ ସେହିଠାରେ କୌଣସିମତେ ରାତ୍ରିଯାପନର ସଂକଳ୍ପ କଲୁ । ସେଠାରେ ଏକ କ୍ଷୁଦ୍ର ଗ୍ରାମଥିଲା ଏବଂ ଦିବାଭାଗରେ ଆହାରାଦି ନିମିତ୍ତ ମହାରାଜଙ୍କ ଏକ କୁଟୀର ଥିଲା । ଆମ୍ଭେମାନେ ସେଠାରେ ସେହି ରାତି ରହିବୁ ଶୁଣି ଗ୍ରାମର ପ୍ରଧାନ (ଗୌନ୍ତିଆ) ରାଜଭଣ୍ଡାରରୁ ଭୋଜ୍ୟ ଆଣି ଉପସ୍ଥିତ କଲେ । ପଥର ପ୍ରତ୍ୟେକ ବିଶ୍ରାମ ସ୍ଥାନରେ ଏହିପରି ରାଜଭଣ୍ଡାର ଏବଂ ଆଗନ୍ତୁକଙ୍କ ପରିଚର୍ଯ୍ୟା ନିମିତ୍ତ ଭୃତ୍ୟ ନିଯୁକ୍ତ ରହିଛନ୍ତି । ଗଡ଼ରେ ପହଞ୍ଚିବା ପାଇଁ ଆମ୍ଭମାନଙ୍କୁ ପାଞ୍ଚଟି ସ୍ଥାନରେ ଆହାରାଦି କରିବାକୁ ପଡିଅଛି । ସବୁସ୍ଥାନରେ ରାଜଭଣ୍ଡାର ଅଛି । ବ୍ୟବସ୍ଥା ସମୀଚିନ ନୁହେଁ ?



Digitized by srujanika@gmail.com

ଯେଉଁଠାରେ ଆମ୍ଭେମାନେ ରାତ୍ରି ଯାପନ କଲୁ, ସେଠାରେ ଅବସ୍ଥାନ ନିମିତ୍ତ ଏକ କୁଟୀର ମାତ୍ର ଅଛି । ଗ୍ରାମର ପ୍ରଧାନଙ୍କ ଭିନ୍ନ ମହାରାଜଙ୍କ କୌଣସି କର୍ମଚାରୀ ରହନ୍ତି ନାହିଁ । ସୁତରାଂ ଗଡ଼ ସହିତ ଟେଲିଫୋନ୍‌ର ସଂଯୋଗ ନାହିଁ । ମହାରାଜ ଆମ୍ଭମାନଙ୍କ ଅବସ୍ଥିତି କଥା ଜାଣିପାରିଲେ ନାହିଁ । ପରଦିନ ଦଶମାଇଲ୍ ଯାଇ ଏକ ସବ୍‌ଡିଭିଜନ୍‌ରେ ଉପସ୍ଥିତ ହେବାମାତ୍ରେ, ସେ ପଥରେ ଆମ୍ଭମାନଙ୍କ କଷ୍ଟର କଥା ଶୁଣି ଦୁଃଖ ପ୍ରକାଶ କଲେ ଏବଂ ଅନ୍ୟାନ୍ୟ ସ୍ଥାନରେ କେତେବେଳେ ଉପସ୍ଥିତ ହୋଇପାରିବୁ ଏବଂ କିଭଳି ବ୍ୟବସ୍ଥା କରିଅଛନ୍ତି, ସମୁଦାୟ ଜଣାଇଲେ, ପ୍ରତ୍ୟେକ ସ୍ଥାନରେ କର୍ମଚାରୀଗଣଙ୍କୁ ଆମ୍ଭମାନଙ୍କର ବାର୍ତ୍ତା ପ୍ରେରଣ କରାଇଥିଲେ ଏବଂ ସର୍ବତ୍ର ସବିଶେଷ ସୌଜନ୍ୟ ପ୍ରକାଶ କରିଥିଲେ । ବାମଣ୍ଡାର ସୌଜନ୍ୟ ଚିରପ୍ରସିଦ୍ଧ ।

ଯେଉଁମାନେ ମନେକରନ୍ତି ଆମ୍ଭମାନଙ୍କ ଦେଶୀୟ ଶିଷ୍ଟାଚାର ଅନ୍ୟ କୌଣସି ଜାତି ଅପେକ୍ଷା ନ୍ୟୁନ, ସେମାନେ ଭ୍ରାନ୍ତ ବରଂ ପାଶ୍ଚାତ୍ୟ ଜାତିର ସଂସ୍ପର୍ଶରେ ଆସି ଆମ୍ଭେମାନେ ଆମ୍ଭମାନଙ୍କ ପ୍ରାଚୀନ ଶିଷ୍ଟାଚାର ଭୁଲିଯାଇ କିମ୍ଭୁତକିମାକାର ଜୀବରେ ପରିଣତ ହେଉଅଛୁ । ଦେଶୀୟ ସୌଜନ୍ୟରେ ଅତ୍ୟୁକ୍ତି ନାହିଁ, କିନ୍ତୁ ହୃଦୟତା ଅଛି । ଦୁଃଖର ବିଷୟ, ଚର୍ଚ୍ଚା ଓ ଆଦର୍ଶର ଅଭାବରେ ଆମ୍ଭେମାନେ ତାହା ହରାଇବାକୁ ବସିଅଛୁ ।'

ରାୟ ରାଧାନାଥ ରାୟ ବାହାଦୁର ମହୋଦୟଙ୍କର ପ୍ରଥମ ବାମଣ୍ଡାରୁ ପ୍ରତ୍ୟାବର୍ତ୍ତନ କାଳର ବିବରଣୀରୁ ଉଦ୍ଧୃତାଂଶ-

'ବିଦାୟ ହୋଇ ରାଜଧାନୀ ତ୍ୟାଗ କରିବାପରେ, ପଥରେ ବାମଣ୍ଡା ସୀମା ମଧ୍ୟରେ ଯେତେଦୂର ଯିବା ସମ୍ଭବ ହୋଇଅଛି, ସର୍ବତ୍ର ତାଙ୍କ ସୌଜନ୍ୟର ପ୍ରଭାବ ସମଗ୍ର ରାଜ୍ୟବ୍ୟାପୀ ବୋଲି ବୋଧ ହେଲା ଏବଂ ସମଗ୍ର ଜନପଦବାସୀ ସେହି ସୌଜନ୍ୟ ଦ୍ୱାରା ସଂକ୍ରମିତ ପ୍ରାୟ ବୋଧ ହୋଇଥିଲା' । ଆଉ ଏକ ସ୍ଥାନରେ ଅଛି- "ବାମଣ୍ଡାର ଆସ୍ଥାପୂର୍ଣ୍ଣ ଆଡ଼ମ୍ବର ଶୂନ୍ୟ, ସୁରଚି ସମ୍ମତ ଆତିଥେୟତା ବାମଣ୍ଡାର ପଟାନ୍ତର ମାତ୍ର । ଏହିଥର ମୋର ବାମଣ୍ଡାରେ ଅବସ୍ଥିତି ଆଶାତୀତ ଦୀର୍ଘ ହୋଇଥିଲା, ତିନି ଦିନ ରହିବାର ସଂକଳ୍ପ ଥିଲା, କିନ୍ତୁ ମହାରାଜାଙ୍କ ଇଚ୍ଛାର ବଶମ୍ବଦ ହୋଇ ସାତଦିନ ରହିଲି । ଏହିପରି ଆଉ ସାତଗୋଟି ଦିନ ସମସ୍ତ ବର୍ଷ ମଧ୍ୟରେ ମୋ ଭାଗ୍ୟରେ ଘଟିବା ଦୁଷ୍କର ।' ଆଉ ଏକ ସ୍ଥାନରେ ଅଛି- "ଦେଶର ବଡ଼ ଲୋକଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ, ନୀତି ଜଡ଼ିତ ଓ ଆଚାରାଧିଷ୍ଠିତ । ଏକ ଦେଶୀୟ ଭାବ, ଅପରବର୍ତ୍ତୀ ୟୁରୋପୀୟ ଭାବ । ଗୋଟାକରେ ଛତା ଜୋତାର ବିଭ୍ରାଟ, ଅପରଟିରେ ଚିଠି ଲେଖିବା, କାର୍ଡ଼ ପଠାଇବା । ମହାରାଜ ସୁଢ଼ଳଦେବ ଏହି ଦୁଇଶ୍ରେଣୀର ବହିର୍ଭୁତ । ସବୁ ସମୟରେ ସବୁ ଅବସ୍ଥାରେ ସୁଲଭ ଦର୍ଶନ ।'


Digitized by srujanika@gmail.com

ରାଧାନାଥବାବୁଙ୍କ ଆଲୋଚନାର ଆଉ ଏକ ସ୍ଥାନରେ ଅଛି,- 'ଜଣେ ସଙ୍ଗୀ ବନ୍ଧୁ କହିଲେ- ଶୁଣିଛନ୍ତି, କୃଷକମାନେ କେଉଁ ସମୟରେ କେଉଁ ବିଷୟରେ ଚାଷ କରିବେ, ରାଜା ସୁଡ଼ୁଳଦେବଙ୍କ ନିକଟରୁ ତାହାର ତତ୍ତ୍ୱ ଜାଣିବାପାଇଁ ଆସିଅଛନ୍ତି । ଶୁଣି ଜିଜ୍ଞାସା କଲି ଚାଷୀ ରାଜାଙ୍କ ପାଖରୁ ଚାଷର ସମୟ ଜାଣିବାପାଇଁ ଆସିଅଛନ୍ତି ? ଉତ୍ତରରେ ବନ୍ଧୁ କହିଲେ-ବହୁ ଲୋକଙ୍କର ପ୍ରତିପାଳନ ଭାର ଯାହାଙ୍କ ଉପରେ, ସେ ତ ଚାଷୀମାନଙ୍କ ମଧ୍ୟରେ ମହାଚାଷୀ, ଉପରୋକ୍ତ ଘଟଣାରୁ ଜଣାଯାଏ ଯେ ଦେଶ ଭ୍ରମଣ ଓ ଲୋକପାଳନ ସୂତ୍ରେ ବିଷୟଜ୍ଞାନ ବିଷୟରେ ରାଜା ଯେପରି ପଣ୍ଡିତ, ଶାସ୍ତ୍ରାଦି ବିଷୟରେ ମଧ୍ୟ ରାଜା ସେହିପରି ପଣ୍ଡିତ ।'

'ଉତ୍କଳ ସାହିତ୍ୟ' ସଂପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ମହାଶୟଙ୍କ ଲିଖିତ ମନ୍ତବ୍ୟରୁ ଏକସ୍ଥାନର କିୟଦଂଶ- 'ପ୍ରାତଃକାଳେ ଆହୂତ ହୋଇ ଏକାକୀ ମହାରାଜଙ୍କ ସହିତ ସାକ୍ଷାତ କରିବାପାଇଁ ଗଲି । କାର୍ଯ୍ୟ ସଂପାଦନ କରିବା ବିଷୟରେ ସୁଡ଼ୁଳଦେବ ଅକ୍ଳାନ୍ତ, ସାଧାରଣ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ସୁଦ୍ଧା ଏଭଳି ଧୈର୍ଯ୍ୟ ଓ ଶ୍ରମ ସ୍ୱୀକାର ବିରଳ । କଥା ପ୍ରସଙ୍ଗରେ ଥରେ ଆମ୍ଭମାନଙ୍କ ନିକଟରେ ପ୍ରକାଶ କରିଥିଲେ, "ନିଜେ ଯଦି ସବୁ ବିଷୟ ନ ଦେଖେ ତାହାହେଲେ, ମହାରାଜ ହୋଇ ବସି ରହିବାକୁ ହେବ' ଦୁର୍ଭାଗ୍ୟର ବିଷୟ ଦେଶୀୟ ରାଜନ୍ୟମଣ୍ଡଳୀଙ୍କ ମଧ୍ୟରେ ଅନେକେ ଏହି ମହାରାଜ ହୋଇ ନିଜର ଏବଂ ପ୍ରଜାବର୍ଗଙ୍କ ଅଶେଷ ଦୁର୍ଗତି ଘଟାଇଛନ୍ତି । ମହାରାଜଙ୍କ ସହିତ ନାନା ବିଷୟରେ କଥୋପକଥନ ହେଲା, ସାହିତ୍ୟ ବିଷୟ ପ୍ରଧାନ, ନିଜର ସ୍ୱାଧୀନ ମତ ରକ୍ଷା କରିବା ପାଇଁ ତାଙ୍କର ଯେଉଁ ଆଗ୍ରହ, ଅନ୍ୟ ବ୍ୟକ୍ତିର ସ୍ୱାଧୀନ ମତ ଉପରେ ସେହିପରି ଆଦର । ବସାକୁ ଫେରି ଆସିବା ସମୟରେ ଯୁବରାଜଙ୍କ ସହିତ ସାକ୍ଷାତ କଲି । ଯୁବରାଜ ପିତୃକୀର୍ତ୍ତି ରକ୍ଷା କରିବାପାଇଁ ବିଶେଷ ଯତ୍ନବାନ । ଉତ୍କଳ ସାହିତ୍ୟ ସଂସାରରେ ସେ ପରିଚିତ ହୋଇଅଛନ୍ତି ।'

ପଣ୍ଡିତ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି ମହାଶୟଙ୍କ ପ୍ରଦତ୍ତ ଏକ ଘଟଣା ଏହିପରି ଭାବରେ ବିବୃତ ହୋଇଅଛି- ଆଗନ୍ତୁକ ବା ଆଶ୍ରିତ ଲୋକମାନେ ନିଜ ଦୁର୍ଗ ମଧ୍ୟରେ ପୀଡ଼ିତ ହେଲେ, ସୁଡ଼ୁଳଦେବ ନିଜେ ପରିଚାରକଙ୍କ ଭଳି ପୀଡ଼ିତ ବ୍ୟକ୍ତିଙ୍କ ଶୁଶ୍ରୂଷା କରୁଥିଲେ । ଏହାର ନିଦର୍ଶନ ବାମଣ୍ଡା ପ୍ରୟାଣପର ପଣ୍ଡିତ ମଣ୍ଡଳୀ ମଧ୍ୟରେ ବହୁଜଣ ପରିଚିତ ଅଛନ୍ତି । ଏକଦା ଅତି କଠିନ ଜ୍ୱରରେ ପୀଡ଼ିତ ହୋଇ ଜନୈକ ଆଶ୍ରିତ ପଣ୍ଡିତ ନିଜ ଗୃହରେ ଦୁର୍ବିସହ ଯାତନା ଭୋଗ କରୁଛନ୍ତି, ଏତିକିବେଳେ ଦୈବାତ୍ ସୁଡ଼ୁଳଦେବ ଉପସ୍ଥିତ ହୋଇ ସ୍ୱହସ୍ତରେ ସେକ ପର୍ଯ୍ୟନ୍ତ ଦେବା ବିଷୟ ଆମ୍ଭେ ଅବଗତ ଅଛୁ । ପରେ ଚିକିତ୍ସକ ଡକାଇ ଚିକିତ୍ସାର ବନ୍ଦୋବସ୍ତ କରିଦେଇ, ଆରୋଗ୍ୟ ଲାଭ କରିବା ପର୍ଯ୍ୟନ୍ତ,



Digitized by srujanika@gmail.com

ନିଜ ଲୋକ ଭଳି ପୁନଃ ପୁନଃ ତତ୍ତ୍ୱାବଧାନ କରିଛନ୍ତି । ଏହା ତାଙ୍କର ସାଧାରଣ ବ୍ୟବସ୍ଥା ଥିଲା ।'

ରାୟ ରାଧାନାଥ ରାୟ ବାହାଦୁରଙ୍କ ମନ୍ତବ୍ୟର ଅପର ଏକ ସ୍ଥାନରୁ ଉଦ୍ଧୃତାଂଶ:- 'ପ୍ରତ୍ୟେକ ବିଭାଗର କାର୍ଯ୍ୟ ପୁଙ୍ଖାନୁପୁଙ୍ଖ ପର୍ଯ୍ୟବେକ୍ଷଣ କରି ଏକାକୀ ପଦବ୍ରଜେ ତାବତ୍ ସାଧାରଣ କାର୍ଯ୍ୟାଳୟ, ଅଶ୍ୱଶାଳା, ହସ୍ତୀଶାଳା, ସଦାବ୍ରତ ଏବଂ ଉଦ୍ୟାନାଦି ପରିଭ୍ରମଣ କରି ମଧ୍ୟ ମହାରାଜ ପ୍ରତ୍ୟହ ପ୍ରାୟ ଛଅ ସାତ ଘଣ୍ଟାକାଳ ସଂସ୍କୃତ, ଓଡ଼ିଆ ଏବଂ ବଙ୍ଗଳା ପୁସ୍ତକ ଆଲୋଚନା ଏବଂ ପଣ୍ଡିତମାନଙ୍କ ସହିତ ଶାସ୍ତ୍ର ଚର୍ଚ୍ଚାରେ ଅତିବାହିତ କରନ୍ତି । ମହାରାଜଙ୍କ ଏକ ସୁସଜ୍ଜିତ ସଂସ୍କୃତ ପୁସ୍ତକାଳୟ ଅଛି, ଏହା ନିତ୍ୟାନ୍ତ ପୋଷାକୀ ପୁସ୍ତକାଳୟ ନୁହେଁ ।'

ବିଜ୍ଞାନାଚାର୍ଯ୍ୟ ଶ୍ରୀଯୁକ୍ତ ଯୋଗେଶ ବାବୁଙ୍କ ପ୍ରବନ୍ଧର ଅପର ଏକସ୍ଥାନ- 'ମହାରାଜାଙ୍କର ସଂସ୍କୃତ ପୁସ୍ତକ ସବୁ ମଧ୍ୟ ଦେଖିବାର ଉପଯୁକ୍ତ ଅଟେ । ସେ ନିଜେ ସଂସ୍କୃତ ପଣ୍ଡିତ, ଯେଉଁଠାରେ ଯେତେବେଳେ କୌଣସି ସଂସ୍କୃତ ଗ୍ରନ୍ଥ ପ୍ରଚାରିତ ହୋଇଅଛି, ସମ୍ବାଦ ପାଇବାମାତ୍ରେ, ସେ ତାହା ଗ୍ରନ୍ଥାଗାରରେ ରକ୍ଷା କରୁଅଛନ୍ତି । ଦେଶୀୟ ରାଜ୍ୟରେ ସଂସ୍କୃତ ସାହିତ୍ୟର ଆଦର ନ ହେବା ବିଚିତ୍ର । ତାଞ୍ଜୋର ବିକାନୀର ଓ ଜମ୍ବୁର ମହାରାଜଗଣଙ୍କର ସଂସ୍କୃତ ଗ୍ରନ୍ଥାଗାର ଅଛି ବୋଲି ଏବେ ମଧ୍ୟ ଅନେକ ପୁରାତନ ସଂସ୍କୃତ ଗ୍ରନ୍ଥ ଲୋପ ପାଇନାହିଁ ।'

ରାୟ ବାହାଦୁର ରାଧାନାଥ ରାୟଙ୍କ ଭ୍ରମଣ ବିବରଣୀର ଅନ୍ୟ ଏକ ସ୍ଥାନରୁ ଉଦ୍ଧୃତାଂଶ- 'ମହାରାଜାଙ୍କର ଅଧିକାଂଶ କାର୍ଯ୍ୟ ବିଚକ୍ଷଣତା ଏବଂ ଶ୍ରମଶୀଳତାର ପରିଚାୟକ, ବ୍ୟସନ ତାହାଙ୍କୁ ସ୍ପର୍ଶ କରିନାହିଁ । ଅଧିକାଂଶ ରାଜାଙ୍କ ପରି ନିଷ୍କାମ ଭାଗ୍ୟବାନ ହୋଇ ସନ୍ତୁଷ୍ଟ ରହିବା ଏହାଙ୍କ ପ୍ରକୃତ ବିରୁଦ୍ଧ ବୋଲି ବୋଧହୁଏ । ଦୁର୍ଭାଗ୍ୟକ୍ରମେ ଅଧିକାଂଶ ରାଜା ରାଜତ୍ୱ ଲାଭରେ ମନୁଷ୍ୟତ୍ୱ ହରାଇଥାନ୍ତି, ଏହି ସବୁ ଲୋକଙ୍କଠାରୁ ଦୈବାଧୀନ ରାଜତ୍ୱ ବାଦ ପଡ଼ିଲେ, କ'ଣ ଆଉ ବାକିଥାଏ ? ବାକି କେବଳ ଏକ ଅକର୍ମଣ୍ୟ ବ୍ୟସନୀ ପୁରୁଷ । ସୁଢ଼ଳଦେବଙ୍କର କାର୍ଯ୍ୟାବଳୀ ଦେଖିଲେ ସ୍ୱୟଂ ଈର୍ଷା ମଧ୍ୟ ଏହା କହିପାରିବେ ନାହିଁ । ରାଜତ୍ୱ ବାଦ୍ ଦେଇ ମହାରାଜ ବାସୁଦେବ ସୁଢ଼ଳଦେବ ନରରାଜ । ନରରାଜଙ୍କ ହସ୍ତରେ ଦୈବାଧୀନ ରାଜତ୍ୱ ନ୍ୟସ୍ତ ହେଲେ, ଯେପରି ହେବା ଉଚିତ୍, ବାସୁଦେବ ସଂପୂର୍ଣ୍ଣରୂପେ ନହେଲେ ମଧ୍ୟ, ଅନ୍ତତଃ ବହୁ ପରିମାଣେ ସେହିପରି ହୋଇଅଛନ୍ତି ଏବଂ ଏହିପରି ରାଜତ୍ୱ ସମୟରେ ରାଜ୍ୟରେ ଯେଉଁପରି ଉନ୍ନତି ହେବା ଉଚିତ୍, ବାମଣ୍ଡା ସେହିପରି ଉନ୍ନତିରୁ ବଞ୍ଚିତ ହୋଇନାହିଁ ।



Digitized by srujanika@gmail.com

ଉତ୍କଳ ସାହିତ୍ୟ ସଂପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ମହାଶୟଙ୍କ ଭ୍ରମଣ ବୃତ୍ତାନ୍ତର ଏକ ସ୍ଥାନରେ ଅଛି-ମହାରାଜଙ୍କର ଓ ଯୁବରାଜଙ୍କର ସୌଜନ୍ୟପୂର୍ଣ୍ଣ ବ୍ୟବହାରରେ ମୁଗ୍ଧ ହୋଇଥିଲି । ଉତ୍କଳର ରାଜନ୍ୟବର୍ଗଙ୍କ ମଧ୍ୟରେ ସୁଢ଼ଳଦେବ ଆଦର୍ଶ ପୁରୁଷ, ରାଜପଦୋଚିତ କର୍ତ୍ତବ୍ୟ ଗୁଡ଼ିକ ଦକ୍ଷତା ସହିତ ସଂପାଦନ କରି ସେ ଯେଉଁପରି ଶାସ୍ତ୍ରାଲୋଚନା ଓ ସାହିତ୍ୟ ଚର୍ଚ୍ଚାରେ ଯତ୍ନବାନ, ସେହିପରି ଦୃଷ୍ଟାନ୍ତ ଏହି ହତଭାଗ୍ୟ ଦେଶରେ, ବିଶେଷତଃ ଆମ୍ଭମାନଙ୍କର ରାଜାକୁଳରେ ବିରଳ । ପାଶ୍ଚାତ୍ୟ ଶିକ୍ଷାଲାଭ ନ କରି, ପାଶ୍ଚାତ୍ୟ ଗ୍ରହଣଯୋଗ୍ୟ ସକଳ ଭାବ ସେ ଯେଉଁପରି ଆତ୍ମସ୍ଥ କରିପାରିଥିଲେ, ତହିଁରେ ତାଙ୍କର ସୁତୀକ୍ଷ୍ଣ ଦୃଷ୍ଟି ଓ ଅସାଧାରଣ ପ୍ରତିଭାର ସୁସ୍ପଷ୍ଟ ପରିଚୟ ମିଳିଥାଏ ।' ଆଉ ଏକ ସ୍ଥାନରେ ଅଛି- 'ସୁଢ଼ଳଦେବଙ୍କର ସକଳ କାର୍ଯ୍ୟରେ ଆଡ଼ମ୍ବର ଶୂନ୍ୟତା ପ୍ରକାଶ ପାଏ । ରାଜବାଟୀ ଏବଂ ଗୃହ ସଜ୍ଜା ବିପଦ ଏବଂ ଅବସ୍ଥାର ଅନେକ ନିମ୍ନରେ । ଏହା ନିନ୍ଦାର କଥା ନୁହେଁ ବରଂ ପ୍ରଶଂସାର ହିଁ କଥା ।' ଏହି ପ୍ରବନ୍ଧର ଅନ୍ୟ ଏକ ସ୍ଥାନରେ ଅଛି- ସଭା ଭଙ୍ଗ ହେବା ପରେ ଆମ୍ଭେମାନେ ରାଜବାଟୀକୁ ଆହାର କରିବା ପାଇଁ ଗଲୁ । ଆହାର କାଳରେ ମହାରାଜଙ୍କ ଆଦର ଓ ଯତ୍ନଦେଖି ମୋହିତ ହୋଇଥିଲୁ । ବହୁ ପରିଚାରକ ଓ କର୍ମକାରକ ସତ୍ତ୍ୱେ ମଧ୍ୟ ନିଜେ ହାତରେ ପରିବେଷଣ କରି ଏବଂ ନାନା ପ୍ରକାର ମିଷ୍ଟବାକ୍ୟରେ ସଂଭାଷଣ କରି ଆମ୍ଭମାନଙ୍କୁ ଆପ୍ୟାୟିତ କରାଇଥିଲେ । ଆଜି 'ରୁକ୍ମିଣୀ ବିବାହ' ନାମକ ଏକ ଉତ୍ସବ ଏହି ଅଞ୍ଚଳରେ ଅନୁଷ୍ଠିତ ହୁଏ । ଏହି ଉପଲକ୍ଷେ ଦେବଗଡ଼ରେ ବହୁ ଲୋକଙ୍କ ସମାଗମ ହୋଇଥାଏ । ବର୍ତ୍ତମାନ ରାଜଧାନୀଠାରୁ ପ୍ରାୟ ଏକମାଇଲ୍ ଦୂରରେ ପୁରାତନ ରାଜଧାନୀର ଭଗ୍ନାବଶେଷ ରହିଅଛି । ଏହି ସ୍ଥାନରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ । ସେଠାରୁ ରୋଶନାଇ ନୂତନ ଗଡ଼କୁ ଆସେ ଏବଂ ରାତିସାରା ବାଣ ଫୁଟା ହୁଏ ।"

ଏହି ପ୍ରବନ୍ଧର ଆଉ ଏକ ସ୍ଥାନରେ ଅଛି- "ଆମ୍ଭେମାନେ ମହାରାଜଙ୍କ ନିକଟକୁ ବିଦାୟ ଗ୍ରହଣ କରିବା ପାଇଁ ଗଲୁ । ପ୍ରାୟ ଦୁଇଘଣ୍ଟା କାଳ ସାହିତ୍ୟ ବିଷୟରେ କଥୋପକଥନ ହୋଇଥିଲା, କି ସଂସ୍କୃତ ସାହିତ୍ୟ, କି ପ୍ରାଚୀନ ଉତ୍କଳ ସାହିତ୍ୟ ଉଭୟରେ ହିଁ ତାଙ୍କର ଗଭୀର ପାଣ୍ଡିତ୍ୟ । କାଳିଦାସଙ୍କ କବିତା ଉପରେ ଭାରବୀର ଶ୍ରେଷ୍ଠତା ପ୍ରକାଶ କରି ସେ ଯେପରି ମତବ୍ୟକ୍ତ କଲେ, ତାହା ଆମ୍ଭମାନଙ୍କ ନିକଟରେ ଅସଙ୍ଗତ ବୋଧ ହେଲା । ଅଳଙ୍କାର ବିନ୍ୟାସ ଏବଂ ରଚନା ପରିପାଟୀ ଉପରେ ଅଧିକ ଆସ୍ଥା ସ୍ଥାପନ କରିବା ବିଶୁଦ୍ଧ ପ୍ରାଚ୍ୟ ଓ ପ୍ରାଚୀନ ରଚିର ପରିଚାୟକ । ସେ ଯାହା ହେଉ, ତାଙ୍କ ଭଳି ସ୍ୱାଧୀନଚେତା ଚିନ୍ତାଶୀଳ, ନିଷ୍ଠାବାନ ଭାରତୀଭକ୍ତ ଉତ୍କଳ ଭୂମିରେ ଏକାନ୍ତ ବିରଳ । ମହାରାଜା ତାଙ୍କ



Digitized by srujanika@gmail.com

ଅସଂପୂର୍ଣ୍ଣ 'ବୀରବାମା' କାବ୍ୟକୁ ସଂପୂର୍ଣ୍ଣ କରିବା ଅଭିପ୍ରାୟରେ ମହାରାଷ୍ଟ୍ରୀୟ ଭାଷାରେ ଲିଖିତ ଖଣ୍ଡେ ନବ ପ୍ରକାଶିତ 'ଲକ୍ଷ୍ମୀବାଈ ଚରିତ' ଅଣାଇ ତାହାର ଉତ୍କଳୀୟ ଅନୁବାଦର ଆୟୋଜନ କରିଛନ୍ତି । ପ୍ରାତଃକାଳରେ ୬ଘଣ୍ଟା ସମୟରେ ବାମଣ୍ଡା ତ୍ୟାଗ କଲୁ । ବିଦେଶରୁ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲୁ ସତ୍ୟ, କିନ୍ତୁ ତଥାପି ହୃଦୟରେ ବିଷାଦମୟ ଭାବ ଜାଗି ଉଠିଥିଲା ।'

ଓଡ଼ିଶାର ଜଣେ ଖ୍ୟାତନାମା ବ୍ୟକ୍ତି ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସହିତ ପରିଚୟରେ ତୁଷ୍ଟ ହୋଇ, ତାହାଙ୍କ ନିତ୍ୟ ଜୀବନଯାପନ ନିୟମ ପଦ୍ଧତି ପରୀକ୍ଷା କରି, ତାହାଙ୍କ ବିଦ୍ୟାଗୌରବ ଓ କବି ସମ୍ମାନ ସ୍ମରଣ କରି, ରାଜ୍ୟ ପାଳନ ଓ କର୍ମଶୀଳତାର ବିଶାଳତାର ପ୍ରମାଣ ପାଇ, ସାର୍ ବାସୁଦେବଙ୍କୁ "ସହସ୍ରବାହୁ" ବୋଲି ଅବିହିତ କରିଅଛନ୍ତି । ବାସ୍ତବିକ୍ ସେହି କର୍ମବୀର ତାଙ୍କ ରାଜ୍ୟର ଚତୁର୍ଦ୍ଦିଗରେ ସ୍ଥିତ ଅସଂଖ୍ୟ ପାର୍ବତ୍ୟ ସ୍ୱାଧୀନ ରାଜ୍ୟ ସମୂହର ମଧ୍ୟସ୍ଥଳରେ ୧୮୭୩ ଖ୍ରୀଷ୍ଟାବ୍ଦରୁ ୧୯୦୩ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ ପର୍ଯ୍ୟନ୍ତ ତିରିଶ ବର୍ଷ ସମୟ ମଧ୍ୟରେ ବିବିଧ ବିଷୟକ ପରିବର୍ତ୍ତନ ଆନୟନ ପାଇଁ ନାନା କ୍ଷେତ୍ରରେ ଏତେ କାର୍ଯ୍ୟ କରିଯାଇଅଛନ୍ତି, ଯାହା ଦ୍ୱିବାହୁ ଏବଂ ଏକ ମସ୍ତକ ବିଶିଷ୍ଟ ବ୍ୟକ୍ତିଙ୍କ ପକ୍ଷରେ ଏତେ ଅଳ୍ପ ସମୟ ମଧ୍ୟରେ ସଂଭବପର ନୁହେଁ । ତାଙ୍କର ପ୍ରତିଦିନର କର୍ମ-ତାଲିକା ଯେଉଁମାନେ ଦେଖିଅଛନ୍ତି-ସେହିମାନଙ୍କ ମୁଖରୁ ଶୁଣିଅଛି ଯେ, କୌଣସି ଦେହଧାରୀ କ୍ଷୁଦ୍ରମାନବ ପକ୍ଷରେ ସେଭଳି କର୍ମଶୀଳତା ସଂଭବପର ନୁହେଁ । ତେଣୁ ସେ କବିଙ୍କ ଦୃଷ୍ଟିରେ ଦ୍ୱିଭୁଜ ହୋଇମଧ୍ୟ 'ସହସ୍ରବାହୁ' ଥିଲେ । ଏହାପରେ ଉପରୋକ୍ତ ମହୋଦୟ ତାହାଙ୍କୁ ଓଡ଼ିଶାର ସମାଜ ଓ ସାହିତ୍ୟ ଜୀବନର 'ଯୁଗ ପ୍ରବର୍ତ୍ତକ' ବୋଲି ସମାଦର ପ୍ରକାଶ କରିଅଛନ୍ତି । ଓଡ଼ିଶାରେ ସେ ପ୍ରକୃତପକ୍ଷେ ଯୁଗପ୍ରବର୍ତ୍ତକ ବୋଲି ଅବିହିତ ହେବାପାଇଁ ସଂପୂର୍ଣ୍ଣ ଯୋଗ୍ୟ, ସେହି ବିଷୟରେ ତିଳେମାତ୍ର ସନ୍ଦେହ ନାହିଁ, କାରଣ ୧୯୦୦ ଖ୍ରୀଷ୍ଟାବ୍ଦରେ ଯେତେବେଳେ ରାୟ ରାଧାନାଥ ରାୟ ବାହାଦୁର ବର୍ଦ୍ଧମାନ ବିଭାଗର ବିଦ୍ୟାଳୟ ସମୂହର ପରିଦର୍ଶକ ପଦରେ ଅବସ୍ଥିତ, ତତ୍ପୂର୍ବରୁ ନାନା କାରଣରେ ଆମ୍ଭମାନଙ୍କ ସହିତ ତାଙ୍କର ଦୀର୍ଘକାଳବ୍ୟାପୀ ଆତ୍ମୀୟତା ରହିଥିଲେ ମଧ୍ୟ, ସେହି ସମୟରୁ ଦେଖା ସାକ୍ଷାତ ଫଳରେ ଆତ୍ମୀୟତା ଘନୀଭୂତ ହୋଇଥିଲା । ଓଡ଼ିଶାର ସୁସନ୍ତାନ ରାୟ ରାଧାନାଥ ରାୟ ପୁନଃ ପୁନଃ ମୋତେ କହିଅଛନ୍ତି, ବଙ୍ଗର ବିଦ୍ୟାସାଗରଙ୍କୁ ଦେଖିଛନ୍ତି, ତାଙ୍କର ଜୀବନଚରିତ ମଧ୍ୟ ଲେଖିଛନ୍ତି, ଥରେ ମାତ୍ର ଆମ୍ଭମାନଙ୍କ ଓଡ଼ିଶାର ବିଦ୍ୟାସାଗରଙ୍କୁ ଦେଖି ଆସନ୍ତୁ । ମୁଁ ହିଁ ଆପଣଙ୍କ ଯିବାର ସବୁ ବ୍ୟବସ୍ଥା କରାଇଦେବି । ଜଣେ ଖାଣ୍ଟି ମଣିଷଙ୍କୁ ଦେଖି ଆପଣଙ୍କ ନୟନକୁ ସାର୍ଥକ କରନ୍ତୁ ।" ସୁତରାଂ ବାସୁଦେବ ସୁଢ଼ଳଦେବ



Digitized by srujanika@gmail.com

ଯେ ଓଡ଼ିଶାର ନବଜୀବନର ପ୍ରବର୍ତ୍ତକ ସେହି ବିଷୟରେ ସନ୍ଦେହ ନାହିଁ । ଦୀର୍ଘ ଭବିଷ୍ୟତରେ ତାହାଙ୍କ କୀର୍ତ୍ତିକଳାପର ଗୌରବ ଘୋଷିତ ହେବ । ଆଉ ଏକ ମଜାର କଥାସେହି ସମାଲୋଚକଙ୍କ ଉକ୍ତି ମଧ୍ୟରେ ଦେଖିବାକୁ ମିଳିଥାଏ । ସେହି କଥାଟି- 'ଶକ୍ତି ଦ୍ୱାରା ରାଜପଦ ଆବୃତ ।' କି ଚମତ୍‌କାର କଥା, ଏହି ଉକ୍ତିର ଅନ୍ତରାଳରେ ଏକ ଗଭୀର ସତ୍ୟ ଲୁକ୍କାୟିତ ହୋଇ ରହିଅଛି । ସଂସାରରେ ସଚରାଚର ଅନେକ ବିଚରା ବ୍ୟକ୍ତି, ଅନେକ ଅପଦାର୍ଥ ମୂର୍ଖ, ଅନେକ ଅନାଚାରୀ ମାନବ ସନ୍ତାନ ରାଜସିଂହାସନର ସଂଭ୍ରମ ଓ ଔଜ୍ଜଲ୍ୟର ଚାକଚକ୍ୟରେ ଆପଣା ଆପଣାଙ୍କୁ ଶୋଭନ ଦୃଶ୍ୟ ରାଜପୁରୁଷ ବୋଲି ଅନୁଭବ କରନ୍ତି ଏବଂ ସାଧାରଣ ଜନତାଙ୍କୁ ସେଭଳି ଅନୁଭବ କରାଇବାର ପ୍ରୟାସ କରାନ୍ତି, ସଂସାରର ସଂପଦ ଓ ତାହାର ଗୌରବ, ମନୁଷ୍ୟର ଏହିପରି ସେବାରେ ହିଁ ସଦାସର୍ବଦା ନିୟୋଜିତ । ଶ୍ରେଷ୍ଠ ପୁରୁଷଗଣ ସଂପଦ ଓ ସଂଭ୍ରମ ଲାଭକରି ସେହି ସଂପଦ ଓ ସଂଭ୍ରମକୁ ହିଁ ଗୌରବମଣ୍ଡିତ କରାଇଥାଏ । ପୁରୁଷଙ୍କ ଆଶ୍ରୟ ଲାଭକରି ଲକ୍ଷ୍ମୀ ଓ ସରସ୍ୱତୀ ଉଭୟେ ହିଁ ଚରିତାର୍ଥ ଲାଭ କରିଥାନ୍ତି । ଏହି ଦୃଷ୍ଟିରୁ 'ଶକ୍ତି ଦ୍ୱାରା ରାଜପଦ ଆବୃତ' ଏହି ମହାବାକ୍ୟର ମୂଲ୍ୟ ସାର୍ ବାସୁଦେବ ସୁଢ଼ଳଦେବଙ୍କଠାରେ ଶତଗୁଣରେ ପରିପୁଷ୍ଟ ହୋଇଅଛି । ସାର୍ ବାସୁଦେବଙ୍କ ପ୍ରତିଭା, ତାଙ୍କ ବିଦ୍ୟାଗୌରବ, ତାଙ୍କର ପ୍ରଜାପାଳନ ପଦ୍ଧତି, ତାଙ୍କର ଆତ୍ମସମ୍ମାନ ଓ ପରସମ୍ମାନବୋଧ ତାହାଙ୍କୁ ସର୍ବତ୍ର ଅଜୟ ପୁରୁଷରତ୍ନରେ ପରିଣତ କରି ରଖିଥିଲା । ତେଣୁ ରାଜପଦ ଦ୍ୱାରା ସେ ଆବୃତ ନହୋଇ, ତାଙ୍କ ଦ୍ୱାରା ହିଁ ରାଜପଦ ଆବୃତ ହୋଇ ଧନ୍ୟ ହୋଇଅଛି । ତାଙ୍କ ଭଳି ମହାନୁଭବ ବ୍ୟକ୍ତିଙ୍କ ରାଜପଦ ପରିଗ୍ରହଣ ଫଳରେ ରାଜପଦର ଗୌରବ ଶତଗୁଣରେ ବୃଦ୍ଧିପ୍ରାପ୍ତ ହୋଇଅଛି । ତାହାଙ୍କ ପରିତ୍ୟକ୍ତ ରାଜସିଂହାସନରେ ଯେଉଁମାନେ ଉପବେଶନ କରିଅଛନ୍ତି, ସେମାନଙ୍କ ପୁଣ୍ୟଫଳର ସୀମା ନାହିଁ, କାରଣ ସତକୁ ସତ ସାର୍ ବାସୁଦେବଙ୍କ ପରିତ୍ୟକ୍ତ ରାଜସିଂହାସନ ରାଜସିଂହାସନ ଯୋଗ୍ୟ, ମହାମୂଲ୍ୟ ରାଜାସନ । ଏଥିପାଇଁ ଆଉ ଏକ ବାକ୍ୟର ଆଲୋଚନା ଆବଶ୍ୟକ । ସେ ରାଜା ସାର୍ ବାସୁଦେବଙ୍କୁ ମହାରାଜା ବିକ୍ରମାଦିତ୍ୟଙ୍କ ସହିତ ତୁଳନା କରି କହି ଅଛନ୍ତି- 'ବାସୁଦେବ ବିକ୍ରମାଦିତ୍ୟଙ୍କ ପରି ଆଡ଼ମ୍ବରଶୂନ୍ୟ ।' ଇଂରେଜ ରାଜ ଦରବାର ଠାରୁ ଆରମ୍ଭ କରି ବହୁ ବହୁ ଖ୍ୟାତନାମା ବ୍ୟକ୍ତି ଏକ ବାକ୍ୟରେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ଆଡ଼ମ୍ବର ଶୂନ୍ୟ ବୋଲି ଅଭିମତ ବ୍ୟକ୍ତ କରିଅଛନ୍ତି । ଶୟନେ, ଆସନେ, ଆହାରେ ବ୍ୟବହାରେ, ବିଦ୍ୟା ବିନୟେ, ଶାସ୍ତ୍ର ଧର୍ମେ, ପ୍ରଜାଙ୍କ ସୁଖ ସାଧନରେ, ଶାସନରେ ଓ ପାଳନରେ, ସବୁ ବିଷୟରେ ହିଁ ବାସୁଦେବ ସୁଢ଼ଳଦେବ ଆଦର୍ଶ ନରପତି ଥିଲେ । ସର୍ବବାଦୀସମ୍ମତ ସାକ୍ଷ୍ୟ ଉପରେ ନିର୍ଭର କରି ଅକୁଣ୍ଠିତ ଚିତ୍ତରେ ତାଙ୍କୁ ବର୍ତ୍ତମାନ ଯୁଗର 'ବିକ୍ରମାଦିତ୍ୟ' ବୋଲି ଅଭିହିତ କରାଯାଇପାରେ ।



Digitized by srujanika@gmail.com

ରାୟ ରାଧାନାଥ ରାୟ ବାହାଦୁର ତାଙ୍କ ଆଲୋଚନାର ଏକ ସ୍ଥାନରେ ଲେଖିଅଛନ୍ତି- "ଦେବଗଡ଼ରେ ସ୍ତାବକଗଣଙ୍କର କିଭଳି ସତ୍କାର ହୋଇଥାଏ ନିମ୍ନୋକ୍ତ ଘଟଣା ତାହାର ପରିଚୟ ସ୍ଥଳ । ବିଷୟ ବିଶେଷରେ ତର୍କ ବିତର୍କଫଳରେ ମହାରାଜଙ୍କ ସହିତ ମୋର ମତ ଭେଦ ହୁଏ । ମହାରାଜ କହିଲେ, 'ଆପଣ ଯାହା କହିଲେ, ମୁଁ ତହିଁରେ ସମ୍ମତ ହୋଇ ପାରିଲି ନାହିଁ । ଆପଣଙ୍କ ମତ ୟୁରୋପୀୟ ଅନୁସାରେ ଗଠିତ । ଆପଣ ସାହେବୀ ମତର ଅଯଥା ପକ୍ଷପାତୀ ?' ମୁଁ ବିହିତ ଉତ୍ତର ଦେଇସାରି କାର୍ଯ୍ୟାନୁରୋଧ ହେତୁ ମୋ' ବସାକୁ ଚାଲିଗଲି, ମୋର ଅନୁପସ୍ଥିତି ସମୟରେ ମହାରାଜ ତାଙ୍କର ପାର୍ଶ୍ୱଚାରୀମାନଙ୍କ ମଧ୍ୟରୁ ଜଣକର ମତ ଜିଜ୍ଞାସା କଲେ । ପାର୍ଶ୍ୱଚର ଜଣକ ଉତ୍ତରଦେଲେ- 'ମଣିମା ଛାମୁରୁ ଯେଉଁ ଆଜ୍ଞା କଲେ ତାହା ହିଁ ଠିକ୍ । ଇଏ ସାହେବମାନଙ୍କ କଥାରେ ଭୁଲି ଅଛନ୍ତି । କେତେ ସାହେବ ଆସି ବାରିପଟେ ପଡିଅଛନ୍ତି । ମହାରାଜ ଏହାଶୁଣି ଈଷତ୍ ହସି କହିଲେ, ତୁମ୍ଭେ ମୋର ସନ୍ତୋଷାର୍ଥେ ମୋ' ସମ୍ମୁଖରେ ଯେପରି କହିଲ, କେବେ ସାହେବଙ୍କ ସମ୍ମୁଖରେ ଏକଥା କହି ନଥିବ ଯେ ହଜୁର୍ କେତେ ରାଜା ଆପଣଙ୍କ ବାରିପଟେ ପଡ଼ି ଅଛନ୍ତି ।'

ଏକଦା କୌଣସି ପ୍ରୟୋଜନବଶତଃ ରାଜା ସାର୍ ବାସୁଦେବ ସୁଢ଼ଳଦେବ ରାଜଭବନ ବାହାରକୁ ଯିବେ ବୋଲି ଭୃତ୍ୟକୁ ପାଦୁକା ଆଣିବା ପାଇଁ କହିଛନ୍ତି, ଭୃତ୍ୟ ସେହି କାର୍ଯ୍ୟ ସଂପନ୍ନ କରିବାପୂର୍ବେ ହିଁ, ଜନୈକ କର୍ମଚାରୀ ବ୍ୟସ୍ତ ବିବ୍ରତ ହୋଇ ରାଜାଙ୍କ ପାଦୁକା ଆଣିଦେବା ମାତ୍ରେ,ରାଜା ବାହାଦୁର ଏକାବେଳକେ ଅଗ୍ନିମୂର୍ତ୍ତୀ ଧାରଣ କରି ସେହି କର୍ମଚାରୀକୁ ତୀବ୍ର ତିରସ୍କାର କରୁ କରୁ କହିଥିଲେ- 'ତୁମେ ଲେଖାପଢ଼ା ଶିଖିଛ ? ତୁମର ଆତ୍ମସମ୍ମାନ ବୋଧ ନାହିଁ ? ସ୍ଥାନ, ସମୟ, କାର୍ଯ୍ୟ, କାର୍ଯ୍ୟର ଗୁରୁତ୍ୱ ଓ ତତ୍ ସାଧନରେ ପ୍ରୟୋଜନ ବୋଧ ତୁମର ହୋଇନାହିଁ ।' ଏହା ଏକ ପ୍ରକାର ଘଟଣା, ଆଉ ଏକ ପ୍ରକାର ଘଟଣା ଏହି ଯେ, ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏକାକୀ ଏକ ଅପ୍ରଶସ୍ତ ସ୍ଥାନରେ ବସି ଆପଣା ମନରେ କ'ଣ ସବୁ ଚିନ୍ତା କରୁଥିଲେ । ଏତିକିବେଳେ ଜଣେ କର୍ମଚାରୀ ରାଜକାର୍ଯ୍ୟୋପଲକ୍ଷେ ରାଜାଙ୍କ ସମୀପରେ ଉପସ୍ଥିତ ହେଲେ । ସେହି କାର୍ଯ୍ୟ ସମାଧାନ କରିବାରେ ସାମାନ୍ୟ କିଛି ସମୟ କ୍ଷୟ ହେବ । ସ୍ୱତନ୍ତ୍ର ଆସନ ନାହିଁ ଦେଖି, ରାଜା ବାହାଦୁର ସେହି କର୍ମଚାରୀଙ୍କୁ ସ୍ୱ-ଆସନର ଅର୍ଦ୍ଧାଂଶରେ ବସାଇ କାର୍ଯ୍ୟ ଶେଷ କରିବା ଅଭିପ୍ରାୟରେ କର୍ମଚାରୀଙ୍କୁ ନିଜ ପାର୍ଶ୍ୱରେ ବସିବାପାଇଁ କହିଲେ । କର୍ମଚାରୀ ଜଣକ ଅତ୍ୟଧିକ ସଂକୋଚ ବୋଧ କରି ଛିଡ଼ାହୋଇ ରହିଛନ୍ତି, ବସିବା ପାଇଁ ସାହସ କରିପାରୁ ନାହାନ୍ତି । ରାଜା ବାହାଦୁର କହିଲେ 'ନବସିଲେ କାର୍ଯ୍ୟ ହେବନାହିଁ, ଏଠାରେ ମୋ' ପାଖରେ ହିଁ ବସନ୍ତୁ ।' କହି ତାଙ୍କ ହାତ ଧରି ନିଜ ପାର୍ଶ୍ୱରେ ବସାଇ କାର୍ଯ୍ୟଟି ସଂପୂର୍ଣ୍ଣ କରିଥିଲେ ।(୧)



Digitized by srujanika@gmail.com

ରାଜା ସାର୍ ବାସୁଦେବ ସୁଢ଼ଳଦେବ ସର୍ବଦା ହିଁ ଦିବସର ଶେଷ ଭାଗରେ ରାଜଭବନ ସମ୍ମୁଖଭାଗରେ ପରିଚିତ ନାଗରିକ ଓ ପ୍ରଜାଗଣଙ୍କ ସହିତ ନାନା ବିଷୟରେ କଥାବାର୍ତ୍ତା କରୁଥିଲେ । ଏହିପରି ସମୟରେ ପ୍ରାୟ ତିନିଚାରି ଘଣ୍ଟାକାଳ ଏକ ଦଣ୍ଡରେ ଭରା ଦେଇ ଦଣ୍ଡାୟମାନ ଅବସ୍ଥାରେ ହିଁ କଟିଯାଉଥିଲା । ଅନେକେ ମନେ କରୁଥିଲେ, ରାଜାଙ୍କ ସହିଷ୍ଣୁତା ଅସାଧାରଣ, କୌଣସି କୌଣସି ଦୁଷ୍ଟବୁଦ୍ଧି ଲୋକ ମନେ କରୁଥିଲେ, ରାଜା ଏହି ଦଣ୍ଡ ଉପରେ ନିର୍ଭରକରି ଏତେ ଦୀର୍ଘ ସମୟ ଦଣ୍ଡାୟମାନ ଅବସ୍ଥାରେ ରହନ୍ତି, ଏହିପରି ଭାବି କୃତ୍ତିବାସ ମିଶ୍ର ନାମକ ଜନୈକ ବ୍ରାହ୍ମଣ ସନ୍ତାନ ରାଜାଙ୍କ ଅଜ୍ଞାତସାରରେ ରାଜାଙ୍କ ପଶ୍ଚାଦଭାଗକୁ ଯାଇ ସେହି ଦଣ୍ଡ ଉପରେ ଆଘାତ କରନ୍ତି । ଦଣ୍ଡଟି ହସ୍ତଚ୍ୟୁତ ହୁଏ ଉପସ୍ଥିତ ବହୁ ବ୍ୟକ୍ତି ଏତାଦୃଶ ବ୍ୟବହାରରେ ଭୀତ ଓ କୁଣ୍ଠିତ ହୋଇ ନୀରବରେ ଦଣ୍ଡାୟାମାନ ରାଜା ବାହାଦୁର ବିନ୍ଦୁମାତ୍ରେ ବିଚଳିତ ନହୋଇ, ତାଙ୍କୁ କହିଲେ- 'ଦେଖିଲେ, ଦଣ୍ଡ ମୋତେ ଧାରଣ କରେ ନାହିଁ, ମୁଁ ଦଣ୍ଡକୁ ଧାରଣ କରେଁ ।' ସମସ୍ତେ ରାଜାଙ୍କ ଉଦାର ମନୋଭାବ ଦେଖି ଅବାକ ହେଲେ । ଉପସ୍ଥିତ ଜନତା ମନେ କରିଥିଲେ ବ୍ରାହ୍ମଣଙ୍କ ପ୍ରତି ଗୁରୁତର ଦଣ୍ଡ ବିଧାନ କରାଯିବ ।(୨)

ଜଣେ ଚକ୍ଷୁଷ୍ମାନ ଭ୍ରମଣକାରୀ ବାମଣ୍ଡା ପରିଭ୍ରମଣ କରି ତାଙ୍କ ଅଭିଜ୍ଞତା ଲିପିବଦ୍ଧ କରିଥିଲେ, ସେହି ବିବରଣୀରୁ ଉଦ୍ଧୃତାଂଶ- 'ଏହି ରାଜା ମହୋଦୟ ନିଜ କଥିତ ବାକ୍ୟର ପ୍ରତିଧ୍ୱନି ଶୁଣିବା ପାଇଁ ବ୍ୟସ୍ତ ନୁହନ୍ତି । କିମ୍ବା 'ଆଜ୍ଞା ଅବଧାନ, ମଣିମା, ହଜୁର, ସମ୍ବୋଧନ ସମ୍ମାନିତ ହେବା ସୁଖକର ମନେ କରନ୍ତି ନାହିଁ । ରାଜା ବିଳାସ ଏବଂ ଆଳସ୍ୟ ପରତଂତ୍ର ନୁହନ୍ତି, ସର୍ବଦା ଉତ୍ସାହୀ ଓ ଉଦ୍ୟମଶୀଳ ଏବଂ ଉନ୍ନତି ପିପାସୁ, ଗର୍ବ ନାହିଁ, ଅଭିମାନ ନାହିଁ, ଅଛି କେବଳ କେତେକ ସଦ୍‌ଗୁଣ ।' ଅନ୍ୟ ଏକ ସ୍ଥାନରେ ଅଛି- 'ଛତିଶଗଡ଼ ବିଭାଗର ଇଂରେଜ ଅଧ୍ୟକ୍ଷଗଣ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି ଯେ, ଅନ୍ୟାନ୍ୟ ଗଡ଼ଜାତ ଅପେକ୍ଷା ବାମଣ୍ଡାରେ ଶିକ୍ଷୋନ୍ନତି ଏବଂ ସାହିତ୍ୟ ରସିକତା ପ୍ରଶଂସନୀୟ, ଏହି ବିଷୟରେ ବାମଣ୍ଡା ଅନ୍ୟାନ୍ୟ ଗଡ଼ଜାତର ପଥ ପ୍ରଦର୍ଶକ ।' ଏହି ଦୀର୍ଘ ବିବରଣୀର ଅନ୍ୟ ଏକ ସ୍ଥାନରେ ଅଛି: 'ଇଂରେଜ ଶାସକ କଠିନ ବିଧି ପ୍ରଣୟନ କରି ଯେଉଁ ଉତ୍କୋଚ ପ୍ରଥା ଉଠାଇବାରେ ଅସମର୍ଥ, ସେହି ଉତ୍କୋଚ ଗ୍ରହଣ ପ୍ରଥା ରାଜା ମହୋଦୟଙ୍କ ତୀକ୍ଷ୍ଣ ଦୃଷ୍ଟି ଫଳରେ ବାମଣ୍ଡାରେ ସଂପୂର୍ଣ୍ଣ ଅପରିଜ୍ଞାତ । ଏହି କଥା ବିଶେଷ ଦୃଢ଼ତା ସହିତ କୁହାଯାଇପାରେ । ଅନ୍ୟାନ୍ୟ ଅନୁଷ୍ଠାନ ଛାଡ଼ି ଦେଲେ ମଧ୍ୟ କେବଳ ଏହି କାର୍ଯ୍ୟପାଇଁ ବାମଣ୍ଡାଧିପତି ଦେଶର ଗୌରବସ୍ଥଳ । ଉତ୍କୋଚ ପ୍ରଥା, ନ୍ୟାୟ ବିଚାରର ଅନ୍ତରାୟ, ତଦାଭାବେ ଅକ୍ଳେଶରେ ନ୍ୟାୟର ମହତ୍ତ୍ୱ ରକ୍ଷା ହୋଇଥାଏ । ବାମଣ୍ଡାରେ ଏହା ହିଁ



Digitized by srujanika@gmail.com

ହେଉଅଛି ।' ଆହୁରି ଉଲ୍ଲେଖ ରହିଅଛି- 'ଏକ ଗଡ଼ଜାତ ରାଜ୍ୟରେ ଏହିପରି ବିବିଧ ସଦନୁଷ୍ଠାନ ହେଉଅଛି ଦେଖି କେଉଁ ସ୍ୱଦେଶୀୟ ବ୍ୟକ୍ତି ପ୍ରୀତି ଲାଭ ନକରିବେ ? ବାମଣ୍ଡାରେ କି ରାଜଧାନୀ, କି ମଫସଲ, ଚତୁର୍ଦ୍ଦିଗ ପରିଷ୍କାର ପରିଚ୍ଛନ୍ନ । ପୋଲିସ୍‌ର ବିଶେଷ ସତର୍କତା ଦେଖାଗଲା । ବାମଣ୍ଡା-ପୋଲିସ୍‌ର ସମସ୍ତ କର୍ମଚାରୀ ଦେଶୀୟ ଲୋକ । ଏତଦ୍‌ଭିନ୍ନ ଅନ୍ୟାନ୍ୟା ବିଭାଗରେ ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ସମସ୍ତେ ଦେଶୀୟ ଲୋକ (ବାମଣ୍ଡାରାଜ୍ୟବାସୀ) ବୋଲି କହିଲେ ଚଳେ । ଅନ୍ୟାନ୍ୟ ଗଡ଼୍‌ଜାତ ରାଜାମାନଙ୍କର ସ୍ୱଦେଶୀୟ ଲୋକମାନଙ୍କ ପ୍ରତି ଏତିକି ମାତ୍ରାରେ ଅନୁକୂଳ ଦୃଷ୍ଟିପାତ ହୋଇ ପାରିଲେ ସମସ୍ତଙ୍କ ପକ୍ଷରେ ଶ୍ରେୟସ୍କର ହୁଅନ୍ତା ।

ପୁଣି- 'ଏହି ରାଜ୍ୟର ରାଜକୁମାର ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ଦେବ ମହୋଦୟ ଯୌବନ ସୀମାରେ ପଦାର୍ପଣ କରି ମଧ୍ୟ ନୀତି-ସମ୍ମତ ପଦବୀରୁ ସ୍ଖଳିତ ପଦ ହୋଇନାହାନ୍ତି । ଏହାଙ୍କ ହୃଦୟରେ ସର୍ବଦା ଉଚ୍ଚ ଭାବର ପ୍ରସ୍ଫୁରଣ ଆଶାପ୍ରଦ । ଆଶାଅଛି, କୁମାର ମହୋଦୟ ଜନୈକ ପ୍ରଜାରଞ୍ଜକ ଶାସନକର୍ତ୍ତା ହୋଇପାରିବେ । ପଦ୍ମରାଗ ଖଣିରେ କାଚର ପ୍ରାଦୁର୍ଭାବ ଅସମ୍ଭବ ବୋଲି ନୀତି ବିଶାରଦ ପଣ୍ଡିତ ଶିରୋମଣି ବିଷ୍ଣୁଶର୍ମା ଯାହା କହିଯାଇଅଛନ୍ତି ତାହା ଯଥାର୍ଥ -ଅତି ଯଥାର୍ଥ ।"

ରାୟ ରାଧାନାଥ ରାୟ ବାହାଦୁରଙ୍କ ମନ୍ତବ୍ୟର ଏକ ସ୍ଥାନରୁ ଉଦ୍ଧୃତାଂଶ:- 'ଉତ୍କୋଚ ଏବଂ ପୋଲିସ୍ ଅତ୍ୟାଚାର ନିବାରଣ ବିଷୟରେ ବାମଣ୍ଡା ରାଜ୍ୟ ଶାସନ ଆଶାତୀତ ଉନ୍ନତି ଲାଭ କରିଅଛି ବୋଲି ବୋଧ ହେଲା । ରାଜଧାନୀଠାରୁ ବହୁ ଦୂରରେ ଏବଂ ମହାରାଜାଙ୍କ ଚକ୍ଷୁ ଅଗୋଚରରେ ରହିମଧ୍ୟ, ବାମଣ୍ଡା କର୍ମଚାରୀଗଣ ନିଜ ନିଜକୁ ତାହାଙ୍କ ଦୃଷ୍ଟିର ପୁରୋବର୍ତ୍ତୀ ମନେକରି ଅତି ସତର୍କତା ସହିତ କାର୍ଯ୍ୟ କରନ୍ତି । ପ୍ରାୟ ପ୍ରତ୍ୟେକ କର୍ମଚାରୀ ଏହା ଜାଣନ୍ତି ଯେ, ଯେତେ ଗୋପନ ଭାବରେ ଅନ୍ୟାୟ କରନ୍ତୁନା କାହିଁକି, ତାହା ମହାରାଜାଙ୍କ ଅଜ୍ଞାତ ରହିବ ନାହିଁ ଏବଂ ଦିନେ ତାହା ପାଇଁ ନିଶ୍ଚୟ ପ୍ରାୟଶ୍ଚିତ କରିବାକୁ ହେବ ।"

'ସୁଢ଼ଳଦେବ ନିଜେ ରାଜସ୍ୱ ସଚିବ, ନିଜେ ନିଜର ପୂର୍ତ୍ତକର୍ମଚାରୀ, ତାଙ୍କର ରାଜସ୍ୱ ବିଭାଗ ଏଭଳି ସୁନିୟମରେ ଏବଂ ସୁଶୃଙ୍ଖଳାର ସହିତ ପରିଚାଳିତ ଯେ, କୌଣସି କର୍ମଚାରୀ ପଇସାଟିଏ ମଧ୍ୟ ଉତ୍କୋଚ ଗ୍ରହଣ କରିପାରନ୍ତି ନାହିଁ । ପୂର୍ତ୍ତକର୍ମରେ ଅଶିକ୍ଷିତ ହୋଇମଧ୍ୟ, ନୈସର୍ଗିକ ବୁଦ୍ଧିଦ୍ୱାରା ରାଜ୍ୟର ପୂର୍ତ୍ତବିଭାଗରେ ସେ ଯେପରି ଉନ୍ନତି ସାଧନ କରିଅଛନ୍ତି, ଅନେକ ଶିକ୍ଷିତ ଏବଂ ଲବ୍ଧ ପ୍ରତିଷ୍ଠ ଇଂଜିନିୟର ମଧ୍ୟ ତାହା ଦେଖି ବିସ୍ମୟାବିଷ୍ଟ ହେବେ ।'



Digitized by srujanika@gmail.com

ବଲମ୍ କୃଷିକ୍ଷେତ୍ର ସମ୍ବନ୍ଧରେ ଏହିଭଳି ମନ୍ତବ୍ୟ ରହିଅଛି- ପୂର୍ଣ୍ଣ ମନୁଷ୍ୟର ଅଧିକାଂଶ ସଦ୍‌ଗୁଣ ସୁଢ଼ଳଦେବଙ୍କ ଠାରେ ଥିଲା । ଏତେ ସଦ୍‌ଗୁଣର ସମବାୟ ଦେଶୀୟ ଲୋକଙ୍କ ମଧ୍ୟରେ ଆଜିପର୍ଯ୍ୟନ୍ତ ମୋର ଦୃଷ୍ଟିରେ ପଡ଼ିନାହିଁ । ତାଙ୍କ କାର୍ଯ୍ୟ ଦେଖିଲେ ବୋଧହେବ, ଯେପରି ବିଧାତା ଦେଶୀୟ ଶରୀରରେ ୟୁରୋପୀୟ ମସ୍ତକ ସଂଯୋଗ କରିଅଛନ୍ତି । ସୁଢ଼ଳଦେବ ଯେପରି ଚିନ୍ତାଶୀଳ ସେହିପରି କାର୍ଯ୍ୟଶୀଳ । ଯେପରି ସରସ୍ୱତୀ ଭକ୍ତ ସେହିପରି ଲକ୍ଷ୍ମୀଭକ୍ତ । ପୁସ୍ତକାଳୟ ଓ ଶସ୍ୟାଗାର ଉଭୟ ପ୍ରତି ତାଙ୍କର ସମାନ ଆସ୍ଥା ଏବଂ ବଲମକୁଠି ମହାରାଜାଙ୍କ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ଉପାସନାର ସାମଞ୍ଜସ୍ୟ ସ୍ଥଳୀ । ଏଠାକାର ଦୁଇଗୋଟି ପ୍ରଶସ୍ତ ଶସ୍ୟକ୍ଷେତ୍ରର ନାମ 'ଲକ୍ଷ୍ମୀ' ଓ 'ଅନ୍ନପୂର୍ଣ୍ଣା' ।

ରାଧାନାଥବାବୁଙ୍କ ପ୍ରଥମ ବାମଣ୍ଡା ଅବସ୍ଥାନ କାଳରେ, ସର୍ବପ୍ରଥମ ରାଜା ସାର୍ ବାସୁଦେବ ସୁଢ଼ଳଦେବ ତାଙ୍କୁ ପ୍ରଧାନପାଟ ଦେଇ ଯାଇଥିଲେ । "ସଙ୍ଗରେ ଛତ୍ରଧାରୀ, ଚାମରଧାରୀ, ଶରୀର ରକ୍ଷୀ ଇତ୍ୟାଦି ନଥିଲେ, ରାଜାଙ୍କର ବହିର୍ଗମନ ଯେଭଳି ଅନ୍ୟତ୍ର ସମ୍ଭବ ନୁହେଁ, ଏଠାରେ ସେଭଳି ନୁହେଁ, ଠିକ୍ ଓଲଟା । କେବଳମାତ୍ର ଜଣେ ଭୃତ୍ୟ ସାଙ୍ଗରେ ଥିଲା । ଫେରି ଆସିବାବେଳେ ପଥରେ ରୌଦ୍ରତାପରୁ ରକ୍ଷା ପାଇବା ପାଇଁ ଛତା ଖୋଲିଲି । ମହାରାଜାଙ୍କ ଛତା ଧରିବାପାଇଁ ଭୃତ୍ୟକୁ ମୁଁ କହିଲି । ମହାରାଜ ସ୍ୱହସ୍ତରେ ଛତା ଖୋଲିଲେ ଓ ଧରିଲେ । ମୁଁ ଭାବିଲି, କେବଳ ଭଦ୍ରତାର ଆତିଶଯ୍ୟ ଯୋଗୁଁ ଏପରି କରୁଅଛନ୍ତି । ଏହିପରି ଭାବି ମୁଁ କହିଲି, 'ମହାରାଜ । ଆପଣଙ୍କର ଯେଭଳି ଅଭ୍ୟାସ ଅଛି, ସେହିପରି କରନ୍ତୁ ।' ମହାରାଜ କହିଲେ, 'ମୁଁ ସେହିପରି ହିଁ କରୁଅଛି, ଅନ୍ୟ କେହି ଛତା ଧରିଲେ, ମୋର ସୁଖାନୁଭବ ହୁଏନାହିଁ ।' ଏହା ଏକ ସାମାନ୍ୟ ଘଟଣା ସତ୍ୟ, କିନ୍ତୁ ଏହିପରି ସାମାନ୍ୟ ଘଟଣାରୁ ହିଁ ବ୍ୟକ୍ତିର ପ୍ରକୃତି ଜଣାପଡ଼ିଥାଏ ।"

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜକାର୍ଯ୍ୟ ପରିଚାଳନା ପଦ୍ଧତି ଅନ୍ତରାଳରେ ମୁଖ୍ୟତଃ ଗଭୀର ଉଦ୍ଦେଶ୍ୟ ନିହିତ ରହୁଥିଲା । ଯେଭଳି ଉଦ୍ଦେଶ୍ୟ ସାଧନ ନିମନ୍ତେ ଯେଉଁ କାର୍ଯ୍ୟର ଆରମ୍ଭ କରୁଥିଲେ, ତାହା କସ୍ମିନକାଳେ ଏକଦିନର, ଏକମାତ୍ର ଥରକର ଚିନ୍ତା ପ୍ରସୂତ ନ ଥିଲା । ଆଜି ଯେଉଁ କାର୍ଯ୍ୟ ଆରମ୍ଭ କରିବେ, ଛଅମାସ ପୂର୍ବେ ଗୋପନରେ ସେହିଭଳି କାର୍ଯ୍ୟର ନିୟମ ପଦ୍ଧତିଗୁଡ଼ିକ ସ୍ଥିରୀକୃତ ହେଉଥିଲା । କିନ୍ତୁ କେହି ତାହା ଜାଣିବାକୁ ବା ବୁଝିବାକୁ ସମର୍ଥ ହେଉନଥିଲେ । ଯେତେବେଳେ କାର୍ଯ୍ୟ ଆରମ୍ଭ ହେଲା, ସେତେବେଳେ ହୁଏତ ଲୋକେ ନ ବୁଝି ମନେକଲେ, କୌଣସି ପୂର୍ବ ପରିକଳ୍ପନା ନାହିଁ । ସହସା ଏଡ଼େ ବିରାଟ ବିରାଟ କାର୍ଯ୍ୟର ଆୟୋଜନ । ସାର୍ ବାସୁଦେବ ଅନେକ ସମୟରେ ପାର୍ଶ୍ୱଚର ମାନଙ୍କ ଏତାଦୃଶ ଭାବର ଖବର ପାଇ ପ୍ରକାରାନ୍ତରେ ଜଣାଇ



Digitized by srujanika@gmail.com

ଦେଉଥିଲେ, କେତେଦିନ ପୂର୍ବରୁ ଏହି କାର୍ଯ୍ୟର ସୂତ୍ରପାତ ହୋଇଅଛି । କ୍ଷୁଦ୍ର ବୃହତ୍ ରାଜକୀୟ କାର୍ଯ୍ୟର ଉଦ୍ଦେଶ୍ୟ, ଉଦ୍ଦେଶ୍ୟର ଗୁରୁତ୍ୱ, ଗୁରୁତ୍ୱର ରହସ୍ୟରକ୍ଷା ପାଇଁ ସର୍ବଦାହିଁ ବିଶେଷ ଦୃଷ୍ଟି ଥିଲା, ତେଣୁ କସ୍ମିନକାଳେ, କୌଣସି କାର୍ଯ୍ୟରେ ତାଙ୍କୁ କେହି କେବେହେଲେ ବ୍ୟର୍ଥଚେଷ୍ଟା ହେବା ଦେଖିନାହାନ୍ତି । ସେହି କର୍ମବୀର ଆପଣା କାର୍ଯ୍ୟକଳାପର ନିୟମ ପଦ୍ଧତି ନିଜେ ହିଁ ଗଢ଼ି ତୋଳୁଥିଲେ, ନିଜେ ହିଁ ସେଗୁଡ଼ିକୁ କାର୍ଯ୍ୟରେ ପରିଣତ କରୁଥିଲେ । କାହାରି ମନ୍ତ୍ରଣାର ଅପେକ୍ଷା କରୁନଥିଲେ । ଛଅ ମାସ ପୂର୍ବେ ପ୍ରସଙ୍ଗକ୍ରମେ କୌଣସି କଥାର ଆଲୋଚନା ହୋଇଥିଲା, ସେହି ଆଲୋଚନା ଛଅମାସ ନିଦ୍ରିତ ଥାଇ, ସହସା ଛଅମାସ ପରେ କଳେବର ଗ୍ରହଣ କରିବାକୁ ଯାଉଅଛି ଦେଖି, ଲୋକେ ଅନେକ ସମୟରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଛନ୍ତି ।*(୩)*

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ବିପକ୍ଷ ପକ୍ଷ ବୋଲି କୌଣସି ଦିନ ଗୋଟିଏ ବି ଦଳ ନଥିଲା । ସମସ୍ତ ଲୋକ ତାଙ୍କ ଗୁଣଦ୍ୱାରା ଆକୃଷ୍ଟ ଓ ମୁଗ୍ଧ ହୋଇ ତାଙ୍କୁ ସମାଦର କରୁଥିଲେ, ତଥାପି କେବେକେବେ କୌଣସି କୌଣସି ଲୋକଙ୍କୁ ବିରୂପ ଭାବାପନ୍ନ ଦେଖିବାକୁ ମିଳୁଥିଲା । ସେମାନେ ସେତେଦିନ ବିରୂପ ଭାବାପନ୍ନ, ଯେତେଦିନ ତାଙ୍କ ସହିତ ପରିଚୟ ସଂଘଟନ ହେଉନଥିଲା । ପରିଚୟ ସଂଗେ ସଂଗେ ସୂର୍ଯ୍ୟୋଦୟ ଫଳରେ ଅନ୍ଧକାରର ପଳାୟନ ଭଳି ସମସ୍ତ ବିରୂପ ଭାବ ସହଜଭାବରେ ଆପଣାଛାଏଁ ତିରୋହିତ ହେଉଥିଲା । ଏଭଳି ଘଟଣା ଆମ୍ଭେମାନେ ହିଁ ଅବଗତ ଅଛୁଁ । ଏଭଳି ଘଟଣା ସହିତ ସଂସୃଷ୍ଟ କୌଣସି କୌଣସି ପଦସ୍ଥ ବ୍ୟକ୍ତି ବର୍ତ୍ତମାନ ସୁଦ୍ଧା ଜୀବିତ ଅଛନ୍ତି ଏବଂ ରାଜାଙ୍କ ପ୍ରତି ସେମାନଙ୍କ ଅପରିସୀମ ଶ୍ରଦ୍ଧା ଭକ୍ତି ଅଛି ବୋଲି ଜାଣି ଦୃଷ୍ଟାନ୍ତ ସ୍ଥଳେ ନାମୋଲ୍ଲେଖ କରିପାରୁ ନାହିଁ ।

ରାଜା ସାର୍ ବାସୁଦେବ ସୁଢ଼ଳଦେବ ରାଜ୍ୟ ଶାସନ କ୍ଷେତ୍ରରେ ଯେଉଁ ଉଚ୍ଚ ରାଜନୀତିର ପରିଚୟ ପ୍ରଦାନରେ ସକ୍ଷମ ଥିଲେ ସେ ସମ୍ବନ୍ଧରେ ବହୁ ଘଟଣା ବର୍ତ୍ତମାନ ଥିଲେ ମଧ୍ୟ, ସେ ସବୁର ବର୍ଣ୍ଣନା ସମ୍ଭବପର ନୁହେଁ, ସଂଗତ ମଧ୍ୟ ନୁହେଁ । କେବଳମାତ୍ର ଗୋଟିଏ ଦୁଇଟି ଘଟଣାର ଉଲ୍ଲେଖ କରାଯାଉଅଛି । ପୂର୍ବରୁ କୁହାଯାଇଅଛି, ଏକଦା ଜଣେ କର୍ମଚ୍ୟୁତ ବ୍ୟକ୍ତିଙ୍କୁ ପୁରୋବର୍ତ୍ତୀ କରି ଦୁଇଜଣ କର୍ମଚାରୀ ଏବଂ ଦୁଇଜଣ ପଦସ୍ଥ ଭଦ୍ରବ୍ୟକ୍ତି ଏକସଙ୍ଗେ ଚକ୍ରାନ୍ତକରି ତାଙ୍କୁ ବିପନ୍ନ କରିବାର ଆୟୋଜନ କରିଥିଲେ । ରାଜା ବାହାଦୁର ଆତ୍ମରକ୍ଷା କରି ପରେ, ଜଣ ଜଣ କରି ଚକ୍ରାନ୍ତକାରୀମାନଙ୍କୁ ହସ୍ତଗତ ଗଲେ, ସେମାନଙ୍କ ମଧ୍ୟରେ ପରସ୍ପର ସ୍ୱାର୍ଥସାଧନ ପାଇଁ, ଯେଉଁସବୁ ପତ୍ରାଳାପ ହୋଇଥିଲା, ସେଗୁଡ଼ିକୁ ମଧ୍ୟ କ୍ରମେ ଗୋଟି ଗୋଟି କରି ସଂଗ୍ରହ କଲେ । ପରେ ରାଜ କଚେରୀରେ ଏକ ପ୍ରକାଶ୍ୟ



Digitized by srujanika@gmail.com

ସଭାରେ, ସେହି ସମସ୍ତ ବ୍ୟକ୍ତିଙ୍କୁ ମିଳିତ କରାଇ ପ୍ରତ୍ୟେକ ବ୍ୟକ୍ତିଙ୍କୁ ସେମାନଙ୍କର ନିଜ ନିଜ ଲିଖିତ ପତ୍ର ଉଚ୍ଚକଣ୍ଠରେ ପାଠ କରାଇଲେ । ଶ୍ରୋତୃବର୍ଗ ମନେ କରିଥିଲେ, ଏମାନଙ୍କୁ ପ୍ରତ୍ୟେକଙ୍କୁ ଅତି ଗୁରୁତର ଦଣ୍ଡର ବ୍ୟବସ୍ଥା ହେବ, କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ରାଜା ବାହାଦୁର ସେମାନଙ୍କୁ ପ୍ରତ୍ୟେକଙ୍କୁ  କ୍ଷମା କରି ଦେଲେ- "ତୁମ୍ଭେ ମାନେ ଆପଣାର ଲୋକ ହୋଇ ଏଭଳି କଲ ?  ଏହି ବ୍ୟାପାର ପରେ, ଅପରାଧୀମାନଙ୍କୁ ଯେଉଁ ଦଣ୍ଡ ଦେବା ଅଧିକାର ଓ କ୍ଷମତା ଅଛି, ତାହା ମୁଁ ପ୍ରୟୋଗ କଲି ନାହିଁ । ଏଭଳି ଭଦ୍ର ବ୍ୟବହାରରେ ଯଦି ତୁମ୍ଭେମାନଙ୍କ ଚୈତନ୍ୟ ହୁଏ ଭଲକଥା, ନତୁବା ଦଣ୍ଡର ଗୁରୁତ୍ୱ ଅତି ଭୀଷଣ ଆକାରଧାରଣ କରିବ ।' କିନ୍ତୁ ପରବର୍ତ୍ତୀ କାଳରେ ରାଜାବାହାଦୁରଙ୍କ ନିକଟରୁ ସ୍ନେହ ଓ ସଦ୍‌ବ୍ୟବହାରରେ କୌଣସି ଦିନ ବଞ୍ଚିତ ହୋଇନାହାନ୍ତି ।*(୪)*

ରାଜ୍ୟଶାସନ ଓ ପ୍ରଜାପାଳନ କ୍ଷେତ୍ରରେ ରାଜା ସାର୍ ବାସୁଦେବ ସୁଢ଼ଳଦେବ ଗୋଟାଏ ବିଷୟରେ ସର୍ବଦା ସତର୍କ ଭାବରେ ଚାଲୁଥିଲେ । ପ୍ରଜାଙ୍କ ନିକଟରେ ଓ ଉପରିସ୍ଥ ରାଜଶକ୍ତି ନିକଟରେ କିଭଳି ଭାବରେ ଆତ୍ମମର୍ଯ୍ୟାଦା ରକ୍ଷାକରି ଚଳିବାକୁ ହୁଏ, ତାଙ୍କର ଏହି ଜ୍ଞାନ ଅତି ଉଜ୍ଜ୍ୱଳ ଥିଲା । ପ୍ରଜାଙ୍କ ନିକଟରେ ପ୍ରଜାବତ୍ସଳ ଅଥଚ ନିର୍ଭୀକ ରାଜାରୂପେ ପ୍ରତିଷ୍ଠିତ ରହିବା ପଦ୍ଧତିଟି ତାଙ୍କର ଅତି ଉତ୍ତମରୂପେ ପରିଜ୍ଞାତ ଥିଲା ଏବଂ ସେ ତାହା ଠିକ୍ ଠିକ୍ ପାଳନ କରୁଥିଲେ । ସେ ଭୟରେ ଭୀତ ହେବା ବ୍ୟକ୍ତି ନଥିଲେ । ପୁଣି କୌଣସି କାରଣରେ ଅଯଥା କଠୋର ମଧ୍ୟ ହେଉ ନଥିଲେ । ଉପରିସ୍ଥ ରାଜଶକ୍ତି ସମ୍ୟକ ମର୍ଯ୍ୟାଦା ରକ୍ଷାକରି ଚଳିବାର ରୀତି ଉତ୍ତମରୂପେ ପରିଜ୍ଞାତ ଥିଲେ । କିନ୍ତୁ କୌଣସି ଦିନ କୌଣସି କାରଣରେ କୌଣସି ଉଚ୍ଚପଦସ୍ଥ ଇଂରେଜ ରାଜ କର୍ମଚାରୀ ନିକଟରେ ହୀନତାର ପରିଚାୟକ କୌଣସି ବ୍ୟବହାର କରିନାହାନ୍ତି । ସେହିଠାରେ ଭାରତୀୟ ସାମନ୍ତ ନରପତିଙ୍କ ମର୍ଯ୍ୟାଦା ରକ୍ଷା ପାଇଁ ବେଶ୍ ପଟୁ ଥିଲେ ଏବଂ ସେହିପରି ଭାବରେ ହିଁ ଚଳୁଥିଲେ ।*(୫)*

ରାୟ ରାଧାନାଥ ରାୟ ବାହାଦୁର ନିଜେ ଉଚ୍ଚଦରର ସାହିତ୍ୟିକ ଓ କବି ଥିଲେ । ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟବିଧ ଶିକ୍ଷାରେ ସୁଶିକ୍ଷିତ ବ୍ୟକ୍ତି ଥିଲେ । ସେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ବଳମ୍ କୃଷିକ୍ଷେତ୍ରର ସ୍ଥାନ ନିର୍ବାଚନରେ ଏତେ ଚମକୃତ ଓ ମୁଗ୍ଧ ହୋଇଥିଲେ ଯେ, ସେ ସମ୍ବନ୍ଧରେ ତାଙ୍କ ପ୍ରଦତ୍ତ ମନ୍ତବ୍ୟ ଏଠାରେ ଉଦ୍ଧାର କରାଗଲା । 'ମୁଁ ସମଗ୍ର ଓଡ଼ିଶା ଭ୍ରମଣ କରି ଏହିପରି ଏକସ୍ଥାନ ଦେଖିନାହିଁ । ପ୍ରକୃତିର ଶୋଭା ଏବଂ ମନୁଷ୍ୟର ଅଧ୍ୟବସାୟର ଏଭଳି ସମାବେଶ ଦେଖି କିଏ ବା ପ୍ରୀତ ନ ହେବ  ? କି ଭକ୍ତ, କି କବି, କି ବିଷୟୀ ସମସ୍ତଙ୍କ ପକ୍ଷେ ଏହି ସ୍ଥାନ ସମାନ ଉପଯୋଗୀ, ରାଜଧାନୀ ଦେବଗଡ଼ ଅପେକ୍ଷା ଏହି ସ୍ଥାନର ଜଳବାୟୁ ସଂଭବତଃ ଅଧିକ ସ୍ୱାସ୍ଥ୍ୟକର । ଶୈଳ ପ୍ରାଚୀର ବେଷ୍ଟିତ



Digitized by srujanika@gmail.com

ହୋଇମଧ୍ୟ ଏଠାକାର ବିଶାଳ ଚକ୍ରବାଳ ପବନର ଅପ୍ରତିହତ ସଞ୍ଚାରର ସମ୍ୟକ ଉପଯୋଗୀ । ବର୍ଷାକାଳରେ ଏହି ସ୍ଥାନ ଅତୀବ ମନୋହର ହୋଇଥାଏ । ଆକାଶରେ ଜଳଭାବନତ ଜଳଦମାଳା, ଲୋକାମୁଖରିତ ଅସାରସିକ୍ତ ପ୍ରଫୁଲ୍ଲ ବନରାଜି, ଜଳଦ ସମ୍ବଳିତ ଛାୟାଲୋକ ବିଚିତ୍ର ସଦ୍ୟ ବିଧୌତ ନୀଳ ଶୈଳଶ୍ରେଣୀ, ଦୂର ପ୍ରସାରିତ ଶ୍ୟାମାୟମାନ କୃଷିକ୍ଷେତ୍ର ଏବଂ କାନନଲକ୍ଷ୍ମୀଙ୍କ ଦର୍ପଣରୂପୀ ବିଶାଳ ହ୍ରଦର ଏକତ୍ର ସମାବେଶ ଦ୍ୱାରା ବର୍ଷାକାଳରେ ଏହି ସ୍ଥାନଟି ପ୍ରକୃତିର ଆଲେଖ୍ୟଶାଳାବତ୍ ପ୍ରତିଭାତ ହୋଇଥାଏ । ମେଘଦୂତ ବର୍ଣ୍ଣିତ ଅଧିକାଂଶ ଦୃଶ୍ୟ ହିଁ ଏହି ସ୍ଥାନରେ ସୁଲଭ ଏବଂ ଏହିପରି ସ୍ଥାନ ହିଁ ମେଘଦୂତ ପାଠର ସମ୍ୟକ ଉପଯୋଗୀ ।" ଏହାପରେ ସେ ଲେଖିଛନ୍ତି, "ଜୀବନରେ ନାନା ଶ୍ରେଣୀର ଲୋକଙ୍କ ସହିତ ଆଳାପ କରି ସୁଢ଼ଳଦେବଙ୍କ ଭଳି ସମତୁଳ ପ୍ରକୃତି ମୁଁ ଆଉ ଦେଖିନାହିଁ । ମନରେ ସମସ୍ତ ବୃତ୍ତି ଅଛି, କିନ୍ତୁ ସମସ୍ତ ବୃତ୍ତିର ସେ ପ୍ରଭୁ । କୌଣସି ବୃତ୍ତି ଉଚ୍ଛୃଙ୍ଖଳ ହୋଇ ତାହାଙ୍କ ଉପରେ ପ୍ରଭୁତ୍ୱ କରିବ, ଏହା ତାଙ୍କ ଜାତକରେ ନାହିଁ । କାର୍ଯ୍ୟପ୍ରଧାନ, ଅଥଚ ଭାବ ପ୍ରଧାନ ନାତିକ୍ରୋଧ ଅଥଚ ନାତି ସହିଷ୍ଣୁ ସ୍ଥାନ ଦେଖି ଗଣନାଶୀଳ, ସ୍ଥାନ ଦେଖି ମୁକ୍ତହସ୍ତ । ଗର୍ବ ନଥାଇ ତାଙ୍କର ଯଥେଷ୍ଟ ଆତ୍ମମର୍ଯ୍ୟାଦା ଜ୍ଞାନ ଅଛି, କାହାରି ପ୍ରତି ସ୍ନେହ କଲେ ବୋଲି ଯେ ତାଙ୍କ ଦୋଷ ପ୍ରତି ଅନ୍ଧ ହୋଇଯିବେ, ଏପରି ନୁହେଁ, ଅଭିଯୋକ୍ତାଙ୍କୁ ଗୋଟିଏ କର୍ଣ୍ଣ ଦେଇ, ଅନ୍ୟ କର୍ଣ୍ଣ ଅଭିଯୁକ୍ତ ପାଇଁ ମୁକ୍ତ ରଖିବାରେ ସେ ସର୍ବଦା ହିଁ ସତର୍କ । ଅନ୍ୟର ଉପଦେଶ ପ୍ରାର୍ଥୀ ହୋଇ ମଧ୍ୟ ନିଜ ବୁଦ୍ଧିର ସ୍ୱାଧୀନତା ବିସର୍ଜନ କରିବାପାଇଁ ସେ କଦାପି ପ୍ରସ୍ତୁତ ନଥିଲେ । ସୁଢ଼ଳଦେବ ନ୍ୟାୟପର ଅଥଚ ଯଂତ୍ରବତ୍ ନ୍ୟାୟପରାୟଣ ନଥିଲେ । ତାଙ୍କର ନ୍ୟାୟଜ୍ଞାନ କରୁଣାଜଡ଼ିତ ଥିଲା । ତାଙ୍କର ଯଶରେ ଅଭିରଚି ଥିଲା କିନ୍ତୁ ସେ ଯଶୋରଙ୍କ ନଥିଲେ । କୃତ୍ରିମ ଉପାୟରେ ଯଶପ୍ରଚାର କିମ୍ବା ଅଳୀକ ଯଶର ଆକାଙ୍‌କ୍ଷା କରୁନଥିଲେ । ଆମୋଦର ବିତୃଷ୍ଣା ନଥିଲା, ମୂଳ ଯେ ସ୍ୱାସ୍ଥ୍ୟ ତାହାର କ୍ଷତି ନକରି ଯେତେଦୂର ଆମୋଦ ସଂଭବ, ସେହି ସୀମା ସେ ଅତିକ୍ରମ କରୁନଥିଲେ । ଧର୍ମ, ଅର୍ଥ, କାମ ପ୍ରତି ତାଙ୍କର ସମାନ ଦୃଷ୍ଟି, କାହାରି ପ୍ରତି ଆସକ୍ତି ନାହିଁ । କାହାରି ପ୍ରତି ଔଦାସିନ୍ୟ ନାହିଁ । ଫଳତଃ:-

ଧର୍ମାର୍ଥ କାମା ସମମେବ ସେବ୍ୟାଃ
ଯସ୍ତ୍ୱେକ ସକ୍ତଃ ସଃନର ଜଘନ୍ୟଃ

ସୁଢ଼ଳଦେବଙ୍କ ଜୀବନ ଏହି ଉକ୍ତିର ଏକ ପ୍ରକୃଷ୍ଟ ନିଦର୍ଶନ, ଇଂରାଜୀ ଭାଷାରେ ଅନଭିଜ୍ଞ ହୋଇ ମଧ ଇଉରୋପୀୟଙ୍କ ନିକଟରେ ସୁଢ଼ଳଦେବଙ୍କ ପ୍ରତିଷ୍ଠା କମ୍ ନୁହେଁ । ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ସେ ଯେଉଁ ଉଚ୍ଚ ଉପାଧି ଲାଭ କରିଅଛନ୍ତି, ସେହି ଉପାଧି ହିଁ



Digitized by srujanika@gmail.com

ସେହି ପ୍ରତିଷ୍ଠାର ପରିମାପକ, କିନ୍ତୁ ଏହା ବୋଲି ୟୁରୋପୀୟଙ୍କ ସହିତ ଦେଶୀୟ ଲୋକମାନଙ୍କ ପ୍ରକୃତ କିପରି ସମ୍ବନ୍ଧ ଏବଂ ସେମାନଙ୍କ ସହିତ ସଂଶ୍ରବ ରଖିବା ଅପରିହାର୍ଯ୍ୟ ଏବଂ ସ୍ଥଳ ବିଶେଷରେ ବାଞ୍ଛନୀୟ ହେଲେ ମଧ୍ୟ, ସେହି ସଂଶ୍ରବର ସୀମା କେଉଁଠାରେ, ତାହା ବିସ୍ତୃତ ହେବାର ବ୍ୟକ୍ତି ସେ ନୁହନ୍ତି । ଏହି ସୀମା ବିସ୍ତୃତ ହୋଇ ଏବଂ ରାଜନୈତିକ 'ପ୍ରିୟବନ୍ଧୁ' ଶବ୍ଦର ଆକ୍ଷରିକ ଅର୍ଥ ଗ୍ରହଣ କରି ଅନେକ ଅପରିଣାମଦର୍ଶୀ ନବ୍ୟଶିକ୍ଷାଭିମାନୀ ଦେଶୀୟ ରାଜା ସମୟ ସମୟରେ ଲାଞ୍ଛିତ ଓ ବିପନ୍ନ ମଧ୍ୟ ହୋଇଅଛନ୍ତି ।"

ଆଉ ଏକ ସ୍ଥାନରେ ଅଛି:- 'ସାଧାରଣତଃ ଗଡ଼ଜାତ ରାଜବୃନ୍ଦଙ୍କର ରଚି ଦେଖି ଅନେକ ସମୟରେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼ିଥାଏ । ନିର୍ଜ୍ଜନ ବାସ, ସ୍ୱାସ୍ଥ୍ୟକର ବାୟୁ ସେବନ ଏବଂ ସୁନ୍ଦର ପ୍ରାକୃତିକ ଦୃଶ୍ୟ ଦର୍ଶନର ସୁବିଧା ଏହିମାନଙ୍କ ଯେଉଁପରି ଅଛି, ଓଡ଼ିଶାରେ ସେହିପରି ସୁବିଧା ଅନ୍ୟ କାହାରି ନାହିଁ । ଏଭଳି ସୁବିଧା ୟୁରୋପୀୟମାନଙ୍କର ହସ୍ତଗତ ହେଲେ, ସେମାନେ ପୂର୍ଣ୍ଣ ମାତ୍ରାରେ ତାହା ଭୋଗ କରିବା ପାଇଁ ଯତ୍ନବାନ୍ ହୋଇଥାଆନ୍ତି । ପର୍ବତ ଶୀର୍ଷ କିମ୍ବା ତଟଦେଶ, ସମୁଦ୍ରବେଳା, ମହାରଣ୍ୟ କିମ୍ବା ପ୍ରଶସ୍ତ ନଦୀତୀରରେ ନିର୍ଜ୍ଜନ ସୁଦୃଶ୍ୟପୂର୍ଣ୍ଣ ଏବଂ ସ୍ୱାସ୍ଥ୍ୟକର ସ୍ଥାନ ନିର୍ବାଚନ କରି ସେହିଠାରେ ଗୃହନିର୍ମାଣ କରାଇ ସେହିସ୍ଥାନକୁ ଆସି ଅବସ୍ଥାନ କରନ୍ତି । ବୃତ୍ତିଶ୍ୱର ୟୁରୋପୀୟଙ୍କ କଥା ଦୂରେ ଥାଉ, ଯେଉଁମାନେ ସେବାଜୀବି ସେମାନେ ମଧ୍ୟ ଏହିପରି ସୁଖ ସମ୍ଭୋଗ ସୁବିଧା କରିନେବା ପାଇଁ ଆଗ୍ରହାନ୍ୱିତ । ଅର୍ଥହୀନ ଭାବୁକଗଣ, ପର୍ବତ, ମହାରଣ୍ୟ ଦେଖିବାମାତ୍ରେ ବାସ୍ତବରେ ନ ହେଉ, କଳ୍ପନାରେ ସେହି କୁଟୀରବାସର ସୁଖ ଭୋଗ କରନ୍ତି । କିନ୍ତୁ ସାଧାରଣ ଗଡ଼ଜାତର ଅବସ୍ଥା ଦେଖି କ'ଣ ପ୍ରତୀତ ହୁଏ ? ଉଲ୍ଲିଖିତ ପ୍ରକାର ଉଚ୍ଚ ସୁଖ ଭୋଗର ସମସ୍ତ ଉପକରଣ ବିଦ୍ୟମାନ ଥାଇ ସୁଦ୍ଧା ଏମାନେ ଅନ୍ଧକାରାବୃତ ପବନ ସଞ୍ଚାର ଶୂନ୍ୟ ଆବର୍ଜ୍ଜନା ପୂର୍ଣ୍ଣ ନବର (ରାଜଭବନ)ର ନିଭୃତତମ ପ୍ରଦେଶରେ ଗ୍ରାମ୍ୟସୁଖେ ଆକଣ୍ଠ ନିମଗ୍ନ । କହିବା ବାହୁଲ୍ୟ ଯେ ବାମଣ୍ଡାର ମହାରାଜା ଶ୍ରୀ ସୁଢ଼ଳଦେବଙ୍କ ରଚି ସ୍ୱତନ୍ତ୍ର ପ୍ରକାର । ତାଙ୍କର ପାଣ୍ଡିତ୍ୟ ତାଙ୍କ ରଚିର ପ୍ରତିଭୂ ଅଟେ । ସୁରୁଚିର ସନାତନ ଗୁରୁ କାଳିଦାସ, ମୁରାରୀ ପ୍ରଭୃତିଙ୍କ ଭକ୍ତ ହୋଇ ଗ୍ରାମ୍ୟ ଆମୋଦର ପକ୍ଷପାତୀ ହେବା ତାହାଙ୍କ ପକ୍ଷେ ସର୍ବଥା ଅସମ୍ଭବ । ମହାରାଜ ସମୟ ସମୟରେ ନିର୍ଜ୍ଜନବାସ ପାଇଁ ଏକ ଗୃହ ନିର୍ମାଣ କରାଇଛନ୍ତି । ଗୃହଟି ଏକ କ୍ଷୁଦ୍ର ଶୈଳର ଶୀର୍ଷଦେଶରେ ଅବସ୍ଥିତ ଏବଂ ସୁପ୍ରଣାଳୀରେ ଗଠିତ ।" ଅନ୍ୟତ୍ର "ବିଘ୍ନ ସାଧାରଣ ଲୋକଙ୍କୁ ଭଗ୍ନୋଦ୍ୟମ ଓ ପଶ୍ଚାଦପଦ କରାଏ । କେବଳ ଏକମାତ୍ର ପ୍ରତିଭା ପ୍ରତିକୂଳ ଦୈବହସ୍ତ ପାଖରୁ ସିଦ୍ଧିକୁ କାଢ଼ି ଆଣିବାରେ ସମର୍ଥ । ସୁଢ଼ଳଦେବ ବିଘ୍ନ ଦ୍ୱାରା ଆଦୌ ଭଗ୍ନୋତ୍ସାହ ହେବାର ପାତ୍ର ନଥିଲେ । ସୁଶିକ୍ଷା ଓ ଦେଶ



Digitized by srujanika@gmail.com

ପର୍ଯ୍ୟଟନ ଦ୍ୱାରା ସେ ଉତ୍ତମ ରୂପେ ବୁଝିଥିଲେ, ବିଜ୍ଞାନ ସାହାଯ୍ୟରେ ସର୍ବବିଧ ବୃହତ୍ତର ଅନୁଷ୍ଠାନରେ କୃତକାର୍ଯ୍ୟ ହେବା ସମ୍ଭବ । ତେଣୁ ତାଙ୍କର ପ୍ରତିଭା ସୁସମୟରେ ସର୍ବବିଧ ଅନୁଷ୍ଠାନରେ ଅଗ୍ରସର ହେବାପାଇଁ ଭୀତ ବା ପଶ୍ଚାଦ୍‌ପଦ ହେଉ ନଥିଲା । ସେ କାର୍ଯ୍ୟର ପରିମାଣ ଓ ନିଜ ଶକ୍ତି ସାମର୍ଥ୍ୟ ଓଜନ କରି କାର୍ଯ୍ୟରେ ହାତ ଦେଉଥିଲେ, ଏବଂ ସର୍ବତ୍ର କୃତକାର୍ଯ୍ୟର ଆନନ୍ଦ ଉପଭୋଗ କରି ସୁଖୀ ହେବା ଜାଣିଥିଲେ ।"

ବନମାଳୀ ଗୁରୁ 'ଆର୍ଯ୍ୟମିତ୍ର' ନାମକ ଏକ ପୁସ୍ତକ ରଚନା କରିଥିଲେ । ଏହି ଗ୍ରନ୍ଥରେ ବହୁ ବହୁ ଗୁଣବାନ ଓ ପ୍ରାତଃ ସ୍ମରଣୀୟ ବ୍ୟକ୍ତିବର୍ଗଙ୍କ ନାମାବଳୀ ସହ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ନାମୋଲ୍ଲେଖ କରି ବହୁ ପ୍ରଶଂସା କରିଥିଲେ । ତଦ୍ଦର୍ଶନରେ ରାଜା ବାହାଦୁର କ୍ଷୁଣ୍ଣମନରେ ଓ କୁଣ୍ଠିତ ଅନ୍ତରରେ କହିଥିଲେ– "ଏହି ସମସ୍ତ ମହାତ୍ମା ବ୍ୟକ୍ତିଙ୍କ ସହିତ ତୁଳନା କଲେ ମୋର ପ୍ରଶଂସା ଯୋଗ୍ୟ କିଛି ସୁଦ୍ଧା ମୋ ପାଖରେ ନାହିଁ, ଏହା ଅତ୍ୟନ୍ତ ଅନ୍ୟାୟ କାର୍ଯ୍ୟ ହୋଇଅଛି । କୌଣସିମତେ ଏଭଳି କରିବା ଉଚିତ୍ ନୁହେଁ । କର୍ମ ଦ୍ୱାରା ହିଁ ମନୁଷ୍ୟ ପ୍ରଶଂସାର ପାତ୍ର ହୋଇଥାଏ । ଏହି ତାଲିକାରେ ସ୍ଥାନ ପାଇବାପାଇଁ ଯୋଗ୍ୟ କେଉଁ କର୍ମ ମୋହର ଅଛି ?"*(୬)*

ଅପର ଜଣେ ଗ୍ରନ୍ଥକାର 'ଭାରତାଦର୍ଶ' ଶୀର୍ଷକ ଏକ ଗ୍ରନ୍ଥ ରଚନା କରି ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ବହୁ ବହୁ ସ୍ତୁତି କରିଥିଲେ ଏବଂ ତାହା ସହିତ ତୁଳନାରେ ଅନ୍ୟାନ୍ୟ ରାଜାମାନଙ୍କ ସମ୍ମାନର ଖର୍ବତା ସାଧନ ଚେଷ୍ଟା ମଧ୍ୟ ଗ୍ରନ୍ଥରେ ସ୍ଥାନ ପାଇଥିଲା । ଏହି ଗ୍ରନ୍ଥ ଦର୍ଶନ ପରେ ରାଜା କହିଥିଲେ– "ଭାରତାଦର୍ଶ ନାମକ ଗ୍ରନ୍ଥ ରଚନା କରି ମୋ' ବିଷୟରେ ଆଲୋଚନା ଅତ୍ୟନ୍ତ ଅନ୍ୟାୟ କାର୍ଯ୍ୟ ।ଏହି ଅନ୍ୟାୟ ଅନୁଷ୍ଠାନର ସୌନ୍ଦର୍ଯ୍ୟ ବୃଦ୍ଧି କଳ୍ପେ ପୁନଶ୍ଚ ଅନ୍ୟାନ୍ୟ ରାଜାଙ୍କୁ କେତେଦୂର କଳଙ୍କିତ କରିଅଛି,ତାହା କହି ଶେଷ କରିହେବ ନାହିଁ । ଏହା ଖୁବ୍ ବିରାଟ ଆକ୍ଷେପର ବିଷୟ ।"*(୭)*

ବାମଣ୍ଡା ରାଜକାର୍ଯ୍ୟରେ ନିଯୁକ୍ତ କର୍ମଚାରୀ ବର୍ଗଙ୍କ ମଧ୍ୟରେ କୌଣସି ଜଣେ କର୍ମଚାରୀଙ୍କ କାର୍ଯ୍ୟକଳାପରେ ପରିତୁଷ୍ଟ ହୋଇ ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏକଦା ଏକ ସଭାର ଆୟୋଜନ କରାଇ ସେହି ସଭାରେ କର୍ମଚାରୀଙ୍କ ପ୍ରଚୁର ପ୍ରଶଂସା କରି ତାଙ୍କୁ ଏକ ସ୍ୱର୍ଣ୍ଣପଦକ ପୁରସ୍କାର ଦେଇଥିଲେ । ଏହି ପଦକ ଦାନ କାଳରେ ସଭାପତି ରୂପେ ରାଜା ବାହାଦୁର ତାଙ୍କ କର୍ମଚାରୀ ବୃନ୍ଦଙ୍କୁ ସମବେତ ଭାବେ ସମ୍ବୋଧନ କରି କହିଥିଲେ– "ମୁଁ ଏହି ସମବେତ କର୍ମଚାରୀବର୍ଗୀ ମୋର ଭୃତ୍ୟ ବୋଲି ମନେ କରେ ନାହିଁ, ଏମାନେ ସମସ୍ତେ ମୋର ସହକାରୀ ।"*(୮)*



Digitized by srujanika@gmail.com

ଏକଦା ରାଜ୍ୟର ଜଣେ ତନ୍ତୀ ତାହାଙ୍କ ବସ୍ତ୍ର ବୟନ ମଧ୍ୟରେ ନାନାବିଧ ପ୍ରକାରେ ସୂତ୍ର ପରିଚାଳନା ଦ୍ୱାରା ରାଜକୀର୍ତ୍ତିର ବହୁ ପ୍ରଶଂସା କରିଅଛନ୍ତି । ରାଜା ବାହାଦୁର ସେହି ବ୍ୟକ୍ତିଙ୍କ ଶିଳ୍ପ ଚାତୁରୀର ବହୁ ପ୍ରଶଂସା କରି ତାଙ୍କୁ ପୁରସ୍କୃତ କରି କହିଥିଲେ- "ତୁମର ପରିଶ୍ରମ ଓ ତାହାର ଫଳ ପ୍ରଶଂସନୀୟ, ସନ୍ଦେହ ନାହିଁ, କିନ୍ତୁ ଶ୍ରମ ତୁଳନାରେ କାର୍ଯ୍ୟର ଫଳ ଅଳ୍ପ-କାଳ ସ୍ଥାୟୀ ।"*(୯)* ଯେଉଁ କାର୍ଯ୍ୟ ଦୀର୍ଘକାଳ ସ୍ଥାୟୀ ଲାଭଜନକ, ରାଜା ବାହାଦୁର ସେହି କାର୍ଯ୍ୟର ବିଶେଷ ପକ୍ଷପାତୀ ଥିଲେ ।

ପୂର୍ବେ ନାନା ସ୍ଥାନେ ରାଜାଙ୍କର ସାହିତ୍ୟାନୁରାଗ ଓ ସାହିତ୍ୟସେବାର ଉଲ୍ଲେଖ କରାଯାଇଅଛି । କାହାରିକୁ ସାହିତ୍ୟଚର୍ଚ୍ଚା କରିବା ଦେଖିଲେ ଏବଂ ତାହାଙ୍କଠାରେ କିଛି ଗୁଣର ପରିଚୟ ପାଇଲେ ରାଜାଙ୍କ ଆନନ୍ଦର ସୀମାରହୁ ନଥିଲା । ଏକଦା ଦୁର୍ଯ୍ୟୋଧନ ନାୟକ ନାମକ ସାତଟଙ୍କା ବେତନ ପାଉଥିବା ଜଣେ କର୍ମଚାରୀ, ସୁଯୋଗ ମତେ ରାଜାଙ୍କ ସମୀପରେ ଉପସ୍ଥିତ ହୋଇ, ସ୍ୱୀୟ ରଚିତ ଏକ ପୁସ୍ତକ ଆଦ୍ୟୋପ୍ରାନ୍ତ ଶୁଣାଇଥିଲେ । ରାଜା ସାର୍ ବାସୁଦେବ ଗ୍ରନ୍ଥ ରଚନାରେ ପ୍ରୀତ ହୋଇ ତତ୍‌କ୍ଷଣାତ୍ ସରକାରୀ ବ୍ୟୟରେ ଗ୍ରନ୍ଥ ମୁଦ୍ରଣର ଆଦେଶ ଦେଲେ । ସେହି ବ୍ୟକ୍ତି କି କାର୍ଯ୍ୟ କରନ୍ତି ଏବଂ କେତେ ବେତନ ପାଆନ୍ତି, ବନ୍ଦୋବସ୍ତ (Settlement office) ଦପ୍ତରରେ କାର୍ଯ୍ୟ କରନ୍ତି ଶୁଣି, ତତ୍‌କ୍ଷଣାତ୍ ତାଙ୍କ ଦରମା ସାତଟଙ୍କାରୁ କୋଡ଼ିଏ ଟଙ୍କା ବୃଦ୍ଧିର ଆଦେଶ ଦେଲେ ।*(୧୦)* ଏଭଳି ଘଟଣା ବିରଳ ନୁହେଁ ।

ବାମଣ୍ଡା ସରକାରରେ ବୈଷ୍ଣବ ହାଲେଦାର ନାମକ ଜଣେ ହସ୍ତୀ ରକ୍ଷକ ଥିଲେ । ଏହାଙ୍କ ପତ୍ନୀ ବିୟୋଗ ହେବା ପରେ ଏହି ବ୍ୟକ୍ତି କାର୍ଯ୍ୟତ୍ୟାଗ କରି ଉଦାସ ଭାବରେ ଚାଲିଯାଆନ୍ତି । ତାହାଙ୍କୁ ଯେତେବେଳେ ଆଉ କୌଣସି ଉପାୟରେ ଅଟକାଇ ରଖିବା ସମ୍ଭବପର ହୁଏ ନାହିଁ, ସେତେବେଳେ ରାଜା ବାହାଦୁର ବିଶେଷ ଅନୁକମ୍ପା ପ୍ରଦର୍ଶନ ପୂର୍ବକ ତାଙ୍କୁ ସର୍ବଦା ନିକଟରେ ରଖିବା ଏବଂ ତାଙ୍କ ପ୍ରତି ବିଶେଷ ଯତ୍ନ ପ୍ରକାଶ କରିବାରେ ଲାଗିଲେ । ଅନେକ ସମୟରେ କଥାବାର୍ତ୍ତା ପ୍ରସଙ୍ଗରେ ତାଙ୍କ ମାନସିକ ଅବସ୍ଥାର ପରିବର୍ତ୍ତନର ଚେଷ୍ଟା କରିବାରେ ଲାଗିଲେ । କ୍ରମଶଃ ତାଙ୍କ ପତ୍ନୀ ବିୟୋଗ ଶୋକ କିଞ୍ଚିତ ହ୍ରାସ ପାଇଲା । ରାଜା ନିଜେ ଉଦ୍ୟୋଗ କରି ନିଜ ଅର୍ଥବ୍ୟୟରେ ତାଳଚେରରୁ ପାତ୍ରୀ ସଂଗ୍ରହ କରାଇ ତାଙ୍କର ବିବାହ କରାଇଥିଲେ । ସେହି ବ୍ୟକ୍ତି କ୍ରମେ ରାଜାଙ୍କ ସ୍ନେହ ଆବଦ୍ଧ ହୋଇ ବାମଣ୍ଡାରେ ହିଁ ରହିଯାଇଥିଲେ ।*(୧୧)* ରାଜା ବାହାଦୁର ଏହିପରି ଭାବେ ପ୍ରତିପାଳକ ରୂପେ କେତେ କେତେ ଆଶ୍ରିତଜନଙ୍କ କେତେକେତେ ବିପଦରେ ବନ୍ଧୁ ହୋଇ ଦରିଦ୍ର ରକ୍ଷାପାଇଁ ପ୍ରାଣପଣେ ଯତ୍ନ କରିଅଛନ୍ତି, ତାହା ସଂଖ୍ୟାରେ ପ୍ରକାଶ କରିବା ସମ୍ଭବ ନୁହେଁ ।



Digitized by srujanika@gmail.com

ଦେବଗଡ଼ ନିକଟବର୍ତ୍ତୀ ଏକ ଗ୍ରାମରେ ଜଳାଭାବ ହେତୁ ପ୍ରଜାମାନଙ୍କ ସର୍ବଦା ଅତ୍ୟନ୍ତ କ୍ଳେଶ ହେଉଥିଲା । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏକଦା ଶିକାରରେ ବହିର୍ଗତ ହୋଇ ଏହି ଗ୍ରାମରେ ଉପସ୍ଥିତ ହୁଅନ୍ତି, ଜଳାଭାବେ ସ୍ୱୟଂ କ୍ଳେଶ ପାଇ ପ୍ରଜାମାନଙ୍କ ଜଳାଭାବ ସମ୍ବାଦ ଅବଗତ ହୋଇଥିଲେ ଏବଂ ତତ୍‌କ୍ଷଣାତ୍ ସ୍ଥାନୀୟ  ଜଳାଭାବ ନିବାରଣ କଳ୍ପେ ରାଜ୍ୟବ୍ୟୟରେ ଏକ ସୁବୃହତ୍ ପୁଷ୍କରିଣୀ ଖନନ ଆଦେଶ ଦେଇଥିଲେ ।*(୧୨)*

ଏକଦା ରାଜା ସାର୍ ବାସୁଦେବ ଜମନକିରା ପଲ୍ଲୀ ନିକଟବର୍ତ୍ତୀ ଜଙ୍ଗଲରେ ଶିକାରହେତୁ ବର୍ହିଗତ ହୁଅନ୍ତି । ସେଠାକୁ ପହଞ୍ଚିବାରେ ବେଳାବସାନ ହେବାରୁ ବନ ପ୍ରାନ୍ତରରେ ଏକ କ୍ଷୁଦ୍ର ପଲ୍ଲୀରେ ରାତ୍ରୀଯାପନ କରନ୍ତି । ପରଦିନ ପ୍ରାତଃକାଳରେ ପ୍ରାତଃକୃତ୍ୟ ସମାପନ ପୂର୍ବକ ଅରଣ୍ୟରେ ପ୍ରବେଶ କରନ୍ତି । ପ୍ରବେଶ କରିବା ମାତ୍ରେ ଦୂରରେ ଭ୍ରମର ଗୁଞ୍ଜନବତ୍ ଅସ୍ଫୁଟ ଧ୍ୱନି ଶୁଣିବାକୁ ପାଆନ୍ତି । ପାର୍ଶ୍ୱଚରଙ୍କ ଦ୍ୱାରା ଶବ୍ଦ ସଂକେତ ସ୍ଥାନ ନିରୂପଣ କରିବାକୁ ଆଦେଶ ଦିଅନ୍ତି । ନିଜେ ମଧ୍ୟ ଅନୁସନ୍ଧାନରେ ବ୍ୟସ୍ତ ହୁଅନ୍ତି । ଅନେକ ସମୟ ଧରି ଏପଟେ ସେପଟେ ଅନୁସନ୍ଧାନ କରିବା ପରେ, ଦୂରରେ ଏକ ଝରଣା ନିକଟରେ ଜଣେ ଲୋକ ଶୋଇଥିବା ବୋଧ ହେବାରୁ, ରାଜା ବାହାଦୁର ସଦଳବଳେ ଝରଣା ସନ୍ନିକଟରେ ଉପସ୍ଥିତ ହୋଇ ଦେଖନ୍ତି, କୌପୁନୀଧାରୀ, ନିମିଳିତ ନେତ୍ର, କ୍ଷୀଣକାୟ, କ୍ଷୁତ୍‌ପିପାସାକାତର ଏକ ବ୍ରହ୍ମଚାରୀ ଝରଣା ପ୍ରାନ୍ତସ୍ଥ ପ୍ରସ୍ତରରେ ମୃତବତ୍ ପତିତ । ପତନ ଫଳରେ ସନ୍ନ୍ୟାସୀଙ୍କର ପଦଦ୍ୱୟ ଝରଣାର ସ୍ରୋତ ସ୍ପର୍ଶ କରି ସଶବ୍ଦରେ ଧୌତ ହେଉଅଛି ।  ରାଜା ବାହାଦୁର ପରୀକ୍ଷା କରି ଦେଖିଲେ, ସନ୍ନ୍ୟାସୀଙ୍କର ଦେହ ତୁଷାରଶୀତଳ ହେଲେ ମଧ୍ୟ, ଦେହରେ ଏବେ ସୁଦ୍ଧା ପ୍ରାଣ ଅଛି । ରାଜାଙ୍କ ନିକଟରେ ଶରୀର ତାପବୃଦ୍ଧି କରିବା ଉପଯୋଗୀ ଏକ ପ୍ରକାର ତୈଳ ଥିଲା । ପାର୍ଶ୍ୱଚରଙ୍କ ମଧ୍ୟରେ ଜଣକୁ ଏହି ତୈଳ ସନ୍ନ୍ୟାସୀଙ୍କ ଦେହରେ ମାଲିସ କରିବାକୁ ଆଦେଶ ଦେଲେ । ଅପର କାହାକୁ ନିକଟସ୍ଥ ଗ୍ରାମକୁ ପଠାଇ ଦୁଗ୍ଧ ଅଣାଇ ଏହି ଆସନ୍ନ ମୃତ୍ୟୁ କବଳଗତ ସାଧୁଙ୍କ ସେବାରେ ନିଯୁକ୍ତ ରହିଲେ । ପ୍ରାତଃ କାଳରୁ ଏହିପରି ଭାବରେ ସନ୍ନ୍ୟାସୀଙ୍କ ସେବା କରିବା ଫଳରେ ପ୍ରାୟ ୧୧ଘଣ୍ଟା ସମୟରେ ତାଙ୍କ ଅଳ୍ପ ଅଳ୍ପ ଜ୍ଞାନ ହେଲା ଏବଂ କାତର ବ୍ୟଞ୍ଜନ ଓଃ...ଓଃ...ଶବ୍ଦ ତାଙ୍କ ମୁଖରୁ ଶ୍ରୁତ ହେଲା । ଏହିପରି ଭାବରେ ପୂର୍ଣ୍ଣ ଦୁଇଦିନ ସେହି ସ୍ଥାନେ ସର୍ବବିଧ ଅସଙ୍ଗତ କ୍ଳେଶ ଭୋଗକରି ସନ୍ନ୍ୟାସୀଙ୍କ ସୁସ୍ଥତା ସମ୍ପାଦନରେ ବ୍ୟସ୍ତ ରହିଲେ । ସନ୍ନ୍ୟାସୀ ଦୁଇଦିନ ପରେ କଥା କହିବାରେ ସକ୍ଷମ ହେଲେ । କିନ୍ତୁ କଥିତ ଭାଷା ତୈଲଙ୍ଗୀ ଭାଷା ଓ ସାଧୁ ମାନ୍ଦ୍ରାଜ ଅଞ୍ଚଳରେ ବୋଲି ଜଣାଗଲା । ତେଣୁ ତାଙ୍କ ଭାଷା ରାଜା ବାହାଦୁର ବୁଝି ପାରିଲେ ନାହିଁ । କିନ୍ତୁ ସେହି ଭାଷା ସଂସ୍କୃତ ଶବ୍ଦ ବହୁଳ ବୋଲି



Digitized by srujanika@gmail.com

ରାଜା ବାସୁଦେବ ତାଙ୍କୁ ସଂସ୍କୃତଜ୍ଞ ବୋଲି ଅନୁମାନ କରନ୍ତି ଓ ସଂସ୍କୃତରେ ତାଙ୍କୁ ପ୍ରଶ୍ନ ପଚାରିବା ଫଳରେ, ଉଭୟଙ୍କ ମଧ୍ୟରେ ସଂସ୍କୃତରେ ପରିଚୟ ଗ୍ରହଣ ଏବଂ ଭାବ ବିନିମୟ ଚାଲିଲା । ରାଜା ଏହି ସନ୍ନ୍ୟାସୀଙ୍କୁ ଦେବଗଡ଼ ନେଇଆସି ପ୍ରାୟ ଛଅମାସ କାଳ ନିକଟରେ ରଖାଇଥିଲେ । ତାଙ୍କର ଅଗାଧ ପାଣ୍ଡିତ୍ୟ, ତାଙ୍କର ଆଚାର ବ୍ୟବହାର, ତାଙ୍କର ସ୍ୱଭାବ ଚରିତ୍ର, ସର୍ବୋପରି ତାଙ୍କର ଈଶ୍ୱର ଭକ୍ତି, ରାଜା ସୁଢ଼ଳଦେବଙ୍କୁ ତାଙ୍କ ପ୍ରତି ଏକାନ୍ତ ଅନୁରକ୍ତ କରାଇଥିଲେ । ସାର୍ ବାସୁଦେବ ଏହି ସାଧୁଙ୍କୁ ସ୍ଥାୟୀଭାବରେ ଦେବଗଡ଼ରେ ରଖାଇବା ପାଇଁ ବିଶେଷ ଚେଷ୍ଟା କରିଥିଲେ । କିନ୍ତୁ ସନ୍ନ୍ୟାସୀ ରାଜପରିଚର୍ଯ୍ୟାରେ ସନ୍ତୁଷ୍ଟ ହୋଇମଧ୍ୟ, ପୁନଃ ପୁନଃ ରାଜା ବାହାଦୁରଙ୍କୁ ଜଣାଇଥିଲେ ଯେ, ତାହାଙ୍କ ପକ୍ଷରେ ନିତ୍ୟ ଲୋକାଳୟରେ ବାସ ଏକାବେଳକେ ନିଷିଦ୍ଧ । ତେଣୁ ଛଅମାସ ପରେ, ଆଉ ରହିବାପାଇଁ ସମ୍ମତ ହେଲେ ନାହିଁ । ଯିବା ସମୟରେ ରାଜା ବାସୁଦେବ ସାଧୁଙ୍କୁ ବହୁମୂଲ୍ୟ ବସ୍ତ୍ର, ମୂଲ୍ୟବାନ ମାଳା ଓ ହୀରକାଦି ରତ୍ନ ବିଦାୟ ସ୍ୱରୂପ ଦେଲେ । କିନ୍ତୁ ସନ୍ନ୍ୟାସୀ ସେସବୁ କିଛି ହେଲେ ଗ୍ରହଣ କଲେ ନାହିଁ । ରାଜାଙ୍କର ସବିନୟ ଅନୁରୋଧ ରକ୍ଷା କରି ନପାରି, କେବଳ ଖଣ୍ଡେମାତ୍ର ଶୀତବସ୍ତ୍ର (ଶାଲ) ଗ୍ରହଣ କରିଥିଲେ ।***(୧୩)*** ରାଜଧର୍ମ ପାଳନ ହେତୁ ରାଜାମାନେ ଶିକାରରେ ବହିର୍ଗତ ହୋଇଥାନ୍ତି । ବହୁ ବହୁ ଜୀବଜନ୍ତୁ ବଧ କରି ରାଜଗୌରବ ବୃଦ୍ଧି କରିଥାନ୍ତି । ରାଜା ବାସୁଦେବ ଏହି କ୍ଷେତ୍ରରେ ବହୁକ୍ଳେଶ ସ୍ୱୀକାର କରି ଏକ ମହାମୂଲ୍ୟ ଶିକାର ନେଇ ଦେବଗଡ଼କୁ ଫେରିଥିଲେ । ମନୁଷ୍ୟ ମହତ୍ ହେଲେ, ତାଙ୍କର କେଉଁ କାର୍ଯ୍ୟରେ କିପରି ପୁରସ୍କାର ଲାଭ ହୁଏ, ତାହା କିଏ କହିପାରେ ? ସେ ଏହି ଯାତ୍ରା ସନ୍ନ୍ୟାସୀଙ୍କର ରକ୍ଷାପାଇଁ ନିମିତ୍ତ ମାତ୍ର ଭାଗିଦାର ହୋଇ ଅପରିସୀମ ଆନନ୍ଦ ଭୋଗ କରିଥିଲେ । ସେଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଏକଦା କୌଣସି ବିଶେଷ କାର୍ଯ୍ୟୋପଲକ୍ଷେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ସହସା ସମ୍ବଲପୁର ଯାତ୍ରା କରିବାକୁ ହୁଏ । ଦେବଗଡ଼ଠାରୁ ସମ୍ବଲପୁର ଯିବା ବାଟରେ, ସ୍ଥାନେ ସ୍ଥାନେ ରହିବାପାଇଁ ସ୍ଥାନ ଏବଂ ଆହାରର ସୁବ୍ୟବସ୍ଥା ଥିଲା, ବର୍ତ୍ତମାନ ସୁଦ୍ଧା ରହିଅଛି । ରାଜା ବାହାଦୁର ପ୍ରାତଃକାଳରେ ଅଶ୍ୱାରୋହଣରେ ଗଡ଼ ତ୍ୟାଗ କରି ଦିବା ଦଶଘଣ୍ଟା ସମୟରେ ପ୍ରଥମ ବିଶ୍ରାମସ୍ଥଳୀରେ ଉପସ୍ଥିତ ହୋଇ ଦେଖନ୍ତି, ଆହାର୍ଯ୍ୟର ସମସ୍ତ ଆୟୋଜନ ଅଛି, ସାଙ୍ଗରେ ଲୋକ ମଧ୍ୟ ନିତ୍ୟାନ୍ତ ଅଳ୍ପ ନୁହନ୍ତି, କିନ୍ତୁ ପାଚକ ନାହିଁ । ସେହି ସ୍ଥାନରେ ମିଳିଲେ ନାହିଁ । ରାଜା ବାହାଦୁର ସ୍ୱୟଂ ପାଚକ କାର୍ଯ୍ୟରେ ନିଯୁକ୍ତ ହେଲେ । ଅନ୍ନ, ବ୍ୟଞ୍ଜନ, ମାଂସ ଇତ୍ୟାଦି ସବୁକିଛି ରନ୍ଧନ କଲେ । ଅନଭ୍ୟାସ ବଶତଃ ସାମାନ୍ୟ କିଛି ଅସୁବିଧା ଓ କ୍ଲେଶ ହୋଇଥିଲା । ଭାତରୁ ପେଜ ଗାଳିବା ଅଭ୍ୟାସ ନାହିଁ,



Digitized by srujanika@gmail.com

ତେଣୁ ପେଜ ଗାଳିବା ସମୟରେ ହାତ ପୋଡ଼ିଯିବା ଭାବି ଭୟରେ ଭାତ ଗାଳିବା ଚେଷ୍ଟା ନକରି ହାଣ୍ଡିତଳେ ଛିଦ୍ର କରି କାର୍ଯ୍ୟ ସମାପନ କରନ୍ତି । ପାକ କାର୍ଯ୍ୟ ଶେଷହେବା ପରେ, ସହଚରବୃନ୍ଦ ସମସ୍ତଙ୍କୁ ସ୍ୱହସ୍ତରେ ଅନ୍ନବ୍ୟଞ୍ଜନ ପରିବେଷଣ କରି ଆହାର କରାଇଲେ । ସମସ୍ତଙ୍କ ଆହାର ଶେଷ ହେବାପରେ, ରାଜା ଆହାର ଓ ବିଶ୍ରାମ କରି ପୁନରାୟ ସମ୍ବଲପୁର ଅଗ୍ରସର ହେଲେ ।*(୧୪)* ରାଜା ସାର ବାସୁଦେବ ସୁଡ଼ଳଦେବ ରାଜା ହୋଇ ମଧ୍ୟ ସର୍ବତୋଭାବେ ସବୁ ସମୟରେ ଜଣେ ପୂର୍ଣ୍ଣାଙ୍ଗ ମନୁଷ୍ୟ ଥିଲେ । ମନୁଷ୍ୟ ମାତ୍ରେ ହିଁ ଯାହା ସବୁ ଅବଶ୍ୟ କର୍ମ, ସେହି ସମସ୍ତ କର୍ମର କୌଣସି କର୍ମ ପାଇଁ କୌଣସି ଦିନ ପଶ୍ଚାଦପଦ ହୋଇ ନାହାନ୍ତି । ଲୋକାଭାବରେ କୌଣସି କାର୍ଯ୍ୟରେ ଅସହାୟ ଜୀବଭଳି ଅନ୍ୟର କରୁଣା ପ୍ରକାଶ ଅପେକ୍ଷାରେ ବସି ରହିବା ପାତ୍ର ସେ ନଥିଲେ । ରାଜାସନେ ଉପବିଷ୍ଟ ସାର୍ ବାସୁଦେବ ସୁଡ଼ଳଦେବଙ୍କ ଏହା ହିଁ ଏକ ପ୍ରଧାନ ବିଶେଷତ୍ୱ ଥିଲା ।

ରାଜା ସାର୍ ବାସୁଦେବ ଆବଲ୍ୟ କାଳରୁ ସର୍ବଦା ଲୋକ ବତ୍ସଳ ଓ ବନ୍ଧୁ ବତ୍ସଳ ଥିଲେ । ଏକଦା ବାଲ୍ୟକାଳରେ ସହଚର ବୃନ୍ଦ ପରିବୃତ୍ତ ହୋଇ 'ଡୁଡୁ' ଖେଳୁ ଖେଳୁ ନିଜ ଦନ୍ତାଘାତରେ ଜଗନ୍ନାଥ ପତି ନାମକ ଜଣେ ବାଳକ ମସ୍ତକରେ ଗୁରୁତର ଆଘାତ ଲଗାଇଥିଲେ । ନିଜର ଅଧର ଓଷ୍ଠ ଓ ଦାନ୍ତରେ ଗୁରୁ ଆଘାତ ଲାଗିଥିଲେ ମଧ୍ୟ ଏବଂ ସେଥିପାଇଁ ରକ୍ତାକ୍ତ ହୋଇଥିଲେ ସୁଦ୍ଧା, ଜଗନ୍ନାଥଙ୍କର ମୁଣ୍ଡଟି ଫାଟିଯାଇ ଶୋଣିତ ପ୍ରବାହିତ ହେଉଅଛି ଦେଖି, ତତ୍କ୍ଷଣାତ୍ ତାଙ୍କୁ ରାଜାମାତାଙ୍କ ସଦନକୁ ନେଇଯାଇ ତାଙ୍କ କ୍ଷତସ୍ଥାନ ଧୌତ କରାଇ ଔଷଧ ଲେପନ କରି ଦିଅନ୍ତି । ପରେ ବହୁବିଧ ମିଷ୍ଟକଥା ଓ ମିଷ୍ଟାନ୍ନ ଦ୍ୱାରା ତାଙ୍କର ସନ୍ତୋଷ ସମ୍ପାଦନ କରି ଲୋକଦ୍ୱାରା ସ୍ୱଗୃହକୁ ପଠାଇ ଦିଅନ୍ତି । ଏହା ଏକ ବାଲ୍ୟ ଜୀବନର ଚପଳତା ଜଡ଼ିତ ଉଦାରତା ଓ ଶୀତଳତାର ପରିଚାୟକ ଘଟଣା ।'

ରାଜା ବାସୁଦେବ ପ୍ରତିବେଶୀ ରାଜନ୍ୟବର୍ଗଙ୍କ ମଧ୍ୟରେ ବନ୍ଧୁଭାବ ରକ୍ଷା ହେତୁ ସର୍ବଦା ଯତ୍ନତତ୍ପର ଥିଲେ । କେବେ କୁତ୍ରାପି ତାହାଙ୍କର ବ୍ୟବହାର ଓ ଯତ୍ନ ଚେଷ୍ଟାରେ ବନ୍ଧୁଭାବର ଅଭାବ ପରିଲକ୍ଷିତ ହେଉ ନଥିଲା । ଏକଦା ରେଢ଼ାଖୋଲ ରାଜାଙ୍କର ପିତାପୁତ୍ରଙ୍କ ମଧ୍ୟରେ ମନୋମାଳିନ୍ୟ ଘଟେ । ପୁତ୍ର କ୍ଷୁଣ୍ଣ ମନରେ ବାମଣ୍ଡା ଆସି ରାଜାଙ୍କର ଆତିଥ୍ୟ ଗ୍ରହଣ କରନ୍ତି । ରାଜା ସାର୍ ବାସୁଦେବ ରେଢ଼ାଖୋଲ୍ କୁମାରଙ୍କୁ ସାଦରେ ଗ୍ରହଣ କରି ପରିଚର୍ଯ୍ୟାପୂର୍ବକ ସ୍ୱୟଂ ଅନୁକୂଳକାଳ ସ୍ଥିର କରି କୁମାରଙ୍କୁ ପିତୃସଦନରେ ଉପସ୍ଥିତ କରାଇ ପିତାପୁତ୍ରେ ମିଳନ ସାଧନ କରି ଦେଇଥିଲେ ।*(୧୫)* ମାନବ ସୁହୃଦ ହେବାକୁ ହେଲେ, ଏହିପରି କାର୍ଯ୍ୟ ନିତ୍ୟକର୍ତ୍ତବ୍ୟ ମଧ୍ୟରେ ପରିଗଣିତ ହୋଇଥାଏ ।



Digitized by srujanika@gmail.com

ବାମଣ୍ଡା ରାଜ୍ୟର ପୂର୍ବ ଦକ୍ଷିଣ ସୀମାରେ ବାହ୍ମଣୀନଦୀ । ଏହି ନଦୀର ଆରପାରିରେ ତାଳଚେର ରାଜ୍ୟ । କଟକ ସହିତ ବାଣିଜ୍ୟ ପରିଚାଳନା କାଳରେ ଏହି ନଦୀ ତୀରରେ ତାଳଚେର ରାଜ୍ୟର ସୀମାରେ ଏକ ବାଣିଜ୍ୟ କୋଠୀ ନିର୍ମାଣ କରାଇଥିଲେ । ଏହି ଗୃହ ନିର୍ମାଣ ପାଇଁ ରାଜା ସାର୍ ବାସୁଦେବଙ୍କୁ ତାଳଚେର ରାଜ୍ୟର ପ୍ରଜାମାନଙ୍କୁ ସ୍ୱୀକାର କରିବା ପାଇଁ ପଡ଼ିଥିଲା । କାର୍ଯ୍ୟର ପ୍ରୟୋଜନୀୟତା ଓ ଗୁରୁତ୍ୱ ସ୍ମରଣ କରି ସେ ଏହି ହୀନତା ସ୍ୱୀକାର କରିବାରେ କୁଣ୍ଠା ବା ଅପମାନ ବୋଧ କରିନାହାନ୍ତି । କିନ୍ତୁ ତାଳଚେର ସୀମା ମଧ୍ୟରେ ଏହି ବାଣିଜ୍ୟ କୋଠୀ ନିର୍ମାଣରେ, ବୋଧହୁଏ ରାଜ ଇଙ୍ଗିତରେ ଲୋକାଭାବ ହୋଇଥିଲା । ରାଜା ସୁଢ଼ଳଦେବ ସ୍ଥାନୀୟ ଗୋଦାମର ଗଡ଼ନାୟକଙ୍କୁ କହିଥିଲେ- 'ଗଡ଼ନାୟକ ! ତାଳଚେର ପତି ରାଜା ରାମଚନ୍ଦ୍ର ଆମ୍ଭର ବନ୍ଧୁ । ସେପରି ସ୍ଥଳେ ଆମ୍ଭର କାର୍ଯ୍ୟରେ ତୁମ୍ଭମାନଙ୍କର ସହାୟତା ପାଇବା ଏକାନ୍ତ ଉଚିତ୍ । ଆମ୍ଭ କାଯ୍ୟରେ ଏହିପରି ବିଘ୍ନ ଉପସ୍ଥିତ ହେବା ଫଳରେ ତୁମ୍ଭମାନଙ୍କ ବ୍ୟବହାରରେ ବନ୍ଧୁରାଜାଙ୍କ ନାମରେ କଳଙ୍କ ଲାଗିଅଛି ।' ଏହି ସହଜ ସରଳ ଶ୍ଳେଷବାକ୍ୟ ତାଳଚେର ରାଜାଙ୍କ କର୍ଣ୍ଣଗୋଚର ହେବାମାତ୍ରେ ଲୋକାଭାବ ଦୂର ହୋଇଥିଲା ।(୧୬)

ବଣାଇ ଓ ବାମଣ୍ଡା ସୀମା ବିବାଦରେ ଇଂରେଜ ସରକାର କର୍ମଚାରୀଙ୍କ ସହ ବଣାଇ ସ୍ୱର୍ଗୀୟ ରାଜା ଓ ବାମଣ୍ଡା ରାଜା ଏକତ୍ର ବାମଣ୍ଡା ସୀମା ମଧ୍ୟରେ ଅବସ୍ଥାନ କାଳରେ, ବଣାଇ ରାଜ ବାମଣ୍ଡାର ଆତିଥ୍ୟ ଗ୍ରହଣ କରିନଥିଲେ, ସ୍ୱରାଜ୍ୟରୁ ସାହାଯ୍ୟ ଅଣାଇଥିଲେ । ଏହି କାର୍ଯ୍ୟର ଶେଷ ନିଷ୍ପତ୍ତି କାଳରେ, ଉଭୟ ରାଜା ବଣାଇ ସୀମାରେ ବାସ କରିବା ପାଇଁ ବାଧ୍ୟ ହୋଇଥିଲେ । ସାର୍ ବାସୁଦେବ ସୁଢ଼ଳଦେବ ନିଜର ବ୍ୟବସ୍ଥା ସତ୍ତ୍ୱେ ମଧ୍ୟ ବଣାଇ ରାଜାଙ୍କୁ ସମ୍ବୋଧନ କରି କହିଥିଲେ- 'ଆମ୍ଭେ ଆଜି ଆପଣଙ୍କର ଅତିଥି । ବାମଣ୍ଡା ଓ ବଣାଇ ଦୁଇଗୋଟି ରାଜ୍ୟ । ଆମ୍ଭେ ଉଭୟେ ରାଜ୍ୟର ନ୍ୟାର୍ଯ୍ୟ ସ୍ୱାର୍ଥ ରକ୍ଷା ହେତୁ ନିଯୁକ୍ତ ଓକିଲ ମାତ୍ର । ବିଚାରକ ଇଂରେଜ ଗଭର୍ଣ୍ଣମେଣ୍ଟ ଯେଉଁ ନିର୍ଦ୍ଦେଶ ଦେବେ  ଆମ୍ଭେମାନେ ଗ୍ରହଣ କରିବା । ଏଭଳି ସମୟରେ ଉଭୟ ପକ୍ଷର ଓକିଲଙ୍କ ମଧ୍ୟରେ ବନ୍ଧୁ ଭାବରେ ଅଭାବ ବା ହେବ କାହିଁକି ? ଗଙ୍ଗ ଓ କଦମ୍ବ ବଂଶୀୟ ପ୍ରତିନିଧିମାନେ ତ ପରସ୍ପରଙ୍କ ବନ୍ଧୁ ।(୧୭)

ଏହି କ୍ଷେତ୍ରରେ ସାର୍ ବାସୁଦେବ ସ୍ୱଇଚ୍ଛାରେ ବଣାଇର ଆତିଥ୍ୟ ଗ୍ରହଣ କରି ବଣାଇ ରାଜାଙ୍କୁ ତାଙ୍କର ସ୍ୱୀୟ କାର୍ଯ୍ୟ ପାଇଁ ଅତ୍ୟନ୍ତ ଲଜ୍ଜିତ କରାଇଥିଲେ, ସେହି ବିଷୟରେ ସନ୍ଦେହ ନାହିଁ । ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ବ୍ୟବହାର ସର୍ବତ୍ର ହିଁ ଏହିପରି ଶାନ୍ତି ସ୍ଥାପନ ପ୍ରିୟ ବ୍ୟକ୍ତିଙ୍କର ବ୍ୟବହାରର ସାକ୍ଷ୍ୟ ପ୍ରଦାନ କରିଥାଏ ।



Digitized by srujanika@gmail.com

ରାଜା ସାର୍ ବାସୁଦେବ ସୁଢ଼ଳଦେବ ସ୍ୱୀୟ ରାଜ୍ୟର ରାଜଧାନୀ ଦେବଗଡ଼ର ସ୍ୱାସ୍ଥ୍ୟୋନ୍ନତି ବିଷୟରେ ସର୍ବଦା ସତର୍କ ଦୃଷ୍ଟି ରଖୁଥିଲେ । ସେଥିପାଇଁ ସ୍ନାନ ଓ ପାନୀୟ ଜଳର ସୁବ୍ୟବସ୍ଥା ପାଇଁ ବହୁ ଅର୍ଥ ବ୍ୟୟ କରିଥିଲେ । ବାମଣ୍ଡାର ରାଜଧାନୀ ଦେବଗଡ଼, ବିଦେଶୀୟ ଭଦ୍ର ଜନଗଣଙ୍କ ପ୍ରୀତିକର ଓ ସୁଖକର ସ୍ଥାନରେ ପରିଣତ କରିବା ପାଇଁ ସର୍ବଦା ଯତ୍ନ ତତ୍ପର ଥିଲେ । ରାଜ୍ୟ ବାହାରର କୌଣସି ପଦସ୍ଥ ବ୍ୟକ୍ତି ରାଜଦର୍ଶକ, ଭ୍ରମଣ ବା କାର୍ଯ୍ୟୋପଲକ୍ଷେ ଦେବଗଡ଼ ଆସିଲେ, ରାଜା ସୁଢ଼ଳଦେବ ସ୍ୱୟଂ ସର୍ବଦା ସେମାନଙ୍କ ପ୍ରତି ସୁଦୃଷ୍ଟି ରଖୁଥିଲେ । କାହାରି ଶରୀର ଅସୁସ୍ଥ ହେଲେ, ନିଜେ ପରିଚର୍ଯ୍ୟା କରୁଥିଲେ । ତାଙ୍କ ଦ୍ୱାରା ନିଯୁକ୍ତ ଚିକିତ୍ସକମାନଙ୍କ ଦ୍ୱାରା ରୋଗମୁକ୍ତି ପାଇଁ ପ୍ରାଣପଣେ ଚେଷ୍ଟା କରୁଥିଲେ । ତାଙ୍କ ଦ୍ୱାରା ନିଯୁକ୍ତ ଚିକିତ୍ସକମାନେ ସର୍ବଦା ହିଁ ତାଙ୍କର, ଏହି ସାଧୁ ଅଭିପ୍ରାୟର ଅନୁରୂପ କର୍ତ୍ତବ୍ୟ ପାଳନ କରି ଆନନ୍ଦ ଉପଭୋଗ କରୁଥିଲେ । ଏକଦା କାଶୀର ପଲମଲ୍ ଭୋଳାନାଥ ନାମକ ଜଣେ ମହାଜନ ବାମଣ୍ଡା ଆସି କଠିନ ପୀଡ଼ାରେ ପୀଡ଼ିତ ହୋଇ ପଡନ୍ତି । ରାଜା ସ୍ୱୟଂ ତାହାଙ୍କ ସମ୍ବାଦ ରଖିଥିଲେ ଏବଂ ତାଙ୍କର ରୋଗମୁକ୍ତି ପାଇଁ ବିଧିମତେ ଚେଷ୍ଟାକରି ତାଙ୍କୁ ଆରୋଗ୍ୟ କରାଇ ଆନନ୍ଦ ଉପଭୋଗ କରିଥିଲେ ।*(୧୮)*

ରାଜା ସାର ବାସୁଦେବ ସୁଢ଼ଳଦେବ ଜଣେ ମୃଗୟା ପ୍ରିୟ ରାଜା ଥିଲେ । ବହୁ ବହୁ ଥର ବ୍ୟାଘ୍ର, ଭଲ୍ଲୁକ ଇତ୍ୟାଦି ବହୁ ବନ୍ୟଜନ୍ତୁ ବଧ କରି ପ୍ରଜାଗଣଙ୍କର ପ୍ରାଣ ରକ୍ଷାରେ ସହାୟତା କରିଛନ୍ତି । ଅନେକ ସମୟରେ ଶିକାରରେ ମୃଗ ଏବଂ ତତ୍‌ଜାତୀୟ ପ୍ରାଣୀ ବଧ କରି ରାଜଧାନୀକୁ ଆନୟନ କରିଅଛନ୍ତି । ଏକଦା ଏହିପରି ଏକ ମୃଗୟା ଉପଲକ୍ଷେ କଲଣ୍ଡା ଅଞ୍ଚଳରେ ଶିକାରାର୍ଥେ ପ୍ରାତଃକାଳରେ ଯାତ୍ରା କରି ଫେରି ଆସିବା ବେଳକୁ ବେଳ ଗଡ଼ିଯାଏ । ସେହିଦିନ ଆହାରାଦି କିଛି ହୋଇନାହିଁ । ସାଥୀରେ ଥିଲେ ନଗେନ୍ ଚନ୍ଦ୍ର ଦାଶ୍ । ନିକଟବର୍ତ୍ତୀ କଲଣ୍ଡା ଗ୍ରାମର 'ବାଂଛାର ମା' ନାମକ ଜଣେ ବୃଦ୍ଧା କ୍ରୟ ବିକ୍ରୟ ଶେଷକରି ଗଡ଼ରୁ ଫେରି ଆସୁଥିବା ଦେଖି ରାଜା କହିଲେ- 'ବୁଢ଼ୀଙ୍କ ପାଖରେ କିଛି ନାହିଁ ? ଭୀଷଣ ଭୋକ ।' ସହଯାତ୍ରୀ ନଗେନ୍ଦ୍ରବାବୁ ଅଗ୍ରସରହୋଇ ବୃଦ୍ଧାଙ୍କୁ ଜିଜ୍ଞାସା କରି ଜାଣିଲେ, ମୋଟା ଚୁଡ଼ା, ପଚା କଦଳୀ ବିକ୍ରୟ ଶେଷକରି କିଛି ଘୋଳଦହି ମାତ୍ର ଅଛି । ରାଜା କ୍ଷୁଧାର ତାଡ଼ନାରେ ତାହା ଅମୃତ ପରି ଭକ୍ଷଣ କରି କ୍ଷୁଧା ନିବୃତ୍ତ କରିଥିଲେ । ପରଦିନ ତାଙ୍କୁ ଗଡ଼କୁ ଡ଼କାଇ ଏକ ଯୋଡ଼ା ଶାଢ଼ୀ ପୁରସ୍କାର ଦେଇଥିଲେ । ସେହି ସମୟ ଏତେ ମନ୍ଦ ଯେ ଏକ ସେର ଦୁଗ୍ଧ ଅପେକ୍ଷା ଏକ ସେର ଚାଉଳର ମୂଲ୍ୟ ଅଧିକ, ତେଣୁ ରାଜଭବନରେ ଦୁଗ୍ଧର ପ୍ରୟୋଜନ ନଥିଲେ ମଧ୍ୟ, ବୃଦ୍ଧାଙ୍କ ନିକଟରୁ ପ୍ରତିଦିନ ସେରେ ଦୁଗ୍ଧ ନେଇ ଏକ ସେର ଲେଖାଁ ଚାଉଳ ଦେବାପାଇଁ ଆଦେଶ ଦେଇଥିଲେ ।*(୧୯)*



Digitized by srujanika@gmail.com

ଭାରତରେ ଇଂରେଜ ରାଜତ୍ୱ , ସୁତରାଂ ଏହି ଦେଶରେ ସାହେବଙ୍କର ସ୍ୱଭାବରେ ପ୍ରଭୁତ୍ୱ ପରାୟଣତା ପ୍ରଚୁର ପରିମାଣରେ ଦେଖିବାକୁ ମିଳିଥାଏ । ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ଶ୍ଲିପର୍ କାରବାର ଚଳାଇବା ପାଇଁ ସାହେବ (ଇଂରେଜ) କର୍ମଚାରୀ ରଖିବାକୁ ପଡୁଥିଲା । ମିଷ୍ଟର ଆଲେକ୍‌ଜାଣ୍ଡର ନାମକ ଜଣେ ସାହେବ ଅନେକ ଦିନ ବାମଣ୍ଡା ରାଜ୍ୟର କାର୍ଯ୍ୟରେ ନିଯୁକ୍ତ ରହିଥିଲେ । ସାହେବ ସର୍ବଦା ହିଁ ରାଜା ବାହାଦୁରଙ୍କୁ ରାଜକାର୍ଯ୍ୟର ନାନା ବିଭାଗରେ ପରାମର୍ଶ ଦେବାପାଇଁ ଅଗ୍ରସର ହେଉଥିଲେ । ରାଜା ସୁଢ଼ଳଦେବ ଖୁବ୍ ସାବଧାନତା ସହକାରେ ସର୍ବଦା ସାହେବଙ୍କ ପ୍ରଦତ୍ତ ଉପଦେଶ ଓ ପରାମର୍ଶ ପରିହାର କରୁଥିଲେ । ସାହେବଙ୍କ ଉପଦେଶର ଯେଉ ଅଂଶ ଗ୍ରହଣଯୋଗ୍ୟ ବୋଲି ବିବେଚନା କରୁଥିଲେ, ତାହା ମଧ୍ୟ ସଂପୂର୍ଣ୍ଣ ଭାବେ ସଂଗେ ସଂଗେ ଗ୍ରହଣ କରୁ ନଥିଲେ । ତର୍କ ବିତର୍କ ଦ୍ୱାରା ତାହା ସେହି ସମୟରେ ସ୍ଥଗିତ ରଖି, ପରେ ପରିବର୍ତ୍ତିତ ଆକାରରେ ଗ୍ରହଣ କରୁଥିଲେ ଏବଂ ଖୁବ୍ ମିଷ୍ଟ ବଚନରେ ସାହେବଙ୍କ ପ୍ରସ୍ତାବ ସଂଶୋଧିତ ଆକାରରେ ଗ୍ରହଣ କଲେ ବୋଲି ଜଣାଇ ଦେଉଥିଲେ । ସର୍ବଦା ଏହିପରି ଭାବରେ କାର୍ଯ୍ୟ କରୁଥିଲେ ଯେ, ସାହେବ କର୍ମଚାରୀ ତାଙ୍କ ଉପରେ ପ୍ରଭୁତ୍ୱ ଜାହିର କରିବା ସୁଯୋଗ ପାଇପାରୁ ନଥିଲେ ଏବଂ ସର୍ବଦା ସହଚର ଓ ପାର୍ଶ୍ୱଚରଙ୍କୁ କହୁଥିଲେ- 'ଅଧୀନସ୍ଥ ଶ୍ୱେତକାୟ କର୍ମଚାରୀଙ୍କୁ ପ୍ରଶୟ ବା ପ୍ରାଧାନ୍ୟ ଦେବା ନିରାପଦ ନୁହେଁ ।"



---

ପାଦଟୀକା

(୧) ଏହି ଉଭୟବିଧ ଘଟଣା ଷ୍ଟେଟ୍‌କର୍ମଚାରୀ ଶ୍ରୀଯୁକ୍ତ ଶରତଚନ୍ଦ୍ର ଦାଶଙ୍କ ନିକଟରୁ ଶୁଣିଅଛି ।

(୨) ପଣ୍ଡିତ ମଧୁସୂଦନ ମିଶ୍ର ତର୍କ ବାଚସ୍ପତିଙ୍କ ପ୍ରଦତ୍ତ ବିବରଣୀରୁ ଗୃହୀତ ।

(୩) ଷ୍ଟେଟ୍ କର୍ମଚାରୀ ଶ୍ରୀଯୁକ୍ତ ଶରତଚନ୍ଦ୍ର ଦାସଙ୍କ ନିକଟରୁ ଶୁଣିଅଛି ।



Digitized by srujanika@gmail.com

(୪) ପଣ୍ଡିତ ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରଦତ୍ତ ବିବରଣୀରୁ ଗୃହୀତ ହୋଇଅଛି ।

(୫) ରାୟବାହାଦୁର ରାଧାନାଥ ରାୟ ।

(୬) ବଡ଼କୁମାର ଶ୍ରୀଯୁକ୍ତ ବଳଭଦ୍ର ଦେବଙ୍କ ପ୍ରଦତ୍ତ ବିବରଣୀରୁ ଗୃହୀତ ।

(୭) ତତ୍ରୈବ ।

(୮) ତତ୍ରୈବ ।

(୯) ତତ୍ରୈବ ।

(୧୦) ତତ୍ରୈବ ।

(୧୧) ତତ୍ରୈବ ।

(୧୨) ତତ୍ରୈବ ।

(୧୩) ତତ୍ରୈବ ।

(୧୪) ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରଦତ୍ତ ବିବରଣୀରୁ ଗୃହୀତ ।

(୧୫) ତତ୍ରୈବ ।

(୧୬) ତତ୍ରୈବ ।

(୧୭) ତତ୍ରୈବ ।

(୧୮) ତତ୍ରୈବ ।

(୧୯) ତତ୍ରୈବ ।



Digitized by srujanika@gmail.com

**ସପ୍ତଦଶ ଅଧ୍ୟାୟ**

# ହୀରକ ଜୁବୁଲି, ଦୁର୍ଭିକ୍ଷ ଓ ଦସ୍ୟୁ ଦମନ ପ୍ରଭୃତି

**ହୀରକ ଜୁବୁଲି:** ଭାରତରେ ଇଂରେଜ ସରାକରଙ୍କ ଆଦିଷ୍ଟ ଘୋଷଣା ପତ୍ର ଫଳରେ ୧୮୯୭ ଖ୍ରୀଷ୍ଟାବ୍ଦର ୨୧ ଓ ୨୨ ଜୁନ୍ ଦୁଇ ଦିବସ ସମଗ୍ର ଭାରତ ସାମାଜ୍ୟର ନାନା ସ୍ଥାନେ ହୀରକ ଜୁବୁଲିର ଅନୁଷ୍ଠାନ ହୁଏ । ଏହି ବର୍ଷର ଜୁନ୍ ମାସ ୧୬ତାରିଖରେ ବାମଣ୍ଡାଧିପତି ରାଜା ସାର୍ ବାସୁଦେବ ସୁଡ଼ଳଦେବଙ୍କ ଏକ ଆଦେଶ ପତ୍ର ପ୍ରଚାରିତ ହେବା ଫଳରେ ବାମଣ୍ଡା ରାଜ୍ୟରେ ମଧ୍ୟ ଏହା ସମାରୋହରେ ସୁସଂପନ୍ନ ହୋଇଥିଲା । ଏହି ଦୁଇ ଦିବସବ୍ୟାପୀ ଉତ୍ସବ ବାମଣ୍ଡା ରାଜ୍ୟରେ ଏକ ବିଶିଷ୍ଟ ଅନୁଷ୍ଠାନରେ ପରିଣତ ହୋଇଥିଲା ।

ରାଜ ରାଜେଶ୍ୱରୀ ମହାରାଣୀ ଭିକ୍ଟୋରିଆଙ୍କ ରାଜତ୍ୱ କାଳର ଦୀର୍ଘତା ଅନ୍ୟ କୌଣସି ଦେଶରେ କୌଣସି ଶାସକଙ୍କ କର୍ତ୍ତୃତ୍ୱ ଅତିକ୍ରାନ୍ତ ହୋଇନାହିଁ । ଏହି ହୀରକ ଜୁବୁଲି ଉପଲକ୍ଷେ ବାମଣ୍ଡାର ରାଜାପ୍ରଜା ମିଳିତ ହୋଇ ଭକ୍ତିପ୍ରୀତିପୂର୍ଣ୍ଣ ଯେଉଁ ସମ୍ଭାଷଣ ପତ୍ର ମହାରାଣୀଙ୍କୁ ଅର୍ପଣ କରିଥିଲେ, ତାହା କନକ ମଣ୍ଡିତ ରଜତାଧାରେ ଆବଦ୍ଧ କରାଇ ଛତିଶଗଡ଼ ବିଭାଗର ପୋଲିଟିକାଲ୍ ଏଜେଣ୍ଟ ବାହାଦୁର ମାର୍ଫତରେ ଇଂଲଣ୍ଡ ପ୍ରେରିତ ହୋଇଥିଲା । ମହାରାଣୀଙ୍କ ଶୁଭ କାମନା କରି ଦେବଗଡ଼ ଓ ରାଜ୍ୟର ନାନାସ୍ଥାନର ଦେବାଳୟ ଗୁଡ଼ିକରେ ପୂଜାର୍ଚ୍ଚନାର ଆୟୋଜନ ହୋଇଥିଲା । ବିଦ୍ୟାଳୟ ଗୁଡ଼ିକରେ ଓ ସରକାରୀ କାର୍ଯ୍ୟାଳୟ ଗୁଡ଼ିକ ଛୁଟିଘୋଷିତ ହୋଇଥିଲା । ନାଗରିକ ଗଣ ଏବଂ ନାନା ସ୍ଥାନ ପଲ୍ଲୀ ଜନସାଧାରଣ ଆନନ୍ଦ ଉତ୍ସବରେ ମାତି ଉଠିଥିଲେ । ରାଜା ସାର୍ ବାସୁଦେବ ସୁଡ଼ଳଦେବ ଏହି ଆନନ୍ଦୋତ୍ସବ ଉପଲକ୍ଷେ କାରାବାସୀଙ୍କ ମଧ୍ୟରୁ ଦୁଇଜଣ ପୁରୁଷ ଏବଂ ତିନିଜଣ ମହିଳାଙ୍କୁ ମୁକ୍ତିଦାନ କରି ସଦାଶୟତା ଓ ଉଦାର ହୃଦୟର ପରିଚୟ ଦେଇଥିଲେ ।

ରାଜା ସାର୍ ବାସୁଦେବ ସୁଡ଼ଳଦେବ ବହୁ ଅର୍ଥ ବ୍ୟୟ କରି ବିଦ୍ୟାଳୟ ବାଳକ ବାଳିକାଗଣଙ୍କୁ ଚର୍ବ୍ୟ-ଚୋଷ୍ୟ-ଲେହ୍ୟ-ପେୟରେ ପରିତୁଷ୍ଟ କରାଇଥିଲେ । ନଗର ସଜ୍ଜା ଓ ଆଲୋକମାଳା ଅପୂର୍ବ ରୂପଧାରଣ କରିଥିଲେ । ଉତ୍ସବରେ ଯୋଗ ଦେବାପାଇଁ ଯେଉଁ



Digitized by srujanika@gmail.com

ଅସଂଖ୍ୟ ଜନମଣ୍ଡଳୀ ଦେବଗଡ଼ଠାରେ ଉପସ୍ଥିତ ହୋଇଥିଲେ, ରାଶି ରାଶି ଅର୍ଥ ବ୍ୟୟରେ ସେହି ସମସ୍ତ ପ୍ରଜା ଓ ଦରିଦ୍ର ଜନତାଙ୍କୁ ଆହାରରେ ଆପ୍ୟାୟିତ କରାଯାଇଥିଲା । ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହି ଉପଲକ୍ଷେ ଆୟୋଜିତ ଅନୁଷ୍ଠାନଟିକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ପ୍ରାଣପଣେ ଯତ୍ନ ଓ ଅଗଣିତ ଅର୍ଥବ୍ୟୟ କରିଥିଲେ । ରାଜ୍ୟର ନାନା ସ୍ଥାନରେ ପ୍ରଜାଗଣଙ୍କ ମିଳତ ସଭାରେ ଏହି ଅଭିନନ୍ଦନ ପତ୍ର ପଠିତ ଓ ଗୃହୀତ ହୋଇଥିଲା । ତଦାନିନ୍ତନ ଯୁବରାଜ (ପରବର୍ତ୍ତୀ କାଳରେ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ) ଏହି ଅଭିନନ୍ଦନ ପତ୍ର ପାଠ କରିଥିଲେ । ରାଜା ବାହାଦୁର ପୀଡ଼ିତ ଥିବା ହେତୁ ଯୁବରାଜ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ଦେବ ସଭାପତି ଆସନ ଅଳଂକୃତ କରିଥିଲେ । ସଭାରେ ନୀଳମଣି ବିଦ୍ୟାରତ୍ନ, ମହାରାଣୀଙ୍କ ଜୀବନ କାହାଣୀ ଆଲୋଚନା କରିଥିଲେ ।

ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଯୋଗେଶ ଦାଶ ମହାଶୟ ସଭାସ୍ଥ ସମସ୍ତଙ୍କୁ ଏହି ଅଭିନନ୍ଦନ ପତ୍ରର ସାରମର୍ମ ବୁଝାଇ ଦେଇ ରାଜଭକ୍ତି ବିଷୟରେ ଉପଦେଶ ଦେଇଥିଲେ । ଏହିପରି ଭାବରେଁ ବାମଣ୍ଡାର ରାଜଧାନୀ ଦେବଗଡ଼ ଦୁଇଦିନ ମହା ଆନନ୍ଦରେ ମାତି ଉଠିଥିଲା । ସ୍ୱୟଂ ରାଜା ବାହାଦୁର ଶଯ୍ୟାଗତ ଥିବାରୁ କର୍ମ ବାହୁଲ୍ୟର ଦାୟିତ୍ୱ ଯୋଗେଶ ବାବୁଙ୍କ ସ୍କନ୍ଧରେ ନ୍ୟସ୍ତ କରାଯାଇଥିଲା

**ଦୁର୍ଭିକ୍ଷ:** ୧୮୯୬ ଖ୍ରୀଷ୍ଟାବ୍ଦରେ ଉତ୍ତମ ବର୍ଷା ଅଭାବରେ ଶସ୍ୟହୀନ ହୋଇଥିଲା । ୧୮୯୭ ଖ୍ରୀଷ୍ଟାବ୍ଦ ପ୍ରାରମ୍ଭରୁ ମଧ୍ୟପ୍ରଦେଶର ନାନା ସ୍ଥାନେ ଅନ୍ନାଭାବର ହାହାକାର ଧ୍ୱନି ଉଠିଥିଲା । ପ୍ରଥମେ ପ୍ରଥମେ ରାଜା ପ୍ରଜା କେହି ହେଲେ ବୁଝି ପାରିନାହାନ୍ତି, ଯେ ଏହି ଦୁର୍ଭିକ୍ଷର ଦାବାନଳରେ ସମଗ୍ର ମଧ୍ୟପ୍ରଦେଶ ଏକାବେଳକେ ଛାରଖାର ହୋଇଯିବ । ୧୮୯୭ ସାଲ୍‌ରେ ଅନାବୃଷ୍ଟି ଏକାବେଳକେ ସକଳ ଆଶା ଭରସା ନିର୍ମୂଳ କରିଦେଲା । ଅନ୍ନାଭାବରେ ପ୍ରାୟ ଲକ୍ଷଲୋକ କ୍ଷୁଧାବଳରେ ଆତ୍ମସମର୍ପଣ କରିବା ପରେ ଜଣାପଡିଥିଲା ଯେ ଏଥର ଆଉ ରକ୍ଷା ନାହିଁ ।

ଏହି ଦୁର୍ଭିକ୍ଷ ଦମନ ପାଇଁ ନାନାସ୍ଥାନେ ଅର୍ଥ ସଂଗ୍ରହ ହେବାରେ ଲାଗିଲା । ଭାରତ କଳ୍ପତରୁ ମୁକ୍ତହସ୍ତରେ ସେହି ବିପଦ କାଳରେ ଅର୍ଥ ସାହାଯ୍ୟ କରିଅଛନ୍ତି । ସେହି ସମୟରେ ଇଂଲଣ୍ଡର ଜନ ସାଧାରଣ ଏବଂ କର୍ତ୍ତୃପକ୍ଷ ଓ ଅନ୍ୟାନ୍ୟ ସହୃଦୟ ପ୍ରଧାନ ବ୍ୟକ୍ତିବର୍ଗ ମିଳିତ ହୋଇ ଅର୍ଥ ସାହାଯ୍ୟ କରି ଭାରତର ପ୍ରଜାମାନଙ୍କର ପ୍ରାଣରକ୍ଷା ପାଇଁ ବଦ୍ଧପରିକର ହୋଇଥିଲେ । ଭାରତର ତଦାନୀନ୍ତନ ରାଜ ପ୍ରତିନିଧି ମହାମାନ୍ୟ ଲର୍ଡ ଏଲ୍‌ଗିନ୍ କଲିକତା ଟାଉନହଲ୍‌ରେ ସଭା ଆହ୍ୱାନ କରି ଅର୍ଥ ସଂଗ୍ରହରେ ଏବଂ ସାହାଯ୍ୟ ଦାନରେ ଅଗ୍ରସର ହୋଇଥିଲେ । ସରକାରୀ କାର୍ଯ୍ୟାଳୟ ଗୁଡ଼ିକରେ ଜାତି-ବର୍ଣ୍ଣ-ଧର୍ମ ନିର୍ବିଶେଷରେ ପ୍ରତ୍ୟେକ



Digitized by srujanika@gmail.com

ବ୍ୟକ୍ତି ଅତ୍ୟାଧିକ ସାହାଯ୍ୟ କରିଥିଲେ । ରାଶି ରାଶି ଅର୍ଥ ସଂଗୃହୀତ ଓ ମଧ୍ୟପ୍ରଦେଶର ଦୁର୍ଭିକ୍ଷ ଦମନ କାର୍ଯ୍ୟରେ ନିଯୁକ୍ତ ବ୍ୟକ୍ତି ବର୍ଗଙ୍କ ନିକଟକୁ ପ୍ରେରିତ ହୋଇଥିଲା । କିନ୍ତୁ ସେଥିରେ ମଧ୍ୟ ଅସଂଖ୍ୟ ଲୋକକ୍ଷୟ ନିବାରଣରେ ଅଳ୍ପ ହିଁ ସାହାଯ୍ୟ ହୋଇଥିଲା । ଏହାର ପ୍ରଧାନ କାରଣ ଏହି ଯେ, ସମୟରେ ଅଧଅଣାରେ ଯେଉଁ ଉପକାର ହୁଏ, ଅସମୟରେ ଆଠଅଣା ଖର୍ଚ୍ଚ କରି ମଧ୍ୟ ସେହି ଫଳ ପାଇବା ସମ୍ଭବପର ନୁହେଁ ।

ଏହି ନିଦାରୁଣ ଅନ୍ନାଭାବର ନିଆଁ, ସମଗ୍ର ମଧ୍ୟପ୍ରଦେଶକୁ ଛାରଖାର କରିଦିଏ, ଏହାର ସୁତୀବ୍ର ଆକ୍ରମଣରୁ ଛତିଶଗଡ଼ ନିଷ୍କୃତି ପାଇନାହିଁ । ଛତିଶଗଡ଼ର ସମସ୍ତ ରାଜ୍ୟରେ ଅନାବୃଷ୍ଟି ଫଳରେ ଅଭାବର ନିଆଁ ବେଶ୍ ଜଳି ଉଠିଥିଲା, ତାରି ଉପରେ ପୁଣି ଇଂରେଜ ରାଜ୍ୟର ପ୍ରଜାମଣ୍ଡଳୀଙ୍କ ପେଟ ଜ୍ୱାଳାରେ ଧାଁ ଦଉଡ ଏବଂ କ୍ରମେ ଏହି ସମସ୍ତ ସାମନ୍ତ ରାଜ୍ୟରେ କ୍ଷୁଧାନଳ ନିବାରଣ ହେତୁ ପ୍ରବେଶ ଲାଭ ଅଭାବକୁ ଆହୁରି ଘନୀଭୂତ କରି ତୋଳିଥିଲା । 'ସର୍ବତ୍ର ହାହାକାର, ସର୍ବତ୍ର ଦିଅ, କିଛି ଖାଇବାକୁ ଦିଅ ।' ଛତିଶଗଡ଼ର ସମସ୍ତ ରାଜ୍ୟର ପୋଲିଟିକାଲ ଏଜେଣ୍ଟ ବାହାଦୁର ସେହି ସମୟରେ ଅସଙ୍ଗତ କ୍ଳେଶ ଓ ଶ୍ରମ ସ୍ୱୀକାର ପୂର୍ବକ ସାମନ୍ତ ରାଜ୍ୟମାନଙ୍କରେ ପ୍ରଜାଙ୍କର ରକ୍ଷାପାଇଁ ବଦ୍ଧପରିକର ହୋଇଥିଲେ ।

ଏହି ଅନ୍ନାଭାବର କ୍ରନ୍ଦନ ଧ୍ୱନି ବାମଣ୍ଡାରେ ଓ ଏହାର ଚାରିପାଖ ରାଜ୍ୟଗୁଡ଼ିକରେ ବେଶ୍ ପରିସ୍ଫୁଟ୍ ହୋଇଉଠିଥିଲା । ପାର୍ଶ୍ୱବର୍ତ୍ତୀ ବଣାଇ, ତାଳଚେର, ପାଳଲହଡ଼ା, ଗାଙ୍ଗପୁର ପ୍ରଭୃତି ବହୁ ବହୁ ରାଜ୍ୟରେ ଏହି ଅନ୍ନକଷ୍ଟ ନିବାରଣ ଲୋକକ୍ଷୟ ରୋଧ କରିବା ପାଇଁ କିଭଳି ବ୍ୟବସ୍ଥା ହୋଇଥିଲା ସେ ସବୁର ଆଲୋଚନା ଏଠାରେ ଅପ୍ରାସଙ୍ଗିକ । ବାମଣ୍ଡାରାଜା ସାର୍ ବାସୁଦେବ ସୁଢ଼ଳଦେବ ନିଜ ରାଜ୍ୟରେ ଦୁର୍ଭିକ୍ଷ ଦମନ ଓ ପ୍ରଜାଙ୍କ ରକ୍ଷାପାଇଁ କିଭଳି ବ୍ୟବସ୍ଥା କରିଥିଲେ ତାହାହିଁ ଏଠାରେ ଆଲୋଚ୍ୟ ।

ସାର୍ ବାସୁଦେବ ଚିରକାଳ ପ୍ରଜାଙ୍କ ରକ୍ଷାପାଇଁ ପ୍ରାଣପାତ କରିଯାଇଅଛନ୍ତି । ପ୍ରଜାଙ୍କ ରକ୍ଷାକଳ୍ପେ ସେ ଚିରକାଳ ହିଁ ଅବାଧ୍ୟ ବାଣିଜ୍ୟ ପ୍ରତିକୂଳ ଥିଲେ । ରାଜ୍ୟର ଉତ୍ପନ୍ନ ଦ୍ରବ୍ୟ ସର୍ବାଗ୍ରେ ରାଜ୍ୟର ଅଭାବ ମୋଚନରେ ନିୟୋଜିତ ହେବ । ରାଜ୍ୟର ଅଭାବ ଦୂର କରିସାରି ଉଦ୍‌ବୃତାଂଶ ରାଜ୍ୟ ବାହାରର ବଜାରକୁ ଚାଲାଣ କରାଯାଇପାରେ । ନଚେତ୍ ନୁହେଁ । ତାଙ୍କର ଏହି ନୀତି, ଇଂରେଜ ରାଜ୍ୟର ଅତ୍ୟୁଚ୍ଚ ଉଦାର ବାଣିଜ୍ୟ ନୀତିର ସଂପୂର୍ଣ୍ଣ ବିରୋଧୀ ହେଲେ ମଧ୍ୟ ସେ ଏହି ବିଷୟରେ ସର୍ବଦା ହିଁ ଆପଣାର ଅଭିପ୍ରେତ ପଥରେ ଅଗ୍ରସର ହେଉଥିଲେ । ଏହି ବିଷୟରେ ତାଙ୍କର ଉକ୍ତି ଏହିପରି ଯୁକ୍ତି ବଳରେ ସରଳୀକୃତ ଥିଲା ଯେ, ଇଂରେଜ କର୍ତ୍ତୃପକ୍ଷ ତାଙ୍କ ବ୍ୟବସ୍ଥାର ପ୍ରଶଂସା କରିବାରେ କୁଣ୍ଠା ପ୍ରକାଶ କରି ନାହାନ୍ତି ।



Digitized by srujanika@gmail.com

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଯେତେବେଳେ ବୁଝିପାରିଲେ ଯେ ଅନ୍ନାଭାବରେ ପ୍ରଜାମାନଙ୍କ ପ୍ରାଣରକ୍ଷା କରିବା ୧୮୯୭ ଖ୍ରୀଷ୍ଟାବ୍ଦରେ କଠିନ ବ୍ୟାପାର ହେବ, ସଂଗେ ସଂଗେ ଏକ ରାଜାଦେଶ ଦ୍ୱାରା ପ୍ରଜାସାଧାରଣ ଓ ବ୍ୟବସାୟୀମାନଙ୍କୁ ଜଣାଇଦେଲେ ଯେ, ରାଜ୍ୟର ଉତ୍ପନ୍ନ ଦ୍ରବ୍ୟ-ଧାନ୍ୟ ଚାଉଳ, ଗହମ ଓ ଅନ୍ୟାନ୍ୟ ଶସ୍ୟ, ରାଜାଦେଶ ବ୍ୟତୀତ, ରାଜ୍ୟ ବାହାରକୁ କୌଣସି କାରଣରେ ନିଆଯାଇପାରିବ ନାହିଁ । ଏହି ଆଦେଶ ଅମାନ୍ୟ କଲେ ଅପରାଧୀଙ୍କୁ ଗୁରୁତର ଦଣ୍ଡ ଗ୍ରହଣ କରିବାକୁ ହେବ ।*(୧)* ପ୍ରଜାରକ୍ଷା ହିଁ ରାଜଧର୍ମ, ବାମଣ୍ଡାର ରାଜା ସାର୍ ବାସୁଦେବ ସୁଢ଼ଳଦେବ ଏହାକୁ ଅନ୍ୟ ସମସ୍ତ ବିଷୟ ଅପେକ୍ଷା ଅଧିକ ଭଲ ଭାବରେ ବୁଝିଥିଲେ, ତେଣୁ ତାଙ୍କର ପ୍ରତିଷ୍ଠା ଓ ପ୍ରତିପତ୍ତି ସମଗ୍ର ଓଡ଼ିଶା ଓ ଛତିଶଗଡ଼ର ରାଜନ୍ୟସମାଜରେ ଅପ୍ରତିହତ ପ୍ରଭାବ ବିସ୍ତାର କରିଥିଲା । ଦେଶୀୟ ରାଜ୍ୟ ଗୁଡ଼ିକରେ ଅନ୍ୟ କୌଣସିଠାରେ ଏହିପରି ରାଜାଦେଶ ପ୍ରଚାର ଦ୍ୱାରା ପ୍ରଜାରକ୍ଷା ସମ୍ବାଦ ଆମ୍ଭେମାନେ ଜାଣିବାକୁ ପାଇନାହୁଁ । ଖୁବ୍ ସମ୍ଭବତଃ ଅନ୍ୟ କୌଣସିଠାରେ ଏହିପରି ଚେଷ୍ଟା ହୋଇନାହିଁ ।

ରାଜା ସାର୍ ବାସୁଦେବ, ରାଜ୍ୟରୁ ଉତ୍ପନ୍ନ ଦ୍ରବ୍ୟ ରପ୍ତାନି ନିବାରଣ କରି କେବଳ ପ୍ରଜାପାଳନ କର୍ତ୍ତବ୍ୟ ଶେଷକରିନାହାନ୍ତି । ବିଦ୍ୟାସାଗର ସୁହୃଦ ବାସୁଦେବଙ୍କ ଲୋକପାଳନ ନୀତି ଅନୁସରଣ କରିବା ଅନ୍ୟମାନଙ୍କ ପକ୍ଷରେ ସମ୍ଭବପର ନଥିଲା । ଯେଉଁ କାର୍ଯ୍ୟ ତାହାଙ୍କ ପକ୍ଷରେ କେବଳ ସମ୍ଭବପର ହୋଇଥିଲା ସେ ଯେତେବେଳେ ଦେଖିଲେ ଯେ ରାଜ୍ୟ ମଧ୍ୟରେ ଉତ୍ପନ୍ନ ଧାନ୍ୟ ଓ ଅନ୍ୟାନ୍ୟ ଶସ୍ୟ ମହାଜନମାନଙ୍କ ହାତରେ ପ୍ରଚୁର ପରିମାଣରେ ମହଜୁଦ୍ ଥିବା ସତ୍ତ୍ୱେ ମଧ୍ୟ, ପ୍ରଜାମାନଙ୍କ କ୍ଷୁଧାନଳ ନିବାରିତ ହେଉନାହିଁ, ସେତେବେଳେ ରାଜା ବାହାଦୁର ମହାଜନମାନଙ୍କୁ ଡ଼କାଇ କହିଲେ- "ହୁଏତ ତୁମ୍ଭେମାନେ ଉଚିତ୍ ମୂଲ୍ୟରେ ମୋତେ ସମସ୍ତ ଚାଉଳ ବିକ୍ରୟ କର ନଚେତ୍, ମୋତେ ଋଣ ଦିଅ । ମୂଲ୍ୟ ଚାହିଁଲେ ମୂଲ୍ୟ ଦେବି, ନଚେତ୍ ଆଗାମୀ ବର୍ଷ ଧାନ୍ୟ ଖରିଦ୍‌କରି ତୁମ୍ଭମାନଙ୍କର ପ୍ରାପ୍ୟ ସମୂଳସୁଧ ସହ ପରିଶୋଧ କରିବି ।'*(୨)* ଆଉ ଉପାୟ ନ ପାଇ ରାଜବ୍ୟୟରେ କ୍ରୟ ଓ ଋଣ ଗ୍ରହଣ ଚାଲିଲା । ବଜାରରେ ଚଉଦସେର ଦରରେ ଚାଉଳ ବିକ୍ରୟ ହେବାରେ ଲାଗିଲା । ସାଧାରଣ ପ୍ରଜା ଅପେକ୍ଷାକୃତ ଅଳ୍ପ ମୂଲ୍ୟରେ ଚାଉଳ କ୍ରୟ କରି ଆତ୍ମପୋଷଣରେ ଓ ପରିବାର ପାଳନରେ ସକ୍ଷମ ହୋଇପାରିଲେ ଏବଂ ଯୁକ୍ତକର ଉର୍ଦ୍ଧ୍ୱକୁ ଉଠାଇ ରାଜା ବାସୁଦେବ ସୁଢ଼ଳଦେବଙ୍କ ବନ୍ଦନା କରିବାରେ ଲାଗିଲେ ।

ରାଜା ବାହାଦୁର କେବଳ ସାଧାରଣ ଗରୀବ ଅର୍ଥବ୍ୟୟପଟୁ ପ୍ରଜାବର୍ଗଙ୍କ ପ୍ରାଣରକ୍ଷା ବ୍ୟବସ୍ଥା କରିଦେଇ ନିଶ୍ଚିନ୍ତ ହୋଇନାହାନ୍ତି । ଯେଉଁମାନେ ଏକ ଟଙ୍କାରେ ଚଉଦ ସେର



Digitized by srujanika@gmail.com

ଚାଉଳ କ୍ରୟ କରି ଜୀବନ ରକ୍ଷା କରିବାରେ ଅକ୍ଷମ, ସେମାନଙ୍କ ପାଇଁ ଏହି ଏକଟଙ୍କା ଉପାର୍ଜନର ପଥ ମଧ୍ୟ ସହଜ କରିଦେଇଥିଲେ । ୧୮୯୭-୧୯୦୦ ଏହି ସମଗ୍ର ସମୟ, ରାଜବ୍ୟୟରେ ପୁଷ୍କରିଣୀ ଖନନ, ରାଜପଥ ନିର୍ମାଣ ଓ ଅନ୍ୟ ନାନବିଧ ପୂର୍ତ୍ତ କାର୍ଯ୍ୟରେ ଶ୍ରମଜୀବି ନିୟୋଜନ କରିବା ବ୍ୟବସ୍ଥା କରାଇ, ନିମ୍ନ ବର୍ଗର ପ୍ରଜାଙ୍କ ହାତରେ ପ୍ରାଣ ଧାରଣର ଉପଯୋଗୀ ଅର୍ଥ ସଂଗୃହୀତ ହୁଏ, ସେହି ବ୍ୟବସ୍ଥା ମଧ୍ୟ କରିଥିଲେ । ଏହି କାରଣରୁ ବାମଣ୍ଡାରେ, ଅନ୍ନଭାବେ ଲୋକକ୍ଷୟ ଘଟିନାହିଁ, କେବଳ ସେତିକି ନୁହେଁ, ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କରୁ ଦଳ ଦଳ ନରନାରୀ ଖଟି ଖାଇବା ପାଇଁ ବାମଣ୍ଡାକୁ ଆସିବା ଆରମ୍ଭ କରିଥିଲେ । ସେମାନେ ମଧ୍ୟ ବାମଣ୍ଡା ରାଜାଙ୍କ କୃପାରୁ କାମ ପାଇ ଆତ୍ମରକ୍ଷାରେ ସକ୍ଷମ ହୋଇଥିଲେ । ସେହି ସମସ୍ତ ବିଦେଶୀୟ (ଅନ୍ୟ ସାମନ୍ତ ରାଜ୍ୟର) ଜନସାଧାରଣଙ୍କ ମଧ୍ୟରୁ ଅନେକେ ରାଜକୃପା ହେତୁ ପ୍ରାଣରକ୍ଷା କରିପାରି କ୍ରମଶଃ ବାମଣ୍ଡାର ପ୍ରଜାଭାବରେ ରହିଯାଇଛନ୍ତି । ରାଜନୀତି ବସ୍ତୁତଃ ପୋଥିରେ ଲିପିବଦ୍ଧ ହୋଇ ରହିଥିବା ଏକ କଥା, ଏବଂ ଉତ୍ତମ ରାଜ ବୁଦ୍ଧିର ସ୍ପର୍ଶଲାଭ କରି ଜୀବନ୍ତ ଭାବେ କାର୍ଯ୍ୟ କରିବା ଆଉ ଏକକଥା । ରାଜା ସାର୍ ବାସୁଦେବଙ୍କ ରାଜନୀତି ଓ ରାଜବୁଦ୍ଧି ପରସ୍ପରର ବାହୁବେଷ୍ଟନ କରି ପରମାନନ୍ଦରେ ବାସ କରୁଥିଲେ । ତେଣୁ ସେହି ବିଶାଳ ହୃଦୟ ବିରାଟ ପୁରୁଷଙ୍କ ତୁଳନା ସମଗ୍ର ଭାରତବର୍ଷରେ ଦୁର୍ଲ୍ଲଭ । ଓଡ଼ିଶାରେ ଓ ଛତିଶଗଡ଼ରେ କାହିଁକି, ସମଗ୍ର ଭାରତବର୍ଷର ନାନା ସ୍ଥାନରେ ରାଜପଦରେ ଆସୀନ ରାଜମଣ୍ଡଳରେ ଏଭଳି ଦୃଷ୍ଟାନ୍ତ ବିରଳ ବୋଲି କହିଲେ ଅତ୍ୟୁକ୍ତି ଦୋଷରେ ଦୁଷ୍ଟ ହେବାର ଭୟନାହିଁ ।

ରାଜା ସାର ବାସୁଦେବ ସୁଢ଼ଳଦେବଙ୍କ ଦୁର୍ଭିକ୍ଷ ଦମନ ଚେଷ୍ଟା ଏହି ପର୍ଯ୍ୟନ୍ତ କରି କ୍ଷାନ୍ତ ହୋଇନାହିଁ । ସେ ଆହୁରି କିଛି କରିଥିଲେ । ପ୍ରଜା ସାଧାରଣଙ୍କ ଖଜଣା ଟଙ୍କା ଦେବାରେ ଯେଉଁ ଅନ୍ତରାୟ ଉପସ୍ଥିତ ହୋଇଥିଲା, ତାହାର ମଧ୍ୟ ଉପାୟ ବିଧାନରେ ସେ ବଦ୍ଧ ପରିକର ହୋଇଥିଲେ । ରାଜ୍ୟର ରାଜସ୍ୱ ଆଦାୟ କାଳରେ ଏକ ଆଦେଶ ପ୍ରଚାର କରାଇଥିଲେ । ଯେଉଁ ପ୍ରଜାମାନେ କୃଷିକାର୍ଯ୍ୟରେ ୧୩/୧୬ ଫସଲ ପାଇଅଛନ୍ତି, ସେମାନଙ୍କ ଖଜଣା ମାଫ ହୁଏ ନାହିଁ । ପରେ ୧୨/୧୬ ଓ ୧୧/୧୬ ପରିମାଣ ଫସଲରେ ଟଙ୍କାକୁ ଦୁଇ ଅଣା ମାଫ୍ ହୋଇଥିଲା । ପରେ ୧୦/୧୬, ୯/୧୬ ଓ ୮/୧୬ ପରିମାଣ ଫସଲରେ ଟଙ୍କାର ଚାରିଅଣା ବାଦ୍ ଦେଇ ଟଙ୍କା ଆଦାୟ ହୋଇଥିଲା, ତପ୍ରେ ୭/୧୬ ଓ ୬/୧୬ ଫସଲରେ ଆଠଅଣା ଛାଡ଼ି ଦିଆଯାଇଥିଲା, ଏହାଠାରୁ ନିମ୍ନ ଆଦାୟ ହୋଇଥିଲେ ଟଙ୍କାରେ ବାରଅଣା ମାଫ୍ କରାଯାଇଥିଲା ଏହି ହିସାବରେ ରାଜ୍ୟର ସମଗ୍ର ରାଜସ୍ୱ ଟଙ୍କାରୁ ୨୧, ୩୭୭ ଟଙ୍କା ଆଦାୟରୁ ସମଗ୍ର ପ୍ରଜାଗଣ ଅବ୍ୟାହତି ପାଇ କୃତାର୍ଥବୋଧ କରିଥିଲେ ।*(୩)*



Digitized by srujanika@gmail.com

**ଦସ୍ୟୁ ଦମନ:-** ରାଜ୍ୟ ଶାସନ ଓ ପାଳନ କ୍ଷେତ୍ରରେ ରାଜା ସାର୍ ବାସୁଦେବ ସୁଢ଼ଳଦେବ ନାନା ଭାବରେ ପ୍ରଜାଙ୍କର ରକ୍ଷା ଏବଂ ପ୍ରଜାଙ୍କ ସୁଖ ସୁବିଧା ସାଧନରେ ସର୍ବଦା ନିଯୁକ୍ତ ରହିଥିଲେ ମଧ୍ୟ, ସମୟ ସମୟରେ ପ୍ରଜାମାନଙ୍କ ମଧ୍ୟରୁ ଏହିପରି ଶ୍ରେଣୀର ଲୋକ ଦେଖାଯାଉଥିଲେ, ଦସ୍ୟୁବୃତ୍ତି ଯେଉଁମାନଙ୍କ ପ୍ରିୟକାର୍ଯ୍ୟ । ଏହି ଧରଣ ଲୋକମାନଙ୍କୁ ଶାସନ କରିବା ପାଇଁ ସମୟ ସମୟରେ ତାଙ୍କୁ ନାନାଦି କ୍ଳେଶ ଭୋଗ କରିବାକୁ ପଡ଼ିଅଛି । ଏହି ଧରଣର ଲୋକମାନଙ୍କ ଅତ୍ୟାଚାରରେ ନିରୀହ ପ୍ରଜାଗଣ ସମୟ ସମୟରେ ସର୍ବସ୍ୱାନ୍ତ ଓ ନିଗୃହୀତ ହୋଇଥିଲେ । ପୁଣି କୌଶଳ ପୂର୍ବକ ସେହି ଲୋକମାନେ ଶାସନ ଅଧୀନକୁ ଆସୁଥିଲେ ଏବଂ ଦଣ୍ଡ ଗ୍ରହଣ କରିବାପାଇଁ ବାଧ୍ୟ ହେଉଥିଲେ । ବାମଣ୍ଡା ରାଜ୍ୟରେ ଦୁଇଥର ଏହି ଦସ୍ୟୁଦଳଙ୍କ ଶାସନ ପାଇଁ  ରାଜା ସୁଢ଼ଳଦେବଙ୍କୁ ଦୀର୍ଘକାଳ ବ୍ୟାପୀ କର୍ମଭୋଗ କରିବାକୁ ପଡ଼ିଥିଲା । ପ୍ରଥମଥର ବାହାଦୁର ଗଣ୍ଡ ନାମକ ଜଣେ ବ୍ୟକ୍ତି କେତେଜଣ ଲୋକଙ୍କୁ ସଂଗ୍ରହ କରି ଡ଼କାୟତି ଆରମ୍ଭ କରେ । ନାନା ସ୍ଥାନ ଡକାୟତି କରି ପ୍ରଜାମାନଙ୍କ ସର୍ବସ୍ୱ ଲୁଟି ଚାଲିଥାଏ । ତାହାକୁ ଧରିବା ପାଇଁ ଯଥେଷ୍ଟ ଚେଷ୍ଟା ମଧ୍ୟ ଚାଲିଲା । କିନ୍ତୁ ସେହି ବ୍ୟକ୍ତି ଦିନବେଳା କୋଉଠି ରହୁଥିଲା ତାହା କେହି କହିପାରୁ ନଥିଲେ । ବହୁ ଅନୁସନ୍ଧାନ ପରେ ସେହି ବ୍ୟକ୍ତି ଦଳବଳ ସହ ଧରାପଡ଼ିଥିଲା ଏବଂ ଉପଯୁକ୍ତ ଦଣ୍ଡରେ ଦଣ୍ଡିତ ମଧ୍ୟ ହୋଇଥିଲା ।

ଆଉଥରେ ୧୯୦୧ ଖ୍ରୀଷ୍ଟାବ୍ଦରେ ବାସୁ ମହାପାତ୍ରଙ୍କ ପୁତ୍ର ଆବିଳ ମହାପାତ୍ର ଓ ଭ୍ରାତୃପୁତ୍ର ଛବିଳ ମହାପାତ୍ର, ଉଭୟେ ମିଳିତ ହୋଇ ଏକ ଦଳ ଗଠନ କରନ୍ତି । ଏମାନେ ପ୍ରଥମେ ପ୍ରଥମେ ଦିନବେଳା ଚାଷବାସ କରୁଥିଲେ ଏବଂ ରାତ୍ରିରେ ଡକାୟତି କରି ପ୍ରଜାମାନଙ୍କର ସର୍ବସ୍ୱ ଲୁଣ୍ଠନ କରୁଥିଲେ । କ୍ରମେ ଆବିଳ ଓ ଛବିଳ ଯେ ଏହି ଡକାୟତିର ନାୟକ, ଏହି ସମ୍ବାଦ ଯେତେବେଳେ ଚାରିଆଡ଼େ ରାଷ୍ଟ୍ର ହୋଇଗଲା, ସେତେବେଳେ ସେମାନେ ଘରଦ୍ୱାର ଛାଡ଼ି ଦେଇ ଅରଣ୍ୟରେ ଆଶ୍ରୟ ନେଲେ । ଦିନବେଳା ନିର୍ଜ୍ଜନ ଅରଣ୍ୟରେ  ଗୋପନ ବାସ, ରାତିରେ ଦେଶ ଲୁଣ୍ଠନ । କ୍ରମଶଃ ଏହି ଦସ୍ୟୁଦ୍ୱୟଙ୍କ ଅତ୍ୟାଚାର ଅତ୍ୟଧିକ ପ୍ରବଳ ହୋଇ ଉଠିଲା । ଏମାନଙ୍କ ପିତା ବାସୁ ମହାପାତ୍ର ମଧ୍ୟ ନିରୁଦ୍ଦେଶ ହେଲେ ।

ଆବିଳ ଓ ଛବିଳ ଦଳରେ ପ୍ରାୟ ପଚାଶ ଜଣ ସହକାରୀ ଥିଲେ । ଏମାନେ ଏକ ଏକ କରି ଦଶ ବାରଟା ଡକାୟତି କରି ଦେଶର ମହାଜନମାନଙ୍କ ଓ ପ୍ରଜାସାଧାରଣଙ୍କ ଯଥେଷ୍ଟ କ୍ଷତିକଲେ । ଏମାନଙ୍କୁ ଧରିବା ଚେଷ୍ଟା କରିବା ପାଇଁ ରାଜା ସୈନ୍ୟଙ୍କ ସହିତ ସ୍ଥାନେ ସ୍ଥାନେ ଖଣ୍ଡଯୁଦ୍ଧ ମଧ୍ୟ ହୋଇଅଛି । ଡକାୟତଙ୍କ ଦଳଭୁକ୍ତ ଦୁଇଚାରିଜଣ ପାର୍ଶ୍ୱଚର



Digitized by srujanika@gmail.com

ସେହି ଯୁଦ୍ଧରେ ମୃତ୍ୟୁବରଣ କରିଛନ୍ତି । କିନ୍ତୁ ଆବିଳ, ଛବିଳ ସହଜରେ ଧରା ପଡ଼ିଲେ ନାହିଁ । କ୍ରମେ ବାମଣ୍ଡାରେ ବସବାସ ଅସମ୍ଭବ ହୋଇ ଉଠିଲା ବୋଲି ଦସ୍ୟୁଦ୍ୱୟ ଦଳବଳ ସହ ବଣାଇ ରାଜ୍ୟ ଅରଣ୍ୟ ମଧ୍ୟରେ ଆଶ୍ରୟ ଗ୍ରହଣ କଲେ । ଦିନବେଳା ବଣାଇ ଅରଣ୍ୟ ମଧ୍ୟର ବାସ, ରାତିରେ ବାହାରି ବାମଣ୍ଡା ରାଜ୍ୟରେ ଡକାୟତି । ଏହିପରି ଭାବରେ ଆହୁରି କିଛିଦିନ ଅତିକ୍ରାନ୍ତ ହେବା ପରେ, ପୋଲିଟିକାଲ୍ ଏଜେଣ୍ଟ ସମ୍ବାଦ ପାଇ ବାମଣ୍ଡାରେ ଉପସ୍ଥିତି ହେଲ । ନାନାବିଧ ପରାମର୍ଶ ପରେ ସ୍ଥିର ହେଲା ଯେ, ଡକାୟତମାନଙ୍କ ଉପରେ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ରାଜାଙ୍କ ଦରବାରରେ ଉପସ୍ଥିତ ହୋଇ ଆପଣାଆପଣା ଅଭିପ୍ରାୟ ବ୍ୟକ୍ତ କରିବା ପାଇଁ ନୋଟିସ୍ ଦିଆଗଲା । ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ହାଜିର୍ ନହେଲେ, ସେମାନେ ଅପରାଧୀ ଏବଂ ସେଥିପାଇଁ ବିଚାରାଧୀନ ହେବେ । ଦସ୍ୟୁ ଦଳର ନେତା ବା ଦଳଭୁକ୍ତ କେହି ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ହାଜିର୍ ହେଲେ ନାହିଁ ।

ଏହାପରେ ଡକାୟତ ମାନଙ୍କ ସର୍ଦ୍ଦାର ଆବିଳର ପିତା ବାସୁ ମହାପାତ୍ର ବାମଣ୍ଡା ସୀମା ବାହାରେ ଗଭର୍ଣ୍ଣମେଣ୍ଟ ଇଲାକାମଧ୍ୟରେ ଖାଲ୍‌ସା ପୋଲିସ୍ କର୍ତ୍ତୃକ ଧରା ହେଲେ । ମଧ୍ୟ-ପ୍ରଦେଶର ଶାସନକର୍ତ୍ତା, ଛତିଶଗଡ଼ର ପୋଲିଟିକାଲ୍ ଏଜେଣ୍ଟ୍‌ଙ୍କୁ ଏହିପରି ଦୀର୍ଘକାଳବ୍ୟାପୀ ଡ଼କାୟତିର କାରଣ ଅନୁସନ୍ଧାନ କରିବା ଏବଂ ଏମାନଙ୍କ ଶାସନ ନହେବା ପର୍ଯ୍ୟନ୍ତ ତାଙ୍କୁ ବାମଣ୍ଡାରେ ଅବସ୍ଥାନ କରିବାକୁ ଆଦେଶ ଦିଅନ୍ତି । ଅବଶେଷରେ ସମ୍ବଲପୁର ପୋଲିସ୍ ସାହେବ ବହୁ ବହୁ ଖାଲସା ପୋଲିସ୍ ନେଇ ବଣାଇର ଅରଣ୍ୟରୁ ଦସ୍ୟୁ ଦ୍ୱୟଙ୍କୁ ବନ୍ଦୀକରି ସମ୍ବଲପୁର ଆଣିଥିଲେ । ଏହି ଡ଼କାୟତ ଦଳର ପ୍ରଧାନ ଆବିଳ ମହାପାତ୍ର ବିଚାର ପରେ ଦଣ୍ଡପ୍ରାପ୍ତ ହୋଇ ସମ୍ବଲପୁର ଜେଲ୍ ଭିତରେ ମୃତ୍ୟୁ ମୁଖରେ ପତିତ ହୁଏ ।

ଡ଼କାୟତ ସର୍ଦ୍ଦାରର ବିଚାର ପୋଲିଟିକାଲ୍ ଏଜେଣ୍ଟ ଦ୍ୱାରା ସମ୍ବଲପୁରଠାରେ ହୋଇଥିଲା । ଦଳର ଅନ୍ୟାନ୍ୟ ଦସ୍ୟୁ କ୍ରମେ କ୍ରମେ ଧରାପଡ଼ନ୍ତି ଏବଂ ବାମଣ୍ଡା ରାଜଦରବାରରେ ବିଚାରାନ୍ତେ ଉପଯୁକ୍ତ ଦଣ୍ଡରେ ଦଣ୍ଡିତ ହୋଇଥିଲେ । ଏହି ଦଳର ବିନାଶ ସାଧନରେ ଯଥେଷ୍ଟ ସମୟ ମଧ୍ୟ ଲାଗିଥିଲା ।*(୪)*

**ବାତରୋଗ:** ରାଜା ସାର୍ ବାସୁଦେବ ସୁଢ଼ଳଦେବ ଗ୍ରୀଷ୍ମ କାଳର ସଂଧ୍ୟା ସମୟରେ ରାଜଭବନ ସମ୍ମୁଖରେ ନାତିଗଭୀର ଜଳାଶୟରେ ଏକ କ୍ଷୁଦ୍ର ନୌକାରେ ଅବସ୍ଥାନ କରୁଥିଲେ । ଯେଉଁମାନେ ସେହି ସମୟରେ ତାଙ୍କ ସହିତ ସାକ୍ଷାତ କରିବାପାଇଁ ଆସୁଥିଲେ, ସେମାନେ ସେହି ନୌକାରେ ତାଙ୍କ ସହ ବସି କଥାବାର୍ତ୍ତା କରୁଥିଲେ । ଅପରାହ୍ନରୁ ରାତି ନଅଘଣ୍ଟା ଦଶଘଣ୍ଟା ପର୍ଯ୍ୟନ୍ତ ରାଜା ସୁଢ଼ଳଦେବ ଏହି ଜଳାଶୟରେ ନୌକାରେ ବାସ କରୁଥିଲେ । କେବଳ ତାହା ନୁହେଁ, ଅସହ୍ୟ ଗ୍ରୀଷ୍ମ ସମୟରେ ସିକ୍ତ ବସ୍ତ୍ରରେ ଦେହ ଆବୃତ



Digitized by srujanika@gmail.com

କରି ବସି ରହୁଥିଲେ । ଏହିପରି ଭାବରେ ପାର୍ବତ୍ୟ ପ୍ରଦେଶର ଉତ୍ତାପ ଅସହ୍ୟ ହେବା ଫଳରେ ସର୍ବଦା ସିକ୍ତ ବସ୍ତ୍ର ବ୍ୟବହାର ଓ ଶୀତଳ ସ୍ଥାନରେ ରହିବା ହେତୁ କ୍ରମେ ସୁକଠିନ ବାତ ରୋଗର ସୂତ୍ରପାତ ହେଲା । ରୋଗର ସୂତ୍ରପାତ ସଂଗେ ସଂଗେ, ରୋଗ ଭୀଷଣ ଆକାର ଧାରଣ କରି ଅସୀମ କ୍ଲେଶ ହେବାରେ ଲାଗିଲା । ରାଜଧାନୀ ଦେବଗଡ଼ର ଚିକିତ୍ସକଗଣ ତାହାଙ୍କୁ ଆରୋଗ୍ୟ କରିପାରିଲେ ନାହିଁ । ତା' ପରେ କଟକରୁ ଚିକିତ୍ସକ ଆସିଲେ, ସେମାନଙ୍କ ଦ୍ୱାରା ମଧ୍ୟ କୌଣସି ଉପକାର ହେଲା ନାହିଁ । ପରେ ରାୟପୁରର ଜଣେ ବଙ୍ଗାଳୀ ଡ଼ାକ୍ତର ଶ୍ରୀଯୁକ୍ତ ରାଧିକା ପ୍ରସାଦ ସିଂହ ଏମ୍.ବି. ମହାଶୟ ରାଜା ବାହାଦୁରଙ୍କ ଚିକିତ୍ସାର ଭାରପ୍ରାପ୍ତ ହୋଇ ବାମଣ୍ଡା ଆସିଲେ । ତାଙ୍କର ଦୀର୍ଘ କାଳବ୍ୟାପୀ ଚିକିତ୍ସାରେ ରାଜା ବାସୁଦେବ କ୍ରମେ କ୍ରମେ ଆରୋଗ୍ୟ ଲାଭ କରିବାରେ ଲାଗିଲେ । ରାଧିକା ବାବୁ ଆମ୍ଭମାନଙ୍କୁ କହି ଅଛନ୍ତି ଯେ ପୂର୍ବବର୍ତ୍ତୀ ଚିକିତ୍ସକ ପ୍ରଚୁର ପରିମାଣରେ ମରଫିଆ ବ୍ୟବହାର କରି ରାଜାଙ୍କ ଦେହକୁ ଏକାବେଳକେ ବିଷାକ୍ତ କରି ପକାଇଛନ୍ତି । ଯାହା ହେଉ ରାଜା ସୁଢ଼ଳଦେବ ଏହି ରୋଗର ତୀବ୍ର ଆକ୍ରମଣରୁ ଅବ୍ୟାହତ ପାଇଥିଲେ ମଧ୍ୟ, ସଂପୂର୍ଣ୍ଣ ଭାବରେ ରୋଗମୁକ୍ତ ହୋଇପାରିନାହାନ୍ତି । ଏକ୍ ପାଦର ଜାନୁ ସନ୍ଧିରେ ସ୍ଥାୟୀ ବେଦନା ରହିଯିବାରୁ, ତାଙ୍କୁ ଜୀବନର ଶେଷାଂଶ ସାମାନ୍ୟ ପଙ୍ଗୁପରି ଯାତାୟତ କରିବାକୁ ପଡିଛି । ଏକକାଳୀନ ଶଯ୍ୟାଶାୟୀ ରହିବା ତୁଳନାରେ ଏହି ପରିମାଣ ଆରୋଗ୍ୟ ଲାଭରେ ସେ ଯେ ବିଶେଷ ଉପକାର ବୋଧ କରିବେ, ଏହା ବିଚିତ୍ର ନୁହେଁ ତେଣୁ ରାଜା ସୁଢ଼ଳଦେବ ରାଧିକାବାବୁଙ୍କୁ ଏହି ଚିକିତ୍ସା ପାଇଁ ପାରିଶ୍ରମିକ ବାଦ୍, ସ୍ୱତନ୍ତ୍ର ଭାବରେ ସୁନାର ଘଡ଼ି ଚେନ୍ ଉପହାର ଦେଇଥିଲେ ।(୫)

ପୂର୍ବେ ବିବୃତ କଟକ ଓ ପୁରୀ ଯାତ୍ରାକାଳରେ ଏବଂ ସେଠାରେ ଅବସ୍ଥାନ କାଳରେ ରାଜା ସାର୍ ବାସୁଦେବ ଆଂଶିକ ଭାବେ ପଙ୍ଗୁ ଥିଲେ । ସ୍ୱର୍ଗୀୟ ମଧୁସୂଦନ ରାଓ ମହାଶୟଙ୍କ ଅନୁରୋଧ ଫଳରେ କଟକ କଲେଜର ବିଜ୍ଞାନାଚାର୍ଯ୍ୟ ଯୋଗେଶ ଚନ୍ଦ୍ର ରାୟ ମହାଶୟ ରାଜା ସୁଢ଼ଳଦେବଙ୍କ ସହିତ ସର୍ବପ୍ରଥମେ ସାକ୍ଷାତ କରିବାପାଇଁ ଗମନ କରନ୍ତି । ଯୋଗେଶ ବାବୁ କହିଛନ୍ତି, ସେ ଉପସ୍ଥିତ ହେବା ମାତ୍ରେ, ତାଙ୍କର ଅଭ୍ୟର୍ଥନା ପାଇଁ ରାଜା ବାହାଦୂର ବାତରୋଗ ହେତୁ ଆଂଶିକ ପଙ୍ଗୁ ବୋଲି ଗାତ୍ରୋତ୍ଥାନ ପୂର୍ବକ ସ୍ୱାଗତ ସମ୍ଭାଷଣରେ ବିଳମ୍ବ ହେତୁ, କ୍ଷମା ପ୍ରାର୍ଥନା କରି ଗ୍ରନ୍ଥି ବେଦନା ଉଲ୍ଲେଖ କରିଥିଲେ ଏବଂ କହିଥିଲେ ଯେ, ଏହି ବେଦନାକ୍ରାନ୍ତ ସ୍ଥାନର ଅସ୍ଥି ପର୍ଯ୍ୟନ୍ତ ରଗ୍ଣ ଏବଂ ବିନଷ୍ଟବୋଲି ବୋଧ ହୁଏ । ଉତ୍ତରରେ ବିଜ୍ଞାନବିଦ୍ ଯୋଗେଶବାବୁ କହିଥିଲେ- 'ଆପଣଙ୍କ ଏହି ସ୍ଥାନର ଗ୍ଲାନି କେତେଟା କ୍ଷତି କରିଅଛି, ତାହା ସହଜରେ ଜଣାଯାଇପାରେ ।' ଏହି ସମ୍ବାଦ ଅବଗତ ହୋଇ ରାଜା



Digitized by srujanika@gmail.com

ସୁଢ଼ଳଦେବ ତତ୍‌କ୍ଷଣାତ୍ ଉପାୟ ନିର୍ଦ୍ଦେଶ କରିବାପାଇଁ କହନ୍ତି । ଯୋଗେଶବାବୁ କହିଲେ, 'ରଣ୍ଟେନ୍‌ର ଆଲୋକରେ ଏହି ବେଦନା ଯୁକ୍ତ ସ୍ଥାନର ଆଭ୍ୟନ୍ତରୀଣ ସୁସ୍ପଷ୍ଟ ଜଣା ପଡିବ ।' ଏହି ସମ୍ବାଦ ଅବଗତ ହୋଇ ରଣ୍ଟେନ୍‌ର ଆଲୋକ ଜାଳିବା ଯନ୍ତ୍ର ରେଡିୟମ୍‌ର ସ୍ଫୁଲିଙ୍ଗ ଦର୍ଶନ ଯନ୍ତ୍ର ବାମଣ୍ଡାର ବିଜ୍ଞାନାଗାରରେ ପ୍ରତିଷ୍ଠିତ କରାଇଥିଲେ । ଏହି ବାତରୋଗ ତାଙ୍କ ଚିରସାଥୀ ହୋଇ ଜୀବନ ଶେଷ ଦିନ ପର୍ଯ୍ୟନ୍ତ ତାଙ୍କୁ କ୍ଲେଶ ଦେଇଥିଲା ।

ଏହି ରୋଗରୁ ସଂପୂର୍ଣ୍ଣ ମୁକ୍ତିଲାଭ କରିନଥିଲେ ଏବଂ କାର୍ଯ୍ୟରେ କୌଣସି ବ୍ୟାଘାତ ନଘଟିଲେ ମଧ୍ୟ, ଗୋପନରେ ଗୋପନରେ ଆଉ ଏକ ବ୍ୟାଧି କ୍ରମେ ତାଙ୍କର ଅସୀମ ଉତ୍ସାହ ଓ କର୍ମଶୀଳତାର ଶକ୍ତି କ୍ଷୟ କରିବା ଆରମ୍ଭ କରିଥିଲା । ତାହା ବହୁମୂତ୍ର ରୋଗ, ଏହି ରୋଗର ସୂତ୍ରପାତ କେଉଁ ସମୟରେ ହୋଇଥିଲା, ତାହା ସେ ନିଜେ ବା ତାଙ୍କ ଚିକିତ୍ସକମାନେ କେହି ଜାଣିପାରିନାହାନ୍ତି । ଏହି ରୋଗ ଯେତେବେଳେ ଜଣା ପଡିଥିଲା ଚିକିତ୍ସାର ସୁବ୍ୟବସ୍ଥା ହୋଇଥିଲା । ରୋଗ ବୃଦ୍ଧି ହେତୁ ୧୯୦୨ ଖ୍ରୀଷ୍ଟାବ୍ଦ ଜାନୁଆରୀ ୧ ତାରିଖ ମହାମାନ୍ୟ ଭାରତେଶ୍ୱର ସମ୍ରାଟ ସପ୍ତମ ଏଡ୍‌ୱାର୍ଡଙ୍କ ରାଜସିଂହାସନ ଅଧିରୋହଣ ପାଇଁ ଦିଲ୍ଲୀରେ ଯେଉଁ ବିଶାଳ ରାଜଦରବାର ହୋଇଥିଲା, ସେହି ଉତ୍ସବରେ ନିମନ୍ତ୍ରିତ ହୋଇ ମଧ୍ୟ ଉପସ୍ଥିତ ହୋଇପାରିନଥିଲେ । କ୍ରମଶଃ ରୋଗ ତାଙ୍କୁ ଅତ୍ୟନ୍ତ କାତର କରି ତୋଳିଥିଲା । ରାଜଧାନୀରେ ଅବସ୍ଥାନ ପୂର୍ବକ ଚିକିତ୍ସାଦ୍ୱାରା ଯେତେବେଳେ ରୋଗର ବୃଦ୍ଧି ହ୍ରାସ ହେଲା ନାହିଁ, ସେତେବେଳେ ଆତ୍ମୀୟସ୍ୱଜନ ପରିବେଷ୍ଟିତ ହୋଇ ୧୯୦୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୧୭ତାରିଖ ଦିନ କଲିକତା ଯାତ୍ରା କରନ୍ତି । ଏଠାରେ କିଛି କାଳ ବାସ କରି ଇଂରେଜ ଡାକ୍ତରଙ୍କ ଦ୍ୱାରା ଚିକିତ୍ସା କରାଇ ପୀଡ଼ା ସମୟ ସମୟରେ ସାମାନ୍ୟହ୍ରାସ ହେଲେ ସୁଦ୍ଧା, ବହୁମୂତ୍ର ରୋଗ ହାତରୁ ମୃତ୍ୟୁ ଭିନ୍ନ ଅନ୍ୟ ଉପାୟରେ ନିସ୍ତାର ନାହିଁ । ତେଣୁ କିଞ୍ଚିତ୍ ଉପଶମ ଅବସ୍ଥାରେ ପୁନଚାୟ ରାଜଧାନୀ ଦେବଗଡ଼କୁ ପ୍ରତ୍ୟାବୃତ୍ତ କରନ୍ତି ।

ଏହି ବାତ ରୋଗରେ ଓ ପରେ ବହୁମୂତ୍ର ରୋଗରେ ଆକ୍ରାନ୍ତ ହୋଇ ଜୀବନ ଶେଷ କେଇବର୍ଷ ଅତିବାହିତ କରିଥିଲେ ମଧ୍ୟ, ଏହି ସମୟକୁ ରାଜା ସୁଢ଼ଳଦେବ ପୀଡ଼ା ହେତୁ ଅଳସ ଭାବରେ କାଳ କର୍ତ୍ତନ କରିନାହାନ୍ତି । ପୂର୍ବବତ୍ ରାଜ୍ୟର ନିତ୍ୟ ନୈମିତ୍ତିକ କାର୍ଯ୍ୟଭାର ଯୁବରାଜ ସଚ୍ଚିଦାନନ୍ଦଙ୍କ ଉପରେ ନ୍ୟସ୍ତ କରି ସୁଦ୍ଧା, ରାଜ୍ୟର ଉନ୍ନତି ମୂଳକ ସର୍ବବିଧ କାର୍ଯ୍ୟରେ ଓ ବିବିଧ କଲ୍ୟାଣକର ଅନୁଷ୍ଠାନରେ ନିୟତ ମନଯୋଗୀ ଥିଲେ । ଏହି ସମୟରେ ମହାରଣା ନାମକ ଜନୈକ ମାନ୍ଦ୍ରାଜୀ ଚିତ୍ରକର ମଞ୍ଜୁଷାର ରାଜା ଓ ରାଜଭ୍ରାତାଙ୍କର, ତତ୍ପରେ ସୋନପୁର ପ୍ରଭୃତି ସ୍ଥାନର ରାଜଗଣଙ୍କର ତୈଳଚିତ୍ର ପ୍ରସ୍ତୁତ କରି ବିଶେଷ ପ୍ରଶଂସା ଭାଜନ ହୋଇଥିଲେ । ଏହି ସମ୍ବାଦ ଅବଗତ ହୋଇ ରାଜା ବାହାଦୁର


Digitized by srujanika@gmail.com

ତାଙ୍କୁ ବାମଣ୍ଡା ଅଣାଇ ରାଜଭବନର ଅନେକଙ୍କର ତୈଳଚିତ୍ର ପ୍ରସ୍ତୁତ କରାଇ, କୁମାରଗଣଙ୍କ ହୃଦୟରେ ଚିତ୍ର ବିଦ୍ୟାର ଅନୁରାଗ ବୃଦ୍ଧି ପ୍ରୟାସ କରିଥିଲେ । ସେହି ଚେଷ୍ଟାର ଉତ୍ତମ ଫଳ ପ୍ରସଙ୍ଗକ୍ରମେ ପୂର୍ବରୁ ଆଲୋଚିତ ହୋଇଅଛି । ଦୁଇ ଜଣ ସ୍ଥାନୀୟ ଯୁବକଙ୍କୁ ଅର୍ଥବ୍ୟୟକରି ଏହି ଚିତ୍ରକରଙ୍କ ନିକଟରେ ଚିତ୍ରବିଦ୍ୟା ଶିକ୍ଷା ଦିଆଇଥିଲେ । ଉଦ୍ଦେଶ୍ୟ ଏମାନେ ଆପଣା ଆପଣାର  ଅର୍ଜିତ ବିଦ୍ୟା ବଳରେ ଜୀବିକା ନିର୍ବାହ କରିବେ ଓ ବାମଣ୍ଡାର ନାଗରିକ ଜୀବନର ସଂଭ୍ରମ ବୃଦ୍ଧି କରିପାରିବେ । ଏହିପରି ଭାବରେ ଉପେନ୍ଦ୍ର ପତି ନାମକ ଜଣେ ମୂର୍ତ୍ତିଗଠନ ପଟୁ ଶିଳ୍ପୀଙ୍କ ନିକଟରେ ଗୌତମ ନାମକ ଜନୈକ ସ୍ଥାନୀୟ ଯୁବକକୁ ଏହି ଶିଳ୍ପ ଶିକ୍ଷାଲାଭ ପାଇଁ  ନିଯୁକ୍ତ କରାଇଥିଲେ । କୁମାରୀଗଣଙ୍କ ଉଦ୍ୟୋଗ ଓ ଆୟୋଜନରେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଯେଉଁ ମର୍ମର ମୂର୍ତ୍ତି ୟୁରୋପରୁ ପ୍ରସ୍ତୁତ ହୋଇ ଆସିଅଛି ଏବଂ ଯାହା ଦେବଗଡ଼ର ରାଜଭବନର ସମ୍ମୁଖଭାଗରେ ଏକ ଶୋଭନ ଦୃଶ୍ୟ କ୍ଷୁଦ୍ର ଅଟ୍ଟାଳିକାରେ ପ୍ରତିଷ୍ଠିତ ହୋଇଅଛି । ଏହି ମୂର୍ତ୍ତିର ଗୌତମ କର୍ତ୍ତୃକ ପ୍ରସ୍ତୁତ ପ୍ରତିମୂର୍ତ୍ତି ଦେବଗଡ଼ ଏବଂ ଗୋବିନ୍ଦପୁର ରାଜ-ଉଦ୍ୟାନରେ ପ୍ରତିଷ୍ଠିତ ହୋଇ ଶୋଭା ବର୍ଦ୍ଧନ କରୁଅଛି । ଆକ୍ଷେପର ବିଷୟ ଶିଳ୍ପୀ ଗୌତମ ନିଜ ଅର୍ଜିତ ବିଦ୍ୟାର ଗୌରବ ବର୍ଦ୍ଧନର ପ୍ରଚୁର ସୁଯୋଗ ପାଇବା ପୂର୍ବେ ହିଁ କାଳର କୋଳରେ ଆଶ୍ରୟ ଗ୍ରହଣ କରିଅଛି ।

୧୮୯୯ ଖ୍ରୀଷ୍ଟାବ୍ଦରେ ରାଜା ବାହାଦୁର ମଧ୍ୟପ୍ରଦେଶ ବିଦ୍ୟାଳୟ ସମୂହର ପାଠ୍ୟପୁସ୍ତକ ନିର୍ବାଚନ ବୈଠକର ସଦସ୍ୟ ପଦରେ ନିଯୁକ୍ତ ହୁଅନ୍ତି । ଏହି କାର୍ଯ୍ୟଭାର ନେଇ ନିଜ କର୍ତ୍ତବ୍ୟରେ ଦିନକ ପାଇଁ ସୁଦ୍ଧା ଆଳସ୍ୟ ନଥିଲା । ଯେତେ ପୁସ୍ତକ ଆସିଅଛି, ସେଗୁଡ଼ିକର ଗୁଣାଗୁଣ ପରୀକ୍ଷା କରି ନିଜର ମନ୍ତବ୍ୟ ଲିପିବଦ୍ଧ କରି ନିର୍ଦ୍ଦିଷ୍ଟ ସମୟ ପୂର୍ବେ ହିଁ ପ୍ରେରଣ କରୁଥିଲେ । ପୀଡ଼ା ହେତୁ ଏହି ସମସ୍ତ କାର୍ଯ୍ୟରେ ଅବହେଳା ନଥିଲା, ପାଠ୍ୟ ପୁସ୍ତକ ନିର୍ବାଚନ ବିଷୟରେ ଅନ୍ୟାନ୍ୟ ସ୍ଥାନ ପରି ତାଙ୍କ ନିକଟରେ ଉପରୋଧ ବା ଅନୁରୋଧ ଚଳୁନଥିଲା ।

୧୯୦୧ ଖ୍ରୀଷ୍ଟାବ୍ଦ ପ୍ରଥମ ଭାଗରେ ମିଥିଳାଧିପତିଙ୍କର ସଭା ପଣ୍ଡିତ ବାଚା  ଝା ମହାଶୟ ସଶିଷ୍ୟେ ଦେବଗଡ଼ ଆଗମନ କରନ୍ତି । ସେ ଜଣେ ଅସାଧାରଣ ପଣ୍ଡିତ ବ୍ୟକ୍ତି । ଏହାଙ୍କୁ ଏକ ଶତ ଟଙ୍କା ବେତନରେ କିଛିକାଳ ରଖାଇ ମଧୁସୂଦନ ମିଶ୍ର ତର୍କ ବାଚସ୍ପତି ମହାଶୟଙ୍କୁ ଖଣ୍ଡନ ଖଣ୍ଡବାଦ ଶିକ୍ଷା ଦିଆଇଥିଲେ । ଦୀର୍ଘକାଳ ଏହି ପଣ୍ଡିତଙ୍କ ସହ ରାଜା ବାସୁଦେବ ନାନା ଶାସ୍ତ୍ର ବିଷୟରେ ଆଲୋଚନାରେ ନିମଗ୍ନ ରହୁଥିଲେ ।

ପୋଲିଟିକାଲ ଏଜେଣ୍ଟ ଆର୍.ବି.ଚ୍ୟାପ୍‌ମ୍ୟାନ୍ ବାହାଦୁର ଏହି ସମୟରେ ଏକଦା ବାମଣ୍ଡା ପରିଦର୍ଶନରେ ଆଗମନ କରିଥିଲେ । ଏହିଠାରେ ଅବସ୍ଥାନ କାଳରେ ସ୍ଥାନୀୟ



Digitized by srujanika@gmail.com

ରାଜ ଦପ୍ତର ଓ  କଚେରୀ, ବିଦ୍ୟାଳୟ ଓ ଔଷଧାଳୟ, ପୋଲିସ ଓ ପହରା, କାରାଗାର ଓ କାରାବାସୀଙ୍କର ଶାସନ ଓ ପାଳନ, ସେମାନଙ୍କ ଦ୍ୱାରା ନର୍ମିତ ବହୁ ବହୁ ଶିଳ୍ପର ଭଣ୍ଡାର, ବିଜ୍ଞାନାଗାର ଓ ବିଜ୍ଞାନଚର୍ଚ୍ଚା ଇତ୍ୟାଦି ପରିଦର୍ଶନ କରି ଗଭୀର ଆନନ୍ଦ ପ୍ରକାଶ କରିଥିଲେ । ଏହି ସମୟରେ ମାନ୍ୟବର ଚାପମ୍ୟାନ୍ ସାହେବ ବାହାଦୁର ଇଂରେଜ ରାଜ ସରକାରଙ୍କ ପ୍ରତିନିଧି ରୂପେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ଏକଯୋଡା ବହୁମୂଲ୍ୟ ଶାଲ୍ ଓ ଏକ ବହୁମୂଲ୍ୟ ରାଜପରିଚ୍ଛେଦ ଉପହାର ପ୍ରଦାନ କରିଥିଲେ ।

ବିଦ୍ୟାନୁରାଗୀ ରାଜା ସାର୍ ବାସୁଦେବ ପାଡ଼ିତାବସ୍ଥାରେ ବହୁ ବହୁ ଭିନ୍ନ ଭିନ୍ନ ସ୍ଥାନରେ ଜ୍ଞାନ ଓ ବିଦ୍ୟା ବିସ୍ତାର କଳ୍ପେ, ସାଧାରଣ ହିତକର ଅନୁଷ୍ଠାନରେ ଓ ବ୍ୟକ୍ତିଗତ ଭାବରେ ସାହାଯ୍ୟ ଦାନରେ ମୁକ୍ତ ହସ୍ତରେ ଅର୍ଥବ୍ୟୟ କରିଅଛନ୍ତି । ସଂସ୍କୃତ 'କବିକଳ୍ପଲତା' ଅତି ଦୁର୍ଲଭ ଅମୂଲ୍ୟ ଗ୍ରନ୍ଥ । ଏହାର ସୁପ୍ରଚାର ସାଧନରେ ରାଜାଦେଶ ବଳରେ ରାଜ୍ୟବ୍ୟୟରେ ଏହାର ଏକ ସଠିକ ସଂସ୍କରଣ କଲିକତା ସଂସ୍କୃତ କଲେଜ ଅଧ୍ୟାପକ ପଣ୍ଡିତ ରାମଗୋପାଳ କବିରତ୍ନ ଭଟ୍ଟାଚାର୍ଯ୍ୟ ମହାଶୟଙ୍କଦ୍ୱାରା ପ୍ରକାଶ କରାଇଥିଲେ । ଏହିପରି ଶତଶତ ଘଟଣାର ପୁଙ୍ଖାନୁପୁଙ୍ଖ ସମ୍ବାଦ ଲିପିବଦ୍ଧ କରିବାକୁ ଗଲେ, ଶେଷ କରିବା ସମ୍ଭବପର ହେବନାହିଁ । ତେଣୁ ଏହି ସ୍ଥାନରେ ଏଭଳି ଘଟଣା ବିଷୟର ଉଲ୍ଲେଖରୁ ବିରତ ହେବାକୁ ପଡୁଅଛି ।



**ପାଦଟୀକା**

(୧) But save in Bamra, where the prohibition of export of food grains, appears to have secured the immediate object with which it was issued by the chief, the pressure of high prices was everywhere felt by the poorer classes and few states were free from the incursions of wanderers from the famine-stricken arears of chhattisgarh . The horrors of famine were intensified by an epidemic of cholera more severe and wide spread than had been known for many years past. Only Bamra and Rairakhol appear to have been entirely free from it. Resolution C.P. Govt. 1897



Digitized by srujanika@gmail.com

(୨) "Bamra was the only state in which there was any interference with trade. The prohibition by the Feudatory chief of Bamra of the exportation of the food grain continued in force through out the year.

The supplementary measure was adopted of borrowing rice and selling it at 14 seers per rupee."

General Review 1900 A.S. Womach, Political Agent.

(୩) No less than 42 percent of the land revenue has been alienated. principally in muafi grants to the Raj family, and this seriously affects the recorded income from land 1899.

(୪) They were taken from Bonai to Sambalpur and tried and convicted there by the political Agent. The gang gave no further serious trouble after the arrest of the leaders. Several of Abil's followers were arrested by the state police and tried by the State Courts.

The Feudatory chief desires to convey his thanks to the administration of central provinces for the assistance given him in supperessing the out break of dacoity.1901

(୫) ଡାକ୍ତର ଶ୍ରୀଯୁକ୍ତ ରାଧିକା ପ୍ରସାଦ ସିଂହ ଏମ.ବି. ମହାଶୟଙ୍କ ନିକଟରୁ ଶୁଣିଅଛି ।



Digitized by srujanika@gmail.com

**ଅଷ୍ଟାଦଶ ଅଧ୍ୟାୟ**

# ସ୍ୱର୍ଗାରୋହଣ

ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ଦୁରାରୋଗ୍ୟ ବହୁମୂତ୍ର ପୀଡ଼ା ପ୍ରକୋପ ମନ୍ଦୀଭୂତ ନହୋଇ ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହେବାରେ ଲାଗିଲା । ୧୯୦୩ ଖ୍ରୀଷ୍ଟାବ୍ଦ ପ୍ରାରମ୍ଭରୁ ରାଜା ବାହାଦୁର ବେଶ୍ ଅନୁଭବ କରିବାରେ ଲାଗିଲେ ଯେ କ୍ରମଶଃ ହୀନବଳ ହୋଇ ପଡୁଅଛନ୍ତି । କଲିକତାର ଚିକିତ୍ସକମାନଙ୍କ ବ୍ୟବସ୍ଥାମତେ ଚିକିତ୍ସା ରାଜଧାନୀରେ ଥାଇ ଚାଲିଲା । ଏହା ଫଳରେ ଆଠ ଦଶ ଦିନ ଭଲ ରହନ୍ତି, ପୁଣି ରୋଗ ବୃଦ୍ଧି ପ୍ରାପ୍ତ ହୁଏ । ଏହିପରି ଚାଲୁ ଚାଲୁ ଅକ୍ଟୋବର ମାସ ମଧ୍ୟ ଶେଷ ହେଲା । ନଭେମ୍ବର ମାସରେ ଦେହ ଏକାବେଳକେ ଭାଙ୍ଗି ପଡ଼ିଲା । ଶେଷରେ ଡାକ୍ତର ଆର୍.ଏଲ୍ ଦତ୍ତ ମହାଶୟଙ୍କ ବ୍ୟବସ୍ଥା ମତେ ଚିକିତ୍ସା ଚାଲିଲା । ନଭେମ୍ବର ମଧ୍ୟ ଭାଗରେ ଦତ୍ତ ସାହେବଙ୍କୁ ବାମଣ୍ଡା ଡକାଇବା ପାଇଁ ସ୍ଥିର ହୁଏ ଏବଂ ସେ ମଧ୍ୟ ବାମଣ୍ଡା ଯାତ୍ରା କରନ୍ତି । କିନ୍ତୁ ୧୯ ନଭେମ୍ବର ଦିନ ବାମଣ୍ଡା ଷ୍ଟେସନରୁ ଅର୍ଦ୍ଧେକ ପଥ ଅଗ୍ରସର ହୋଇ କୁଚିଣ୍ଡାଠାରେ ପହଞ୍ଚି ସମ୍ବାଦ ପାଇଲେ ଯେ ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କର ସ୍ୱର୍ଗାରୋହଣ ଘଟିଅଛି ।

୧୯ ନଭେମ୍ବର ଦ୍ୱିପହରର କିଞ୍ଚିତ ପୂର୍ବେ ରାଜା ସାର୍ ବାସୁଦେବ ସୁଢ଼ଳଦେବ ମର୍ତ୍ତ୍ୟ ଜୀବନର ପୁଣ୍ୟ କର୍ମ ସମାପ୍ତ କରି ଲୋକାନ୍ତର ପଥରେ ଅଗ୍ରସର ହୁଅନ୍ତି । ଦେହତ୍ୟାଗ ସମୟରେ ତାଙ୍କର ବୟସ ୫୭ବର୍ଷ ୬ମାସ ତିନି ଦିନ ହୋଇଥିଲା । ମୃତ୍ୟୁର ମାତ୍ର କେଇ ମୁହୂର୍ତ୍ତ ପୂର୍ବେ ରାଜା ବାହାଦୁର ଜ୍ୟେଷ୍ଠପୁତ୍ର ଯୁବରାଜ ସଚ୍ଚିଦାନନ୍ଦ ଦେବ ବାହାଦୁରଙ୍କୁ ସମ୍ବୋଧନ କରି କହିଥିଲେ- 'ମୁଁ ଚାଲିଲି, ଚାରିଆଡ଼େ ଦୃଷ୍ଟି ରଖି ସାମାନ୍ୟ ବିବେଚନା ସହକାରେ ରାଜକାର୍ଯ୍ୟ ପରିଚାଳନା କଲେ ତୁମର କୌଣସି ଅସୁବିଧା ହେବ ନାହିଁ । ଆଉ ଯେଉଁ ପଥରେ ଚାଲିଲେ ସର୍ବାଙ୍ଗୀନ କଲ୍ୟାଣ ସାଧିତ ହେବ, ମୋହ ସଙ୍ଗେ ଏକାସାଙ୍ଗରେ ରାଜକାର୍ଯ୍ୟରେ ସହାୟତା କରି ତୁମର ସେହି ଜ୍ଞାନ ଅଛି ।' ଶ୍ରୀଯୁକ୍ତ ଯୋଗେଶ ଚନ୍ଦ୍ର ଦାଶ ମହାଶୟଙ୍କୁ ଦେଖାଇ କହିଥିଲେ- 'ଇଏ ମୋ ହାତ ଗଢ଼ା କର୍ମଚାରୀ, ଏହାଙ୍କୁ ଅଧିକ ବେତନ ଦେଇ ତୁମର କାର୍ଯ୍ୟରେ ନିଯୁକ୍ତ ରଖିଲେ ଅର୍ଥର ଅପବ୍ୟବହାର ହେବ ନାହିଁ ।'



Digitized by srujanika@gmail.com

ଆଜି ଛତିଶଗଡ଼ ଓ ଓଡ଼ିଶାରେ ହାହାକାର ଉତ୍‌ଥିତ ହେଲା । ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ସ୍ୱର୍ଗାରୋହଣରେ ବାମଣ୍ଡାର ରାଜ ସିଂହାସନ, ଆଦର୍ଶ ନୃପତି ହରାଇଛନ୍ତି, ଛତିଶଗଡ଼ର ରାଜନ୍ୟମଣ୍ଡଳୀ, ରାଜା ଚକ୍ରବର୍ତ୍ତୀ ଗୁଣ ସଂପନ୍ନ ଜଣେ ପରିଚାଳକଙ୍କୁ ହରାଇଛନ୍ତି । ଓଡ଼ିଶାର ସମଗ୍ର ସମାଜ ଜୀବନ ଜଣେ ଅସାମାନ୍ୟ ଶକ୍ତିଶାଳୀ ନେତାଙ୍କୁ ହରାଇ ବକ୍ଷରେ କରାଘାତ କରି ହାହାକାର କରୁଅଛି । ତାଙ୍କର ସାହିତ୍ୟ ସେବାରେ ଉତ୍କଳ ବଂଚିତ ହୋଇ ମ୍ଳାନ ଭାବ ଧାରଣ କରିଅଛି । ଶକ୍ତି ହିସାବରେ ହୀନବଳ ମଧ୍ୟ ହୋଇଅଛି । ଉତ୍କଳର ସେହି ବାଚନିକା ଓ ମୁଦ୍ରିତ ଭୀଷଣ ଆର୍ତ୍ତନାଦରେ ହୃଦୟ ଭାଙ୍ଗି ପଡ଼େ । ସେହି ସବୁ କିଛି କିଛି ସେମାନଙ୍କ ଭାଷାରେ ଉଦ୍ଧୃତ କରିଦିଆଗଲା । କଟକ କଲେଜର ବିଜ୍ଞାନାଚାର୍ଯ୍ୟ ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧି ମହୋଦୟଙ୍କ ଉକ୍ତି:-

"ଉପରି ଲିଖିତ ବିବରଣୀ ଶେଷ କରିବା ପରେ ଦିନେ ସମ୍ବାଦ ପାଇଲି ଯେ, ମାର୍ଗଶିର ତୃତୀୟା ଦିନ ବାମଣ୍ଡାଧିପତି ସାର୍ ସୁଢ଼ଳଦେବ କେ.ସି. ଆଇ.ଇ. ସ୍ୱର୍ଗାରୋହଣ କରିଅଛନ୍ତି । ପ୍ରାୟ ଏକମାସ ପୂର୍ବେ ତାହାଙ୍କୁ ସୁସ୍ଥ ଓ ସବଳ ଦେଖି ଆସିଥିଲି । ତାହାଙ୍କର ବୟସ ମଧ୍ୟ ଅଧିକ ହୋଇନାହିଁ । ବୋଧକର ୫୦/୫୨ ବର୍ଷରୁ ଅଧିକ ନୁହେଁ । କିନ୍ତୁ କାଳର ନିୟମ ନାହିଁ । କ୍ଷଣବିଧ୍ୱଂସୀ ଶରୀରର ନିଶ୍ଚୟତା ନାହିଁ । ଓଡ଼ିଶାର ଅନେକ ରାଜା ଦେଖିଅଛି, କିନ୍ତୁ ଅତ୍ୟଳ୍ପ ମହାରାଜ ସୁଢ଼ଳଦେବଙ୍କ ତୁଲ୍ୟ ଧାର୍ମିକ, ନୀତିବାନ, ବିଚକ୍ଷଣ ଓ କର୍ମକୁଶଳ ଦେଖିଅଛି । ତାହାଙ୍କୁ ଦେଖି ରଘୁବଂଶ ମନେ ପଡିଥିଲା-

ଆକାର ସଦୃଶ ପ୍ରାଜ୍ଞ ପ୍ରଜ୍ଞାୟା ସଦୃଶାଗମଃ<br>
ଆଗମୈଃ ସଦୃଶାରମ୍ଭ ଆରମ୍ଭ ସଦୃଶୋଦୟଃ ।

ତାହାଙ୍କ ଅକାଳ ମୃତ୍ୟୁରେ ବାମଣ୍ଡା ରାଜ୍ୟ ସହୃଦୟ ରାଜା, ବ୍ରିଟିଶ୍ ଗଭର୍ଣ୍ଣମେଣ୍ଟ ବିଶ୍ୱାସଭାଜନ ସାମନ୍ତ, ସଂସ୍କୃତ ସାହିତ୍ୟ ଅନୁରାଗୀ ଭକ୍ତ, ଜନ-ସାଧାରଣ ବଦାନ୍ୟ ଓ ସୁଜନ ଦେଶହିତୈଷୀ ଏବଂ ରାଜ କୁମାରଗଣ ସ୍ନେହଶୀଳ ପିତା ହରାଇଲେ । ସୁଖର ବିଷୟ, ସେ ଯୁବରାଜ (ବର୍ତ୍ତମାନର ରାଜା) ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କୁ ଉପଯୁକ୍ତ ଶିକ୍ଷାଦେଇ ଓ ରାଜକାର୍ଯ୍ୟରେ ଅଭିଜ୍ଞ କରାଇ ରଖି ଯାଇଅଛନ୍ତି । ଆଶା କରେ ନୂତନ ରାଜା ଗୁଣରେ ପିତା ତୁଲ୍ୟ ହେବେ ।"

ଓଡ଼ିଶାର ଶିକ୍ଷା ବିଭାଗ ଇନ୍ସପେକ୍ଟର ଉତ୍କଳ ବ୍ରାହ୍ମ ସମାଜର ନେତୃସ୍ଥାନୀୟ ରାୟ ବାହାଦୁର ସ୍ୱର୍ଗୀୟ ମଧୁସୂଦନ ରାଓ ମହାଶୟଙ୍କ ଲିଖିତ 'ଶୋକ ଲହରୀ':-



Digitized by srujanika@gmail.com

# ଶୋକ ଲହରୀ

(୧)

କି ଘୋର ବାରତା ଆଜି          ଅଶନି ନିର୍ଘାତେ
ପଶିଲା ଏ ଉତ୍କଳ ଭବନେ ।
ବିଦଳିତ କି ଦାରୁଣ          ଶୋକ-ଝଞ୍ଜା ବାତେ
ଶତ ଆଶାଲତା ହୃଦ୍‌ବନେ
ଉତ୍କଳ ଗଗନ ରବି          ଦେବ ଶ୍ରୀ ସୁଢ଼ଳ
ଅସ୍ତମିତ ଦିବା ଦ୍ୱିପହରେ,
ଘୋର ଅନ୍ଧକାରେ ମଗ୍ନ          କାତର ଉତ୍କଳ
ବିକଳେ କାନ୍ଦଇ ଆର୍ତ୍ତସ୍ୱରେ ।
ପୂରୁବେ ପଶ୍ଚିମେ ଆଜି          ବିଳାପର ଧ୍ୱନି,
କାନ୍ଦଇରେ ଉତ୍ତର-ଦକ୍ଷିଣ,
ଆକୁଳ କାନ୍ଦଇ          ସର୍ବ ଉତ୍କଳ ଅବନୀ
ଚଉଦିଗ ଶୋକ ବିମଳିନ ।

(୨)

ସତେ କିହେ ମହାରାଜ          ଗଙ୍ଗବଂଶ ରବି
କୋଟି ନେତ୍ର-ନନ୍ଦନ ପ୍ରତିମା,
ବୁଧକୁଳ ମାନନୀୟ          ମନୀଷୀ ସୁକବି
ସ୍ୱଦେଶର ଗୌରବ ଗାରିମା ।
ସତେ କିହେ ପୁଣ୍ୟଶ୍ଳୋକ          ପରଲୋକ-ଦେଶେ,
ମହା ପ୍ରସ୍ଥାନର ମହାପଥେ,
ଗଲ ଚାଲି ଏ ସଂସାର          ତେଜିଣ ନିମିଷେ,
ସୁକୃତ -ପୁଷ୍ପକ-ପୁଣ୍ୟରଥେ ?



Digitized by srujanika@gmail.com

(୩)

ତେଜି ଶ୍ରୀ ସଚ୍ଚିଦାନନ୍ଦ ହୃଦୟ ନନ୍ଦନେ
ତେଜି ପ୍ରିୟ ସୁତ-ସୁତା-ଜାୟା,
ତେଜି ରାଜ୍ୟ ରାଜଦଣ୍ଡ ରାଜ ସିଂହାସନେ,
ତେଜି ସଂସାରର ସର୍ବ ମାୟା ।
ଏ ମର୍ତ୍ତ୍ୟ ଧାମର ସୀମା ଲଂଘିଣ କ୍ଷଣକେ,
ଯାଇଅଛ ଚାଲି ମହାବାହୁ
ସେ ଅଜ୍ଞାତଲୋକ ପରଲୋକ କି ଛଟକେ,
ଯହୁଁ କେହି ନବାହୁଡ଼େ ଆଉ ।
ଯାଇଅଛ ଚାଲି ଦେବ ଚିରକାଳ ପାଇଁ
ଦିବ୍ୟଧାମ ଅମର ନଗରେ
ଏ ମର୍ତ୍ତ୍ୟ ନୟନ ଆଉ ବିଲୋକିବ ନାହିଁ
ବୀର୍ଯ୍ୟଦୀପ୍ତ ତବ କଳେବରେ ।

(୪)

ଶାଳ-ପ୍ରାଂଶୁ ସେ ମୂରତି ସେ ବକ୍ଷ ବିପୁଳ,
ସେ ପ୍ରଶାନ୍ତ କରୁଣ ନୟନ,
ସେ ଦିବ୍ୟ ଆକାର, ଯହିଁ ଏକାଧାରେ ଠୁଳ
ଭୀମକାନ୍ତ ଗୁଣ ଅଗଣନ ।
ଆକାର ସଦୃଶ ପ୍ରାଜ୍ଞ ଥିଲ ନରମଣି,
ଶାସ୍ତ୍ରେ ଅକୁଣ୍ଠିତା ତବ ବୁଦ୍ଧି ।
ଅନୁସରି ଜ୍ଞାନ ଗର୍ଭ କର୍ମର ସରଣୀ
ବିଧିରେ ଲଭିଲ ମହାସିଦ୍ଧି ।



Digitized by srujanika@gmail.com

ଧନ୍ୟ ଧନ୍ୟ କ୍ଷଣ ଜନ୍ମ ଜନ୍ମି ରାଜବଂଶେ,
କ୍ଷଣସ୍ଥାୟୀ ମାନବ ଜନମେ,
ଲଂଘିଅଛ ମର୍ଯ୍ୟାଦାର ଯେଉଁ ଅବତଂଶେ
ଯେଉଁ ମହାପ୍ରୟାସ ବିକ୍ରମେ,
ସେହି ମହାପ୍ରୟାସର ପବିତ୍ର ସଂଯମେ
ଥିଲ ତୁମ୍ଭେ ମହା କର୍ମବୀର ।
ଆଡ଼ମ୍ବର-ଶୂନ୍ୟ-ରାଜ ଋଷି ରାଜ୍ୟାଶ୍ରମେ,
ଗୃହାଶ୍ରମେ ଆଦର୍ଶ ଗୃହୀର ।

(୫)

ରାଜକର୍ମ କୋଳାହଳ- ମଧ୍ୟେ ଥାଇ ସଦା
କେମନ୍ତେ ହେ କହ କର୍ମୀବର
ଭେଟିଲ ସେବିଲ ସେହି ଭାରତୀ ବରଦା ?
ସୌଭାଗ୍ୟେ ଲଭିଲ ତାଙ୍କ ବର ।
ରଚିର ସଭାବ ରାଜ୍ୟେ, ହେ ରସଜ୍ଞ କବି,
ନିସର୍ଗର ସୌନ୍ଦର୍ଯ୍ୟ ନିଳୟେ,
ଆନନ୍ଦେ ବିହରି କେତେ ସୁମନୋଜ୍ଞ ଛବି
ଚିତ୍ରିଲ ହେ କବିତା ନିଚୟେ,
ଉତ୍କଳର ସୁରଧୁନୀ ଉତ୍କଳ ପାବନୀ
ମହାନଦୀ 'ଚିତ୍ରୋତ୍ପଳା' ଚିତ୍ର
ଶ୍ରୀକରେ ଚିତ୍ରିଲ ଚିନ୍ତି ଦିବସ ରଜନୀ,
ମହାନଦୀ ମହିମା ବିଚିତ୍ର
ଝାନ୍ସୀରାଣୀ ଲକ୍ଷ୍ମୀବାଈ ଶୌର୍ଯ୍ୟ ସୁଚରିତ
ଶୁଣି ତବ କ୍ଷତ୍ରିୟ ଶୋଣିତ
ସଘନେ ଉଠିଲା ନାଚି ତବ ବୀର ଚିତ୍ତ
ଗାଇଲା ହେ 'ବୀରବାମା' ଗୀତ ।


Digitized by srujanika@gmail.com

ଉତ୍କଳ ସାହିତ୍ୟାକାଶେ ଉଇଁ ଶୁଭକ୍ଷଣେ
ଭାଷା-ଯୋଗେ ଭବିଷ୍ୟ ମିଳନେ
ସୂଚିଲ ହେ ଦୂରଦର୍ଶୀ, ଅରୁଣ ଯେସନେ
ସୂଚେ ମାଧ୍ୟନ୍ଦିନ -ଆଗମନେ ।
ସୁଧୀ କବି ଜନେ ଆହା କେତେ ସମାଦର
କରିଅଛ ହେ ଗୁଣ-ଗ୍ରାହକ ।
ଗୁଣିଗୁଣି ତବ ଗୁଣ କେତେ ଗୁଣିଙ୍କର
ବହଇ ହେ ନୟନୁ ଲୋତକ ।

(୬)

ବାମଣ୍ଡା ଗୌରବ, ଦେବ, ବାମଣ୍ଡା ମହିମା
ରାଜଧାନୀ -ଦେବଗଡ଼-ଟେକ
ଉତ୍କଳ ଗୀର୍ବାଣ- ବିଦ୍ୟା ଗୌରବ ଗାରିମା
ବଢ଼ାଇଲା ତୁମ୍ଭରି ବିବେକ ।
ପ୍ରତି ଦିବସର ପ୍ରୀତି ପୂର୍ଣ୍ଣ ପ୍ରୟାସରେ
ଯେ ରାଜ୍ୟ ପାଳିଲ ସୁମଙ୍ଗଳେ
ତେଜି ତାକୁ ଅନ୍ତର୍ହିତ ହେଲ କ୍ଷଣକରେ
ବିରାଜିଲ ଏବେ ଦେବଦଳେ ।
ଏବେ ତବ ଲୋକଦ୍ୱୟ- ସାଧନୀ ଚାତୁରୀ
ଲଭିଅଛି ଅପୂର୍ବ ମହିମା,
ଦେବପୁରୀ ଯାଏ ତବ ଜୀବନ ମାଧୁରୀ
ପ୍ରସାରିତ ଲଂଘି ମର୍ତ୍ତ୍ୟ ସୀମା ।



Digitized by srujanika@gmail.com

(୭)

ବିରାଜ ବିରାଜ ଦେବ ! ଅମର ଭବନେ,
ଶୁଭ୍ର ନବ ଦେବ ମୂର୍ତ୍ତି ଲଭି,
ଉତ୍କଳର ଅଶ୍ରୁଧୌତ ହୃଦୟ ଗଗନେ,
ପ୍ରତିଫଳୁ ତବ ଦେବ ଛବି,
ମହା ମହେଶଙ୍କ ଶ୍ରୀଚରଣ ଛାୟାତଳେ
ଲଭି ଦିବ୍ୟ ତେଜଃ ପୁଞ୍ଜ କାନ୍ତି,
ଉଭା ହୋଇ ଜ୍ୟୋତିର୍ମୟ ଦେବତାଙ୍କ ଦଳେ
ଗାଅ ଦେବ ! ଓଁ ସ୍ୱସ୍ତି, ଶାନ୍ତି ।
ସେହି ଶାନ୍ତି ମହାମନ୍ତ୍ର ସେହି ସ୍ୱସ୍ତି ଗାନ
ସନ୍ତପ୍ତ ଏ ସଂସାର ଆଳୟେ
ସ୍ଫୁରୁ ନିତ୍ୟ, କରୁ ନିତ୍ୟ ଅଭୟ ପ୍ରଦାନ
ମନୁଷ୍ୟର ହତାଶ ହୃଦୟେ ।
ସେ ସଙ୍ଗୀତ ମନ୍ଦାକିନୀ କରୁ ମଧୁମୟ
ଲକ୍ଷ ଲକ୍ଷ ନକ୍ଷତ୍ର ମଣ୍ଡଳ,
ସେ ପରମ ଘୋଷଣାର ଅମୃତ ଅଭୟ
ବ୍ୟାପୁ ବ୍ୟୋମ ବାୟୁ ଜଳ ସ୍ଥଳ ।'

ପ୍ରକୃତରେ ସାର୍ ବାସୁଦେବ ସୁଢ଼ଳଦେବଙ୍କର ସ୍ୱର୍ଗାରୋହଣରେ ଓଡ଼ିଶା ଓ ଛତିଶଗଡ଼ର ସମଗ୍ର ଜନସାଧାରଣଙ୍କ ମଧ୍ୟରେ ମାନବ ପ୍ରତିଭାର ଅସ୍ତଗମନ ସଂଘଟିତ ହୋଇଥିଲା । ଅସଂଖ୍ୟ ନରନାରୀଙ୍କ ହାହାକାରରେ ଦେଶ ପୂର୍ଣ୍ଣ ହୋଇଥିଲା । ସମ୍ବାଦ ପତ୍ରରେ ଏବଂ ସ୍ୱତନ୍ତ୍ର ଭାବେ ମୁଦ୍ରିତ ପୁସ୍ତିକାରେ ଆର୍ତ୍ତନାଦ ଗଦ୍ୟରେ ପଦ୍ୟରେ ପ୍ରକାଶିତ ହୋଇ ବହୁ ଲୋକଙ୍କ ହୃଦୟର କାତରତା ପ୍ରକାଶ କରିଅଛି । ଦୀର୍ଘକାଳ ପରେ ମଧ୍ୟ ଆମେ ସେଗୁଡ଼ିକର ଅନ୍ତର୍ନିହିତ ବିଷାଦ ରାଶିର ଆଭାସ ପାଇ, ସେହି ବିଳାପର ଗୁରୁତ୍ୱ ବେଶ୍ ଅନୁଭବ କରୁଅଛୁ । ରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କ ଜୀବନୀର ଉପକରଣ ଗୁଡ଼ିକର ଅନୁଶୀଳନ କାଳରେ ପ୍ରକୃତରେ ଅନୁଭବ କରିଥିଲି, ଭାରତର ସାମନ୍ତ ନୃପତି ମଣ୍ଡଳରେ ଏଭଳି ପ୍ରତିଭାଶାଳୀ ବିରାଟ ପୁରୁଷ ଅନ୍ୟ କେହି ଅଛନ୍ତି କି ନାହିଁ ସନ୍ଦେହ । ତାହାଙ୍କ ଅକାଳ ମୃତ୍ୟୁ ଫଳରେ ବାମଣ୍ଡାରେ ଏବଂ ଓଡ଼ିଶାର ଅନ୍ୟ ନାନା ସ୍ଥାନରେ ବହୁ ସଭା ସମିତି ଅନୁଷ୍ଠାନ ପୂର୍ବକ



Digitized by srujanika@gmail.com

ଦେଶର ଶିକ୍ଷିତ ସମାଜ ବହୁ ବିଳାପ କରି ଅଛନ୍ତି । ସମ୍ରାଟ ଶକ୍ତି ସମ୍ପନ୍ନ ଇଂରେଜରାଜ ମଧ୍ୟ ଜଣେ ଅନୁରକ୍ତ ବିଶ୍ୱାସଭାଜନ, କର୍ମଶୀଳ ଓ ପ୍ରଜାରଂଜନ ପ୍ରିୟ ନୃପତିଙ୍କୁ ହରାଇ ଦୁଃଖ ପ୍ରକାଶ କରି ଅଛନ୍ତି । ମଧ୍ୟପ୍ରଦେଶର ବାର୍ଷିକ ଉଦ୍ଧୃତାଂଶ:-

**Resolution :** The officiating Chief commmissioner notes with much regret the death of Raja Sir Sudhal Dev K.C.I. E. of Bamra . The death of Raja Sir Sudhal Dev was a serious loss.

**General :** Raja Sir Sudhal Dev, the late Feudatory chief died in November last. He had been suffering from Diabetes for upwards of a year and his illness prevented him from attending the coronation Durbar at Delhi in January1903. In 1889 he was appointed a companion of the Order of Indian Empire and in 1895 he was created a knight-commander of the same order. His death has removed one of the most distinguished representatives of the older generation of Chhattisgarh Feudatory chiefs. The Government of India have recognised the succession of his eldest son under the style and Title of Raja, S.Tribhuban Dev. **Report-1903**

କର୍ମବୀର ବାସୁଦେବ ଇହଜଗତଠାରୁ ଅନ୍ତର୍ହିତ ହୋଇଅଛନ୍ତି । ସେ ନବ୍ୟ ଶିକ୍ଷାପ୍ରାପ୍ତ ରାଜା ନ ଥିଲେ । ଇଦାନୀନ୍ତନ ନବ୍ୟ ଶିକ୍ଷିତ ଅଧିକାଂଶ ରାଜାମାନଙ୍କ ମତିଗତି ପ୍ରତି ଦୃଷ୍ଟି ନିକ୍ଷେପ କଲେ, କିଏ ବା ନବୁଝି ପାରିବେ ଯେ ବାସୁଦେବ ନବ୍ୟ ଶିକ୍ଷାଠାରୁ ବଞ୍ଚିତ ହୋଇ ବରଂ ବଞ୍ଚି ଯାଇଅଛନ୍ତି । ନବ୍ୟ ରୀତି ଅନୁସାରେ ଶିକ୍ଷିତ ନ ହେଲେ ମଧ୍ୟ, ବାସୁଦେବ ଯେ କେବଳ ସୁଶିକ୍ଷତ ଥିଲେ ତାହା ନୁହେଁ, ପଣ୍ଡିତ ଥିଲେ । ସଂସ୍କୃତ ଏବଂ ଓଡ଼ିଆ ଭାଷାରେ ତାହାଙ୍କର ଗଭୀର ପାଣ୍ଡିତ୍ୟ ଥିଲା । ହିନ୍ଦୀ, ବଙ୍ଗଳା ଓ ସାମାନ୍ୟତର ଇଂରାଜୀ ମଧ୍ୟ ସେ ଶିକ୍ଷା କରିଥିଲେ । ନବ୍ୟ ଶିକ୍ଷା ଲାଭ ନକରି ମଧ୍ୟ, ନବ୍ୟ ଶିକ୍ଷାର ସମଗ୍ର ସୁଫଳ ତାହାଙ୍କର ଆୟତ୍ତ ହୋଇଥିଲା । ନବ୍ୟ ସଭ୍ୟତାର ବିଡ଼ମ୍ବନାଠାରୁ ନିଜକୁ ଓ ରାଜ୍ୟକୁ ରକ୍ଷା କରିବା ବିଷୟରେ ସେ ସର୍ବଦା ସତର୍କ ଥିଲେ । ଏହାର ଚାକଚକ୍ୟରେ ମୁଗ୍ଧ କିମ୍ବା ପ୍ରତାରିତ ନହୋଇ କେବଳ ତାହାର ସାରବତ୍ତାକୁ ନିଜ ସତ୍ତାରେ ଏକୀଭୂତ କରାଇ ନେବାରେ ପ୍ରୟାସୀ ଥିଲେ । ପାଶ୍ଚାତ୍ୟ ସଭ୍ୟତାରେ ଯାହାକିଛି ଶ୍ରେୟସ୍କର, ନିଜର ଆୟ ଏବଂ ସାମର୍ଥ୍ୟ ଅନୁସାରେ ତତ୍‌ସମୁଦାୟ ସେ ରାଜ୍ୟ ମଧ୍ୟରେ ପ୍ରବର୍ତ୍ତିତ କରାଇ, ତାହାର ସୁଫଳ ପ୍ରଜାମାନଙ୍କୁ ଚାକ୍ଷୁସ ପ୍ରତ୍ୟକ୍ଷ ଏବଂ ହୃଦୟଙ୍ଗମ କରାଇଥିଲେ । ବାମଣ୍ଡା ରାଜ୍ୟର ରାଷ୍ଟ୍ରତନ୍ତ୍ର ଏବଂ ଶାସନ ପ୍ରଣାଳୀ ସେ ଯେଉଁ ରୀତିରେ ଗଠନ କରି ଆସିଥିଲେ ଏବଂ ରାଜ୍ୟରେ ଧନାଗମନର ଯେଉଁ ଉପାୟ ସବୁ ଉଦ୍ଭାବନ କରିଥିଲେ, ଯେଉଁମାନେ ବାମଣ୍ଡା ଯାଇ ତାହା ଅତି ବାହ୍ୟିକ ଏବଂ ସ୍ଥୂଳଭାବରେ ଥରେମାତ୍ର ପ୍ରତ୍ୟକ୍ଷ କରିଛନ୍ତି, ସେମାନେ ଏହି ବର୍ଣ୍ଣନା ଅତିରଞ୍ଜିତ ବୋଲି ମନେ କରିବେ ନାହିଁ । ବାମଣ୍ଡା ରାଜ୍ୟର ପ୍ରତ୍ୟେକ ବିଭାଗରେ ଏବଂ ପ୍ରତ୍ୟେକ ଅଂଶରେ ବାସୁଦେବ ସୁଢ଼ଳଦେବଙ୍କ ବ୍ୟକ୍ତିତ୍ୱର ମୁଦ୍ରା ଦେଦୀପ୍ୟମାନ ବୋଲି ଅନୁଭବ କରିବେ । ବାସୁଦେବଙ୍କ



Digitized by srujanika@gmail.com

ସେବିତ ବାମଣ୍ଡାରେ Order and progress (ପ୍ରାଚୀନ ରକ୍ଷଣଶୀଳତା ଏବଂ ନବ୍ୟ ଅଗ୍ରସରତାର) ସୁନ୍ଦର ସାମଞ୍ଜସ୍ୟ ସମଗ୍ର ଭାରତବର୍ଷରେ ହିଁ ବିରଳ ବୋଧହୁଏ ।' (ରାଧାନାଥ ରାୟଙ୍କ ଆଲୋଚନାରୁ ଉଦ୍ଧୃତ)

ରାଜା ସାର୍ ବାସୁଦେବ ସୁଢ଼ଳଦେବ ଆତ୍ମଶକ୍ତିର ବିକାଶ ସାଧନ ଦ୍ୱାରା କିଭଳି ଏକ ଆଦର୍ଶ ନୃପତି ରୂପେ ଗଢ଼ି ଉଠିଥିଲେ, ସେହି ବିଷୟରେ ଆଉ ଅଧିକ ବାକ୍ୟବ୍ୟୟ ନକରି, ରାଧାନାଥ ରାୟଙ୍କ ବିବରଣୀ ମାଳାରୁ କିୟଦଂଶ ଉଦ୍ଧାର କରି ତାହାଙ୍କର ସ୍ୱର୍ଗାରୋହଣ ଫଳରେ ବାମଣ୍ଡାର, ସମଗ୍ର ଓଡ଼ିଶାର ଏବଂ ସାଧାରଣ ଭାବେ ଆମ ଦେଶର କି କ୍ଷତି ସାଧିତ ହୋଇଅଛି ଏବଂ ସେହିପରି ଆଉଜଣେ ମନୁଷ୍ୟ ଲାଭ କରିବା କେତେ କଠିନ ତାହା ପ୍ରକାଶ କରୁଅଛି ।

'ବାସୁଦେବଙ୍କ ପରି ନିରାଡ଼ମ୍ବର, ନିରାଭିମାନ, ନିରଳସ ଏବଂ କର୍ତ୍ତବ୍ୟନିଷ୍ଠ ରାଜା ଉତ୍କଳୀୟ ସଂସାରରେ ଅତି ଦୁର୍ଲଭ । ଇତିହାସ କହେ ଯେ, ବୀର ବିକ୍ରମାଦିତ୍ୟଙ୍କ ଗୃହସଜ୍ଜା ମାତ୍ର ଏକ ଶଯ୍ୟା ଏବଂ ଏକ ଜଳପୂର୍ଣ୍ଣ ଘଟମାତ୍ର ଥିଲା । ବାସୁଦେବଙ୍କର ନିତ୍ୟ ବ୍ୟବହାର୍ଯ୍ୟ ସାଜସଜ୍ଜା ଅବିକଳ ସେହିପରି ଥିଲା । ଗୃହର ସାଜସଜ୍ଜା ଯେପରି, ଶାରୀରିକ ବେଶଭୂଷା ମଧ୍ୟ ତଦନୁରୂପ । ଆଡ଼ମ୍ବର ତାହାଙ୍କୁ ସ୍ପର୍ଶ କରି ନାହିଁ । ରାଜସୁଲଭ ଆଡ଼ମ୍ବର ତ ଦୂରର କଥା, ସାଧାରଣ ଲୋକଙ୍କ ସମୟ ସମୟରେ ଯେଉଁପରି ଆଡ଼ମ୍ବର ଦେଖାଯାଏ, ତାହା ମଧ୍ୟ ତାଙ୍କଠାରେ ନଥିଲା । ଶିକ୍ଷା କରିବା ଓ ପରିଶ୍ରମ କରିବା ପାଇଁ ଜୀବନ ଅଭିପ୍ରେତ (intended) ଏହା ସେ କଦାପି ବିସ୍ମୃତ ହୋଇନାହାନ୍ତି । ଯେତେ ନିମ୍ନ ଶ୍ରେଣୀର ଲୋକ ହୁଅନ୍ତୁ ନା କାହିଁକି, ସେମାନଙ୍କ ନିକଟରେ କୌଣସି ଶିକ୍ଷଣୀୟ ବିଷୟ ରହିଥିଲେ, ସେ ଆଗ୍ରହ ପୂର୍ବକ ତାହା ଶିକ୍ଷା କରୁଥିଲେ । ସଂସ୍କୃତ ଆଳଂକାରିକଗଣ କହିଥାନ୍ତି ଯେ କବି ହେବାକୁ ହେଲେ 'ବ୍ୟୁତ୍ପତୌ ସର୍ବ ଶିଷ୍ୟତା' ଜ୍ଞାନଲାଭ ହେତୁ ସମସ୍ତଙ୍କର ଶିଷ୍ୟତ୍ୱ ସ୍ୱୀକାର କରିବାକୁ ହେବ । ଜ୍ଞାନଲାଭ ପାଇଁ ସାର୍ ବାସୁଦେବ ଏହି ପଥ ଅନୁସରଣ କରିଥିଲେ । କେବଳ ଯଦୃଚ୍ଛା ମିଳିତ ଲୋକଙ୍କ ନିକଟରେ ଜ୍ଞାନ ଲାଭ କରି ସେ ଯେ ତୃପ୍ତ ହେଉଥିଲେ, ତାହା ନୁହେଁ, ସମୟ ସମୟରେ ଅନେକ ବ୍ୟୟ ସ୍ୱୀକାର କରି ବଙ୍ଗ, ଉତ୍କଳ, ବିହାର, ଉତ୍ତର ପଶ୍ଚିମ ପ୍ରଦେଶ ଏବଂ ଦ୍ରାବିଡ଼ ପ୍ରଭୃତି ଅଞ୍ଚଳରୁ ଗୁଣୀ ଏବଂ ମନସ୍ୱୀ ବ୍ୟକ୍ତିଗଣଙ୍କୁ ନିମନ୍ତ୍ରଣ ଦ୍ୱାରା ନିଜ ରାଜଧାନୀକୁ ଅଣାଇ ସେମାନଙ୍କ ଉପଦେଶ ଗ୍ରହଣ କରୁଥିଲେ । ଓଡ଼ିଶାର କେତେଜଣ ରାଜା ଏହିପରି କରିଥାନ୍ତି ? ଅଭାବର ତୀବ୍ର କଷାଘାତରେ ଜର୍ଜରିତ ହୋଇ ଆତ୍ମମର୍ଯ୍ୟାଦାକୁ ପୃଷ୍ଠବର୍ତ୍ତୀ କରି କଦାଚିତ୍ କୌଣସି ପଣ୍ଡିତ ସ୍ୱତଃପ୍ରବୃତ୍ତ ହୋଇ ଦ୍ୱାରସ୍ଥ ହେଲେ, କୌଳିକ ପ୍ରଥା କିମ୍ବା ଚକ୍ଷୁଲଜ୍ଜା ଅନୁରୋଧରେ ସେମାନଙ୍କୁ ଯତ୍ କିଞ୍ଚିତ୍ ପ୍ରଦାନ କରିବାର ପ୍ରଥା ଅଧିକାଂଶ ଦେଶୀୟ ରାଜ୍ୟରେ ପ୍ରଚଳିତ



Digitized by srujanika@gmail.com

ଥିଲା । ନବ୍ୟ ଶିକ୍ଷିତା ଭିମାନୀଙ୍କ ଅଭିଧାନରେ ଏହିପରି ଦାନ ଆଳସ୍ୟକୁ ପ୍ରଶୟ ଦାନର ପ୍ରତିଶବ୍ଦ ରୂପେ ଗୃହୀତ ହୋଇ ଦୁସ୍ଥ ଗୁଣବାନଙ୍କର ସତ୍କାର କରିବାର ସେହି ଚିରନ୍ତନ ପ୍ରଥା ବର୍ତ୍ତମାନ କ୍ରମଶଃ ଲୋପ। ହେଉଅଛି । ଏକମାତ୍ର ବାମଣ୍ଡାରେ ଏହାର ସତ୍ତା ଅକ୍ଷୁଣ୍ଣ ରହିଅଛି ବୋଲି ଶୁଣାଯାଏ । ବାମଣ୍ଡା ରାଜକୀୟ ଓଡ଼ିଶାର ବହିର୍ଭୁତ ଏବଂ ଅପେକ୍ଷାକୃତ ଦୂରବର୍ତ୍ତୀ ହୋଇ ସୁଦ୍ଧା ଓଡ଼ିଶାର ପଣ୍ଡିତ ମଣ୍ଡଳୀଙ୍କ ସହିତ ଘନିଷ୍ଠତା ସୂତ୍ରେ ଯେପରି ସମ୍ବନ୍ଧ, ଖାସ୍ ଓଡ଼ିଶାରେ ସେହିପରି ରାଜ୍ୟ ପ୍ରାୟ ନାହିଁ । ବାସୁଦେବଙ୍କ ସର୍ବତୋମୁଖ ଉତ୍କର୍ଷର ଏହାହିଁ ପ୍ରଧାନ କାରଣ । ଏକାଧାରରେ ଏତେ ଗୁଣର ସମାବେଶ ଏକମାତ୍ର ତାହାଙ୍କଠାରେ ହିଁ ଦେଖାଯାଇଥିଲା । ବାସୁଦେବ ବୈଷୟିକଙ୍କ ସହିତ ବୈଷୟିକ, ଭାବୁକଙ୍କ ସହିତ ଭାବୁକ, ପୌରାଣିକଙ୍କ ସହିତ ପୌରାଣିକ, କବିଙ୍କ ସହିତ କବି, ସମାଲୋଚକଙ୍କ ସହିତ ସମାଲୋଚକ, ଆଳଙ୍କାରିକଙ୍କ ସହିତ ଆଳଙ୍କାରିକ, ବୈୟାକରଣଙ୍କ ସହିତ ବୈୟାକରଣିକ, ନୈୟାୟିକଙ୍କ ସହିତ ନୈୟାୟିକ, ବୈଦାନ୍ତିକଙ୍କ ସହିତ ବୈଦାନ୍ତିକ, ସ୍ମାର୍ତ୍ତଙ୍କ ସହିତ ସ୍ମାର୍ତ୍ତ, ଶାସ୍ତ୍ରବିଦ୍‌ଙ୍କ ସହିତ ଶାସ୍ତ୍ରବିତ୍, ଅଶ୍ୱବାରଙ୍କ ସହିତ ଅଶ୍ୱବାର, ଶିକାରୀଙ୍କ ସହିତ ଶିକାରୀ, ବଣିକଙ୍କ ସହିତ ବଣିକ, ବିନ୍ଧାଣୀଙ୍କ ସହିତ ବିନ୍ଧାଣୀ, ଚିତ୍ରକରଙ୍କ ସହିତ ଚିତ୍ରକର, କୃଷକଙ୍କ ସହିତ କୃଷକ ଭାବରେ ମିଶି ପାରୁଥିଲେ । ରାଜ୍ୟର ପ୍ରତ୍ୟେକ ବିଭାଗରେ ସେ ନିଜେ ହିଁ ନିଜର ସଚିବ ଥିଲେ । ଅନୁଷ୍ଠାନର ଭାର ଅନ୍ୟ ଉପରେ ନ୍ୟସ୍ତ କରିଦେଇ ଉଦ୍ଭାବନ ଏବଂ ପର୍ଯ୍ୟବେକ୍ଷଣର ଭାର ନିଜ ହସ୍ତରେ ନ୍ୟସ୍ତ ରଖୁଥିଲେ । ବିଶେଷତଃ 'କୋଣାଶ୍ରୟ ନିୟତ୍ୱଂ' ଏହି ମହାବାକ୍ୟ ସ୍ମରଣ ରଖି ରାଜସ୍ୱ ଭାଗ ବ୍ୟକ୍ତିଭାବେ ପୁଙ୍ଖାନୁପୁଙ୍ଖ ରୂପେ ପର୍ଯ୍ୟାଲୋଚନା କରୁଥିଲେ ।' ତାହାଙ୍କ ସ୍ୱର୍ଗାରୋହଣ ଫଳରେ କେବଳ ଯେ ରାଜସିଂହାସନ ଆଦର୍ଶ ରାଜା ହରାଇଛି, ତାହା ନୁହେଁ, ମନୁଷ୍ୟ ସମାଜ ମଧ୍ୟ ସର୍ବବିଧ ଗୁଣସମ୍ପନ୍ନ ଜଣେ ସ୍ୱଭାବସୁନ୍ଦର ମନୁଷ୍ୟ ହରାଇଅଛି । ଏହାହିଁ ଆମ୍ଭମାନଙ୍କର ପାଇଁ ନିଦାରୁଣ ଦୁଃଖର ବିଷୟ ।

ବିଦ୍ୟାସାଗର ବିୟୋଗ କାତର ବଙ୍ଗାଳୀ ଧନୀ ଦରିଦ୍ର ଇତର ଭଦ୍ର ନରନାରୀ ଓ ବିଦ୍ୟାଳୟର ବାଳକମାନେ ଯେଭଳି ସାଶ୍ରୁ ନୟନରେ ହାହାକାର କରିଥିଲେ, ଓଡ଼ିଶାର ସମବେତ ସମାଜ ଜୀବନର ମଧ୍ୟମଣି ସାର୍ ବାସୁଦେବ ସୁଢ଼ଳଦେବଙ୍କ ମର୍ତ୍ତ୍ୟ ଜୀବନର ଅବସାନ ଫଳରେ ଓଡ଼ିଶାବାସୀ ଜନସାଧାରଣ ସେହିପରି ହାହାକାର କରିଅଛନ୍ତି । ବକ୍ଷରେ କରାଘାତ କରି ରୋଦନ କରିଅଛନ୍ତି ।

ମାସ ପରେ ମାସ, ସପ୍ତାହ ପରେ ସପ୍ତାହ, ସମ୍ବାଦପତ୍ରରେ ମଧ୍ୟ ରାଶି ରାଶି ଶୋକଗାଥା ଓ ବିଳାପ ବାଣୀ ମୁଦ୍ରିତ ହୋଇ ପ୍ରକାଶ ପାଇଅଛି । ସେହି ସମୟରେ ଅପାମର ଜନସାଧାରଣ ସମସ୍ତେ ହିଁ ଅନୁଭବ କରିଥିଲେ, ଯେପରି ସେମାନେ କିଛି ଏକ



Digitized by srujanika@gmail.com

ଅମୂଲ୍ୟ ରତ୍ନ ହରାଇଛନ୍ତି । ସାର୍ ବାସୁଦେବ ସୁଡ଼ଳଦେବଙ୍କ ସ୍ୱର୍ଗାରୋହଣରେ ଓଡ଼ିଶା ମର୍ତ୍ତ୍ୟଧାମେ ମନୁଷ୍ୟ ବିକଳାଙ୍ଗ ହୋଇ ପଡ଼ିଥିଲେ । ଗଙ୍ଗବଂଶୀୟ କ୍ଷତ୍ରିୟ ରାଜକୂଳର କୌଳିକ ଓ ଲୌକିକ ରୀତି ଅନୁସାରେ ପ୍ରଧାନପାଟର ନିକଟବର୍ତ୍ତୀ ସ୍ୱର୍ଗଦ୍ୱାର ନାମକ ଶ୍ମଶାନ-ସମାଧିରେ ରାଜଦେହ ସମ୍ମାନରେ , ଲାଜ(ଖଇ)ସହ ବହୁ ଅର୍ଥ ବିତରଣ କରି କରି ନିଆଯାଏ । ବୈଦିକ ପ୍ରଥାନୁସାରେ ରାଜଦେହ ଅଗ୍ନିଙ୍କୁ ଅର୍ପିତ ହୁଏ । ରାଜାସ୍ଥି ବ୍ରାହ୍ମଣୀ ନଦୀରେ ଓ ପରେ ଭାଗିରଥୀ ବକ୍ଷରେ ଅର୍ପିତ ହୋଇଥିଲା । ମୃତ୍ୟୁର ଦ୍ୱିତୀୟ ଦିବସରୁ ଦ୍ୱାଦଶ ଦିବସ ବ୍ରାହ୍ମଣଗଣଙ୍କୁ ଓ ଦୀନ ଦୁଃଖୀ ଜନଗଣଙ୍କୁ ଭୋଜ୍ୟ ଦିଆଯାଇଥିଲା । ସପ୍ତମ ଦିବସରୁ ଲୋକ ସଂଖ୍ୟା ବୃଦ୍ଧି ପାଏ । ଶେଷ କେତେ ଦିନ ଚାରି ପାଞ୍ଚ ସହସ୍ର ଲୋକଙ୍କୁ ଆହାର ଦିଆଯାଇଥିଲା । ପୁରୀରୁ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ଛଅଜଣ ପଣ୍ଡିତ ବାମଣ୍ଡା ରାଜଙ୍କ ପୁରୋହିତଙ୍କ ସହିତ ଶ୍ରାଦ୍ଧ କ୍ରିୟାରେ ସହାୟତା କରିଥିଲେ । କାଶୀ, ମିଥିଳା, ବଙ୍ଗ, ଉତ୍କଳ ପ୍ରଭୃତି ଦେଶ ବିଦେଶର ଅସଂଖ୍ୟ ଆଚାର୍ଯ୍ୟ, ଅଧ୍ୟାପକ ଓ ବ୍ରାହ୍ମଣ ପଣ୍ଡିତଙ୍କୁ ପାଥେୟ ସହ ଉପଯୁକ୍ତ ବିଦାୟଦାନରେ ଆପ୍ୟାୟିତ କରାଯାଇଥିଲା । ପାର୍ଶ୍ୱବର୍ତ୍ତୀ ନାନା ରାଜ୍ୟର ପ୍ରତିନିଧିବର୍ଗ ଓ ଅସଂଖ୍ୟ ଶିକ୍ଷିତ ପଦସ୍ଥ ବନ୍ଧୁବାନ୍ଧବ ମଧ୍ୟ ନିମନ୍ତ୍ରିତ ହୋଇ ରାଜକୀୟ ଶ୍ରାଦ୍ଧବାସରେ ସଭାର ଶୋଭା ବର୍ଦ୍ଧନ କରିଥିଲେ । ରାଶି ରାଶି ଅର୍ଥ ବ୍ୟୟରେ ଦାନ ସାଗରର ଅନୁଷ୍ଠାନ ସଂପନ୍ନ ହୋଇଥିଲା । କୌଣସି ତ୍ରୁଟି ପରିଲକ୍ଷିତ ହୋଇନଥିଲା ।

ସମସ୍ତେ ସେହି ଶୋକକାତର ଅବସ୍ଥାରେ ସ୍ୱର୍ଗୀୟ ରାଜାଙ୍କ ସଯତ୍ନେ ଲାଳିତ ପାଳିତ ଓ ବର୍ଦ୍ଧିତ ଜ୍ୟେଷ୍ଠ ରାଜକୁମାର ଯୁବରାଜ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଆଶ୍ରୟ ଲାଭ କରି କିଞ୍ଚିତ୍ ଶକ୍ତି ଓ ସାନ୍ତ୍ୱନା ଲାଭ କରିଥିଲେ । ବିଧାତା ତାହା ମଧ୍ୟ ଦୀର୍ଘକାଳ ବ୍ୟାପୀ ହେବାକୁ ଦେଲା ନାହିଁ । ସାର୍ ବାସୁଦେବ ସୁଡ଼ଳଦେବଙ୍କ ସର୍ବାବୟବ ସମ୍ପନ୍ନ ସୁନ୍ଦର ଜୀବନ ଚରିତ ରଚନା ପାଇଁ ତଦୀୟ ପୁତ୍ରଙ୍କ ହୃଦୟରେ ଯେଉଁ ଆଗ୍ରହ ଓ ଅନୁରାଗ ଦେଖିଅଛି । ସଙ୍ଗେ ସଙ୍ଗେ ସେହି ରାଜ ହୃଦୟରେ ଯେଉଁ ପିତୃପୂଜା ଓ ପିତୃଭକ୍ତିର ଭାବ ଦେଖିଅଛି, ତାହାର ତୁଳନା ମଧ୍ୟ ସର୍ବଦା ସର୍ବତ୍ର ମିଳେ ନାହିଁ । ନିଦାରୁଣ ମନସ୍ତାପ-ଅସହ୍ୟ ଗ୍ଲାନି ସମୟେ ସମୟେ ମୋତେ ଏଥିପାଇଁ ବ୍ୟଥିତ କରେ ଯେ, ସେ ସର୍ବାବୟବରେ ଗ୍ରନ୍ଥଟିକୁ ଶେଷ ହେବା ଦେଖି ଯାଇପାରିଲେ ନାହିଁ । ସେ କେବଳ ତେର ବର୍ଷ ମାତ୍ର ବାମଣ୍ଡାରେ ରାଜସିଂହାସନ ଅଳଙ୍କୃତ କରି ରାଜଜୀବନର ଯେଉଁ ଅତ୍ୟୁତ୍କୃଷ୍ଟ ଛବି ରଖି ଯାଇଅଛନ୍ତି, ତାହାର ପ୍ରାସଙ୍ଗିକ ଆଲୋଚନା ପୁସ୍ତକ ମଧ୍ୟରେ ନାନା ସ୍ଥାନରେ ବିକ୍ଷିପ୍ତ ଭାବରେ ରହିଥିଲେ ମଧ୍ୟ ତାଙ୍କ ସମ୍ବନ୍ଧରେ ଆପାତତଃ ସ୍ୱତଃ ଭାବରେ ପରବର୍ତ୍ତୀ ଅଧ୍ୟାୟରେ ସଂକ୍ଷିପ୍ତ ବିବରଣୀ ଲିପିବଦ୍ଧ ହେଉଅଛି ।





Digitized by srujanika@gmail.com

## ଉପସଂହାର

# ପଟ୍ଟ ପରିବର୍ତ୍ତନ

ବିଧାତାଙ୍କ ବ୍ୟବସ୍ଥାରେ ସବୁକିଛି ହିଁ ସମ୍ଭବ । ସାହାରା ସଦୃଶ ମରୁଭୂମି ସୁମିଷ୍ଟ ସଲିଳପୂର୍ଣ୍ଣ ଜଳାଶୟରେ ପରିଣତ ହେବା କୁହନ୍ତୁ, ଆଉ ସୁମିଷ୍ଟ ସଲିଳପୂର୍ଣ୍ଣ ଜାହ୍ନବୀସ୍ରୋତ ବାଲୁକାପୂର୍ଣ୍ଣ ପ୍ରାନ୍ତରରେ ପରିଣତ ହେବା କୁହନ୍ତୁ, ସବୁକିଛି ଇଚ୍ଛାମୟଙ୍କ ଇଚ୍ଛାରେ ହୋଇପାରେ । ପୁଣି ସେହିପରି ବିଚିତ୍ର ପରିବର୍ତ୍ତନ ସାଧନ ସମୟ ସାପେକ୍ଷ ମଧ୍ୟ ନୁହେଁ, କାହାରି ଉପରୋଧ, ଅନୁନୟ, ବିନୟ, କାହାରି ପ୍ରାର୍ଥନା ବା ଅଳିକୁ ଅପେକ୍ଷା ରଖେ ନାହିଁ । ସେହି ଅଘଟଣ ଘଟିୟସୀ ମହାଶକ୍ତିଙ୍କ ଇଚ୍ଛାମାତ୍ରେ, ତାଙ୍କର ଇଙ୍ଗିତରେ ସେହି କାର୍ଯ୍ୟ ସେତେବେଳେ ସୁସିଦ୍ଧ ହୋଇଥାଏ । ତେଣୁ ୧୮୯୭ ଖ୍ରୀଷ୍ଟାବ୍ଦ ଜ୍ୟେଷ୍ଠ ମାସ ଭୂମିକମ୍ପରେ ଆସାମର ବ୍ରହ୍ମପୁତ୍ର ନଦୀବହୁ ସ୍ଥାନରେ ପ୍ରାନ୍ତରରେ ପରିଣତ ହୋଇଯାଇଅଛି, ପୁଣି ଶୁଷ୍କ ଉଚ୍ଚଭୂମି ଭାଙ୍ଗି ନଦରେ ପରିଣତ ହୋଇଅଛି । ଖାସିୟା ଓ ଜୟନ୍ତିୟା ପର୍ବତର କେତେ ସ୍ଥାନ ଉତ୍କ୍ଷିପ୍ତ ହୋଇ ପ୍ରାନ୍ତରରେ ପରିଣତ ହୋଇଅଛି । ସଂଗେ ସଂଗେ ଅସଂଖ୍ୟ ନରନାରୀ ଜୀବନ ଲୀଳା ସମ୍ବରଣ କରଅଛନ୍ତି । ଅଧିକ ବା ଆଉ କଣ, କେବଳ ମାତ୍ର ଏଗାର ସେକେଣ୍ଡ ସମୟ ଭୂମିକମ୍ପ ଫଳରେ ଏକଦା ପର୍ତ୍ତୁଗାଲ୍ ରାଜଧାନୀ ଲିସ୍‌ବନ୍ ନଗର ଅସଂଖ୍ୟ ନରନାରୀ ସହ ଧୂଳିରାଶିରେ ପରିଣତ ହୋଇଥିଲା । ସୁତରାଂ ସେହି ଲୀଳାମୟୀଙ୍କ ଲୀଳାରେ ସବୁ କିଛି ସମ୍ଭବ, ଏହା ହିଁ ଆମ୍ଭମାନଙ୍କ ସାନ୍ତ୍ୱନା, ତେଣୁ ଆମ୍ଭେ କ୍ରମେ କ୍ରମେ କେତେ ଅମୂଲ୍ୟ ରତ୍ନଙ୍କୁ ବିଦାୟଦେଇ ସେହି ମରୁପ୍ରାୟ ସଂସାରରେ ଜୀବନ ଧାରଣ କରୁଅଛୁଁ ।

ଏହି ଦୀନହୀନ କାଙ୍ଗାଳ ସଂସାରରେ ଏହି ପରି ଆମ୍ଭେ କେତେ ଶତ ଅମୂଲ୍ୟ ରତ୍ନ ହରାଇ ହାହାକାର କରିଅଛୁ ଏବଂ କରୁଅଛୁ, ତାହାର ସଂଖ୍ୟା ନାହିଁ । ପୂର୍ବତନ କାଳର ପୁଣ୍ୟସ୍ମୃତି ଆଲୋଚନା ତ୍ୟାଗକଲେ ମଧ୍ୟ, ଏହି ସେଦିନ ବର୍ତ୍ତମାନର ଯୁଗପ୍ରବର୍ତ୍ତକ ରାମମୋହନ ରାୟଙ୍କୁ ବିଦାୟ ଦେଇ ଅକ୍ଷୟକୁମାର ଦତ୍ତ ପ୍ରମୁଖ ବଙ୍ଗ ସନ୍ତାନ ଗଣ ଅଶ୍ରୁପାତ କରିଅଛନ୍ତି । ଆଜି ମଧ୍ୟ ଆମ୍ଭେମାନେ ସେହି ଅଭାବରେ ଅବସାଦରେ ମ୍ରିୟମାଣ । ଏଇତ ସେଦିନ ବିଦ୍ୟାସାଗର ତାଙ୍କ ଦୟାର ଅନନ୍ତ ପ୍ରବାହକୁ ଆମ୍ଭେମାନେ ଜାହ୍ନବୀ ପ୍ରବାହରେ



Digitized by srujanika@gmail.com

ମିଶାଇ ଦେଇ ଅଶ୍ରୁସିକ୍ତ ହୋଇଅଛୁ, ଆଜି ସୁଦ୍ଧା ସେହି ନୟନର ଅଶ୍ରୁସୁଖି ଯାଇନାହିଁ । ଏଇତ ସେଦିନ ଓଡ଼ିଶା ଏହିପରି ବିବିଧ ଗୁଣସଂପନ୍ନ ବାମଣ୍ଡାରାଜା ସାର୍ ବାସୁଦେବ ସୁଢ଼ଳଦେବଙ୍କୁ ହରାଇ ବକ୍ଷରେ କରାଘାତ କରି ରୋଦନ କରିଅଛି । ସେମାନଙ୍କ ସେହି ଦୁଃଖର ଅବସାନ ହେଉ ନ ହେଉଣୁ ତଦୀୟ ଗୁଣବାନ ପୁତ୍ର ପ୍ରଜାବତ୍ସଳ ଓ ମାନବ ସୁହୃଦ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବ ରାଜ ସିଂହାସନ ଶୂନ୍ୟ କରିଦେଇ, ରାଜରାଣୀ, ପୁତ୍ରକନ୍ୟା ଓ ଆତ୍ମୀୟସ୍ୱଜନଙ୍କୁ ଶୋକ ସାଗରରେ ନିମଗ୍ନ କରାଇ କେତେଶତ ଦୀନ ଦରିଦ୍ରଙ୍କୁ ଅଶ୍ରୁ ପ୍ରବାହିତ କରାଇ ଲୋକାନ୍ତର ଗମନ କରିଅଛନ୍ତି ।

ମହାରାଜ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଏକମାତ୍ର ରାଜକୁମାରୀ ଶ୍ରୀମତୀ ସୁରତରଙ୍ଗିଣୀ ହେମାମଣିଙ୍କ କଳାହାଣ୍ଡି ରାଜା ବାହାଦୁରଙ୍କ ସହିତ ରାଜୋଚିତ ସମାରୋହ ସହକାରେ ବିବାହ କାର୍ଯ୍ୟ ସଂପନ୍ନ କରିବା ପାଇଁ ଅର୍ଥବ୍ୟୟ ଓ ସାମର୍ଥ୍ୟ ନିୟୋଗରେ ବିନ୍ଦୁମାତ୍ର ତ୍ରୁଟି କରିନାହାନ୍ତି । ବିଗତ ଫେବୃୟାରୀ ୬ ତାରିଖ ଦିନ ଏହି ଶୁଭ ଅନୁଷ୍ଠାନ ବହୁ ସମାରୋହରେ ଓ ବହୁ ଶ୍ରମସ୍ୱୀକାର ପୂର୍ବକ ସୁସଂପନ୍ନ କରାଇ ସନ୍ନ୍ୟାସ ରୋଗରେ ଆକ୍ରାନ୍ତ ହୁଅନ୍ତି । ଚିକିତ୍ସା ସୁବ୍ୟବସ୍ଥା କଳ୍ପେ ତ୍ୱରିତ କଲିକତା ବାଲିଗଞ୍ଜ ରାଜଭବନରେ ଉପସ୍ଥିତ ହେଲେ । ଚିକିତ୍ସକମାନେ ସମସ୍ତେ ଏକବାକ୍ୟରେ ତାହାଙ୍କୁ ବିଶ୍ରାମ କରିବା ପାଇଁ ଉପଦେଶ ଦିଅନ୍ତି । ଆମ୍ଭେମାନେ ଦେଖିଅଛୁଁ ରାଜବାଟୀ ଚାରିପାଖରେ ବିଶ୍ରାମର ପବନ ବହିଥିଲା । ସାଧାରଣ ଜନତା ଓ ବନ୍ଧୁ ସମାଗମ ଅଳ୍ପ କିଛି ଦିନ ପାଇଁ ସୁଶାସିତ ବୋଲି ମନେଭୂତ ହୋଇଥିଲା ।

କିନ୍ତୁ ଦୁଃଖର ବିଷୟ ସ୍ୱଭାବ ଉପରେ କୌଣସି ଶାସନ ଚଳେ ନାହିଁ । ଏହି ଲୋକପ୍ରିୟ ସଦାଳପ ଓ ଶିଷ୍ଟ ବ୍ୟବହାରପରାୟଣ ରାଜା ଆଦୌ ଆପଣାକୁ ଶାସନରେ ରଖିପାରିଲେ ନାହିଁ । ଯିଏ ଯେତେବେଳେ ଆସନ୍ତି, ତାଙ୍କ ନିକଟରେ ସେତେବେଳେ ହିଁ ସୁଲଭଦର୍ଶନ । ଫଳ ମଧ୍ୟ ବିଷମୟ ଫଳିଲା । ମାର୍ଚ୍ଚମାସ ୯ ତାରିଖ ଦିନ ସନ୍ଧ୍ୟାପରେ ସହସା ଅଚେତନ ହୋଇ ପଡ଼ିଲେ । କଲିକତାର ଅଧିକାଂଶ ଇଂରେଜ ଓ ବଡ଼ ବଡ଼ ବଙ୍ଗାଳୀ ଡାକ୍ତର ମିଳିତ ହୋଇ ପରାମର୍ଶ କରି ଚିକିତ୍ସା କଲେ, କିନ୍ତୁ ଆଉ ଚେତନା ଫେରିଲା ନାହିଁ । ମାର୍ଚ୍ଚ ୧୧ ତାରିଖ ଶନିବାର ପ୍ରାତଃକାଳ ସୂର୍ଯ୍ୟୋଦୟର ବହୁପୂର୍ବେ ଏହି ରୋଗରେ ତାଙ୍କର ଶାନ୍ତି ସମାହିତ ଆତ୍ମା ମରଣଶୀଳ ସଂସାରର ସୀମା ଅତିକ୍ରମ କରି ଅମରଧାମ ପଥରେ ଅଗ୍ରସର ହେଲା ।

ଗଙ୍ଗବଂଶର ଗୌରବ ରବି ବାସୁଦେବଙ୍କ ଜ୍ୟେଷ୍ଠପୁତ୍ର ଦ୍ୱିତୀୟ ଗୌରବ ରବି ଓଡ଼ିଶା ମହାକାଶରେ ଅଗ୍ରସର ହେଉ ହେଉ ଖସିପଡ଼ିଲେ । ଓଡ଼ିଶା ପୁଣି ଅନ୍ଧକାରରେ ଆବୃତ ହେଲା, ପୁଣି ହାହାକାରରେ ବୁଡ଼ିଗଲା ।



Digitized by srujanika@gmail.com

ପୂର୍ବରୁ ରାଜକୁମାରଗଣଙ୍କ ଶିକ୍ଷାର ପ୍ରସାର କ୍ଷେତ୍ରରେ ରାଜା ସାର୍ ବାସୁଦେବ ସୁବନ୍ଦୋବସ୍ତ ସଂପର୍କରେ ବିସ୍ତୃତ ଆଲୋଚନା କରାଯାଇଛି । ରାଜା ସ୍ୱୟଂ ରାଜ ସମ୍ମାନ ଅପେକ୍ଷା ପଣ୍ଡିତ ସମ୍ମାନ ଅଧିକତର ଗୌରବ ମନେ କରୁଥିଲେ । ଦେଶ ବିଦେଶର ମିଳିତ ପଣ୍ଡିତମଣ୍ଡଳୀଙ୍କ ସଭାରେ ରାଜା ବାସୁଦେବଙ୍କୁ ଶାସ୍ତ୍ର ବିଚାରରେ, ସଂସ୍କୃତ ସାହିତ୍ୟ ଏବଂ କାବ୍ୟରେ, ଅଳଙ୍କାର ଓ ଦର୍ଶନରେ କେହି କସ୍ମିନକାଳେ ପରାସ୍ତ କରିପାରି ନାହାନ୍ତି, ସେ ଏଭଳି ଜଣେ ଉଚ୍ଚକୋଟୀର ବିଦ୍ୱାନ ଥିଲେ । ତାଙ୍କର ସର୍ବଶ୍ରେଷ୍ଠ ଅକାଙ୍କ୍ଷା ଥିଲା କୁମାରଗଣଙ୍କ ସୁଶିକ୍ଷା ବିଧାନ । ତାଙ୍କର ସେହି ସମସ୍ତ ଯତ୍ନର ଅଗ୍ରଭାଗରେ ଯୁବରାଜ ସଚ୍ଚିଦାନନ୍ଦ ଏବଂ ବଡ଼କୁମାର ବଳଭଦ୍ର ଦେବଙ୍କ ଉପରେ ନିପତିତ ହୋଇଥିଲା । କୁମାରଗଣଙ୍କ ମଧ୍ୟରେ ଯୁବରାଜ କି ଇଂରାଜୀ, କି ସଂସ୍କୃତ, କି ଓଡ଼ିଆ, କି ବଙ୍ଗଳା ପ୍ରଭୃତି ଭାଷାରେ ପ୍ରଚୁର ବ୍ୟୁତ୍ପତ୍ତି ଲାଭ କରିଥିଲେ । ସାହିତ୍ୟସେବା ଓ କାବ୍ୟରଚନା, ଦର୍ଶନରେ ଦୃଷ୍ଟି ଓ ବିଜ୍ଞାନରେ ଅନୁରାଗ ସଙ୍ଗେ ସଙ୍ଗେ କଳା ଏବଂ ଚିତ୍ର ବିଦ୍ୟାରେ ନିତ୍ୟ ଅନୁରାଗୀ ଏଭଳି ରାଜକୁମାର ବା ରାଜା ସଚରାଚର ନୟନଗୋଚର ହୁଏନାହିଁ । ଏହି ସମସ୍ତରେ ଆସକ୍ତ ଥିଲେ ବୋଲି ଯେ, ରାଜୋଚିତ କର୍ତ୍ତବ୍ୟ ପାଳନରେ, କିମ୍ବା ଅସ୍ତ୍ର ଧାରଣରେ ଏବଂ ପ୍ରୟୋଜନ ଅନୁରୂପ ସାହସ ଓ ବୀର୍ଯ୍ୟବତ୍ତାର ପ୍ରଦର୍ଶନରେ କୌଣସି ଦିନ ମୁହୂର୍ତ୍ତକ ପାଇଁ ମଧ୍ୟ ପଶ୍ଚାଦପଦ ଥିଲେ, ତାହା ନୁହେଁ, ସକଳ ବିଷୟରେ ସମପରିମାଣରେ ଆଗଭର ଥିଲେ । ବାମଣ୍ଡା, ଓଡ଼ିଶା ଏବଂ ସଙ୍ଗେ ସଙ୍ଗେ ଆମ ଦେଶରେ ଏପରି ଜଣେ ମନୁଷ୍ୟଙ୍କୁ ହରାଇଥିଲା । ସେହିପରି ଆଉ ଜଣେ ମନୁଷ୍ୟ ଗଢ଼ି ଉଠିବାପାଇଁ ବହୁ ସମୟ ଓ ସାଧନାର ପ୍ରୟୋଜନ । ଅବଶ୍ୟ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବ ଯେ ଗୁଣବାନ ଜ୍ୟେଷ୍ଠପୁତ୍ର ପାଇଁ ସିଂହାସନ ଶୂନ୍ୟ କରି ଲୋକାନ୍ତର ପଥରେ ଅଗ୍ରସର ହୋଇଥିଲେ । ସେ ମଧ୍ୟ ଯତ୍ନ କଲେ, ସାଧନା କଲେ, ପିତୃପିତାମହଙ୍କର ପଦାଙ୍କ ଅନୁସରଣ ପୂର୍ବକ ଅକ୍ଷୟ ଯଶ ମାଳା ପରିଧାନ କରିପାରିବେ । ବିଧାତା କୃପାକରି ତାଙ୍କୁ ଏପରି ବହୁମୂଲ୍ୟ ଉପକରଣର ସମାବେଶ କରି ରଖିଅଛନ୍ତି ।

ରାଜା ସଚ୍ଚିଦାନନ୍ଦ କିପରି ଭାବରେ ବିଗତ ତେରବର୍ଷ ଜୀବନଯାପନ ଓ ଲୋକପାଳନ କରିଯାଇଅଛନ୍ତି, ତଦୀୟ ପିତୃଦେବ ସାର୍ ବାସୁଦେବଙ୍କ ଜୀବନ ଚରିତର ବିସ୍ତୃତ ଆଲୋଚନା କ୍ଷେତ୍ରରେ ସର୍ବତ୍ର ଏହି ବିଗତ ତେରବର୍ଷର ବିବରଣୀ ପ୍ରଦତ୍ତ ହୋଇଅଛି । ସୁତରାଂ ସ୍ୱତନ୍ତ୍ର ଭାବରେ ତାଙ୍କ ବିଷୟରେ ଏଠାରେ ତନ୍ନ ତନ୍ନ କରି ଆଲୋଚନା କରିବା ଆବଶ୍ୟକ ନାହିଁ । ପ୍ରୟୋଜନ ହେଲେ, ସେହି କାର୍ଯ୍ୟ ପରେ କରାଯାଇପାରେ । କିନ୍ତୁ ତଥାପି ପ୍ରଧାନ ପ୍ରଧାନ କେତୋଟି ବିଷୟର ଇଙ୍ଗିତ ଆବଶ୍ୟକ:-

୧ମ । ସାର ବାସୁଦେବ କ୍ଷଣଜନ୍ମା ପୁରୁଷ ଥିଲେ । ସେ ବହୁ ବହୁ ସଂଭ୍ରାନ୍ତ ଶିକ୍ଷିତ ବ୍ୟକ୍ତି କର୍ତ୍ତୃକ, ତାହାଙ୍କ ଆଚାର ବ୍ୟବହାର ଏବଂ କାର୍ଯ୍ୟକଳାପ ସୂତ୍ରେ ପ୍ରତିଭାବାନ



Digitized by srujanika@gmail.com

ପୁରୁଷ ବୋଲି ଅଭିହିତ । ଏହିପରି ବ୍ୟକ୍ତି ସଚରାଚର ଦୁର୍ଲଭ ଏବଂ ଏଭଳି ବ୍ୟକ୍ତିଙ୍କର କାର୍ଯ୍ୟକଳାପର ଦୀର୍ଘସ୍ଥାୟୀ ସୁଫଳ ସବୁ ସମୟରେ ସ୍ଥାୟୀ ଭାବରେ ଜନସମାଜ ଭୋଗ କରିବାକୁ ପାଆନ୍ତି ନାହିଁ । ଜନସମାଜର ଦୁଃଭାର୍ଗ୍ୟବଶତଃ ସେଭଳି ଅସାଧାରଣ ପୁରୁଷଙ୍କ ଯଦି ଉପଯୁକ୍ତ ଓ ଉତ୍ତମ ଉତ୍ତରସାଧକ ନ ରହନ୍ତି, ତାହାହେଲେ, ସେହି ମହାପୁରୁଷଙ୍କ ପୁରୁଷକାରର ପୁରସ୍କାର ତ୍ୱରିତ ଜନସମାଜର ଆବର୍ଜ୍ଜନାରେ ପରିଣତ ହୁଏ । ଏଠାରେ ଛତିଶଗଡ଼, ଓଡ଼ିଶା ରାଜନ୍ୟ-ମଣ୍ଡଳ ଓ ଶିକ୍ଷିତ ଅଶିକ୍ଷିତ ଜନସାଧାରଣଙ୍କ ସୌଭାଗ୍ୟ ଫଳରେ ଉତ୍ତମ ପୁତ୍ରଲାଭ ହୋଇଥିଲା । ତେଣୁ ସାର୍ ବାସୁଦେବ ସୁଢ଼ଳଦେବଙ୍କ କର୍ମସ୍ରୋତ ଅପ୍ରତିହତ ଭାବରେ ପ୍ରବାହିତ ହୋଇଅଛି । ଏଥିପାଇଁ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ସର୍ବଜନ ସମକ୍ଷରେ ଶ୍ରଦ୍ଧାଭକ୍ତି ଓ ପ୍ରୀତିପୂର୍ଣ୍ଣ ସମାଦରର ପାତ୍ର ।

**୨ୟ** । ସେ ଯେ କେବଳ ପିତୃକୀର୍ତ୍ତି ଅକ୍ଷୁଣ୍ଣ ରଖିଥିଲେ ତାହା ନୁହେଁ, ଅନେକ ଅନେକ ବିଷୟରେ ରାଜ୍ୟର ଉନ୍ନତି ଅଧିକତର ପରିସ୍ଫୁଟ କରାଇ ତୋଳିଥିଲେ । ବାମଣ୍ଡା ଯାତ୍ରୀଙ୍କ ସାମାନ୍ୟ ସୂକ୍ଷ୍ମ ଦୃଷ୍ଟି ମଧ୍ୟ ତାହା ଧରିପାରିବ ।

**୩ୟ** । ସାର୍ ବାସୁଦେବ ଚିରଜୀବନ ମାଦକ ସେବନ ବିରୋଧୀ ଥିଲେ । ତଦୀୟ ପୁତ୍ର ରାଜା ସଚ୍ଚିଦାନନ୍ଦ ପିତୃଗୁଣ ଭାଗ ଆତ୍ମସ୍ଥ କରି ଏହି ମାଦକ ସେବନ ଚେଷ୍ଟା ବିରୁଦ୍ଧରେ ନିତ୍ୟ ସମର-ଘୋଷଣା ରକ୍ଷା କରିଥିଲେ ।

**୪ର୍ଥ** । ସାର୍ ବାସୁଦେବଙ୍କ ରାଜ ଦରବାରରେ ଓ ସାମାଜିକ ଜୀବନରେ ନାରୀର ମର୍ଯ୍ୟାଦା ସର୍ବତ୍ର ସମାନ ଭାବରେ ସୁରକ୍ଷିତ ଥିଲା । ତଦୀୟ ପୁତ୍ର ଯୁବରାଜ ସଚ୍ଚିଦାନନ୍ଦ ପିତାକର୍ତ୍ତୃକ ପୁନଃ ପୁନଃ ଇଙ୍ଗିତରେ ଅନୁରୁଦ୍ଧ ହୋଇ ମଧ୍ୟ ଏକାଧିକ ଦାର ଗ୍ରହଣ କରି ନାହାନ୍ତି । ଅଧୁନା ଭାରତ ବର୍ଷର ସାମନ୍ତ ରାଜମଣ୍ଡଳରେ ଐଶ୍ୱର୍ଯ୍ୟ ସମ୍ପଦ କ୍ରୋଡ଼ରେ ଜୀବନଯାତ୍ରା ନିର୍ବାହ କରୁଅଛନ୍ତି, ଏଭଳି ଶକ୍ତିଶାଳୀ ରାଜପୁରୁଷଙ୍କ ମଧ୍ୟରେ ଏକପତ୍ନୀ ନରେଶ୍ୱରଙ୍କ ସଂଖ୍ୟା ଗଣନା କଲେ, ଅବଶ୍ୟ ହିଁ ଲଜ୍ଜାରେ ମସ୍ତକ ଅବନତ କରିବାକୁ ହେବ । ଏହି ରାଜା ସଚ୍ଚିଦାନନ୍ଦଙ୍କ ରାଜ ଦରବାର ଓ ସମାଜ ଜୀବନର ସର୍ବଦା ସର୍ବତ୍ର ନାରୀର ମର୍ଯ୍ୟାଦା ରକ୍ଷାରେ କୃତସଂକଳ୍ପ । ତେଣୁ ସେ ତଦୀୟ ପିତୃଦେବ ରାଜା ସାର୍ ବାସୁଦେବଙ୍କ ମୁଖୋଜ୍ଜ୍ୱଳକାରୀ ଜ୍ୟେଷ୍ଠପୁତ୍ର, ସେ ଛତିଶଗଡ଼ ଓ ଓଡ଼ିଶାର ରତ୍ନସମ ପୁତ୍ରଧନ । ତାହା କ'ଣ ସତ୍ୟ ? ହଁ ତାହା ହିଁ ସତ୍ୟ । ଦେଶୀୟ ରାଜ୍ୟ ସମୂହର ସର୍ବତ୍ର ନ ହେଉ, ଅନେକ ସ୍ଥଳରେ ହିଁ ସୁରା ଓ ସୁନ୍ଦରୀ ବିଚରଣ ସହଜ । କିନ୍ତୁ ସାର୍ ବାସୁଦେବଙ୍କ ସେବିତ ବାମଣ୍ଡାରେ, ତତ୍ପରେ ତଦୀୟ ପୁତ୍ର ରାଜା ସଚ୍ଚିଦାନନ୍ଦଙ୍କ ପରିଚର୍ଯ୍ୟା କାଳରେ ବାମଣ୍ଡା ରାଜ୍ୟରେ "ଯତ୍ର ନର୍ଯ୍ୟାସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତା" ଏବଂ "ମଦ୍ୟମଦେୟମପେୟମ୍ ଗ୍ରାହ୍ୟମ୍" ଏହି ଦୁଇ ଉଚ୍ଚ ହିନ୍ଦୁନୀତିର ଗୌରବ ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ସର୍ବଜନଙ୍କ ପୂଜାର ପାତ୍ର ହୋଇ ପିତାପୁତ୍ର ସ୍ୱର୍ଗାରୋହଣ କରିଅଛନ୍ତି ।



Digitized by srujanika@gmail.com

ବାମଣ୍ଡା ରାଜଧାନୀ ଦେବଗଡ଼ ପିତାପୁତ୍ରଙ୍କ ସାଧନା ଫଳରେ, ଦେବରାଜ ଇନ୍ଦ୍ରଙ୍କ ଅମରାବତୀରେ ପରିଣତ ହୋଇଥିଲା । କ'ଣ କେବଳ ସେତିକି ? ନା, ନା, ଦେବଗଡ଼ ଅମରାବତୀ ଅପେକ୍ଷା ମଧ୍ୟ ଉଚ୍ଚତର ଆଦର୍ଶ ଲୀଳା ନିକେତନରେ ପରିଣତ ହୋଇଥିଲା । କାରଣ ଏଠାରେ ସୁରା ଓ ସୁନ୍ଦରୀଙ୍କ ବିଚରଣ ନାହିଁ । ଏହି ଦେବଦୁର୍ଗ ଦେବଗଡ଼ରେ ଅସାଧାରଣ ଶକ୍ତିଶାଳୀ ରାଜାଙ୍କ ଲୋକାନ୍ତର ଗମନ ଫଳରେ ଯେଉଁ ସିଂହାସନ ପୁନରାୟ ଶୂନ୍ୟ ହେଲା, ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ସ୍ୱର୍ଗାରୋହଣ କାଳରେ ସେହି ଶୂନ୍ୟ ସିଂହାସନ ପାଇଁ ସୁଶିକ୍ଷିତ, ସତ୍-ଚରିତ୍ର, ଗୁଣବାନ ପୁତ୍ର ରଖିଯାଇଅଛନ୍ତି । ପରେ ପରେ ଦୁଇ ପୁରୁଷ ଯେଉଁ ରାଜ୍ୟ ଉତ୍ତମ ଆଶ୍ରୟ ଲାଭ କରି ଗୌରବ ଗର୍ବେ ସ୍ଥିତ ଓ ସମ୍ମାନିତ, ସେହି ରାଜ୍ୟର ଗୌରବମଣ୍ଡିତ ସିଂହାସନରେ ଆସନ ଗ୍ରହଣ କରି ତଦୀୟ ଉତ୍ତମ ପ୍ରତିନିଧି ଯେ ସର୍ବଦା ଉଚ୍ଚ ଓ ଉତ୍ତମ ଆଦର୍ଶ ପରିସ୍ଫୁଟନରେ ବ୍ୟସ୍ତ ରହିବେ, ଯଦ୍ୱାରା ନିଜେ ଧନ୍ୟ ହେବ । ଏହା ହିଁ ସ୍ୱାଭାବିକ ଓଡ଼ିଶା ମଣ୍ଡଳ ଓ ତାହାର ଚାରିପାଖରେ ଅନ୍ୟାନ୍ୟ ସବୁ ଦେଶ ବର୍ତ୍ତମାନ ରାଜାଙ୍କ ପିତୃପିତାମହଙ୍କ ଅଶେଷ ବିଧଗୁଣର ଅଭିନୟ ଦର୍ଶନରେ ମୁଗ୍ଧ । ତାହାଙ୍କ ଶତବିଧ ରାଜାଦେଶ ଓ ରାଜଅନୁଷ୍ଠାନ ପ୍ରତି, ଉନ୍ନତତର ଆକାଙ୍‌କ୍ଷାର ପରିପୂରଣ ପାଇଁ ଲାଳାୟିତ ଦୃଷ୍ଟିପାତ କରିବେ । ଏହା ଆଦୌ ବିଚିତ୍ର ନୁହେଁ । ତେଣୁ ଆମ୍ଭମାନଙ୍କ ସମସ୍ତଙ୍କ ଆଶା, ଅକାଙ୍‌କ୍ଷା ଓ ଆଶୀର୍ବାଦ ଏହି ଯେ ରାଜା ବାହାଦୁର ଦିବ୍ୟଶଙ୍କର ସୁଢ଼ଳଦେବ ଦୀର୍ଘଜୀବୀ ହୋଇ ଅସଂଖ୍ୟ ଜନଗଣଙ୍କର ଆଶା ପୂର୍ଣ୍ଣ କରିବେ, ସଙ୍ଗେ ସଙ୍ଗେ ବାମଣ୍ଡାର ସୁପ୍ରତିଷ୍ଠିତ ଗୌରବ ସୁରକ୍ଷିତ ଓ ବର୍ଦ୍ଧିତ ହେବ । ଏହା ହିଁ ସଙ୍ଗତ ଏବଂ ସ୍ୱାଭାବିକ, କାରଣ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ସ୍ୱୟଂ ଯେପରି ପିତାଙ୍କ ପାଇଁ ବିଦ୍ୟାଗୌରବରେ ଅଳଙ୍କୃତ ହୋଇଥିଲେ, ସେହିପରି ବହୁ ଯତ୍ନ ସହକାରେ ନିଜ କୁମାର ଗଣଙ୍କ ଶିକ୍ଷ୍ୟାଲାଭର ସୁବ୍ୟବସ୍ଥା କରିବାରେ କୌଣସି ତ୍ରୁଟି କରିନାହାନ୍ତି । ଜ୍ୟେଷ୍ଠ ରାଜକୁମାର, ଯିଏ ରାଜା ବାହାଦୁର ଦିବ୍ୟଶଙ୍କର ସୁଢ଼ଳଦେବ ସମଗ୍ର ଗଡ଼ଜାତର ଅଗ୍ରଣୀ ତାରକାରାଜି ସଦୃଶ ରାଜା ଓ ରାଜକୁମାରଗଣଙ୍କ ମଣ୍ଡଳ ମଧ୍ୟରେ ଏକମାତ୍ର ପୂର୍ଣ୍ଣଚନ୍ଦ୍ର ସଦୃଶ ସୁଶିକ୍ଷାର ଅମଳ ଧବଳ କିରଣ ବିକୀର୍ଣ୍ଣ କରି ବିରାଜ କରୁଅଛନ୍ତି । ରାଜା ଦିବ୍ୟ ଶଙ୍କର କଲିକତା ବିଶ୍ୱବିଦ୍ୟାଳୟରେ ଶିକ୍ଷାପ୍ରାପ୍ତ ସୁବୁଦ୍ଧି ଓ ସୁରୁଚିସଂପନ୍ନ ରାଜା । ପିତୃ-ପିତାମହଙ୍କ ପୁଣ୍ୟ ଫଳରେ -ସେମାନଙ୍କ ଆଶୀର୍ବାଦରେ ବାମଣ୍ଡାର ପ୍ରତିଷ୍ଠା ଓ ପ୍ରତିପତ୍ତି ଅକ୍ଷୁଣ୍ଣ ରଖିବାରେ ପ୍ରାଣପଣେ ଯତ୍ନ କରିବେ । ବିଷ୍ଣୁଶର୍ମା ନୀତିଶାସ୍ତ୍ରରେ କହିଅଛନ୍ତି- 'ପଦ୍ମରାଗ ଖଣିରେ କାଚର ପ୍ରାଦୁର୍ଭାବ ଅସଂଭବ ।'

ତେଣୁ ଆଜି ଆମ୍ଭେ ସାର୍ ବାସୁଦେବଙ୍କର ପୌତ୍ର ଓ ରାଜା ତ୍ରିଭୁବନଦେବଙ୍କ ପୁତ୍ରଙ୍କ ଭାବି ଜୀବନାଭିନୟରେ ସେହି ପଦ୍ମରାଗ ମଣିର ନିର୍ମଳ ଓ ସୁନ୍ଦର ଔଜ୍ଜ୍ୱଲ୍ୟ ଦେଖି ଅନ୍ତରରେ ଆନନ୍ଦ ଅନୁଭବ କରିବା ସଙ୍ଗେ ସଙ୍ଗେ ଶୋକର ତୀବ୍ରଜ୍ୱାଳା କିଞ୍ଚିତ୍ ଉପଶମ ହେବ, ଏହାହିଁ ଆମ୍ଭମାନଙ୍କର ଆଶା ।



Digitized by srujanika@gmail.com

# – ଶେଷକଥା –

ଏହି ସଂସାରରେ ଜନ୍ମଗ୍ରହଣ କରି କ୍ଲେଶ ସ୍ୱୀକାର କରି ଅସଂଖ୍ୟ କୋଟି ମାନବ ସନ୍ତାନ ନିରାଶୟ ଓ ଅନଶନକ୍ଲିଷ୍ଟ, ଛିନ୍ନ ବସ୍ତ୍ର ଓ ବିଷନ୍ନ ବଦନରେ ଦିନ ଯାପନ ଜଗତର ସାଧାରଣ ନିୟତି । ଏହି ନିୟତି ସୂତ୍ରେ ଗ୍ରଥିତ ମାନବ ସମାଜରେ ଅତି ଅଳ୍ପ ସଂଖ୍ୟକ ଲୋକ ଏହି ଜନ୍ମଗ୍ରହଣର କ୍ଲେଶ ସ୍ୱୀକାର କରିବାର ପୁଣ୍ୟଫଳ ହେତୁ ରାଜସିଂହାସନ ଲାଭ କରିଥାନ୍ତି । ଗୁଣ ଥାଉ ବା ନ ଥାଉ, କେବଳ ରାଜପୁତ୍ର ବୋଲାଇ ରାଜସିଂହାସନ ପ୍ରାପ୍ତି ଏହି ସଂସାରର ସାଧାରଣ ନିୟମ । ତେଣୁ ମାନବ ସୃଷ୍ଟିର ପ୍ରାରମ୍ଭରୁ ଏପର୍ଯ୍ୟନ୍ତ ଅନେକ ସାନବଡ଼ ରାବଣ ରାଜାଙ୍କର ଆବିର୍ଭାବ, ଅନେକ ଦୁର୍ଯ୍ୟୋଧନଙ୍କର ଅଭ୍ୟୁଦୟ, ଅନେକ ଆଉରଙ୍ଗଜେବଙ୍କର ଅତ୍ୟାଚାର, ଅନେକ ନରେଶଙ୍କର ନିଷ୍ଠୁରତା ସମ୍ଭବପର ହୋଇଅଛି । ସେଥିପାଇଁ ପୃଥିବୀର ସର୍ବତ୍ର କୋଟିକୋଟି ନରନାରୀଙ୍କ ମର୍ମସ୍ପର୍ଶୀ ହାହାକାର, ଆର୍ତ୍ତନାଦ, ଅଶ୍ରୁଜଳ ଧରଣୀ ବକ୍ଷ ତପ୍ତ ଓ ସିକ୍ତ କରିଅଛି । ଏହି ନିଦାରୁଣ ବୈଷମ୍ୟର ଶରଜାଲରେ ଜନସମାଜ ଜରଜର ।

ଏହି ଜୀର୍ଣ୍ଣ ଜନସମାଜର ପ୍ରାକୃତ ଜନମଣ୍ଡଳୀର ନିତ୍ୟ ଜୀବନ ସଂଗ୍ରାମ ମଝିରେ ବିବିଧ ଅଧିଦୈବିକ ଓ ଅସଂଖ୍ୟବିଧ ଆଧିଭୌତିକ ଦୁର୍ଘଟଣା ମାନବ ମଣ୍ଡଳୀକୁ ଆହୁରି ବିବ୍ରତ କରି ରଖିଅଛି । ଏହି ବିଡମ୍ବନା ଜାଲରେ ଜଡ଼ିତ ମାନବ ସଂସାରରେ ନାନାବିଧ ରୋଗରେ ବିଚରଣ ଓ ସେଥିପାଇଁ ଲୋକକ୍ଷୟ, ଶୋକ ତାପ ଓ ମର୍ମବେଦନା ମନୁଷ୍ୟକୁ ନିତ୍ୟ ମ୍ରିୟମାଣ କରି ରଖିଅଛି । ଏହି ସବୁ ଉପରେ ପୁଣି ପ୍ରଳୟର ପୀଡ଼ନ, ବଳବାନର ବଳ ପ୍ରୟୋଗ ଓ ଭ୍ରୂକୁଟି ମନୁଷ୍ୟକୁ ମୃତକଳ୍ପ କରି ରଖିଅଛି । ଏହିପରି ଶତବିଧ କାରଣ ସମ୍ଭୂତ ହାହାକାର, ଆର୍ତ୍ତନାଦ, ଅଶ୍ରୁଜଳ ପୂର୍ଣ୍ଣ ମାନବକୁଳ ନିୟତ ଜୀବନ ସଂଗ୍ରାମରେ ବ୍ୟସ୍ତ । ମାନବ ଜଠରାନଳ ନିବାରଣରେ ଏହି ସଂଗ୍ରାମର ସୂଚନା, ଅଶେଷ ବିଧ ଐଶ୍ୱର୍ଯ୍ୟ ସମ୍ପଦ ଅର୍ଜନରେ ନାନାବିଧ ମଣିମାଣିକ୍ୟ ଓ ରତ୍ନାଭରଣରେ ଅଳଙ୍କୃତ ହେବା ବାସନା-ଲୋକଙ୍କ ଦୃଷ୍ଟିରେ ବଡ଼ହୋଇ ଛିଡ଼ା ହେବା ବାସନା ଓ ସାଧନାରେ ଏହି ସଂଗ୍ରାମ ପରିସମାପ୍ତ । ବଡ଼ର ବଡ଼ ହେବାର ବାସନା ନିୟତ ମନୁଷ୍ୟକୁ ପାଗଳ କରିରଖିଅଛି । ତେଣୁ ଜାତି ପରେ ନୂତନ ଜାତିର ଅଭ୍ୟୁଦୟ । ରାଜ୍ୟ ପରେ ନୂତନ ରାଜ୍ୟର ଆବିର୍ଭାବ ସମ୍ଭବ ହୋଇଅଛି, ଏବଂ ଜାତି ଉଠିଲେ ପୁଣି ଅପର ପ୍ରବଳ ଶକ୍ତିର କ୍ରୋଡ଼ରେ ଆତ୍ମ ବିସର୍ଜନ କରି ଇତିହାସର ପୁରାତନ ପତ୍ରରେ ସ୍ଥାନ ଲାଭ କଲେ, ସେସବୁର ସଂଖ୍ୟା ନାହିଁ । ଏହି ଉତ୍ଥାନ ପତନ ଓ ଜୟ ପରାଜୟର ଲୀଳାକ୍ଷେତ୍ର ମାନବ ସଂସାର ପ୍ରାତଃସଂଧ୍ୟା ଅତିକ୍ରମ କରୁ କରୁ କେତେ ଯୁଗ ଯୁଗାନ୍ତର ଅତିକ୍ରମ କରିଚାଲିଛି ।



Digitized by srujanika@gmail.com

ମାନବ ସନ୍ତାନକୁ ଇତର ଜୀବନ ଠାରୁ ଉଚ୍ଚତର ଅବସ୍ଥାକୁ, ଜୀବନର ଉଚ୍ଚ ଗ୍ରାମକୁ ଉଠାଇବା ପାଇଁ କେତେ ଶତ ତନ୍ତ୍ର, ମନ୍ତ୍ର, କେତେ ଶତ ଶ୍ରୁତି ସ୍ମୃତି, କେତେଶତ ଜ୍ଞାନ ବିଜ୍ଞାନ କେତେ ଶତ ବେଦ ବିଧାନ, କେତେ ଶତ ବାଇବେଲ୍ କୋରାନ୍ ପ୍ରଚାରିତ ଓ ପ୍ରତିଷ୍ଠିତ ହୋଇଛି, ତାହାର ସଂଖ୍ୟା ନାହିଁ । ଏହି ବିଶାଳ ବିଶ୍ୱର ଜନମଣ୍ଡଳୀ ବିଭିନ୍ନ କ୍ଷେତ୍ରରେ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ଉଚ୍ଚତର ଜୀବନ ଯାପନର ସମ୍ବାଦ ତ୍ୟାଗ ଧର୍ମର ମନ୍ତ୍ରରୂପେ ପରିଗୃହୀତ ହୋଇ ମନୁଷ୍ୟକୁ ଉତ୍ତମତର ଉପଦେଶ ଦେଉଅଛି । ପ୍ରତୀଚ୍ୟଦେଶେ ପ୍ରାଚୀନକାଳରେ ମହାତ୍ମା ସକ୍ରେଟିସ୍ ଓ ଗ୍ୟାଲିଲିଓ ସତ୍ୟର ସେବାରେ ଜୀବନ ବିସର୍ଜନ ଦେଇ ଚିର ପୂଜନୀୟ ହୋଇଯାଇଛନ୍ତି । ଯିଶୁ, ଜନ ପଲ୍ ଓ ଲୁଥର୍ ଏକ ସତ୍ୟର ସେବାରେ ଆତ୍ମ ବିସର୍ଜନ କରିଯାଇଅଛନ୍ତି । ଅପେକ୍ଷାକୃତ ଆଧୁନିକ କାଳରେ ହାୱାର୍ଡ, ଲିଙ୍କନ୍, ଦାମିୟାନ ଓ ବୁଥ୍ ନର ସେବାରେ ଅତ୍ୟାଶ୍ଚର୍ଯ୍ୟ ଆଦର୍ଶ ରଖି ସ୍ୱର୍ଗାରୋହଣ କରିଅଛନ୍ତି । ପ୍ରାଚ୍ୟଦେଶରେ ବିଶେଷ ଭାବରେ ଆମ୍ଭମାନଙ୍କ ସ୍ୱର୍ଗାଦପି ଗରିୟସୀ ଜନ୍ମଭୂମି ଭାରତବର୍ଷରେ କି ପ୍ରାଚୀନ କି ଆଧୁନିକ କାଳ ନରୋତ୍ତମ ପୁରୁଷାଦର୍ଶ ବିରଳ ନୁହେଁ । ଉଚ୍ଚ ଆଦର୍ଶର ସାଧନା ଓ ତହିଁରେ ସିଦ୍ଧିଲାଭ ଭାରତୀୟ ଆର୍ଯ୍ୟଗଣଙ୍କ ଗୌରବ ଗାଥାର ଅଙ୍ଗୀଭୂତ । ନାରଦ, ଶୁକଦେବ, ସନକ, ଜନକ, କଳ୍ପିତ ଚିତ୍ର ନୁହେଁ, ତପସ୍ୟାର ଫଳ । ବ୍ୟାସ, ବାଲ୍ମିକୀ, ବଶିଷ୍ଠ, ବିଶ୍ୱାମିତ୍ର, ମନୁ ଓ ପରାଶର ସେମାନଙ୍କର ମହାମହିମାମୟ କର୍ମଶୀଳ ଯୋଗଜୀବନର ଅମୂଲ୍ୟ ସଂପଦମାନ ଆମମାନଙ୍କ ପୂର୍ବବର୍ତ୍ତୀ ପିତୃପୁରୁଷଗଣଙ୍କ ଆମ୍ଭମାନଙ୍କ ଏବଂ ଆମ୍ଭମାନଙ୍କ ପରବର୍ତ୍ତୀ ଜନଗଣଙ୍କ ସୁଶିକ୍ଷାଲାଭର ସୋପାନବଳୀ ରଚନା କରି ସ୍ୱର୍ଗାରୋହଣ କରିଅଛନ୍ତି । ଶାକ୍ୟସିଂହ ଓ ଶଙ୍କର, ନାନକ ଓ ଶ୍ରୀ ଚୈତନ୍ୟ ଏକ ତତ୍ତ୍ୱର ସମାଧାନରେ ଆତ୍ମ ବିସର୍ଜନ କରି ଅକ୍ଷୟ କୀର୍ତ୍ତି ଅର୍ଜନ କରିଅଛନ୍ତି । ସଙ୍ଗେ ସଙ୍ଗେ ଅସଂଖ୍ୟ କୋଟି ମାନବଙ୍କ ଅମୃତ ଆସ୍ୱାଦନରେ ସହାୟତା କରୁଛନ୍ତି । ଏମାନେ ହେଲେ ଭାରତର ଅସହାୟ ମାନବକୁଳର ଆଧ୍ୟାତ୍ମିକ କଲ୍ୟାଣ ସାଧନପଥ ପ୍ରଦର୍ଶକ ଗୁରୁ । ଆ୍ଧୁନିକ ଭାରତର ଜୀବନ ଯାତ୍ରା ନିର୍ବାହ ଓ ଆଦର୍ଶର ଅଭାବ ନାହିଁ । ରାମମୋହନ ରାୟ, ଦେବେନ୍ଦ୍ରନାଥ, କେଶବଚନ୍ଦ୍ର, ରାମକୃଷ୍ଣ ଏବଂ ବିଜୟ କୃଷ୍ଣ ସେହିପରି ଏକ ଉଚ୍ଚତର ଆଦର୍ଶର ପରିଚର୍ଯ୍ୟାରେ ପ୍ରାଣପାତ କରି ସ୍ୱର୍ଗାରୋହଣ କରିଅଛନ୍ତି । ଏମାନଙ୍କ ଇଙ୍ଗିତରେ ଏବଂ ଉପଦେଶରେ ମନୁଷ୍ୟ ଚାଲୁଅଛନ୍ତି ବୋଲି ମନେ କରନ୍ତି, କିନ୍ତୁ କେଉଁ ଏକ ନିଦାରୁଣ ଭାଗ୍ୟ ବିପର୍ଯ୍ୟୟ ଫଳରେ ଆଜି ଆଉ ସେହି ସାଧନା ଏବଂ ସେହି ସାଧନାର ଉତ୍ତମ ଫଳ ନୟନ ଗୋଚର ହୁଏ ନାହିଁ । ଆଜି ଏହି ବହୁ କୋଟି ଲୋକଙ୍କର ମଧ୍ୟରେ ସେହି ସବୁ ମହାମୂଲ୍ୟ ରତ୍ନର ଉତ୍ତମ ବିକ୍ରେତା ଓ କ୍ରେତାଙ୍କର ଅଭାବ ହୋଇଅଛି । ସେହିପରି ଗୁରୁ ମଧ୍ୟ ନାହାନ୍ତି, ସେହିପରି ଶିଷ୍ୟ ମଧ୍ୟ ନାହାନ୍ତି, ଅଛି



Digitized by srujanika@gmail.com

କେବଳ ଏକ ପକ୍ଷରେ ଜ୍ଞାନାର୍ଜ୍ଜନ ବିମୁଖତା ଏବଂ ସେଥିପାଇଁ ପଲ୍ଲବଗ୍ରାହୀତା, ଅନ୍ୟପକ୍ଷରେ ଅଜ୍ଞ ଓ ଅପରିପକ୍ୱ ବୁଦ୍ଧି ଶ୍ରୋତାମାତ୍ର । ସେଭଳି ଗୁରୁ ନାହାନ୍ତି କି ସେଭଳି ଶିଷ୍ୟ ମଧ୍ୟ ନାହାଁନ୍ତି ।

ତାହାପରେ ତ୍ରେତୟାର ସେହି ଅଯୋଧ୍ୟା ନାହିଁ, ସେହି ରାଜ ସିଂହାସନ ନାହିଁ, ସେହି ରାମ ମଧ୍ୟ ନାହାନ୍ତି । ସେହି କୋଦଣ୍ଡ ଟଙ୍କାରରେ ଧରାକମ୍ପିତକାରୀ ବୀର ରାମାନୁଜ ଲକ୍ଷ୍ମଣ ମଧ୍ୟ ନାହାନ୍ତି । ଦ୍ୱାପରର ଇନ୍ଦ୍ରପ୍ରସ୍ତ, ହସ୍ତିନାପୁର ନାହିଁ, ସେହି ଯୁଧିଷ୍ଠିର ମଧ୍ୟ ନାହାନ୍ତି । ଆଉ କୁରୁକ୍ଷେତ୍ରର ସେହି ଅସାମାନ୍ୟ ବୀରକୁଳ ଧ୍ୱଂସକାରୀ କୃଷ୍ଣାଶ୍ରିତ ଭୀମାର୍ଜ୍ଜୁନ ମଧ୍ୟ ନାହାନ୍ତି । ତେବେ କ'ଣ ଅଛି ? ଅଛି ପଦାର୍ଥ ଲାଭ କରିବା ପଥରେ ଯେପରି ଆଦର୍ଶ ଓ ପନ୍ଥା, ରାଜାଦର୍ଶରେ ମଧ୍ୟ ସେହିପରି ଅଛି କେବଳ ଆଦର୍ଶ ତାହାର ପରିପୂରଣ ଉପଯୋଗୀ ପନ୍ଥା । ଆଜି ଇଂରେଜ ରାଜ ଭାରତବାସୀଙ୍କ ସମ୍ମୁଖରେ, ରାଜକୁଳ ଭାରତର ମହାଦର୍ଶର ଛାୟାତଳେ ଆପଣାର ଆଦର୍ଶକୁ ଫୁଟାଇ, ତଦ୍ୱାରା ନିଜ ନିଜ ରାଜ୍ୟର ଓ ସଙ୍ଗେ ସଙ୍ଗେ ଅସଂଖ୍ୟ ପ୍ରଜାବୃନ୍ଦଙ୍କ ଅଶେଷ ବିଧ କଲ୍ୟାଣ ସାଧନ କରି ନିଜେ ଧନ୍ୟ ହୋଇପାରିବେ ଏବଂ ସାମ୍ରାଜ୍ୟର ସୁଖୈଶ୍ୱର୍ଯ୍ୟ ବୃଦ୍ଧି କରାଇ, ଚରିତାର୍ଥ ହୋଇପାରିବେ । ଆଧୁନିକ ଭାରତ ଇତିହାସରେ ବାମଣ୍ଡାଧିପତି ସାମନ୍ତରାଜ ସାର୍ ବାସୁଦେବ ସୁଢ଼ଳଦେବ ଯେଉଁ ସହଜ ପଥରେ ଚାଲି ବାମଣ୍ଡା ରାଜ୍ୟର ଅଙ୍କ ଶୋଭା ବର୍ଦ୍ଧିତ କରିଯାଇଅଛନ୍ତି ସେହି ପଥ ସହଜ, ସୁନ୍ଦର ଏବଂ ସଂପୂର୍ଣ୍ଣ ରୂପେ ଅନୁକରଣ ଯୋଗ୍ୟ । ସେହି ରାଜନୀତି ବିଶାରଦ ବିରାଟ ପୁରୁଷଙ୍କ ଜୀବନ ତତ୍ତ୍ୱ ଅବଗତ ହେବାରେ ଏବଂ ତାହାଠାରୁ ଉନ୍ନତତର ପଦ୍ଧତିର ପରିଚୟ ଗ୍ରହଣରେ ଯତ୍ନବାନ ହେବାକୁ ପଡ଼ିବ । ସେହି ଉଚ୍ଚ ଆଦର୍ଶ ଅର୍ଜ୍ଜନ ପାଇଁ ଏହି ମହାମାନ୍ୟ ମହାପୁରୁଷଙ୍କ ଯାପିତ ଜୀବନର ଆଲୋଚନା ଏକାନ୍ତ ପ୍ରୟୋଜନ । ସାମନ୍ତରାଜ ସାର୍ ବାସୁଦେବ ସୁଢ଼ଳଦେବଙ୍କ ରାଜ୍ୟ ପାଳନ ପଦ୍ଧତି ଅନ୍ତରାଳରେ ରାମ ରାଜତ୍ୱର ଆଭାସ ମିଳିଥାଏ ବୋଲି ଆମର ବିଶ୍ୱାସ । କାରଣ ମଧ୍ୟପ୍ରଦେଶର ଇଂରେଜ ଶାସନକର୍ତ୍ତାଗଣ ଦୀର୍ଘକାଳ ଧରି ବର୍ଷ ପରେ ବର୍ଷ ସେହି ରାଜ୍ୟପାଳନର ପ୍ରଚୁର ପ୍ରଶଂସା କରିଯାଇଅଛନ୍ତି ।





Digitized by srujanika@gmail.com



ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ (୧୯୫୯)
ସମ୍ପାଦକ

ଓଡ଼ିଆ ସାହିତ୍ୟର ଜଣେ ସମ୍ଭାବନାମୟ ସାରସ୍ୱତ ସାଧକ । ତାଙ୍କର ସାହିତ୍ୟିକ କୃତି ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ନିରବଚ୍ଛିନ୍ନ ପ୍ରକାଶିତ ଓ ପ୍ରଶଂସିତ । କବିତା ରଚନାରେ ପାରଦର୍ଶିତା ଲାଭ କରିଥିବା ଏ ପ୍ରତିଭା କ୍ରମଶଃ ଗବେଷଣାତ୍ମକ କାର୍ଯ୍ୟରେ ମନୋନିବେଶ କରିଛନ୍ତି । ବାମଣ୍ଡାର ସାରସ୍ୱତ ଐଶ୍ୱର୍ଯ୍ୟକୁ ପାଠକ ସମ୍ମୁଖରେ ଉନ୍ମୋଚିତ କରିବା କ୍ଷେତ୍ରରେ ତାଙ୍କର ସାଧନା, ଗବେଷଣା ଓ ମନନଶୀଳତା ଅନନ୍ୟ । ଜଳନ୍ଧର ଦେବଙ୍କ ସାରସ୍ୱତ କୃତି ଉପରେ ଗବେଷଣା କରି ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ୨୦୦୨ରେ ସେ ଡକ୍ଟରେଟ୍ ଡିଗ୍ରୀ ପ୍ରାପ୍ତ । ସମ୍ପାଦନା କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ । ବାସୁଦେବ ଗ୍ରନ୍ଥାବଳୀ, ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଗ୍ରନ୍ଥାବଳୀ, ଜଳନ୍ଧରଦେବ ଗ୍ରନ୍ଥାବଳୀ, ବୃନ୍ଦାବନ ନାଥ ଶର୍ମା ରଚନା ସମଗ୍ର ଓ ମୌଲାନା ମୁସ୍ତକୀମ୍ ଖାଁ ଗ୍ରନ୍ଥାବଳୀ ସମ୍ପାଦନା ତାଙ୍କର ଅନନ୍ୟ ସାମର୍ଥ୍ୟକୁ ବିଜ୍ଞାପିତ କରେ । ସାର୍ ବାସୁଦେବ ସୁଢ଼ଳଦେବ ଜୀବନୀ ଗ୍ରନ୍ଥର ସମ୍ପାଦନା ଏହି ଧାରାର ଏକ ଯୁଗାନ୍ତକାରୀ ସଂଯୋଜନା ।

Digitized by srujanika@gmail.com